# ପ୍ରଫେସର କୃଷ୍ଣଚରଣ ସାହୁ
# ରଚନା ସମ୍ଭାର ୨
## ସାରଳା ସାହିତ୍ୟ : ମୁଖବନ୍ଧ



# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୨

## ସାରଳା ସାହିତ୍ୟ : ମୁଖବନ୍ଧ


କୃଷ୍ଣ ଚରଣ ସାହୁ

(୧୯୩୦-୧୯୯୭)

ସଂପାଦନା :

ଯତୀନ୍ଦ୍ର ମୋହନ ମହାନ୍ତି


---


ସୁବର୍ଣ୍ଣରେଖା

ଭୁବନେଶ୍ୱର

# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୨
## ସାରଳା ସାହିତ୍ୟ : ମୁଖବନ୍ଧ
### କୃଷ୍ଣଚରଣ ସାହୁ (୧୯୩୦-୧୯୯୭)


ସଂପାଦକ ମଣ୍ଡଳୀ : ରାଜେନ୍ଦ୍ର ପ୍ରସାଦ ଦାସ, ସଂଘମିତ୍ରା ମିଶ୍ର, ବିଜୟଲକ୍ଷ୍ମୀ ସ୍ୱାଇଁ, ବିରାଜ ମୋହନ ଦାସ, ଉଦୟନାଥ ସାହୁ ;

ପ୍ରକାଶକ : ସୁବର୍ଣ୍ଣରେଖା, କଟକ ରୋଡ଼, (ଲକ୍ଷ୍ମୀସାଗର ଛକ), ଭୁବନେଶ୍ୱର-୭୫୧୦୦୬ (ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ ପକ୍ଷରୁ)

ପ୍ରଚ୍ଛଦ, ଡିଟିପି,
ମୁଦ୍ରଣ ଓ ବଂଧେଇ : କେଦାର ପ୍ରିଣ୍ଟିଂ ପ୍ରେସ୍, ବାୟାବାବା ମଠ ଲେନ, ଭୁବନେଶ୍ୱର-୭

ପ୍ରଥମ ମୁଦ୍ରଣ : ୧୯୯୯

ମୂଲ୍ୟ ୧୨୦ ଟଙ୍କା


# PROFESSOR KRUSHNA CHARAN SAHOO RACHANA SAMBHAR II

(Collected Works of Professor Krushna Charan Sahoo, Volume II)
Krushna Charan Sahoo (1930-1997)


Editorial Board: Rajendra Prasad Das, Ms. Sanghamitra Mishra, Ms. Bijayalaxmi Swain, Biraj Mohan Das, Udayanath Sahu

Publisher: Subarnarekha, Cuttack Road ( Laxmisagar Chhak), Bhubaneswar - 751006. (On behalf of K.C. Sahoo Smruti Parishad)

Cover design,D.T.P,
Printing & Binding: Kedar Printing Press, Bayababa Matha Lane, Bhubaneswar -7

First Edition: 1999

Price: Rs. 120.00

I.S.B.N.

## ଉତ୍ସର୍ଗ

ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସ୍ମୃତି ଉଦ୍ଦେଶ୍ୟରେ

# ମୁଖବନ୍ଧ

**ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୨** ପ୍ରକାଶ ପାଇଲା । ଏଥିରେ ପ୍ରଫେସର ସାହୁଙ୍କର ସାରଳା ସାହିତ୍ୟ ସଂପର୍କରେ ତିନୋଟି ମୁଖବନ୍ଧ ଏକାଠି କରାଯାଇଛି । ଏଗୁଡ଼ିକ ସେ ନିଜେ ସଂପାଦନା କରିଥିବା ତିନୋଟି ବହିର ମୁଖବନ୍ଧ ଭାବରେ ପ୍ରକାଶ ପାଇଥିଲା । ବହି ତିନୋଟି ହେଲା - ୧. **ସାରଳା ମହାଭାରତ : ସଂପାଦନା ଓ ଆଲୋଚନା** (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୭୮); ୨. **ଚଣ୍ଡୀ ପୁରାଣ** (ବୁକସ୍ ଏଣ୍ଡ ବୁକସ୍, କଟକ, ୧୯୮୪) ; ଓ **ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବ**, (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୩) । ମୁଖବନ୍ଧ ଗୁଡ଼ିକରେ ସାରଳା ସାହିତ୍ୟ ସଂପର୍କରେ ବିସ୍ତୃତ ଭାବରେ ଆଲୋଚନା କରାଯାଇଛି ଯାହାର ଗୁଣାତ୍ମକ ମାନ ଅତ୍ୟନ୍ତ ଉଚ୍ଚକୋଟିର ଓ ଯାହା ପ୍ରଫେସର ସାହୁଙ୍କର ଅଗାଧ ପାଣ୍ଡିତ୍ୟ ଓ ବିଶ୍ଳେଷଣାତ୍ମକ କ୍ଷମତାର ଉତ୍କୃଷ୍ଟ ନିଦର୍ଶନ । ସାରଳା ସାହିତ୍ୟ ସଂପର୍କରେ ପ୍ରଫେସର ସାହୁଙ୍କର ଅନ୍ୟାନ୍ୟ ପ୍ରବନ୍ଧସବୁ **ରଚନାସମ୍ଭାର ୩** ରେ ପ୍ରକାଶ ପାଇବ । ଆଶା **ରଚନା ସମ୍ଭାର ୨, ରଚନା ସମ୍ଭାର ୧** ପରି ପ୍ରଫେସର ସାହୁଙ୍କର ଅଗଣିତ ଅନୁରାଗୀ ପାଠକ ପାଠିକା ଓ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ସାଦରେ ଗୃହୀତ ହେବ ।

**ଯତୀନ୍ଦ୍ର ମୋହନ ମହାନ୍ତି**
୧୯.୩.୯୯

# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୧ର

# ମୁଖବନ୍ଧ

ପ୍ରଫେସର କୃଷ୍ଣଚରଣ ସାହୁଙ୍କର ଦେହାନ୍ତ ହେଲା ୬.୪.୯୭ରେ । ତାଙ୍କର ତିରୋଧାନ ଯେପରି ଆକସ୍ମିକ ସେହିପରି ତୀବ୍ର ଦୁଃଖଦାୟକ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅବସର ନେବା ପରେ ସେ ଏତେ ଏତେ କାର୍ଯ୍ୟରେ - ବିଶେଷ କରି ଗବେଷଣା ଓ ପୋଥି- ସଂପାଦନା କାର୍ଯ୍ୟରେ ଲିପ୍ତ ହୋଇ ପଡିଥିଲେ ଯେ, ମନେ ହେଉଥିଲା ସତେ ଯେପରି ତାଙ୍କର କର୍ମ ଜୀବନ ଅବସର ନେବା ପରେ ଆରମ୍ଭ ହେଲା । ତେଣୁ ପ୍ରଫେସର ସାହୁଙ୍କର ଅକସ୍ମାତ ତିରୋଧାନ ଏକ ଦାରୁଣ ଦୁର୍ଘଟଣା କୁହାଯାଇ ପାରେ । ତାଙ୍କର ଦେହାନ୍ତ ପରେ, ତାଙ୍କର ବହୁ ଶୁଭେଚ୍ଛୁ, ବଂଧୁ ଓ ଛାତ୍ରଛାତ୍ରୀ ଏକାଠି ହୋଇ ପ୍ରଫେସର ସାହୁଙ୍କର ଅସଂପୂର୍ଣ୍ଣ କାର୍ଯ୍ୟକୁ କିପରି ସଂପୂର୍ଣ୍ଣ କରାଯାଇ ପାରେ ସେ ବିଷୟରେ ବିଚାର ବିମର୍ଷ କରିଥିଲେ । କିନ୍ତୁ ଦେଖାଗଲା ସାହୁଙ୍କର ଅସଂପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ସମ୍ଭବ ନୁହେଁ, କାରଣ ସେ ନିଜେ ହିଁ କେବଳ ନିଜର କାର୍ଯ୍ୟକୁ ସଂପୂର୍ଣ୍ଣ କରିଥାନ୍ତେ । ତେଣୁ ସ୍ଥିର ହେଲା, ସେ ନିଜର ଦୀର୍ଘ ଅଧୟନ ଓ ଅଧ୍ୟାପନା ଜୀବନରେ ଓଡିଆ ସାହିତ୍ୟ ସଂପର୍କରେ ଯେଉଁସବୁ ବିପୁଳ୍ ଓ ପ୍ରଚୁର ଆଲୋଚନାମାନ କରିଛନ୍ତି, ଯାହାର କିଛି କେତେକ ବହି ଭାବରେ ପ୍ରକାଶ ପାଇଛି, ଓ ଅନେକ ବିଭିନ୍ନ ପତ୍ର ପତ୍ରିକାରେ ବିକ୍ଷିପ୍ତ ହୋଇ ରହିଛି, ସେ ସବୁକୁ ଏକାଠି କରି କ୍ରମାନ୍ୱୟରେ ତାଙ୍କର ଲେଖାର ଗ୍ରନ୍ଥାବଳୀ ଭାବରେ ପ୍ରକାଶ କରାଯାଇ ପାରିବ । ଏହି ଉଦ୍ଦେଶ୍ୟ ଆଖି ଆଗରେ ରଖି 'ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ' ଗଠିତ ହେଲା, ଓ କିଛି ଶୁଭେଚ୍ଛୁ ବଂଧୁଙ୍କଠାରୁ ଏହି ଉଦ୍ଦେଶ୍ୟରେ କିଛି ଆର୍ଥିକ ଅନୁଦାନ ବି ସଂଗ୍ରହ କରାଗଲା ।

ବର୍ତ୍ତମାନ ପ୍ରକାଶ ପାଉଥିବା **ପ୍ରଫେସର କୃଷ୍ଣଚରଣ ସାହୁ ରଚନାସମ୍ଭାର ୧**, ଏହି ନିଷ୍ପତ୍ତି ଓ ଉଦ୍ୟମର ପ୍ରଥମ ଫଳ । ଏହି ଗ୍ରନ୍ଥରେ ସାରଳା ପୂର୍ବବର୍ତ୍ତୀ ଓଡିଆ ସାହିତ୍ୟ ସଂପର୍କରେ ସାହୁଙ୍କର ଲେଖାସବୁକୁ ଏକାଠି କରାଯାଇଛି । **ରଚନା ସମ୍ଭାରର** ଦ୍ୱିତୀୟ

ଓ ତୃତୀୟ ଭାଗ **ରଚନାସମ୍ଭାର ୨** ଓ **'ରଚନାସମ୍ଭାର ୩'** ର ସଂପାଦନା କାର୍ଯ୍ୟ ପ୍ରାୟ ସରିଗଲାଣି । ଆଶା କରାଯାଉଛି ଦ୍ୱିତୀୟ ଓ ତୃତୀୟ ଭାଗ ୧୯୯୮ ଶେଷ ସୁଦ୍ଧା ପ୍ରକାଶ କରାଯାଇ ପାରିବ । ଏହି ଦୁଇଟି ଭାଗରେ ପ୍ରଫେସର ସାହୁଙ୍କର ସାରଳା ଦାସଙ୍କ ସଂପର୍କରେ ସବୁ ଲେଖାଗୁଡ଼ିକ ସଂକଳିତ ହେବ । ଉଦ୍ଦେଶ୍ୟ, **ରଚନାସମ୍ଭାର**ର ବିଭିନ୍ନ ଭାଗ ମାଧ୍ୟମରେ ଓଡ଼ିଆ ସାହିତ୍ୟର କାଳାନୁକ୍ରମିକ ଅଭିବୃଦ୍ଧିର ଏକ ବିସ୍ତୃତ ସଂଗଠନ ଗଢ଼ି ତୋଳିବା, ଯାହାକି ପ୍ରଫେସର ସାହୁଙ୍କର ନିଜସ୍ୱ ବିଚାର ଧାରାକୁ ପ୍ରସାରିତ କରିବା ସାଙ୍ଗେ ସାଙ୍ଗେ, ପାଠକ ପାଠିକା ମାନଙ୍କୁ ଓଡ଼ିଆ ସାହିତ୍ୟର ଜଟିଳ ଅଭିବୃଦ୍ଧି ସଂପର୍କରେ ଯଥେଷ୍ଟ ଧାରଣା ଦେଇ ପାରିବ । ପ୍ରଫେସର ସାହୁ ବଞ୍ଚିଥିଲେ, ଏହିପରି ଏକ ପ୍ରକାଶନର ଅବସରରେ ସେ ହୁଏତ ନିଜର ମତାମତକୁ ପରିମାର୍ଜନ ଓ ପରିବର୍ଦ୍ଧିତ କରି ପାରିଥାନ୍ତେ । କିନ୍ତୁ ତା ଆଉ ହେବାର ନୁହେଁ । ତେଣୁ ଯାହା ଅଛି ତାକୁ ସବୁ ଆମେ ଏକାଠି କରି ପ୍ରକାଶ କରୁଛୁ ଏହି ବିଶ୍ୱାସରେ ଯେ ତାର ମୂଲ୍ୟ ଅସୀମ, ଓ ସେ ସବୁକୁ ସଂକଳିତ କରି ସଂରକ୍ଷିତ କରି ରଖିବା ବର୍ତ୍ତମାନ ପୀଢ଼ିର ଏକାନ୍ତ କର୍ତ୍ତବ୍ୟ । ପ୍ରଫେସର ସାହୁ ଜ୍ଞାନ ଓ ଅଜ୍ଞାନର ପରିସୀମା ବାହାରକୁ ଚାଲି ଯାଇଛନ୍ତି। କିନ୍ତୁ ତାଙ୍କର ମୁକ୍ତ ଆତ୍ମା ଏସବୁ କାର୍ଯ୍ୟକୁ ଯେ ନିଜର ଉଦାରତାରେ ଅବଲୋକନ କରିବ, ଓ ଏ କାର୍ଯ୍ୟ ପାଇଁ ନିଜର ଆଶୀର୍ବାଦ ଦେବ ଏ ବିଷୟରେ ଆମର ସନ୍ଦେହ ନାହିଁ ।

**ଯତୀନ୍ଦ୍ର ମୋହନ ମହାନ୍ତି,**
*ଅଧ୍ୟକ୍ଷ, ପ୍ରଫେସର କୃଷ୍ଣଚରଣ ସାହୁ*
*ସ୍ମୃତି ପରିଷଦ,*
*୩୧.୩.୯୮*



# ସୂଚୀ

# ପ୍ରଥମ ପରିଚ୍ଛେଦ

## ମୁଖବନ୍ଧ ୧

ପଞ୍ଚଦଶ ଶତାବ୍ଦୀ ଓଡ଼ିଶା ପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ଶତାବ୍ଦୀରେ ଓଡ଼ିଶାରେ ଦୁଇଜଣ କୃତୀ ସନ୍ତାନ ଜନ୍ମଗ୍ରହଣ କରିଥିଲେ,- ଜଣେ ଓଡ଼ିଶାର ଦିଗ୍‌ବିଜୟୀ ସମ୍ରାଟ କପିଳେନ୍ଦ୍ର ଦେବ ଓ ଅନ୍ୟ ଜଣକ ହେଲେ ଶୂଦ୍ରମୁନି ସାରଳା ଦାସ । ସାଧାରଣ ରାଉତ ଭାବେ ଜୀବନ ଆରମ୍ଭ କରି କପିଳେନ୍ଦ୍ର ଦେବ ଗଙ୍ଗାଠାରୁ କୃଷ୍ଣା ନଦୀ ପର୍ଯ୍ୟନ୍ତ ବିଶାଳ ଭୂଖଣ୍ଡର ଅଧିକାରୀ ହୋଇ ନିଜକୁ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ବୀରାଧିବୀରବର ପ୍ରଭୃତି ଉପାଧିରେ ଭୂଷିତ କରି ଓଡ଼ିଆ ଜାତିର ବୀରତ୍ୱକୁ ଭାରତରେ ପ୍ରତିଷ୍ଠିତ କଲାପରି ସାରଳା ଦାସ ଏକାକୀ ସମଗ୍ର ମହାଭାରତକୁ ଓଡ଼ିଆ ଭାଷାରେ ରୂପାନ୍ତରିତ କରି ଓଡ଼ିଆ ଭାଷାର ମହତ୍ତ୍ୱ ବୃଦ୍ଧି କରିଥିଲେ । କପିଳେନ୍ଦ୍ରଙ୍କ ପରେ ତାଙ୍କ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇ ଯାଇଥିଲା । ଅଥଚ ସାରଳାଦାସଙ୍କ ପରେ ତାଙ୍କ ରଚିତ ଗ୍ରନ୍ଥ ସବୁର ମହିମା ଦକ୍ଷିଣରେ ତେଲୁଗୁ ଓ ଉତ୍ତରରେ ବଙ୍ଗ ଭାଷାକୁ ପ୍ରଭାବିତ କଲା । କପିଳେନ୍ଦ୍ରଦେବଙ୍କ କୀର୍ତ୍ତିରାଜି ଧୀରେ ଧୀରେ ଓଡ଼ିଶାରୁ ଲୁପ୍ତ ହୋଇଯାଉଛି, ଅଥଚ ସାରଳା ଦାସଙ୍କ ଅକ୍ଷୟ କୀର୍ତ୍ତି ଚିରଦିନ ଅମ୍ଳାନ । ଯୁଗ ଯେତିକି ବଦଳୁଛି, ସାରଳା ଦାସଙ୍କ ଗ୍ରନ୍ଥରାଜିର ମହତ୍ତ୍ୱ ସେହିଭାବେ ବୃଦ୍ଧି ପାଉଛି । ତାଙ୍କ ପ୍ରତିଭାର ପ୍ରକୃତ ମୂଲ୍ୟାଙ୍କନ କରିବା ଅଦ୍ୟାବଧି ସମ୍ଭବପର ହୋଇନାହିଁ ।

ସାରଳା ଦାସଙ୍କ ପୂର୍ବରୁ ସିଦ୍ଧ, ନାଥ ଓ ଧର୍ମ ସମ୍ପ୍ରଦାୟର କ୍ଷୁଦ୍ର କ୍ଷୁଦ୍ର ରଚନା, ଡାକ ଋଷି ବଚନ, ଢ଼ଗ ଢ଼ମାଳି, ପ୍ରବଚନ ଓ ପ୍ରହେଳିକା ଓଡ଼ିଆଭାଷାର ଆଦିରୂପ ଗଠନରେ ସାହାଯ୍ୟ କରିଥିଲେ ହେଁ, ସାରଳା ଦାସ ହିଁ ଥିଲେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଦି ମହାକବି । ଓଡ଼ିଆଭାଷା ବାଳ-ରବିର କୋମଳ କିରଣ ସ୍ପର୍ଶରେ ଆହ୍ଲାଦିତ ନ ହୋଇ ଏକାବେଳକେ ମଧ୍ୟାହ୍ନ-ରବିର ପ୍ରଚଣ୍ଡ କିରଣରେ ଉଦ୍ଭାସିତ ହେଲା । ବିକାଶ ପଥରେ ଗତି ନ କରି ପରିଣତ ଅବସ୍ଥାରୁ ହିଁ ଏହାର ଆରମ୍ଭ ହେଲା । ସାରଳା ଦାସ ଭାଷା, ଭାବ ଓ କଥା ଯୋଜନାରେ ଯେଉଁ ଆଦର୍ଶର ପ୍ରତିଷ୍ଠା କଲେ, ତାହା କେବଳ ସେହି ଯୁଗ ପାଇଁ ନୁହେଁ, ସବୁ ଯୁଗରେ ଓଡ଼ିଆ ଜାତିର ଆଦର୍ଶ ହୋଇ ରହିଗଲା ।

ସାରଳା ଦାସଙ୍କ ବେଳକୁ ସଂସ୍କୃତ୍ ସାହିତ୍ୟର ଅବସାନ କାଳ । ବେଦ, ପୁରାଣ, କାବ୍ୟ, ନାଟକ ଓ ଅନ୍ୟାନ୍ୟ କ୍ଷେତ୍ରରେ ସଂସ୍କୃତ ସାହିତ୍ୟ ଏପରି ଚରମ-ସୀମାରେ ଉପନୀତ ହୋଇଥିଲା ଯେ, ଏହାକୁ ଅତିକ୍ରମ କରିବା ପାଇଁ ଲେଖକମାନେ ପ୍ରୟାସ କରୁ ନ ଥିଲେ ।

ସେଥିପାଇଁ ଏ ସବୁର ଟୀକା ଟିପ୍ପଣୀ ପ୍ରସ୍ତୁତ କରିବାରେ ସେମାନେ ନିଜର ସମୟ ନିୟୋଜିତ କରୁଥିଲେ । ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାର ମହତ୍ତ୍ୱ ମଧ୍ୟ ଦିନକୁ ଦିନ ହ୍ରାସ ପାଉଥିଲା । ଏସବୁ ଭାଷା ପରିବର୍ତ୍ତେ ସମସ୍ତ ଭାରତବର୍ଷରେ ଆଧୁନିକ ଭାଷାର ସୃଷ୍ଟି ଓ ବିକାଶ ପାଇଁ ଏକ ନୂଆ ଜାଗରଣ ଆରମ୍ଭ ହୋଇଥିଲା । ଲେଖକମାନେ ପ୍ରାକୃତ ନାଁରେ ଦେଶୀ ଭାଷାକୁ ହିଁ ବିଶେଷ ଗୁରୁତ୍ୱ ପ୍ରଦାନ କରୁଥିଲେ । ଓଡ଼ିଶାର ଗଜପତି କପିଳେନ୍ଦ୍ରଦେବ ନିଜ ରଚିତ **ପରଶୁରାମ ବ୍ୟାୟୋଗ** ଶୀର୍ଷକ ସଂସ୍କୃତ ନାଟିକାରେ ଓଡ଼ିଆ ସଙ୍ଗୀତର ପ୍ରୟୋଗ କରି ଏବଂ ନିଜ ପ୍ରଦତ୍ତ ରାଜାଦେଶ ସବୁରେ ଓଡ଼ିଆ ଭାଷାକୁ ମହତ୍ତ୍ୱ ପ୍ରଦାନ କରି ଓଡ଼ିଆଭାଷାର ଗୁରୁତ୍ୱ ପ୍ରତି ଦେଶବାସୀଙ୍କର ଦୃଷ୍ଟି ଆକୃଷ୍ଟ କରିଥିଲେ । ସାଧାରଣ ଲୋକେ ମଧ୍ୟ ବିଶ୍ୱାସ କରୁଥିଲେ,

ଯେତେକ ବେଦ ପୁରାଣ ବଖାଣି ·
ତହୁଁ ଅଧିକ ତ କେହି ନ ଜାଣି । (ଅଚ୍ୟୁତଙ୍କ 'ଚାରିଖାନି')

ସାରଳା ଦାସ ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଶ୍ରୁତି, ସ୍ମୃତି, କାବ୍ୟ ଓ ନାଟକ ଅପେକ୍ଷା ପୁରାଣର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ପ୍ରତି ସଚେତନ ହୋଇ, ହିନ୍ଦୁଧର୍ମର ତିନୋଟି ମହାନ ଗ୍ରନ୍ଥ, ରାମାୟଣ, ଭାଗବତ ଓ ମହାଭାରତକୁ ଓଡ଼ିଆରେ ଲେଖିବା ପାଇଁ ସଙ୍କଳ୍ପବଦ୍ଧ ହେଲେ । କାରଣ ଏହାରି ମାଧ୍ୟମରେ ବେଦ-ବାଣୀକୁ ଲୋକରେ ପ୍ରଚାର କରିବା ସହଜ ଥିଲା ଏବଂ ଏହାର ଅଜସ୍ର କଥା ମାଧ୍ୟମରେ ଦେଶରେ ଧର୍ମ, ନୀତି ତଥା ଜାତିର ଇତିହାସ ଦେବା ଯେପରି ସମ୍ଭବ, ଅନ୍ୟ କୌଣସି ମାଧ୍ୟମ ଏଥିପାଇଁ ସେତେ ଅନୁକୂଳ ନୁହେଁ । ସାରଳା ଦାସ ସେଥିପାଇଁ ପୁରାଣ ଲେଖିବାକୁ ହିଁ ମନସ୍ଥ କରିଥିଲେ ।

ସାରଳା ଦାସଙ୍କ ରାମାୟଣ କହିଲେ କେହି କେହି **ବିଲଙ୍କା ରାମାୟଣ**କୁ ବୁଝିଥାନ୍ତି । ସଂସ୍କୃତ **ଅଦ୍ଭୂତ ରାମାୟଣ** ଓ **ଆନନ୍ଦ ରାମାୟଣ**ରେ ସହସ୍ରଶିରା ରାବଣର ବଧ କଥା ଅଛି । **ଅଦ୍ଭୂତ ରାମାୟଣ**ର ସହସ୍ରଶୀରା ରାବଣ ବଧ ପ୍ରସଙ୍ଗ ବିଲଙ୍କା ରାମାୟଣର ବିଷୟବସ୍ତୁ । ସାରଳା ଦାସ ଦେବୀଙ୍କ ଭକ୍ତ ଥିବାରୁ **ଶ୍ରୀମଦ୍ ଦେବୀ ଭାଗବତ**ର ଚଣ୍ଡୀଙ୍କ ପରି ସୀତାଙ୍କୁ ସର୍ବଶକ୍ତି ସମ୍ପନ୍ନ କରି, ତାଙ୍କର ମୋହିନୀ ରୂପକୁ ସହସ୍ରଶିରା ରାବଣ ବଧର କାରଣ ରୂପେ ଗ୍ରହଣ କରିବା ଅସମୀଚୀନ ନୁହେଁ । ପୁଣି ତାଙ୍କ ମହାଭାରତର ବିଜ୍ଞ ଶ୍ରୋତା ହେଉଛନ୍ତି, ବିଲଙ୍କା ଦେଶର ଅଧିପତି । ସାରଳାଦାସଙ୍କ **ଚଣ୍ଡୀପୁରାଣ**ର କଥା ସହ **ବିଲଙ୍କା ରାମାୟଣ**ର ସାମ୍ୟ ଏହି ଅନୁମାନକୁ ଆହୁରି ପୁଷ୍ଟ କରେ । ଏ ସବୁ ସତ୍ତ୍ୱେ କାହାରି କାହାରିଙ୍କ ମତରେ ସାରଳା ଦାସଙ୍କ ରାମାୟଣ କହିଲେ, **ବିଲଙ୍କା ରାମାୟଣ** ନୁହେଁ, **ବିଚିତ୍ର ରାମାୟଣ** । କାରଣ ଦର୍ଶାଇ ସେମାନେ କୁହନ୍ତି ଯେ **ବିଲଙ୍କା ରାମାୟଣ**ର ପ୍ରାଚୀନ ପାଣ୍ଡୁଲିପି ସବୁରେ ସାରଳା ଦାସ ନ ଥାଇ ସିଦ୍ଧେଶ୍ୱର ଦାସଙ୍କ ଭଣିତା ମିଳିଥାଏ । ଏହାକୁ ସାରଳା ଦାସଙ୍କ ଦୀକ୍ଷା-ପୂର୍ବ ନାମ ରୂପେ ଗ୍ରହଣ କଲେ ମଧ୍ୟ ଏହି ସନ୍ଦେହର ଅବସାନ ହୁଏ ନାହିଁ । କାରଣ

ଭାଷା ଦୃଷ୍ଟିରୁ **ବିଲଙ୍କା ରାମାୟଣ, ମହାଭାରତ ଓ ଚଣ୍ଡୀପୁରାଣ**ଠାରୁ ଅର୍ବାଚୀନ । ଏଥିରେ ପ୍ରାଚୀନତାର ସ୍ପର୍ଶ ନାହିଁ । ଅନ୍ୟ ପକ୍ଷରେ ଭୁଇଁଆ ମାଧବ ଦାସ, ଓଡ଼ିଶାରୁ ଲୋପ ପାଇ ଯାଇଥିବା ସିଦ୍ଧେଶ୍ୱର ମୁନିଙ୍କ ରଚିତ **ବିଚିତ୍ର ରାମାୟଣ**ର ଯେଉଁ ସୂଚନା ଦେଇଛନ୍ତି ତାହା **ବିଲଙ୍କା ରାମାୟଣ** ନୁହେଁ । ତେଲୁଗୁ ଭାଷାରେ ସାରଳା ଦାସଙ୍କ ଯେଉଁ ରାମାୟଣର ଚାରିଥର ଅନୁବାଦ ହୋଇସାରିଛି, ତାହା ମଧ୍ୟ **ବିଲଙ୍କା** ନୁହେଁ **ବିଚିତ୍ର ରାମାୟଣ । ବିଚିତ୍ର ରାମାୟଣ**ରେ ଅବାଲ୍ମୀକୀୟ କଥାର ବହୁଳତା ପରି ସାରଳା ଦାସଙ୍କ ମହାଭାରତରେ ମଧ୍ୟ ରାମ କଥାର ବହୁ ବିଚିତ୍ର ରୂପ ପରିଦୃଷ୍ଟ ହୁଏ । ଏବେ ସାରଳା ଦାସଙ୍କ ଭଣିତା ଯୁକ୍ତ **ବିଚିତ୍ର ରାମାୟଣ** ଓଡ଼ିଶାରୁ ସଂଗୃହୀତ ହୋଇପାରିଛି । ଏସବୁକୁ ଆଖିରେ ରଖି ବିଚାର କଲେ, ସାରଳାଦାସଙ୍କ ରାମାୟଣ **ବିଲଙ୍କା ରାମାୟଣ** ନ ହୋଇ **ବିଚିତ୍ର ରାମାୟଣ** ହେବା ଅନୁମାନ କରାଯାଇପାରେ । ତାଙ୍କ ଭଣିତା ଥିବା **ସଂକ୍ଷିପ୍ତ ରାମାୟଣ** ମଧ୍ୟ ଆବିଷ୍କୃତ ହୋଇଛି । ରାମାୟଣ କହିଲେ ଏହି **ସଂକ୍ଷିପ୍ତ ରାମାୟଣ**କୁ ମଧ୍ୟ ବୁଝାଯାଇପାରେ ।

ସାରଳା ଦାସଙ୍କ ଭାଗବତ ହେଉଛି, **ଚଣ୍ଡୀପୁରାଣ** ଅର୍ଥାତ୍ ଶ୍ରୀମଦ୍ **ଦେବୀ ଭାଗବତ ।** ଅଷ୍ଟାଦଶ ପୁରାଣର ଗଣନାରେ ବୈଷ୍ଣବମାନେ ଶ୍ରୀମଦ୍ ଭାଗବତକୁ ଗଣନା କଲା ପରି ଶାକ୍ତମାନେ ଶ୍ରୀମଦ୍ ଦେବୀ ଭାଗବତର ଗଣନା କରିଥାନ୍ତି । ସାରଳା ଦାସ ଦେବୀ ଭକ୍ତ ଥିବାରୁ ଶ୍ରୀମଦ୍ ଦେବୀ ଭାଗବତ ବା ତାଙ୍କ **ଚଣ୍ଡୀପୁରାଣ** କୁ **ଭାଗବତ** କହିଛନ୍ତି । ଚଣ୍ଡୀଙ୍କ ଦ୍ୱାରା **ମହିଷାସୁର ବଧ** ଏହାର ବିଷୟବସ୍ତୁ । ଏହି କଥା ବର୍ଣ୍ଣନା କଲାବେଳେ ସାରଳା ଦାସ ଚଉଷଠୀ ଯୋଗ୍ନୀଙ୍କର ଯେଉଁ ନାମକରଣ କରିଛନ୍ତି, ତାହା ଓଡ଼ିଶାର ଗାଁ ମୁଣ୍ଡରେ ବିଭିନ୍ନ ନାଁରେ ପୂଜା ପାଉଥିବା ଠାକୁରାଣୀ ସବୁ । ଏହି ଗ୍ରନ୍ଥରୁ ଓଡ଼ିଶାରେ ଶାକ୍ତ ଧର୍ମ ତଥା ଦେବୀ ପୂଜାର ଲୋକପ୍ରିୟତା ପ୍ରତିପାଦିତ ହୁଏ ।

ସାରଳା ଦାସଙ୍କ ଶ୍ରେଷ୍ଠ ଗ୍ରନ୍ଥ ହେଉଛି, **ମହାଭାରତ ।** ସଂସ୍କୃତରେ **ମହାଭାରତ**କୁ ଇତିହାସ କୁହାଯାଏ । ଓଡ଼ିଆରେ ଏହା ହେଉଛି, ପୁରାଣ । ସାରଳା ଦାସ ଏହାକୁ ଯେ କେବଳ ପୁରାଣ ରୂପେ ବର୍ଣ୍ଣନା କରିଛନ୍ତି ତାହା ନୁହେଁ, ଅଷ୍ଟାଦଶ ପୁରାଣଠାରୁ ଏହାର ଶ୍ରେଷ୍ଠତା ତଥା ମହନୀୟତା ପ୍ରଚାର କରିଛନ୍ତି । ଆଦ୍ୟ ପର୍ବରେ କବି ଏହାର ସୂଚନା ଦେଇ କହିଛନ୍ତି-

ଶୁଣ ହୋ ବଇବସ୍ୱତ ମନୁ ଅଦ୍ୟ ଯେ ଚରିତ
ଦେବତାମାନେ ରଚିଲେ ସର୍ବଗ୍ରନ୍ଥ ।
ତୁଳା ଦଣ୍ଡ କଲେ ଦ୍ୱାଦଶ ଯୋଜନ କାଠି
ତିନି ତିନି ଯୋଜନ କଲେ ବେନି କର୍ଣ୍ଣକୋଟି ।
ବିଷ୍ଣୁ ଅନନ୍ତ କୋଟି ବ୍ରହ୍ମାଣ୍ଡ ଅନନ୍ତ କୋଟି
ସବୁ ପୁରେଇଲେ ନେଇ ତୁଳାଦଣ୍ଡ କାଠି

ଅଷ୍ଟାଦଶ ପୁରାଣ ପଞ୍ଚବିଂଶ ଲକ୍ଷ
ରାମାୟଣ ଚଣ୍ଡୀ ଯୁଦ୍ଧ ସମସ୍ତ ପୁରାଣ ପ୍ରତ୍ୟକ୍ଷ
ବିଷ୍ଣୁ ପୁରାଣ ରାଜା ମାରକଣ୍ଡ ପୁରାଣ ପାତର
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର
ଯେ ଚାରି ପୁରାଣ ମୁଖ୍ୟ କରଣ ସମସ୍ତ ପୁରାଣ
ଯେମନ୍ତ ବସାଇଲେ ନେଇ ତୁଳାଦଣ୍ଡ କତିକେଣ ।
ଆରକ କଛେ ଭାରଥ ଅଷ୍ଟାଦଶ ଥୋଇଲେ
ସମସ୍ତ ପୁରାଣୁଂ ଯେ ମହାଗରୁ ହୋଇଲେ ।
ଯେ ମହାଭାରଥ ଯହୁଂ ହୋଇଲା ମହାଭାରା
ତହୁଁ ମହାଭାରଥ ନାମ ଦେଲେ କଶ୍ୟପ ଅଙ୍ଗିରା ।
ତେଣୁ କରି ହୋଇଲା ମହାଭାରଥ ନାମ
ତୁଲନ୍ତେ ହୋଇଲା ଯେ ମହା ଅସମ୍ଭବ ।

ସଂସ୍କୃତରେ ପୁରାଣର ପଞ୍ଚଲକ୍ଷଣ ନିର୍ଦ୍ଦିଷ୍ଟ ହୋଇଥିଲା । ସେ ସବୁ ହେଉଛି, ୧-ସର୍ଗ (ସୃଷ୍ଟି-ପ୍ରକ୍ରିୟା), ୨-ପ୍ରତି ସର୍ଗ (ପ୍ରଳୟ ଓ ସୃଷ୍ଟି), ୩-ବଂଶ (ବଂଶ ପରମ୍ପରା), ୪-ମନ୍ୱନ୍ତର (ମନୁଙ୍କର ବିଭିନ୍ନ ଯୁଗ) ଓ ୫-ବଂଶାନୁଚରିତ (ଭାରତର ପ୍ରାଚୀନ ବଂଶଗୁଡ଼ିକର ଇତିହାସ ) । ସଂସ୍କୃତର ପୁରାଣ ଏହିସବୁ ଲକ୍ଷଣ ପରଂପରାକୁ ନ ମାନି ଅନ୍ୟାନ୍ୟ ବହୁ ଲକ୍ଷଣ ଯୋଗ କଲେ । ଫଳରେ ଭାଗବତରେ ପୁରାଣର ଆଉ ପାଞ୍ଚୋଟି ଲକ୍ଷଣ ଯୋଗ କରାଗଲା । ସେ ସବୁ ହେଲା-ବୃତ୍ତି, ରକ୍ଷା, ମୁକ୍ତି, ହେତୁ ଓ ଅପାଶ୍ରୟ । ଏଥିରେ ମଧ ପୁରାଣକାର ମାନଙ୍କର ଇଚ୍ଛା ପୂର୍ଣ୍ଣ ନ ହେବାରୁ କାବ୍ୟ ପରି ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ପୁରାଣର ଆଦର୍ଶରୂପେ ଗ୍ରହଣ କରାଗଲା । ଏ ସବୁ ଲକ୍ଷଣ ସହ ପୁରାଣରେ ପୁରାଣକାର ମାନେ ନିଜ ଧର୍ମମତ, ଆରାଧ ଦେବତାର ମାହାତ୍ମ୍ୟ ପୁଣି ବହୁ ଦେବତାବାଦର ପ୍ରଚାର କଲେ । ସ୍ମୃତିରୁ ତୀର୍ଥ, ବ୍ରତ ଓ ଦାନର ମାହାତ୍ମ୍ୟ, ପାପ ଓ ପୁଣ୍ୟର ବିଚାର, କାମ ଶାସ୍ତ୍ରରୁ ସ୍ତ୍ରୀ ଲକ୍ଷଣ, ସମାଜରୁ ଆଚାର ଓ ବ୍ୟବହାର ଏହିପରି ବହୁ କଥାର ସମାବେଶ କରି ସେମାନେ ପୁରାଣକୁ ବିଶ୍ୱକୋଷରେ ପରିଣତ କଲେ । 'ଯାହା ନାହିଁ ଭାରତେ ତାହା ନାହିଁ ଭାରତେ' ଏହାହିଁ ଥିଲା ସେମାନଙ୍କ ପୁରାଣ ଲେଖାର ଆଦର୍ଶ ।

ସାରଳା ଦାସଙ୍କ ମହାଭାରତ ଏହି ମନୋଭାବର ପରିଣତି । ସେତେବେଳକୁ ସଂସ୍କୃତ ମହାଭାରତରେ ପ୍ରକ୍ଷେପ ପରେ ପ୍ରକ୍ଷେପ ସଂଯୋଜିତ ହୋଇ କେବଳ ଯେ ବିପୁଳକାୟ ହୋଇଛି, ତାହା ନୁହେଁ , ମୂଳର ସୂତକୀର୍ତ୍ତିତ ରଣ କାହାଣୀ, ବହୁ ଭାବେ ବିକୃତ, ଅସମଞ୍ଜସ ପୁଣି ଅନେକ ସ୍ଥଳରେ ମିଥ୍ୟା ଉପାଖ୍ୟାନ ଦ୍ୱାରା ଆବୃତ୍ତ ହୋଇ ସାରିଛି । ବହୁ କବିର ସମବାୟ କର୍ମ ପୁଣି ବହୁ ଶତାବ୍ଦୀ ମଧ୍ୟରେ ପରିବ୍ୟାପ୍ତ ହେବା ଫଳରେ ଏଥିରେ ବହୁ ପ୍ରକାର ଧର୍ମଧାରଣା,

ବହୁ ପ୍ରକାର ଉପାସ୍ୟ ଦେବତା ଏବଂ ପରସ୍ପର ବିରୋଧୀ ବହୁ ମତବାଦ ସ୍ଥାନ ପାଇଛି । ଏପରିକି ଏହାର ମୁଖ୍ୟ ଚରିତ୍ର ଶ୍ରୀକୃଷ୍ଣଙ୍କ ଆଦର୍ଶ ମଧ୍ୟ ଅବ୍ୟାହତ ରହିପାରି ନାହିଁ । ଭାଷା ଓ କବିତ୍ୱ ଦୃଷ୍ଟିରୁ ମଧ୍ୟ ଏଥିରେ ବହୁ ଅସମାନତା ପରିଦୃଷ୍ଟ ହୁଏ । ଏସବୁକୁ ଦେଖି ସମାଲୋଚକମାନେ ଏଥିରେ ତିନିରୁ ଦଶ ପର୍ଯ୍ୟନ୍ତ ସଂଯୋଗ-ସ୍ତରର ଅନୁମାନ କରିଛନ୍ତି । ସାରଳା ଦାସ ସଂସ୍କୃତ ମହାଭାରତର ଏହି ଦୀର୍ଘ ଇତିହାସ ସହିତ ପରିଚିତ ଥିଲେ ବୋଲି ସ୍ୱୀକାର କରିହୁଏ ନାହିଁ । କାରଣ ଏସବୁ ଜାଣି ହୁଏ ଏହି ଶତାବ୍ଦୀରେ । ଦୀର୍ଘ ଦେଢଶ ବର୍ଷ ଧରି କ୍ରମାଗତ ଭାବେ ଚାଲିଥିବା ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଅଧ୍ୟବସାୟ ଯୋଗୁଁ । ତେବେ ଏ କଥା ସତ ଯେ ସଂସ୍କୃତ ମହାଭାରତର୍ କଥାବସ୍ତୁ କେବଳ ଗ୍ରନ୍ଥର କଳେବରରେ ଆବଦ୍ଧ ନ ହୋଇ, ବହୁ ରୂପରେ, ବହୁ ଧାରାରେ, ଲୋକ ସମାଜରେ ପ୍ରବାହିତ ହେଉଥିଲା । ପ୍ରତ୍ୟେକ ଦିନ ଏଥିରେ ନୂଆ ଉପାଖ୍ୟାନ ସଂଯୋଜିତ ହେବା ସଙ୍ଗେ ସଙ୍ଗେ, ପ୍ରତ୍ୟେକ ନାମ, ପ୍ରତ୍ୟେକ ଉପାଖ୍ୟାନର ନୂଆ ଅର୍ଥ ପ୍ରକାଶ ପାଇଥିଲା । ସାରଳା ଦାସ ସଂସ୍କୃତ ମହାଭାରତକୁ ଶୁଣିବା ସଙ୍ଗେ ସଙ୍ଗେ ଲୋକରେ ପ୍ରଚାରିତ ମହାଭାରତକୁ ମଧ୍ୟ ଶୁଣୁଥିଲେ । ସେ ତାଙ୍କ ମହାଭାରତକୁ ଓଡ଼ିଶାର ଗାଁ ଗହଳିରେ ବାସ କରୁଥିବା ସାଧାରଣ ଜନତାଙ୍କ ପାଇଁ ରଚନା କରୁଥିବାରୁ ମହାଭାରତର ଶାସ୍ତ୍ରୀୟ ରୂପ ଅପେକ୍ଷା, ଲୋକରେ ପ୍ରଚଳିତ ରୂପକୁ ବିଶେଷ ସମ୍ମାନ ଦେଉଥିବା ସ୍ୱାଭାବିକ । ପୁଣି କଥାକୁ ଆହୁରି ରସରସିଆ କରିବା ପାଇଁ ସେ ନିଜ ମନରୁ ଆଉ ଦି ପଦ ଯୋଡ଼ିଥିବା ଅସମ୍ଭବ ନୁହେଁ । ଏହିପରି ଭାବେ ତାଙ୍କ ମହାଭାରତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ, ଅନୁସରଣ ବି ନୁହେଁ-ଏକ ସ୍ୱତନ୍ତ୍ର ନୂତନ ମହାଭାରତ । ସଂସ୍କୃତ ମହାଭାରତର ପଞ୍ଚଦଶ ଶତାବ୍ଦୀୟ ସଂସ୍କରଣ । କଥା ଓ ଚରିତ୍ର-ଉଭୟର ନୂଆ ଅବତାର । ସେ ପୁଣି ପାଣ୍ଡିତ୍ୟର ରୂପ ନୁହେଁ, ଗ୍ରାମ୍ୟ ରୂପ । ସଂସ୍କୃତ ଓ ଓଡ଼ିଆ ମହାଭାରତର ଏହି ପାର୍ଥକ୍ୟ ଜାଣିବା ପାଇଁ ନିମ୍ନରେ ପର୍ବ ଯୋଜନା ତଥା କଥାସବୁର ବିଶ୍ଳେଷଣ କରାଯାଇଛି ।

**ପର୍ବ ଯୋଜନା**-ସଂସ୍କୃତ ମହାଭାରତରେ ୧୮ଟି ପର୍ବ, ୧୦୦ଟି ଉପପର୍ବ ଥିଲା । ସାରଳା ଦାସ ଉପପର୍ବ ବିଭାଗକୁ ପରିତ୍ୟାଗ କରି କେବଳ ପର୍ବ ବିଭାଗ ଗ୍ରହଣ କଲେ ଓ ପର୍ବ ସବୁକୁ ବିଭିନ୍ନ ସଭାରେ ବିଭକ୍ତ କଲେ ।

ସଂସ୍କୃତ ମହାଭାରତର ପର୍ବ ସବୁ ହେଲା :

୧। ଆଦିପର୍ବ, ୨। ସଭା ପର୍ବ, ୩। ବନ ବା ଆରଣ୍ୟକ ପର୍ବ, ୪। ବିରାଟ ପର୍ବ, ୫। ଉଦ୍‌ଯୋଗ ପର୍ବ, ୬। ଭୀଷ୍ମ ପର୍ବ, ୭। ଦ୍ରୋଣ ପର୍ବ, ୮। କର୍ଣ୍ଣ ପର୍ବ, ୯। ଶଲ୍ୟ ପର୍ବ, ୧୦। ସୌପ୍ତିକ ପର୍ବ ୧୧। ସ୍ତ୍ରୀ ପର୍ବ, ୧୨। ଶାନ୍ତି ପର୍ବ, ୧୩। ଅନୁଶାସନ ପର୍ବ, ୧୪। ଅଶ୍ୱମେଧିକ ପର୍ବ, ୧୫। ଆଶ୍ରମ ବାସିକ ପର୍ବ, ୧୬। ମୌଷଳ ପର୍ବ, ୧୭। ମହା ପ୍ରସ୍ଥାନିକ ପର୍ବ, ୧୮। ସ୍ୱର୍ଗାରୋହଣ ପର୍ବ ।

ସାରଳା ଦାସ ପର୍ବ ସଂଖ୍ୟା ୧୮ ରଖିଥିଲେ ହେଁ, ନାମକରଣରେ କିଛି ପାର୍ଥକ୍ୟ ସୃଷ୍ଟି କରିଛନ୍ତି । ସଂସ୍କୃତର ୧, ୨, ୩, ୪, ୫, ୬, ୭, ୮, ୯, ୧୧, ୧୨, ୧୪, ୧୫, ୧୬ ଓ ୧୮ ପ୍ରଭୃତି ପର୍ବର ନାମ ସାରଳା ଦାସ ଗ୍ରହଣ କରିଛନ୍ତି । ଏହା ବ୍ୟତୀତ ଆଦି ଓ ସଭା ମଧ୍ୟରେ ମଧ୍ୟପର୍ବ ଯୋଗ କରିବାରୁ କ୍ରମ ରକ୍ଷିତ ହୋଇ ନାହିଁ । ଅନ୍ୟାନ୍ୟ ପର୍ବ ସବୁର ନାମ ହେଲା, ଗଦା (୧୧) ଓ ଐଷିକ ବା କାଙ୍କ୍ଷିକା (୧୨) । ସେ 'ମଧ୍ୟପର୍ବ'କୁ ଯୋଗ କଲାପରି **ମହାପ୍ରସ୍ଥାନିକ** ପର୍ବକୁ ପରିତ୍ୟାଗ କରିଛନ୍ତି । **ସଂସ୍କୃତ ମହାଭାରତର କଥା ଓ ସାରଳା ଦାସ :**-ସାରଳା ମହାଭାରତର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି, କଥା କହିବା । କଥାକୁ ସୁନ୍ଦର ଭାବେ କହିବା ପାଇଁ ସାରଳା ଦାସ ଯେଉଁ ସବୁ କୌଶଳ ଅବଲମ୍ବନ କରିଥିଲେ, ତାହା ନିମ୍ନରେ ବର୍ଣ୍ଣିତ କଥାସବୁର ବିଶ୍ଳେଷଣରୁ ହିଁ ସ୍ପଷ୍ଟ ହେବ ।

**୧। ସୋମବଂଶର ଉତ୍ପତ୍ତି :** ସାରଳା ଦାସ ସୋମବଂଶର ଉତ୍ପତ୍ତି ସୃଷ୍ଟିର ଆରମ୍ଭରୁ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ସୃଷ୍ଟି ପ୍ରକ୍ରିୟା ଯଥାକ୍ରମେ ଶୂନ୍ୟ-ପବନ-ଯୋଗ, ପୁରୁଷ-ଗାୟତ୍ରୀ-ମହାମନ୍ତ୍ର-ଚାରିପାଦ, ଯମଦ-କର୍ମଣ-ନିର୍ଗୁଣ-ବୁଦ୍‌ବୁଦ-ଅଣ୍ଡ-ନିରଞ୍ଜନ-ଶକ୍ତି-ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ମଧ୍ୟ ଦେଇ ପ୍ରକାଶ ପାଏ । ଏହି ତିନି ଦେବତା ତ୍ରିଦଶ ଦେବତାମାନଙ୍କ ସହ ମିଶି ସମୁଦ୍ର ମନ୍ଥନ କରନ୍ତି । ଏଥିରୁ ଜାତ ହୁଏ ଶଶଧର । ଶଶଧର ଦକ୍ଷଙ୍କର ସତାଇଶ କନ୍ୟାଙ୍କୁ ବିବାହ କରିଛନ୍ତି; ଅଥଚ ବୃହସ୍ପତିଙ୍କର ଭାର୍ଯ୍ୟା ତାରାଙ୍କ ଗର୍ଭରୁ ଚନ୍ଦ୍ରଙ୍କ ଔରସରେ ବୁଧ ନାମକ ସନ୍ତାନ ଜାତ ହୁଏ । ବୁଧଙ୍କ ଠାରୁ ଯଥାକ୍ରମେ ପୁରୁରବା-ଆୟୁ-ନିଘୋଷ-ଯଯାତି-ପୁରୁ-ପ୍ରବୀର-ମନସିବା-ଅନୁପାମ-ଛଳୀନ-ଦୁଷ୍ୟନ୍ତ-ଭ୍ରଥ-ଭୂମନ୍ୟୁ-ବିରଥ-ବିଭୁରୁକ୍ଷ-ଶମ୍ଭୁରାଣ-କୁରୁ-ପାର୍ଥିବ-ଶାନ୍ତେନୁ-ଚିତ୍ରବୀର୍ଯ୍ୟ, ବିଚିତ୍ର ବୀର୍ଯ୍ୟ ଓ ଭୀଷ୍ମ ପ୍ରଭୃତି ଜନ୍ମ ଗ୍ରହଣ କରିଥିଲେ । ଭୀଷ୍ମ ଅବିବାହିତ ରହିବାରୁ ଏବଂ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ଅକାଳରେ ଅପୁତ୍ରିକ ହୋଇ ମୃତ୍ୟୁ ବରଣ କରିବାରୁ, ସେମାନଙ୍କ ବିଧବା ବଧୂଙ୍କ ଗର୍ଭରୁ ବ୍ୟାସଙ୍କ ଔରସରେ ଧୃତରାଷ୍ଟ୍ର ଓ ପଣ୍ଡୁ ଜନ୍ମଗ୍ରହଣ କରିଥିଲେ । ସାରଳା ଦାସଙ୍କ ବର୍ଣ୍ଣିତ ସୋମବଂଶ ଉତ୍ପତ୍ତି ବିବରଣକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ସୋମଙ୍କ ଜନ୍ମର ପୂର୍ବ ଓ ପରବର୍ତ୍ତୀ ବଂଶଧର । ଶୂନ୍ୟଠାରୁ ସୋମ ପର୍ଯ୍ୟନ୍ତ ସୃଷ୍ଟି ପ୍ରକ୍ରିୟାର କ୍ରମ ସାରଳା ଦାସଙ୍କ ନିଜସ୍ୱ । ସଂସ୍କୃତ ମହାଭାରତରେ ଏସବୁ ନାହିଁ । ବୋଧହୁଏ ସେତେବେଳେ ଲୋକପ୍ରିୟ ଥିବା ନିରଞ୍ଜନ ସଂପ୍ରଦାୟର ସୃଷ୍ଟି ବର୍ଣ୍ଣନାକୁ ସାରଳା ଦାସ ଅନୁସରଣ କରି ଏସବୁ ବର୍ଣ୍ଣନା କରିଥିବା ମନେହୁଏ । କାରଣ ତାଙ୍କ ସମକାଳୀନ ହିନ୍ଦୀ କବି କବୀର ସାହେବ, ଓ ବଙ୍ଗୀୟ କବି ରାମାଇ ପଣ୍ଡିତଙ୍କ ରଚନାରୁ ଏତାଦୃଶ ବର୍ଣ୍ଣନା ପ୍ରାପ୍ତ ହୁଏ । ପରବର୍ତ୍ତୀ କାଳର ଓଡ଼ିଆ କବି ମହାଦେବ ଦାସ ସୃଷ୍ଟି କ୍ରମର ଯେଉଁ ବର୍ଣ୍ଣନା ଦେଇଛନ୍ତି ତାହା ସାରଳା ଦାସଙ୍କ ଅନୁରୂପ ।

ସୋମଙ୍କ ପରବର୍ତ୍ତୀ ବଂଶଧର ସମ୍ବନ୍ଧରେ ସାରଳା ଦାସ ଯାହା ଲେଖିଛନ୍ତି, ତାହା ପ୍ରାୟ ସଂସ୍କୃତ ମହାଭାରତର ଅନୁସରଣ କରିଛି । ସଂସ୍କୃତ ମହାଭାରତରେ ସେ ସୋମବଂଶର

ବର୍ଣ୍ଣନା ନିମ୍ନମତେ ଦିଆ ହୋଇଛି-ସୋମ-ବୁଧ ପୁରୁରୁବା-ଆୟୁ ନହୁଷ-ଯଯାତି । ଯଯାତିଙ୍କର ଦୁଇ ସ୍ତ୍ରୀ ଥିଲେ ଦେବଯାନି ଓ ଶର୍ମିଷ୍ଠା । ଦେବଯାନିଙ୍କ ଗର୍ଭରୁ ଯାଦବମାନେ ଜନ୍ମ ହେଲେ ଏବଂ ଶର୍ମିଷ୍ଠାଙ୍କ ପୁତ୍ରଙ୍କ ନାମଥିଲା ପୁରୁ । ପୁରୁଙ୍କ ବଂଶର ପରଂପରା ଯଥାକ୍ରମେ ପ୍ରବୀର-ମନସ୍ୟୁ x x x ଇଳୀନ ଦୁଷ୍ୟନ୍ତ -ଭରତ ଭୂମନ୍ୟୁ x x x ଋକ୍ଷ-ସଂବାରଣ-କୁରୁ-ପ୍ରତୀପ-ଶାନ୍ତନୁଙ୍କ ପର୍ଯ୍ୟନ୍ତ ଗତିକରେ । ଶାନ୍ତନୁଙ୍କର ଦୁଇ ସ୍ତ୍ରୀ-ଗଙ୍ଗା ଓ ସତ୍ୟବତୀ । ଗଙ୍ଗାଙ୍କ ଗର୍ଭରୁ ଭୀଷ୍ମ ଏବଂ ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ର ବୀର୍ଯ୍ୟ ଜନ୍ମଗ୍ରହଣ କରନ୍ତି । ଚିତ୍ରାଙ୍ଗଦ ଅଳ୍ପ ବୟସରେ ନିହତ ହେଲେ । ବିଚିତ୍ର ବିର୍ଯ୍ୟଙ୍କର ଦୁଇ ସ୍ତ୍ରୀ ଥିଲେ । ବିଚିତ୍ରବୀର୍ଯ୍ୟ ମଧ ଅପୁତ୍ରିକ ଭାବେ ମୃତ୍ୟୁ ମୁଖରେ ପତିତ ହେବାରୁ ସତ୍ୟବତୀଙ୍କ ଅନୁରୋଧ କ୍ରମେ ବ୍ୟାସ ଏହି ଦୁଇ ବିଧବା ବଧୂଙ୍କ ସହ ସହବାସ କରି ଧୃତରାଷ୍ଟ୍ର ଓ ପଣ୍ଡୁଙ୍କୁ ଜନ୍ମ ଦିଅନ୍ତି ।

ସଂସ୍କୃତ ମହାଭାରତରୁ ସାରଳା ଦାସ ସୋମ (ଶଶଧର), ବୁଧ, ପୁରୁରୁବା, ଆୟୁ, ନ ଘୋଷ (ସଂ-ନହୁଷ), ଯଯାତି, ପୁରୁ, ପ୍ରବୀର, ମନସିବା (ସଂ-ମନସ୍ୟୁ), ଇଳୀନ, ଦୁଷ୍ୟନ୍ତ,ବିଭୁରୁକ୍ଷ(ସଂ-ଋକ୍ଷ),ଶମ୍ଭୁରାଣ (ସଂ-ସଂବରଣ), ବିଚିତ୍ରବୀର୍ଯ୍ୟ, ଭୀଷ୍ମ ପ୍ରଭୃତି ନାମକୁ ଗ୍ରହଣ କରିଛନ୍ତି । ସଂସ୍କୃତରେ ଯଯାତିଙ୍କର ଦୁଇଟି ସ୍ତ୍ରୀ ଥିଲେ । ସାରଳାଦାସ ନବଜାତିରୁ ନଅଟି କନ୍ୟା ଆଣି ଯଯାତିଙ୍କ ପତ୍ନୀ ସଂଖ୍ୟା ବୃଦ୍ଧି କରିଛନ୍ତି । ସେଥିରେ ପୁଣି ଯଯାତିଙ୍କ ଓଡ଼ିଆଣୀ ଭାର୍ଯ୍ୟା ଗର୍ଭରୁ ପୁରୁଙ୍କୁ ଜାତ କରାଇ ସେ ମହାଭାରତର କଥା ସହ ଓଡ଼ିଶା ଇତିହାସକୁ ମିଶେଇ ବର୍ଣ୍ଣନା କରିଛନ୍ତି । କେବଳ ସେତିକି ନୁହେଁ, ସଂସ୍କୃତରେ ଭୀଷ୍ମ ବଡ଼ ଓ ଚିତ୍ରାଙ୍ଗଦ, ବିଚିତ୍ରବୀର୍ଯ୍ୟ ତାଙ୍କଠାରୁ ବୟସରେ ସାନ ରୂପେ ବର୍ଣ୍ଣିତ ହୋଇଥିଲେ ହେଁ, ସାରଳା ଦାସ ସେମାନଙ୍କୁ ଭୀଷ୍ମଙ୍କଠାରୁ ବଡ ବୋଲି କହିଛନ୍ତି । ଏସବୁ ତୁଳନାରୁ ଏତିକି ସ୍ପଷ୍ଟ ଯେ ସାରଳାଦାସ ସଂସ୍କୃତର ବଂଶ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିଚନ୍ତି । ଅନୁପାମ ଓ ବିରଥ ନାଁ ଦୁଇଟି ସଂସ୍କୃତରେ ନାହିଁ । ସଂସ୍କୃତ ମହାଭାରତରେ ସୋମବଂଶର ପରମ୍ପରାରେ ଐକ୍ୟ ଦେଖିବାକୁ ମିଳେ ନାହିଁ । ବିଭିନ୍ନ ସ୍ଥାନରେ ସ୍ୱତନ୍ତ୍ର ସ୍ୱତନ୍ତ୍ର ନାମ ସବୁ ଦେଖିବାକୁ ମିଳେ । ତେଣୁ ଯେଉଁଠି ପାର୍ଥକ୍ୟ ଅଛି, ସାରଳା ଦାସ ସେଠି ଅଡୁଆରେ ନ ପଶି ନିଜ କଳ୍ପନାରୁ ଗୋଟିଏ ନାମ ସଂଯୋଜନ କରିଛନ୍ତି । ଅନୁପାମ ଓ ବିରଥ ଏହିପରି ଦୁଇଟି ନାମ ।

୨। ଶମ୍ଭୁରାଣ ଉପାଖ୍ୟାନ :ସଂସ୍କୃତ ମହାଭାରତ ଅନୁଯାୟୀ ସମ୍ବରଣ(ଓ.. ଶମ୍ଭୁରାଣ) ସୂର୍ଯ୍ୟକନ୍ୟା ତପତୀଙ୍କୁ ବିବାହ କରିଥିଲେ । ତପତୀ ସାବିତ୍ରୀ ଦେବୀଙ୍କ କନିଷ୍ଠା ଭଗ୍ନୀ । ବହୁଦିନ ଧରି ତପସ୍ୟା କରିବା ଯୋଗୁ, ସେ ତିନିଲୋକରେ ତପତୀ ନାମରେ ବିଖ୍ୟାତ ହୋଇଥିଲେ । (ଆଦି ୧୭୦।୬-୭) । ତାଙ୍କ ବିବାହ ପାଇଁ ସୂର୍ଯ୍ୟ ବହୁତ ଚିନ୍ତିତ ଥିଲେ । (ଆଦି-୧୭୦।୧୧) । ସୂର୍ଯ୍ୟଦେବ ସମ୍ବରଣଙ୍କ ସହ ତାଙ୍କର ବିବାହ କରିବାପାଇଁ ବିଚାର କଲେ । (ଆଦି ୧୭୦।୧୫-୨୦) ସମ୍ବରଣ ତପତୀଙ୍କ ପ୍ରଥମ ଦର୍ଶନରେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ (ଆଦି ୧୭୦।୨୩-୨୪) ତାଙ୍କୁ କେତେକ ପ୍ରଶ୍ନ ପଚାରିଲେ । ତପତୀ ଉତ୍ତର

ନ ଦେଇ ଅଦୃଶ୍ୟ ହୋଇଗଲେ (ଆଦି ୧୭୦।୩୫-୪୨)। ରାଜା ମୂର୍ଚ୍ଛିତ ହୋଇଯିବା ଦେଖି ତପତୀ ପ୍ରକଟ ହୋଇ ତାଙ୍କୁ ଆଶ୍ୱସନା ଦେଲେ। ସମ୍ବରଣ ତାଙ୍କୁ ବିବାହ କରିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ସେ ପିତାଙ୍କଠାରୁ ଅନୁମତି ନେବା ପାଇଁ ପରାମର୍ଶ ଦେଲେ (ଆଦି ୧୭୧)। ବଶିଷ୍ଠ ଆସି ସୂର୍ଯ୍ୟଦେବଙ୍କୁ ଅନୁରୋଧ କଲେ। ସୂର୍ଯ୍ୟଦେବ ବଶିଷ୍ଠଙ୍କ ସହ ତପତୀଙ୍କୁ ସମ୍ବରଣଙ୍କ ନିକଟକୁ ପ୍ରେରଣ କଲେ। (ଆଦି ୧୭୨।୨୦-୩୦)। ଏକ ପର୍ବତ ଶିଖର ଉପରେ ଉଭୟଙ୍କର ବିବାହ ସମ୍ପନ୍ନ ହେଲା। (ଆଦି ୧୭୨।୩୩)

ସାରଳା ଦାସ ତପତୀଙ୍କ ସହ ଶମ୍ବୁରାଣଙ୍କର ବିବାହ କରାଇ ଥିଲେହେଁ ପ୍ରସଙ୍ଗଟିକୁ ସମ୍ପୂର୍ଣ୍ଣ ପରିବର୍ତ୍ତିତ କରିଛନ୍ତି। ତପତୀଙ୍କ ବିବାହ ପାଇଁ ସୂର୍ଯ୍ୟଦେବ ଏକ ସ୍ୱୟମ୍ବରର ଆୟୋଜନ କଲେ। ସେହି ସ୍ୱୟମ୍ବର ସଭାରେ ବ୍ରହ୍ମା, ରୁଦ୍ର, କୁବେର, ଇନ୍ଦ୍ର, ପବନ, ହେମବନ୍ତ, ଗନ୍ଧର୍ବ, ଯକ୍ଷ, କିନ୍ନର, ନବସାଗର, ବ୍ରହ୍ମଋଷି, ଦେବତାମାନଙ୍କର ଚଉଷଠି ପୁତ୍ର ଉପସ୍ଥିତ ହେଲେ। ତପତୀ ପିତାଙ୍କ ଆଦେଶରେ ପାରିଜାତକ ପୁଷ୍ପମାଳ ଧରି ଯଥାକ୍ରମେ ଇନ୍ଦ୍ର,କୁବେର, ବ୍ରହ୍ମା, ରୁଦ୍ର, ହେମବନ୍ତଙ୍କ ପାଖରେ ପହଞ୍ଚିଲେ। ତପତୀଙ୍କର ତେଜ ସହି ନପାରି ସବୁ ଦେବତା ସ୍ୱୟମ୍ବର ସଭାରୁ ପଳାୟନ କଲେ। ସ୍ୱୟମ୍ବର ଭାଙ୍ଗିଯିବା ଦେଖି ସୂର୍ଯ୍ୟ ଦେବ ନିରାଶ ହୋଇଗଲେ। ଏତିକିବେଳେ ସୋମବଂଶୀୟ ଶମ୍ବୁରାଣ ସେଠାରେ ଉପସ୍ଥିତ ହୋଇ ତପତୀଙ୍କୁ ବିବାହ କଲେ।

**୩। ଗଙ୍ଗା ଓ ଶାନ୍ତନୁ ବିବାହ :** ସଂସ୍କୃତ ମହାଭାରତ ଅନୁଯାୟୀ ଗଙ୍ଗା ଅଭିଶପ୍ତ ଅଷ୍ଟବସୁଙ୍କର ମାତା ହେବାପାଇଁ ଅନୁରୋଧ କଲେ। (ଆଦି ୯୭/୫)। ସେ ପ୍ରତୀପଙ୍କର ଡାହାଣ ଜଙ୍ଘ ଉପରେ ବସିବାରୁ ପ୍ରତୀପ କହିଲେ-ତୁମ୍ଭେ ମୋର ପତ୍ନୀ ହୋଇପାରିବ ନାହିଁ, ପୁତ୍ରବଧୂ ହୁଅ (ଆଦି : ୧୭/୧୧)। କିଛିଦିନ ପରେ ପ୍ରତୀପଙ୍କ ପୁତ୍ର ଶାନ୍ତନୁ ମୃଗୟା ଉଦ୍ଦେଶ୍ୟରେ ଗଙ୍ଗା ତଟରେ ଭ୍ରମଣ କରୁଥିବା ବେଳେ ଏକ ଅନିନ୍ଦ୍ୟ ସୁନ୍ଦରୀ ବାଳିକା ଦେଖି ତାଙ୍କ ପ୍ରତି ଆକୃଷ୍ଟ ହେଲେ ଏବଂ ତାଙ୍କୁ ନିଜର ସ୍ତ୍ରୀ ହେବାପାଇଁ ଅନୁରୋଧ କଲେ (ଆଦି ୧୭/୨୭-୩୩)। ଗଙ୍ଗାଙ୍କ ଦ୍ୱାରା ପ୍ରଦତ୍ତ ସର୍ତ୍ତରେ ରାଜି ହେବାରୁ ସେ ତାଙ୍କୁ ବିବାହ କଲେ (ଆଦି: ୯୮/୧-୪)। ଶାନ୍ତନୁଙ୍କ ଦ୍ୱରା ତାଙ୍କ ଗର୍ଭରୁ ଆଠ ଦେବୋପମ ପୁତ୍ର ଜନ୍ମ ହୁଅନ୍ତି (ଆଦି:୯୭-୯୮/୧୩)। ଭୀଷ୍ମଙ୍କୁ ଜଳରେ ନିକ୍ଷେପ କରିବାକୁ ଉଦ୍ୟତ ହେବାବେଳେ ଶାନ୍ତନୁ ଆଉ ସହ୍ୟ କରି ନପାରି ଗଙ୍ଗାଙ୍କୁ ଗାଳି ଦେଇଛନ୍ତି (ଆଦି:୯୮/୧୬)। ଏହାପରେ ଗଙ୍ଗା ଭୀଷ୍ମଙ୍କ ସହ ଅନ୍ତର୍ଦ୍ଧନ ହୋଇ ଯାଇଛନ୍ତି (ଆଦି:୯୯ ଅ:)। କିଛିଦିନ ପରେ ଗଙ୍ଗା ସୁଶିକ୍ଷିତ ଦେବବ୍ରତଙ୍କୁ ଶାନ୍ତନୁଙ୍କୁ ଅର୍ପଣ କରିଥିଲେ। (ଆଦି ୧୦୦/୩୦-୪୦)। ଗଙ୍ଗା ଅନ୍ତର୍ଦ୍ଧାନ ହୋଇଥିବା କିଛି ବର୍ଷ ପରେ ଶାନ୍ତନୁ କୈବର୍ତ୍ତ କନ୍ୟା ସତ୍ୟବତୀଙ୍କୁ ବିବାହ କଲେ। ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମଗ୍ରହଣ କଲେ।

ସାରଳା ଦାସ ଏଥିରୁ ପ୍ରତୀପ ଓ ଗଙ୍ଗାଙ୍କ କଥାବାର୍ତ୍ତାକୁ ପରିତ୍ୟାଗ କରିଛନ୍ତି । ଶାନ୍ତନୁ ଓ ଗଙ୍ଗା ବିବାହ ପ୍ରସଙ୍ଗରେ ଶାନ୍ତନୁଙ୍କ ଶିବ ବେଶ ଦେଖି ତାଙ୍କୁ ଶିବ ଭାବି ଗଙ୍ଗା ତାଙ୍କ ପ୍ରତି ଆସକ୍ତ ହେବା, ଗଙ୍ଗାଙ୍କ ପିତା ନିର୍ଘାତଙ୍କ ସଙ୍କଳ୍ପ ପ୍ରଭୃତି ପ୍ରସଙ୍ଗ ସାରଳା ଦାସ ନିଜ କଳ୍ପନାରୁ ସଂଯୋଗ କରିଛନ୍ତି । ବଶିଷ୍ଠଙ୍କ ଅଭିଶାପ ସାରଳା ମହାଭାରତରେ ନାହିଁ । ଗଙ୍ଗା ଆଠ ପୁତ୍ରଙ୍କୁ ଜଳରେ ନିକ୍ଷେପ ନ କରି ବିଭିନ୍ନ ଅସ୍ତ୍ର ସାହାଯ୍ୟରେ ବଧ କରିଛନ୍ତି । ଭୀଷ୍ମଙ୍କ ସହ ଗଙ୍ଗାଙ୍କ ଅନ୍ତର୍ଦ୍ଧାନ ହେବା କଥା ମଧ ସାରଳା ଦାସ ଦେଇନାହାନ୍ତି ।

**୪ । ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ :** ସଂସ୍କୃତ ମହାଭାରତ ଅନୁଯାୟୀ ଶାନ୍ତନୁଙ୍କ ସତ୍ୟବତୀ ଆଡୁ ଦୁଇପୁଅ ହେଲେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ।

ଶାନ୍ତନୁଙ୍କ ମୃତ୍ୟୁ ପରେ ଭୀଷ୍ମ ଚିତ୍ରାଙ୍ଗଦଙ୍କୁ ରାଜା ରୂପେ ଅଭିଷେକ କଲେ । ଚିତ୍ରାଙ୍ଗଦ ନାମକ ଗନ୍ଧର୍ବ ଦ୍ୱାରା ସେ ଯୁଦ୍ଧରେ ନିହତ ହୁଅନ୍ତି ।

ଚିତ୍ରାଙ୍ଗଦଙ୍କ ମୃତ୍ୟୁ ପରେ ବିଚିତ୍ରବୀର୍ଯ୍ୟ ରାଜପଦରେ ଅଭିଷିକ୍ତ ହେଲେ । ସେ କାଶୀ ରାଜାଙ୍କ ଦୁଇକନ୍ୟା ଅମ୍ବିକା ଓ ଅମ୍ବାଳିକାଙ୍କୁ ବିବାହ କଲେ । ଅସଂଯମ ଜୀବନ ଯାପନ କରିବା ହେତୁ ସେ ରାଜଯକ୍ଷ୍ମାରେ ପୀଡ଼ିତ ହୋଇ ଅକାଳରେ ମୃତ୍ୟୁ ବରଣ କଲେ । ପରେ ବ୍ୟାସଙ୍କ ଔରସରେ ଅମ୍ବିକାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ଅମ୍ବାଳିକାଙ୍କ ଗର୍ଭରୁ ପାଣ୍ଡୁଙ୍କର ଜନ୍ମହୁଏ ।

ସାରଳା ଦାସ ଏ ସବୁ ଘଟଣାକୁ ଆଦୌ ଗ୍ରହଣ କରି ନାହାନ୍ତି । କାମାସକ୍ତ ଶାନ୍ତନୁ ଗଙ୍ଗାଙ୍କ ଦ୍ୱାରା ତିରସ୍କୃତ ହୋଇ ଚିତ୍ରପଟକୁ ଆଲିଙ୍ଗନ କରି ପ୍ରଥମେ ଚିତ୍ରବୀର୍ଯ୍ୟ ଓ ପରେ ବିଚିତ୍ରବୀର୍ଯ୍ୟଙ୍କ ଜନ୍ମର କାରଣ ହୋଇଛନ୍ତି । ଗଙ୍ଗାଙ୍କ ଡରରେ ସେ ଦୁଇ ପୁତ୍ରଙ୍କୁ ପରାଶରଙ୍କ ସ୍ତ୍ରୀ ସତ୍ୟବତୀଙ୍କ ନିକଟରେ ଛାଡ଼ି ଆସିଛନ୍ତି । ଏହି ରହସ୍ୟ ଉଦ୍‌ଘାଟିତ ହେବାରୁ ଗଙ୍ଗା ସେ ଦୁଇ ପୁତ୍ରଙ୍କୁ ନପୁଂସକ ହେବା ପାଇଁ ଅଭିଶାପ ଦେଇଛନ୍ତି । ଚିତ୍ରବୀର୍ଯ୍ୟ ଅମ୍ବିକାଙ୍କୁ ଓ ବିଚିତ୍ରବୀର୍ଯ୍ୟ ଅମ୍ବାଳିକାଙ୍କୁ ବିବାହ କରିଛନ୍ତି ।

**୫ । ଭୀଷ୍ମଙ୍କ ପ୍ରତିଜ୍ଞା :** ସଂସ୍କୃତ ମହାଭାରତ ଅନୁଯାୟୀ ଭୀଷ୍ମ ଗଙ୍ଗାଙ୍କ ଗର୍ଭରୁ ଅଷ୍ଟମ ବସୁଙ୍କ ଅଂଶ ଘେନି ଜନ୍ମଗ୍ରହଣ କରିଥିଲେ । ତାଙ୍କ ନାମ ପ୍ରଥମେ ଦେବବ୍ରତ ଥିଲା (ଆଦି ୬୩/୯୧) । ସେ ଯୁବରାଜ ପଦରେ ଅଭିଷିକ୍ତ ହୋଇଥିଲେ (ଆଦି ୧୦୦/୪୩) । ଏକଦା ଶାନ୍ତନୁ ମୃଗୟାକୁ ଯାଇଥିବା ବେଳେ ଦାଶ ରାଜାଙ୍କ ପୁତ୍ରୀ ସତ୍ୟବତୀଙ୍କୁ ଦେଖି ତାଙ୍କ ପ୍ରତି ଆସକ୍ତ ହେଲେ ଏବଂ ବିବାହ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ଦାଶ ରାଜାଙ୍କ ଏହି ପ୍ରସ୍ତାବରେ ଆପତ୍ତି ନ ଥିଲେ ମଧ ସେ କେତୋଟି ସର୍ତ୍ତ ରଖିଥିଲେ । ସର୍ତ୍ତ ଥିଲା- ସତ୍ୟବତୀଙ୍କ ପୁତ୍ର ହିଁ ଶାନ୍ତନୁଙ୍କ ପରେ ଦେଶର ରାଜା ହେବ । ଶାନ୍ତନୁ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ପିତାଙ୍କର ବିମର୍ଷ ଭାବ ଦେଖି ଦେବବ୍ରତ କାରଣ ଜାଣି ଦାଶ ରାଜାଙ୍କୁ ସତ୍ୟବତୀଙ୍କୁ ପିତାଙ୍କ ପାଇଁ ଯାଚନା କଲେ । ପିତାଙ୍କ ଇଚ୍ଛା ପୂରଣ ପାଇଁ ସେ ଦୁଷ୍କର ପ୍ରତିଜ୍ଞା କରି କହିଲେ

ଯେ ସତ୍ୟବତୀ-କୁମାର ହିଁ ଦେଶର ରାଜା ହେବ । ସେହି ଦିନୁ ସେ ଭୀଷ୍ମ ନାମରେ ପରିଚିତ ହେଲେ (ଆଦି ୧୦୦/୯୮) ।

ସାରଳା ଦାସ ସଂପୂର୍ଣ୍ଣଭାବେ ଏହି ପ୍ରସଙ୍ଗକୁ ପରିବର୍ଜନ କରିଛନ୍ତି । ଭୀଷ୍ମଙ୍କର ଦେବବ୍ରତ ନାମ ସାରଳା ମହାଭାରତରେ ନାହିଁ । ଗଙ୍ଗା ଭୀଷ୍ମଙ୍କୁ ପରିତ୍ୟାଗ କରିଗଲା ବେଳେ ଶାନ୍ତନୁଙ୍କୁ ଅଭିଶାପ ଦେଇ କହିଲେ-

ଏ ପୁତ୍ର ତହୁଁ ଜାତ ହୋଇବ ଯେବଣ ସୁତ
ତୁ ଶାୟେଂତନୁ ଶିରଚ୍ଛେଦ ହୁଅ ତାର ହସ୍ତ ।
ତରେଣ ଛାଡ଼ିଲେ ସେ ଶାୟେଂତନୁ ମହାମୁନି
ଧାତିକାରେ ଜଳେ ସମ୍ଭାଇଲେ ଅନାଦି କାତ୍ୟାୟନୀ ।
ପୁତ୍ର ଗୋଟି ଘେନି ମୁନି ବିସ୍ମୟ ମନ ହୋଇ
ବିଚାରି ବିଚାରି ମୁନି ଯେ ଭୀଷ୍ମ ନାମ ଦେଇ । (ପୃ-୪୦)

ପଦ୍ମନାଭଙ୍କ ଚାରୋଟି କନ୍ୟା ଥିଲେ - ଅମ୍ବା, ଅମ୍ବିକା, ଅମ୍ବାଳିକା, ଅମ୍ବିଳିକା । ଚିତ୍ରବୀର୍ଯ୍ୟ ଅମ୍ବିକାଙ୍କୁ ଓ ବିଚିତ୍ରବୀର୍ଯ୍ୟ ଅମ୍ବାଳିକାଙ୍କୁ ବିବାହ କଲେ । ଅମ୍ବାଙ୍କ ସ୍ୱୟମ୍ବର ପାଇଁ ଆୟୋଜନ ହେଉଥିବା ବେଳେ ଭୀଷ୍ମ ତାଙ୍କୁ ବିବାହ କରିବା ପାଇଁ ପ୍ରସ୍ତାବ ଦେଲେ । ଭୀଷ୍ମଙ୍କ ନାମ ଶୁଣି ଅନ୍ୟ ରାଜାମାନେ ପଦ୍ମଦଳ ଦେଶ ପରିତ୍ୟାଗ କରି ପଳାୟନ କଲେ । ଭୀଷ୍ମ ବରବେଶ ହୋଇ ଯାତ୍ରା ଆରମ୍ଭ କଲାବେଳେ ପିତା ଶାନ୍ତନୁ ଗଙ୍ଗାଙ୍କ ଅଭିଶାପ କଥା ପ୍ରକାଶ କଲେ । ଭୀଷ୍ମ ଏହା ଶୁଣିବା କ୍ଷଣି ବିବାହ ନ କରିବାପାଇଁ ପ୍ରତିଜ୍ଞା କଲେ ।

ଭୀଷ୍ମେ ବୋଇଲେ ତୁମ୍ଭେ ଶୁଣ ରାଜ ଦେବେ
ମୋହର କିସ ବିଭା ଯେ ପିତାର ଅଭାବେ ।

x x x

ଡାହାଣ ବ୍ରତେକ ଶଙ୍ଖେ ଜଳତିଳ ଲାଇ
ଦାର ସଂଘରିଲେ ଭୀଷ୍ମେ ସଂକଳ୍ପ କରାଇ ।
ଶରୀରେ ଆୟୁଷ ଥାଇଁ ମୋହୋର ଯେତେ କାଳ ପରିଯନ୍ତେ
ସତ୍ୟ ସତ୍ୟ ତିନିବାର ସତ୍ୟ ଅଲଙ୍ଘିତ ନିୟମ ଅଛି ମୋତେ ।(ପୃ-୫୫)

**୬। ଭୀଷ୍ମଙ୍କ ଅମରବର ପ୍ରାପ୍ତି :** ସଂସ୍କୃତ ମହାଭାରତ ଅନୁଯାୟୀ ଭୀଷ୍ମଙ୍କ ଉପରେ ସନ୍ତୁଷ୍ଟ ହୋଇ ଶାନ୍ତନୁ ତାଙ୍କୁ ସ୍ୱଚ୍ଛନ୍ଦ ମୃତ୍ୟୁର ବର ପ୍ରଦାନ କରିଥିଲେ(ଆଦି ୧୦୦/୧୦୨) ।

ସାରଳା ଦାସ ଏହାକୁ ପରିବର୍ତ୍ତିତ କରି ଗଙ୍ଗାଙ୍କ ମୁଖରୁ ଏହା କୁହାଇଛନ୍ତି । ଭୀଷ୍ମଙ୍କ ଜନ୍ମ ପରେ ଗଙ୍ଗା ତାଙ୍କୁ ପରିତ୍ୟାଗ କରି ଚାଲି ଯାଇଥିବା ବେଳେ ଶାନ୍ତନୁ ଗଙ୍ଗାଙ୍କୁ

ଅନୁରୋଧ କରି କହିଲେ-

ଯେବେ ଯେ ଜାତ କଲୁ ବାଳୁତ ପୁତ୍ର ଗୋଟି
କେମନ୍ତେ ବ୍ରତିବ ଯେ ନ ପାଇଲେ କ୍ଷୀର ଫୁଟି ।

ଗଙ୍ଗା ଏହାର ଉତ୍ତରରେ କହିଥିଲେ-

"ଜୀଇଁଲେ ଜୀଉଂ ମଲେ ମରୁ ମୋହୋର କିସ ଗଲା ।" (ପୃ-୪୦) ଗଙ୍ଗାଙ୍କର 'ଜୀଇଁଲେ ଜୀଉଂ ମଲେ ମରୁ' ଉକ୍ତିରୁ ଭୀଷ୍ମ 'ଇଚ୍ଛା ମୃତ୍ୟୁ ବର'ପାଇଥିଲେ ।

**୭ । ଧୃତରାଷ୍ଟ୍ରଙ୍କ ଜନ୍ମ :** ବିଚିତ୍ରବୀର୍ଯ୍ୟ ମୃତ୍ୟୁ ପରେ ତାଙ୍କ ବିଧବାପତ୍ନୀ ଅମ୍ବିକା ବଂଶ ରକ୍ଷାପାଇଁ ସତ୍ୟବତୀଙ୍କ ଆଦେଶରେ ବ୍ୟାସଙ୍କ ସହ ମିଳିତ ହୋଇଛନ୍ତି । ବ୍ୟାସଙ୍କର ଭୟଙ୍କର ରୂପ ଦେଖି ସେ ଭୟଭୀତା ହୋଇ ଚକ୍ଷୁ ବନ୍ଦ କରି ଦେଇଥିଲେ । ଫଳରେ ଧୃତରାଷ୍ଟ୍ର ଜନ୍ମାନ୍ଧ ହେଲେ । ଧୃତରାଷ୍ଟ୍ର ଜନ୍ମାନ୍ଧ ହେବାରୁ ସତ୍ୟବତୀ ପୁଣି ଥରେ ତାଙ୍କୁ ବ୍ୟାସଙ୍କ ସହ ସମାଗମ ପାଇଁ ଆଦେଶ ଦେଲେ । ଏଥିରେ ସେ ସମ୍ମତ ନ ହୋଇ (ଆଦି ୧୦୫/୨୩) ନିଜ ଦାସୀଙ୍କୁ ବ୍ୟାସଙ୍କ ନିକଟକୁ ପ୍ରେରଣ କଲେ । ସେହି ଦାସୀର ଗର୍ଭରୁ ବିଦୁରଙ୍କ ଜନ୍ମ ହୁଏ (ଆଦି ୧୦୫।୨୮) ।

ସାରଳା ଏହି କଥା ନ କଲେ ମଧ ବହୁ ପରିବର୍ତ୍ତନ କରିଛନ୍ତି । ସଂସ୍କୃତ ମହାଭାରତରେ ବ୍ୟାସଙ୍କ ସହ ସମାଗମ କରାଇବା ପାଇଁ ଭୀଷ୍ମ ପରାମର୍ଶ ଦେଇଥିଲେ । ସାରଳା ଦାସଙ୍କ ଗ୍ରନ୍ଥରେ ପରାମର୍ଶ ଦାତା ହେଲେ ପରାଶର । ସଂସ୍କୃତ ମହାଭାରତ ପରି ଏଥିରେ ଭୀଷ୍ମ ବଧୂମାନଙ୍କ ସହ ସହବାସ କରିବା ପାଇଁ ମନାକରିଛନ୍ତି । ତେବେ ସଂସ୍କୃତରେ ଭୀଷ୍ମ ଦେଢ଼ଶୁର ଏବଂ ସାରଳା ଦାସଙ୍କ ମତରେ ସେ ଦେବର ।

ବ୍ୟାସଙ୍କସହ ସମାଗମ କାଳରେ ସାରଳା ଦାସ ମହାଭୟର ଉଲ୍ଲେଖ କରିଥିଲେ ହେଁ ଦୁଇଟି ସ୍ୱତନ୍ତ୍ର କାରଣ ଦର୍ଶାଇଛନ୍ତି । ପ୍ରଥମ ହେଲା, ବ୍ୟାସଙ୍କୁ ଦେଢ଼ଶୁର ଓ ଦ୍ୱିତୀୟ ହେଲା ସେ ପରମ ପୁରୁଷ ।

ଧୃତରାଷ୍ଟ୍ରଙ୍କର ଜନ୍ମାନ୍ଧ ହେବାର ସେ ଦୁଇଟି କାରଣ ଦର୍ଶାଇ କହିଛନ୍ତି -

ଶୃଙ୍ଗାର କାଳେ ଅମ୍ବିକା ଅସାକ୍ଷମ ହୋଇଲା
ନୟନ ବୁଜିଲାକୁ ପୁତ୍ର ଅନ୍ଧ ଯେ ହୋଇଲା । (ପୃ-୯୧)

ଧୃତରାଷ୍ଟ୍ରଙ୍କ ଜନ୍ମ ହେବା ସଙ୍ଗେ ସଙ୍ଗେ ଅମ୍ବିକାଙ୍କ ମୃତ୍ୟୁ ହେବା ପ୍ରସଙ୍ଗ ସଂସ୍କୃତରେ ନାହିଁ ।

**୮ । ପାଣ୍ଡୁ ଜନ୍ମ :** ପାଣ୍ଡୁ କାଶୀରାଜ ପୁତ୍ରୀ, ବିଚିତ୍ର ବୀର୍ଯ୍ୟଙ୍କ ଦ୍ୱିତୀୟ ପତ୍ନୀ ଅମ୍ବାଳିକାଙ୍କ ଗର୍ଭରୁ ଉତ୍ପନ୍ନ । ବ୍ୟାସଙ୍କର ଭୟଙ୍କର ରୂପ ଦେଖି ତାଙ୍କ ଶରୀର ପାଣ୍ଡୁବର୍ଣ୍ଣ ଧାରଣ କରିବାରୁ ପାଣ୍ଡୁ ପାଣ୍ଡୁର ବର୍ଣ୍ଣ ହୋଇଥିଲେ (ଆଦି ୧୦୫/୮୮) । ପାଣ୍ଡୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ଜୀବିତ ଥିଲେ । (ଆଦି ୧୨୦/୨୪) ।

ସାରଳା ଦାସଙ୍କ ବର୍ଣ୍ଣନାରୁ ଏ ପ୍ରକାର ଚିତ୍ର ମିଳେ ନାହିଁ । ବ୍ୟାସଙ୍କ ପ୍ରଥମ ଆଲିଙ୍ଗନରେ ଅମ୍ବାଳିକା ଧର୍ମ ସ୍ମରଣ କରିଥିଲେ ହେଁ ପରେ ଭାବ ବିହ୍ୱଳ ହୋଇ କାମର 'ଉଚ୍ଚାଟେ' 'ମୋହୋର ପ୍ରାଣ ରଖ ତପୋବନ୍ତେ' କହି ଶୃଙ୍ଗାର ଇଚ୍ଛା କରିଛନ୍ତି । ବ୍ୟାସଙ୍କର ଭୟଙ୍କର ରୂପ ଦର୍ଶନରେ ଭୟଭୀତା ହେବା ପରିବର୍ତ୍ତେ 'ପ୍ରିୟ ଭାବ କଲା ଯେ ପଲଙ୍କେ'ର ବର୍ଣ୍ଣନା ମିଳେ । ପାଣ୍ଡୁଙ୍କ ଜନ୍ମ ହେବାର କିଛି ଦିନ ପରେ ନବଜାତ ଶିଶୁକୁ ସତ୍ୟବତୀଙ୍କ ହସ୍ତରେ ଅର୍ପଣକରି ପାପ ବିନାଶନ ପାଇଁ ପ୍ରୟାଗରେ ଝାସ ଦେଇଛନ୍ତି ।

**୯ । ବିଦୁର ଜନ୍ମ :** ସଂସ୍କୃତ ମହାଭାରତ ଅନୁଯାୟୀ ବିଦୁର ହେଉଛନ୍ତି, ବ୍ୟାସଙ୍କ ଦ୍ୱାରା ଅମ୍ବିକାଙ୍କ ଦାସୀର ପୁତ୍ର । ସାରଳା ଦାସଙ୍କ ମତରେ ତାଙ୍କ ମାତାଙ୍କ ନା ଅମ୍ବୁବତୀ । ''ହରି କେଶର ଦେଶର କେଶବ ନୃପତି''ଙ୍କ କନ୍ୟା ଏବଂ ବିଚିତ୍ରବୀର୍ଯ୍ୟଙ୍କ ତୃତୀୟ ସ୍ତ୍ରୀ । ତାଙ୍କୁ ଦାସୀ ବୋଲି ସାରଳା ଦାସ କେଉଁଠି କହି ନାହାନ୍ତି । ତେବେ ସେ ଶୂଦ୍ର ଯୋନିରେ ଜାତ ରାଜାଙ୍କର ଝିଅ ଥିବାର ଜଣାଯାଏ । ଅମ୍ବିକା ଓ ଅମ୍ବାଳିକାଙ୍କ ମୃତ୍ୟୁପରେ ଦିନେ ବ୍ୟାସ ଆସି ପହଞ୍ଚିବାରୁ ସତ୍ୟବତୀ;

ଯେ ଦୁହେଂ ଯହୁଂ ହୋଇଲେ ପୁତ୍ରବନ୍ତୀ
ଯେ ଅମ୍ବୁବତୀର ମନ ବାବୁ ବହୁତ ବିକୃତି ।

କହି ତାଙ୍କ ସହ ସମାଗମ କରିବା ପାଇଁ ବ୍ୟାସଙ୍କୁ ଅନୁରୋଧ କଲେ । ଅମ୍ବୁବତୀ ପୂର୍ବରୁ ଅମ୍ବିକା, ଅମ୍ବାଳିକାଙ୍କ ଠାରୁ ସବୁ କଥା ଶୁଣିଲେ । ତେଣୁ ସେ 'ବେଶ ବଶନ ହୋଇ' 'ହରଷ' ଚିତ୍ତରେ 'ମେଳମତୀ' ହୋଇ ବ୍ୟାସଙ୍କ ଶୃଙ୍ଗାରରେ ଲିପ୍ତ ହୁଏ । ଏହାର ଫଳ ସ୍ୱରୂପ ବିଦୁରଙ୍କ ଜନ୍ମ ।

**୧୦ । ଧୃତରାଷ୍ଟ୍ରଙ୍କଙ୍କ ନହିଁ କନ୍ୟା ଗାନ୍ଧାରୀକି ନହିଁ ବର ।** ଏହା ସଂସ୍କୃତର ନୁହେଁ, ଓଡ଼ିଆ ଲୋକ ସଂସ୍କୃତିର କଥା । ସଂସ୍କୃତ ମହାଭାରତରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ-ପ୍ରସଙ୍ଗ ଅତି ସାଧାରଣ । ବଂଶ ବୃଦ୍ଧି ପାଇଁ ଭୀଷ୍ମ ବିଦୁରଙ୍କ ପରାମର୍ଶ କ୍ରମେ ଧୃତରାଷ୍ଟ୍ରଙ୍କ ପାଇଁ ଗାନ୍ଧାର ରାଜା ସୁବଳ ନନ୍ଦିନୀ ରୂପବତୀ ଶୁଭଗୁଣ ସମ୍ପନ୍ନା ଗାନ୍ଧାରୀଙ୍କୁ ସ୍ଥିର କରିଥିଲେ । ବ୍ରାହ୍ମଣମାନଙ୍କଠାରୁ ଗାନ୍ଧାରୀଙ୍କ ରୂପ ଓ ଗୁଣ ବିଷୟରେ ଭୀଷ୍ମ ସବୁକଥା ଶୁଣିଥିଲେ । ସେ ଏ କଥା ମଧ୍ୟ ଶୁଣିଥିଲେ ଯେ, ଗାନ୍ଧାରୀ ମହାଦେବଙ୍କୁ ସନ୍ତୁଷ୍ଟ କରି ଶତପୁତ୍ର ଲାଭ କରିବାର ବର ପାଇଛନ୍ତି । ଏସବୁ ଶୁଣି ଭୀଷ୍ମ ଗାନ୍ଧାର ରାଜାଙ୍କ ନିକଟକୁ ଦୂତ ପଠାଇଲେ । 'ଧୃତରାଷ୍ଟ୍ର ଅନ୍ଧ'କେବଳ ଏତିକି ବ୍ୟତୀତ କୁଳ, ଖ୍ୟାତି, ବୁଦ୍ଧି ଓ ବୃତ୍ତି କୌଣସି ବିଷୟରେ ବାଛିବାକୁ ନଥିଲା । ପ୍ରସ୍ତାବ ଶୁଣିବାକ୍ଷଣି ଗାନ୍ଧାରସେନ ନିଜ କନ୍ୟା ପ୍ରଦାନ ପାଇଁ ରାଜି ହୋଇଥିଲେ ।

ଗାନ୍ଧାରୀ ଯେତେବେଳେ ଏ ପ୍ରସ୍ତାବ କଥା ଶୁଣିଲେ, ସେତେବେଳେ 'ଧୃତରାଷ୍ଟ୍ର ଅନ୍ଧ' ଏହା ଜାଣି ମଧ୍ୟ ପିତାମାତାଙ୍କ କଥାରେ ରାଜି ହୋଇଥିଲେ । ପତିବ୍ରତା ପରାୟଣା

ଗାନ୍ଧାରୀ ବିବାହ ପୂର୍ବରୁ ସ୍ୱାମୀଙ୍କ ଉପଯୁକ୍ତା ହେବାପାଇଁ ଆଖିରେ ଖଣ୍ଡିଏ ପଟ୍ଟବସ୍ତ୍ରକୁ ଅନେକ ଭାଙ୍ଗକରି ବାନ୍ଧିଦେଲେ ।

ତା'ପରେ ଗାନ୍ଧାର ରାଜପୁତ୍ର ଶକୁନି ପରମ ସୁନ୍ଦରୀ ଭଗିନୀ ଗାନ୍ଧାରୀକୁ ହସ୍ତିନା ରାଜଧାନୀକୁ ନେଇଗଲେ ଓ ସେଠାରେ ଭୀଷ୍ମଙ୍କ ଅନୁମତି କ୍ରମେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ବିବାହ ସମ୍ପନ୍ନ ହେଲା । କଥାର ସାର ହେଲା-

-ଭୀଷ୍ମଙ୍କର ବିଦୁରଙ୍କ ସହ ପରାମର୍ଶ ।

-ଗାନ୍ଧାରସେନଙ୍କ ନିକଟକୁ ପ୍ରସ୍ତାବ ପ୍ରେରଣ ।

-ବିବାହ ।

ଧୃତରାଷ୍ଟ୍ରଙ୍କ ଦୋଷ ଭିତରେ ସେ ଜନ୍ମାନ୍ଧ ଥିଲେ ଓ ଗାନ୍ଧାରୀଙ୍କର କୌଣସି ଦୋଷ ନଥିଲା ।

ସାରଳା ଦାସ ସଂସ୍କୃତ କଥାକୁ ଆଦୌ ଗ୍ରହଣ କରି ନଥିବା ପରି ମନେହୁଏ । ସେ ଧୃତରାଷ୍ଟ୍ରଙ୍କୁ କେବଳ ଜନ୍ମାନ୍ଧ କହି ସନ୍ତୁଷ୍ଟ ନୁହନ୍ତି । ଜନ୍ମାନ୍ଧ ସାଙ୍ଗକୁ ଆଉ ଗୋଟିଏ ଦୋଷ ସେ ଯୋଗ କରିଛନ୍ତି, ତାହା ହେଉଛି ଧୃତରାଷ୍ଟ୍ର କୁଣ୍ଡଳିକା ବୃଷରାଶିରେ ଜନ୍ମ ହେତୁ ବ୍ରହ୍ମ ରାକ୍ଷସ ଲକ୍ଷଣ ଯୁକ୍ତ । ବ୍ୟାସଙ୍କପରି ସର୍ବଜ୍ଞାତା ମୁନି ଧୃତରାଷ୍ଟ୍ରଙ୍କର ଜନକ ସତ କିନ୍ତୁ ଅମ୍ବାଙ୍କ ସହ ମିଳନ ବେଳାରେ କେତେକ ଦୋଷ ରହିଥିଲା । ସେହିସବୁ ଦୋଷ ଯୋଗୁଁ ଧୃତରାଷ୍ଟ୍ର ବ୍ରହ୍ମରାକ୍ଷସ ଲକ୍ଷଣ ନେଇ ଜନ୍ମ ହେଲେ । ଫଳରେ ଜଣକ ପରେ ଜଣେ ଏପରି ଏକଶତ ଏକ କନ୍ୟା ଧୃତରାଷ୍ଟ୍ରଙ୍କ ସହ ବିବାହ ପ୍ରସ୍ତାବ ମାତ୍ରେ ମୃତ୍ୟୁ ମୁଖରେ ପତିତ ହେଲେ ।

ସାରଳା ମହାଭାରତରେ ଧୃତରାଷ୍ଟ୍ରଙ୍କ ବିବାହ ପ୍ରସ୍ତାବ ବେଳକୁ ବିଦୁରଙ୍କର ଜନ୍ମ ହୋଇ ନଥିଲା । ତେଣୁ ସଂସ୍କୃତ ମହାଭାରତରେ ଭୀଷ୍ମ ଓ ବିଦୁରଙ୍କ ସ୍ଥାନରେ ସାରଳା ଦାସ ସତ୍ୟବତୀ ଓ ଭୀଷ୍ମଙ୍କୁ ରଖିଛନ୍ତି । ସଂସ୍କୃତ ମହାଭାରତରେ କେବଳ ଗୋଟିଏ ପ୍ରସ୍ତାବ ଓ ଗୋଟିଏ କନ୍ୟା ଥିବା ହେତୁ ବର୍ଣ୍ଣନାରେ ଜଟିଳତା ନାହିଁ । ସାରଳା ଦାସ ଶଏ ଏକ କନ୍ୟାଙ୍କ ମଧ୍ୟରୁ ସଂକ୍ଷେପରେ ପାଞ୍ଚୋଟି କନ୍ୟାଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରିଛନ୍ତି । ତେଣୁ ସବୁଠାରେ ସତ୍ୟବତୀ ରହିବା ସମ୍ଭବ ହୋଇ ନାହିଁ । ପ୍ରଥମ କନ୍ୟା ହେଲା ଶାଲୁଦୁହିତା ଶାଲ୍ମବତୀ, ସତ୍ୟବତୀଙ୍କ ସଙ୍ଗେ ସତ୍ୟ ହେଲା ଦିନ ରାତିରେ ହିଁ କନ୍ୟା ନାଶ ଯାଏ । ଦ୍ୱିତୀୟ କନ୍ୟା ହେଲା ଅନଙ୍ଗ ସେନ ଦୁହିତା କାଳିନ୍ଦୀ, ସତ୍ୟ ହେଲା ସାୟେଂତନୁଙ୍କ ସଙ୍ଗେ । ବରଣ ପାଇଁ ମାଳା ପ୍ରଦାନ କରି ରାଜ୍ୟକୁ ଫେରି ଆସିବା ମାତ୍ରେ ତେଣେ କନ୍ୟାର ମୃତ୍ୟୁ ହୁଏ । ତୃତୀୟ ପ୍ରସ୍ତାବ ପଡ଼ିଲା ନିର୍ଝର ଦେଶର ରାଜ୍ୟପତିଙ୍କ କନ୍ୟା ବରଣ କରିବାକୁ ଗଲେ । ପୁଣି ସେହି ଦଶା । ଆହୁରି ଗୋଟିଏ ଘଟଣା କର୍ଣ୍ଣମାଧବ ରାଜା ନିଜ ଆତ୍ମ କନ୍ୟା ପ୍ରଦାନ ପାଇଁ ପ୍ରସ୍ତାବ ରଖେ । ଏହା ହୁଏତ ଆହୁରି ଗୁରୁତର ଦୋଷ । ସେଥିପାଇଁ ସର୍ପ ଦଂଶନରେ କନ୍ୟାର ମୃତ୍ୟୁ ହୁଏ । ଏହା ପରେ ପ୍ରସ୍ତାବ ଆସେ ବ୍ରଜଗିରି ଦେଶର କନ୍ୟା ଚନ୍ଦ୍ରାବତୀ ସଙ୍ଗେ । । ଏଥର

ବିବାହ ହୋଇଗଲା । ବର କନ୍ୟା ମଧୁଶଯ୍ୟା କଲେ । ସକାଳୁ ଦେଖିଲା ବେଳକୁ ଚନ୍ଦ୍ରାବତୀ ମରି ଶୋଇଛି । ଏହିପରି ଗୋଟିଏ ପରେ ଗୋଟିଏ କରି ଶଏ ଏକ କନ୍ୟା ମଲେ । ଲୋକେ କନ୍ୟା ଦେବାକଥା ଦୂରେ ଥାଉ ଧୃତରାଷ୍ଟ୍ରଙ୍କ ନାଁ ଧରିବା ପାଇଁ ଡରିଲେ । ଏହିପରି ସମୟରେ ଦିନେ ବ୍ୟାସ ଯାଇଁ ହସ୍ତିନାରେ ପହଁଞ୍ଚିଲେ । ବ୍ୟାସଙ୍କୁ ଦେଖି ସତ୍ୟବତୀ ଖୁସିରେ ଅମ୍ବାଳିକାଙ୍କ ସହ ସହବାସ ପାଇଁ ଅନୁରୋଧ କଲେ । ସବୁଥର ପରି ଏଥର ମଧ ବ୍ୟାସ ହସ୍ତିନା ଛାଡ଼ି ଗଲାବେଳକୁ ସତ୍ୟବତୀ ଧୃତରାଷ୍ଟ୍ରଙ୍କ ବିବାହ କଥା ଉଠେଇଲେ । ସର୍ବଜ୍ଞାତା ବ୍ୟାସ ଧୃତରାଷ୍ଟ୍ରଙ୍କ ପାଇଁ କନ୍ୟା ଠିକଣା କରିଦେବାର ଭରସା ଦେଇ ଗାନ୍ଧାର ସେନଙ୍କ ଘରେ ପହଞ୍ଚିଲେ ।

ଧୃତରାଷ୍ଟ୍ରଙ୍କୁ କନ୍ୟା ନ ମିଳିବା ପରି ଗାନ୍ଧାରୀଙ୍କ ପାଇଁ ମଧ ବର ମିଳୁ ନାହାନ୍ତି । ସେତେବେଳକୁ ବାଇଶି ଜଣ ମରି ସାରିଲେଣି । ବ୍ୟାସଙ୍କୁ ଦେଖିବା କ୍ଷଣି ବିବ୍ରତ ଗାନ୍ଧାରସେନ ନିଜର ସବୁ ଦୁଃଖ ମୁନିଙ୍କୁ ଜଣେଇଲେ । ବ୍ୟାସଙ୍କ ପରାମର୍ଶରେ ଗାନ୍ଧାରୀ ପ୍ରଥମେ ସାହାଡ଼ା ଗଛକୁ ବିବାହ କଲେ । ସାହାଡ଼ା ଗଛ ମଧ ମରିଗଲା । ଏହାପରେ ଧୃତରାଷ୍ଟ୍ରଙ୍କ ସହ ଗାନ୍ଧାରୀଙ୍କର ବିବାହ ସମ୍ପନ୍ନ ହୁଏ ।

ସାରଳା ଦାସ କଥାରେ ଯେଉଁ ପରିବର୍ତ୍ତନ ଆଣିଲେ ସେଥିରୁ ତାଙ୍କ ଦୃଷ୍ଟିକୋଣ ସମ୍ବନ୍ଧରେ କେତେକ ସୂଚନା ମିଳିଥାଏ । ସୁସନ୍ତାନ ଜାତ କରିବାକୁ ହେଲେ କାଳ, ପାତ୍ର ପ୍ରଭୃତି ବିଚାର କରିବାର କଥା । କେବଳ କାମବଶ ହେଲେ ଯୋଗ୍ୟ ସନ୍ତାନ ଜନ୍ମ ହୁଅନ୍ତି ନାହିଁ । ବ୍ୟାସ ସର୍ବଜ୍ଞାତା ମୁନି ହେଲେ ଜଣ ହେବ ପରଦାରା ଅମ୍ବାଙ୍କ ସହ ସହବାସ କଲାବେଳେ କାଳ ବେଳର ବିଚାର କଲେ ନାହିଁ । ପୁଣି କାମାତୁର ହୋଇ ଅସାଷ୍ଟମ ନାରୀ ଠାରେ ରେତ ତ୍ୟାଗ କଲେ । ଏହି ଦୋଷରୁ ଧୃତରାଷ୍ଟ୍ର ହେଲେ ବ୍ରହ୍ମ ଅସୁର ଓ ସେହି କାଳବେଳ ଦୋଷରୁ ଗାନ୍ଧାରୀ ହେଲେ ବ୍ରହ୍ମ ଅସୁରୀ । ଏହି ଦୁହିଙ୍କ ମିଳନରେ ଯେଉଁ ସନ୍ତାନମାନେ ଜନ୍ମ ହେଲେ ସେମାନେ ଯେ ବିଭିନ୍ନ ଦୁଷ୍କର୍ମରେ ଲିପ୍ତ ହେବେ ଏହା ସ୍ୱଭାବିକ । ପିତାମାତାଙ୍କ ଦୋଷରୁ ସନ୍ତାନ ଦୁଷ୍ଟ ହୁଏ - ଏହି କଥା କହିବା ପାଇଁ ସାରଳା ଦାସ ମୂଳରୁ ଧୃତରାଷ୍ଟ୍ରଙ୍କୁ ବିଭିନ୍ନ ଦୋଷରେ ଦୋଷୀ କରିଛନ୍ତି । ଧୃତରାଷ୍ଟ୍ରଙ୍କ ପ୍ରତି ସାରଳା ଦାସଙ୍କ ଦୃଷ୍ଟିକୋଣ ତାଙ୍କ ନିଜ ଉକ୍ତିରେ ଅତି ସ୍ପଷ୍ଟ । ଧୃତରାଷ୍ଟ୍ରଙ୍କ ମନ୍ଦ ଗୁଣରେ ବିବ୍ରତ ହୋଇ ଗାନ୍ଧାରୀଙ୍କ ଚେତାବନୀରୁ ଏହା ଜଣାଯାଏ । ଗାନ୍ଧାରୀ କହିଛନ୍ତି-

ପିଙ୍ଗଳ ବଧିର ଖଣ୍ଡତା କୁବୁଜ ଅଦୃଷ୍ଟି
ଯମର ଶାସ୍ତିମାନ ଦେବ ଅଟଇ ସବୁଟି ,
ଜନମୁଁ ଯେମାନେ ବିକଟ ବାଇ
ମନ୍ଦ ପ୍ରକୃତି ଯେମାନେ ନ ପାରନ୍ତି କୁଶଳ ସହି
ତିଙ୍କର ସ୍ୱଭାବ ସେ ହିଂସା ଯେ ପ୍ରକୃତି
ଆପଣେ ବକ୍ର ଯେ ପର ସଂପଦ ଦେଖି ନୁଆରନ୍ତି

ପର ଛିନ୍ଦ୍ରା ପରହିଂସା ପରମାଦ ଛାଡ଼ ହୋ ଧୃତରାଷ୍ଟ୍ର
ଅନିତ୍ୟ ସଂସାର ଯେ ମାୟା ଚିତ୍ରପଟ
ଲୋଭ ମୋହ କାମ କ୍ରୋଧ ଅହଂକାର ହିଂସା
ଯେହା ଦୂର କରି ନାଥ କର ନିକଳଙ୍କ ମନୀଷା
ଅନେକ ବାଗେଣ ଯେ ତିଆରଇ ଗାନ୍ଧାରୀ
ଶାନ୍ତି ମନ ଆତ୍ମା ନୋହିଲା ତାହାରି ।

**୧୧ । ପଣ୍ଡୁଙ୍କ ବିବାହ : (କ) କୁନ୍ତୀ**- ଅମ୍ବାଙ୍କ ସହବାସ ଜନିତ ଦୋଷରୁ ଅନ୍ଧପୁତ୍ର ଜାତ ହେବା ସ୍ୱଚକ୍ଷୁରେ ଦେଖି ଅମ୍ବିକା ସତର୍କ ହୋଇଯିବା ସ୍ୱାଭାବିକ । ସେ ଭଲଭାବେ ଜାଣିଥିଲେ ଯେ ଅମ୍ବାଙ୍କ ପରେ ତାଙ୍କରି ପାଳି ପଡ଼ିବ । ସେଥିପାଇଁ ସେ ଆଗରୁ ମନେ ମନେ ପ୍ରସ୍ତୁତ ହୋଇ ରହିଥିଲେ । ଫଳରେ ମିଳନ ସ୍ୱାଭାବିକ ହେଲା ଓ ସେ ପଣ୍ଡୁଙ୍କ ପରି ଯୋଗଜନ୍ମା ପୁରୁଷଙ୍କୁ ଜନ୍ମ ଦେଲେ ।

ଧୃତରାଷ୍ଟ୍ରଙ୍କ ବିବାହ ବର୍ଣ୍ଣନା କଲାପରି ସାରଳା ଦାସ ପଣ୍ଡୁଙ୍କ ବିବାହ ପ୍ରସଙ୍ଗରେ ମଧ ସଂସ୍କୃତ ମହାଭାରତକୁ ଅନୁସରଣ କରି ନାହାନ୍ତି । ସଂସ୍କୃତରେ ପଣ୍ଡୁଙ୍କୁ କୁନ୍ତୀ ତାଙ୍କ ବିବାହ ପାଇଁ ଆୟୋଜିତ ଏକ ସ୍ୱୟଂବର ସଭାରେ ବରଣମାଳା ପ୍ରଦାନ କରିଥିଲେ । ସାରଳା ମହାଭାରତରେ ସ୍ୱୟଂବର କଥା ନାହିଁ । କାର୍ତ୍ତିକ ପୂର୍ଣ୍ଣମୀ ଓଡ଼ିଆ ଜାତି ପକ୍ଷରେ ଏକ ପବିତ୍ର ଦିବସ । ସେଦିନ ଲୋକେ ଧର୍ମ ଅର୍ଜନ କରିବା ପାଇଁ ଅକାମାବଇ ସ୍ନାନ କରିବା ଉଦ୍ଦେଶ୍ୟରେ ତୀର୍ଥସ୍ଥାନ ମାନଙ୍କୁ ଗମନ କରନ୍ତି । ଏହିପରି, ଏକ ଶୁଭ ଦିନରେ ଭୀଷ୍ମ ଓ କୁନ୍ତଭୋଜ ସ୍ୱାମୀ ଗଙ୍ଗାରେ ସ୍ନାନ କରିବାକୁ ଯାଇଥିଲେ । ସେଠାରେ ଦୁଇ ରାଜାଙ୍କର ଚିହ୍ନା ହେଲା, ଦୁହିଁଙ୍କର ରୋହିଣୀ ବୃଷ ରାଶି । ମଇତ୍ରି ବସିଲେ । ଭୀଷ୍ମଙ୍କ ସଙ୍ଗରେ ପଣ୍ଡୁଥିଲେ । କୁନ୍ତଭୋଜ ସ୍ୱାମୀ ସହ କୁନ୍ତୀ ଯାଇଥିଲେ । କୁନ୍ତୀଙ୍କୁ ଦେଖି ସତ୍ୟବତୀ ଆଗ୍ରହ ପ୍ରକାଶ କଲେ । ପାରେଶ୍ୱର ପ୍ରସ୍ତାବ ଦେଲେ । ସେହି ତୀର୍ଥ ସ୍ଥାନରେ ଯୋଗ, ଲଗ୍ନ ବେଳ ଦେଖି ବିବାହକାର୍ଯ୍ୟ ସମାହିତ ହେଲା ।

ସାରଳା ଦାସ ସଂସ୍କୃତରୁ ଅଲଗା ହୋଇ ଯେଉଁ କେତୋଟି ନୂଆ କଥାର ସଂଯୋଜନା କଲେ ତାହା ଫଳରେ ରାଜା ଘରର ସବୁ ଆଡ଼ମ୍ବର ଲୋପ ପାଇ ଏହା ଏକ ସାଧାରଣ ଓଡ଼ିଆ ଘରର ବାହାଘରରେ ପରିଣତ ହେଲା । ତା ସାଙ୍ଗକୁ ଅକାମାବଇ ଦିବସର ମହାତ୍ମ୍ୟ, ମିତ୍ର ବସିବାର ପରମ୍ପରା ଓ ତୀର୍ଥ ସ୍ଥାନରେ ବିବାହରୁ ଅର୍ଜିତ ଧର୍ମ ପ୍ରଭୃତି ଓଡ଼ିଆ ଚଳଣୀ ଯୋଡ଼ି ହୋଇ ଏହାର ଏକ ନୂଆ ଓ ସ୍ୱତନ୍ତ୍ର ରୂପ ସ୍ଥିର ହେଲା ।

**(ଖ) ମାଦ୍ରୀ :** କୁନ୍ତୀଙ୍କ ସହ ବିବାହ ପରେ ପଣ୍ଡୁ କିଛିଦିନ ପାଇଁ ହସ୍ତିନାର ରାଜପଦରେ ଅଭିଷିକ୍ତ ହୋଇଥିଲେ । ସଂସ୍କୃତ ମହାଭାରତ ପରି ଦିଗ୍‌ବିଜୟ କରି ବହୁ ଧନ ରତ୍ନ ଆଣି ହସ୍ତିନାପୁରବାସୀମାନଙ୍କୁ ଆନନ୍ଦିତ କଲେ । ପଣ୍ଡୁଙ୍କର ଯଶ ଓ ଖ୍ୟାତି ଧୃତରାଷ୍ଟ୍ରଙ୍କୁ ଅସହ୍ୟବୋଧ

ହେଲା । ଏ କଥା ପଣ୍ଡୁ ଜାଣିପାରି ରାଜ୍ୟ ତ୍ୟାଗ କଲେ ।

ମାଦ୍ରୀଙ୍କ ସହ ତାଙ୍କର ସାକ୍ଷାତ ହୁଏ ଓ ସେ ମାଦ୍ରୀଙ୍କୁ ବିବାହ କରନ୍ତି ।

ମାଦ୍ରୀଙ୍କ ବିବାହ ପ୍ରସଙ୍ଗରେ ସାରଳା ଦାସ ସଂସ୍କୃତ ମହାଭାରତର ପାଖ ମାଡ଼ି ନାହାନ୍ତି । ଗାନ୍ଧାରୀଙ୍କ ବେଳକୁ ସୁବଳ ନାମ ନ କହିଥିଲେ ହେଁ ଗାନ୍ଧାରସେନ କଥା କହିଥିଲେ । କୁନ୍ତୀଙ୍କୁ ସେ କୁନ୍ତଭୋଜ ନନ୍ଦିନୀ ଭାବେ ଆଖ୍ୟ ଦେଲେ । ଅଥଚ ମାଦ୍ରୀଙ୍କ ବେଳକୁ ସେ ମଦ୍ର ଦେଶର ନାଁ ପର୍ଯ୍ୟନ୍ତ ନେଲେ ନାହିଁ ।

ଏ ସବୁ ବିଚ୍ୟୁତିରେ ସାରଳା ଦାସଙ୍କର କୌଣସି ମହତ ଉଦ୍ଦେଶ୍ୟ ଥିବା ଜାଣିହୁଏ ନାହିଁ । ହୁଏତ ସାରଳା ଦାସ ଜାଣିଶୁଣି ମହାଭାରତର କଥାକୁ ଏକ ନୂଆ ରୂପ ଦେଇଥିଲେ ବା ଏ ସବୁ ଥିଲା ତାଙ୍କର ଅଜ୍ଞାତ । ସୋମବଂଶର ବଂଶାବଳୀ ବର୍ଣ୍ଣନା କଲାବେଳେ ମଧ ସେ କେତେକ ନାମାବଳୀରଖି ଆଉ କେତେକ ତ୍ୟାଗ କରିଥିଲେ । ଅଥଚ ମାଦ୍ରୀଙ୍କ ବେଳକୁ ସେ କଳ୍ପନାରେ କେତେକ ନାଁ ସଂଯୋଜନା କଲେ ଓ କେତେକ ବଦଳାଇ ଦେଲେ ।

**୧୨। କୁନ୍ତୀଙ୍କ ବାଲ୍ୟ ଚରିତ :** ସଂସ୍କୃତ ମହାଭାରତ ଅନୁଯାୟୀ ପୃଥା ଥିଲେ ଯଦୁବଂଶ ଶ୍ରେଷ୍ଠ ଶୂରଙ୍କର କନ୍ୟା ଓ ବସୁଦେବଙ୍କର ଭଗିନୀ । କୁନ୍ତଭୋଜ ନୃପତିଙ୍କର ସନ୍ତାନ ନ ଥିବାରୁ ସେ ପୃଥାଙ୍କୁ ନିଜ କନ୍ୟା ରୂପେ ପାଳନ କରୁଥିଲେ । ସେଥିପାଇଁ ତାଙ୍କର ନାମ ହେଲା କୁନ୍ତୀ ।

ବାଲ୍ୟକାଳରେ ଦୁର୍ବାସା ମୁନିଙ୍କର ସେବା କରି ମନ୍ତ୍ର ପାଇଥିବା ଉଭୟ ମହାଭାରତର ମୁଖ୍ୟ ବିଷୟବସ୍ତୁ ହେଲେହେଁ, ବର୍ଣ୍ଣନାରେ ବହୁ ପାର୍ଥକ୍ୟ ପରିଦୃଷ୍ଟ ହୁଏ ।

ସଂସ୍କୃତରେ ପୃଥା ଦୁର୍ବାସାଙ୍କର କେତେଦିନ ସେବା କରିଥିଲେ ଏହାର କୌଣସି ନିର୍ଦ୍ଦିଷ୍ଟ ସୂଚନା ନାହିଁ । ଅଥଚ ସାରଳାଦାସଙ୍କ ମତରେ ସେବାର ଅବଧି ଥିଲା ପାଞ୍ଚବର୍ଷ । ସଂସ୍କୃତ ଅନୁଯାୟୀ ପୃଥାଙ୍କର ସନ୍ତାନ ହେବାରେ ପ୍ରତିବନ୍ଧକ ଥିବା କଥା ଦୁର୍ବାସା ଧ୍ୟାନ ବଳରେ ଜାଣି ପୃଥାଙ୍କୁ ନିଜେ ମନ୍ତ୍ରଦାନ କରିଥିଲେ । ସାରଳାଦାସ ପ୍ରତ୍ୟେକ ଘଟଣାକୁ ଗୁରୁତ୍ୱ ଦେଇ ବର୍ଣ୍ଣନା କରିଛନ୍ତି । ଦୁର୍ବାସାଙ୍କର ସେବାକର୍ମ ସବୁର ଉଲ୍ଲେଖ କରି ସାରଳାଦାସ ଲେଖିଛନ୍ତି -

ଆଶ୍ରମ ଗୋଟିକ ଲିପିବ ଅଗଣା ଝୋଟି ଦେବ
ପାଣି ଝରିଯେ ଆଣିମ ଫୁଲ ପୁଡାଯେ ତୋଳି ଦେବ ।
ପାଲଟା ବସ୍ତ୍ର ଖଣ୍ଡ ପଖାଳିବ ନେଇ
ଯେତେକ କରିଣ ସେଚି ଆମ୍ଭଙ୍କୁ ଭଗତି ହୋଇ । (ପୃ-୧୫୧)

କୁନ୍ତୀଙ୍କ ସେବାରେ ଦୁର୍ବାସା ସନ୍ତୁଷ୍ଟ ହୋଇ ତାଙ୍କୁ ଦୁଇଥର ବର ପ୍ରଦାନ କଲେ । ପ୍ରଥମ ବର କୁନ୍ତଭୋଜ ରାଜାଙ୍କ ସମ୍ମୁଖରେ କୁନ୍ତୀଙ୍କୁ ପ୍ରଂଶସା କରି କହିଥିଲେ-

ସୋମବଂଶେ ସୁଲକ୍ଷଣୀ ହୋଉ ତୋର କୋନ୍ତା
ବୀର୍ଯ୍ୟ ପ୍ରଦାନ କରୁ ଯେହାକୁ ଧର୍ମ ଯେ ଦେବତା

ଧର୍ମ ବଳେ ବଳବନ୍ତା କ୍ଷତ୍ରୀ ହୋଇ ତାର ପୁତ୍ର ହୋଉ ଜାତ
ପଞ୍ଚୁ କଟକରେ ଠାକୁରାଣୀ ହୋଉ ତୋ ଦୁହିତ । (ପୃ-୧୫୩)

କୁନ୍ତୀ ଏକଥା ଶୁଣିପାରି ନଥିଲେ । ସେଥିପାଇଁ ସେ ଦୁର୍ବାସାଙ୍କ ପଛେ ପଛେ ପାଞ୍ଚକୋଶ ଯାଏ ଗୋଡ଼ାଇଲେ । ଦୁର୍ବାସା ଏକଥା ଜାଣିପାରିଲେ ନାହିଁ । କୁନ୍ତୀବି କ୍ଳାନ୍ତ ହୋଇ ପଡ଼ିଲେ । ଋଷିଙ୍କୁ ଜଣାଇବା ପାଇଁ ସେ ପଛରେ ରହି ଛିଙ୍କି ଦେଲେ । ଦୁର୍ବାସା ଲେଉଟି କୁନ୍ତୀଙ୍କୁ ଫେରିଯିବା ପାଇଁ କହିଲେ । ଏତିକିବେଳେ ସୁବିଧା ଦେଖି କୁନ୍ତୀ କହିଲେ -

ବାଲିକୁଢ଼ ଗୋଟିଏ କୁଢ଼ାଇ ପତ୍ର ଲୋଟିଏ ତହିଁରେ ଦେଇ
ଲୟେ କରି ସେବିଲେ ପ୍ରସନ୍ନ ହୋଇ ସେହି । (ପୃଷ୍ଠା-୧୫୪)

ଅଥଚ ତୁମ୍ଭପରି ଋଷିଙ୍କି ସେବାକରି କିଛି ଫଳ ପାଇଲି ନାହିଁ । ଦୁର୍ବାସା ଏ କଥା ଶୁଣି କହିଲେ ମହାମନ୍ତ୍ର ଯାଚିକରି ଦିଆଯାଏ ନାହିଁ । ତୁ ତ ପାଞ୍ଚବର୍ଷ ସେବାକରି କିଛି ଯେତେବେଳେ ନ ମାଗିଲୁ, ମୁଁ ଭାବିଲି ଏହାର କିଛି ଦରକାର ନାହିଁ । ଆଜି ଯେତେବେଳେ କହୁଛୁ, ସ୍ତ୍ରୀ ଜାତିର ମନ ଜାଣି ମୁଁ ଗୋଟିଏ ବର ଦେବି । ସ୍ତ୍ରୀ ଜାତିଙ୍କର ମନ କଥା ବିଶ୍ଳେଷଣ କରି-

ଦୁର୍ଭାସାୟେ ବୋଇଲେ ଗୋ ଆଇ ସ୍ତିରୀଙ୍କର ଯେହ୍ନେ ବ୍ରତ,
ସୁନ୍ଦର ଭ୍ରଥା ହୋଇବ ସୁଭିଗ୍ୟଂ ପଣ୍ଡିତ ଭାଗ୍ୟବନ୍ତ ।
ସୁପୁତ୍ର ହୋଇବ ତୋର ଅତିଅନ୍ତ ବଳବନ୍ତା ।
ସଂଗ୍ରାମକୁ କେବେହେଂ ନୋହିବ ପଛଗତା ।
ଯେସନେକ ବାଞ୍ଛା ସ୍ତିରୀଙ୍କର ପ୍ରକୃତି,
ସୁନ୍ଦର ପୁରୁଷ ଦେଖିଲେ ହୋଅନ୍ତି ଭୋଳମତି ।

ଏହାକହି କୁନ୍ତୀଙ୍କୁ 'ମହାମନ୍ତ୍ର ଜପାମାଳି' ପ୍ରଦାନ କଲେ ।

**୧୩ । କର୍ଣ୍ଣ ଜନ୍ମ :** ସଂସ୍କୃତ ମହାଭାରତ ପରି ସାରଳା ଦାସ ଜପାମାଳୀର ପରୀକ୍ଷା କରିବା ପାଇଁ ସୂର୍ଯ୍ୟଙ୍କୁ ଆହ୍ୱାନ କଲେ ଓ ଫଳରେ କର୍ଣ୍ଣଙ୍କର ଜନ୍ମ ହେଲା । ଏହିକଥା ବର୍ଣ୍ଣନା କଲାବେଳେ ସାରଳା ଦାସଙ୍କ ବ୍ୟତିକ୍ରମ ହେଲା ସୂର୍ଯ୍ୟଙ୍କ ସହ ସମାଗମର ବର୍ଣ୍ଣନା ।

ସଂସ୍କୃତ ମହାଭାରତର କଥା ଅନୁଯାୟୀ ସୂର୍ଯ୍ୟ କୁନ୍ତୀଙ୍କୁ ଅଭୟ ପ୍ରଦାନ କରି କହିଲେ

ବ୍ୟୋପ ଯାତୁ ଭୟଂ ତେହଦ୍ୟ କୁମାରଂ ପ୍ରସମୀକ୍ଷସେ
ମୟାଭୂଞ୍ଚାପ୍ୟନୁଜ୍ଞାତା ପୁନଃ କନ୍ୟା ଭବିଷ୍ୟସି ।

ଏକଥା କହି ସେ ତାଙ୍କ ସହ ସହବାସ କଲେ ଓ କର୍ଣ୍ଣଙ୍କର ଜନ୍ମ ହେଲା । ଜନ୍ମ ସମୟରୁହିଁ ତାଙ୍କ ଅଙ୍ଗଦେଶ କବଚ ଦ୍ୱାରା ଓ ମୁଖମଣ୍ଡଳ ଦୁଇଟି କୁଣ୍ଡଳ ଦ୍ୱାରା ସୁଶୋଭିତ ଥିଲା ।

ସାରଳା ଦାସ ମୋଟାମୋଟି ଭାବେ ଏହି କଥା ହିଁ କହିଛନ୍ତି । ତେବେ ସମାଗମର ବର୍ଣ୍ଣନାରେ ଯେଉଁ ଅଲୌକିକତା ରଖିଛନ୍ତି, ତାହା ସୂର୍ଯ୍ୟଦେବଙ୍କ ମହିମା ଓ କର୍ଣ୍ଣନାମର

ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଅଖଳିତ ଅଲାଜ ଓ ଅଜ୍ଞାନ ବାଳସ୍ତିରୀ ସହ ସୂର୍ଯ୍ୟଙ୍କର ସହବାସ କଥା ବର୍ଣ୍ଣନାକରି ସାରଳା ଦାସ ଲେଖିଛନ୍ତି-

ଯମୁନା ନଦୀ ତୀରେ ଗହନ ଅଟବ୍ୟା
କୋଇନ୍ତାଙ୍କୁ ଶୃଙ୍ଗାର ଇଛିଲେ କରତା ଆଦି ଦେବା
ଶାନ୍ତିମୂର୍ତ୍ତି ହୋଇଣ ଯେ କମଳ ଲୋଚନ
ଇନ୍ଦ୍ରି ବଢ଼ାଇଲେ ସେ ଭଗର ସମାନ
ଅଖଳିତ କନ୍ୟା ସେ ଅଟଇ ସୂଚୀ ଭେଦ
ସୂଚୀ ନାତ ସ୍ୱରୂପେଣ ଉପସ୍ଥ କଲେ ଦେବ ।

x x x

କିଅତ ଶୃଙ୍ଗାର ସେ କଲେ କରତାରେ
ବାହୁଡ଼ି ନଗଲେ ଦେବ ଦୁର୍ବାସାଙ୍କ ମନ୍ତ୍ର ଡ଼ରେ । (ପୃ-୧୫୭)

ପୁତ୍ର ଜାତ ବେଳେ କୁନ୍ତୀ ପୁଣି ସୂର୍ଯ୍ୟଙ୍କୁ ଅନୁରୋଧ କରି କହିଲେ-

କୋଇନ୍ତା ବୋଇଲେ ଭୋ ଦେବ ଭବଦ୍ୱାରୁ ଜାତ ନହୋଉ ସନ୍ତତି
ଭବ ଗଳନ୍ତେ ମୁଁ ଯେ ହୋଇବି ଅସତୀ । ପୃ-୧୫୮

ଏକଥା ଶୁଣି ସୂର୍ଯ୍ୟ ''କର୍ଣ୍ଣଦ୍ୱାରେ ବୀର୍ଯ୍ୟ ଯେ ଟେକିଲେ ଉଜାଣି । ଯେସନେକ ଅଛି ସେ ପୂର୍ବରୁ ନିର୍ବାଣି ।''(ପୃ-୧୫୮)

କର୍ଣ୍ଣବାଟେ ଜନ୍ମ ହେବାରୁ ସନ୍ତାନର ନାମ କର୍ଣ୍ଣ ହେଲା ।

ସଂସ୍କୃତ ମହାଭାରତରେ କର୍ଣ୍ଣଙ୍କ ଅଙ୍ଗ କବଚ ଓ କୁଣ୍ଡଳ ଜନ୍ମ ପୂର୍ବରୁ ହିଁ ଥିଲା । ଅଥଚ ସାରଳାଦାସଙ୍କ ମତରେ ଜନ୍ମ ପରେ ସୂର୍ଯ୍ୟ,

କର୍ଣ୍ଣେଣ ଚାପିଲେ ସ୍ୱାମୀ ଅମୃତ କୁଣ୍ଡଳ ବେନି
ତାଳୁରେ ଗୋପ୍ୟାନ କଲେ ଅମୃତ ଅଭେଦ କପଚ ମଣି
ଶରୀରେ ଲେପନ କଲେ ବଜ୍ର ଯେ ଛଉରୀ
କର୍ଣ୍ଣେଣ କୁମରର ମହାବ୍ରହ୍ମମନ୍ତ୍ର ପଢ଼ି । (ପୃ-୧୫୮)

ଏହାପରେ ପୁଣି କର୍ଣ୍ଣଙ୍କୁ ବରପ୍ରଦାନ କରି କହିଲେ,

ରଣେ ଅଭୟ ତୁ ହୁଅସିରେ କୁମର
ଦାନେଣ ସାହେର ତୁ ହୋଅସି ମହାବୀର
ଯେତେବେଳେ ପରିଯନ୍ତେ ତୁ ରଥରେ ବସିଥିବୁ

ତ୍ରୈଲୋକ୍ୟେ ଜିଣନ୍ତା ତୋତେ ସାଂଗ୍ରାମେ ନୋହୁ କେ ରେ ବାବୁ ।
(ପୃ-୧୫୯)

କର୍ଣ୍ଣଙ୍କୁ ଜନ୍ମ ଦେଇ ସୂର୍ଯ୍ୟତ ଚାଲିଗଲେ, କିନ୍ତୁ କୁନ୍ତୀଙ୍କ ମନରେ ବହୁ ସମସ୍ୟା ଉପସ୍ଥିତ ହେଲା । ଲୋକ ଅପବାଦ କଥା ସ୍ମରଣ କରି ସେ ଚିନ୍ତିତ ହୋଇ ପଡ଼ିଲେ । ଲୋକେ କଣ କହିବେ ? ଲୋକତ ଆଉ ଏକଥା ଜାଣିବେ ନାହିଁ ଯେ ଦୁର୍ବାସାଙ୍କ ଜପାମାଳି ଓ ମନ୍ତ୍ର ପ୍ରଭାବରେ ସୂର୍ଯ୍ୟ ଦେବତା ଆସି କର୍ଣ୍ଣର ଜନକ ହେଲେ । ସମସ୍ତେ ଦୁର୍ବାସାଙ୍କୁ ସନ୍ଦେହ କରି,

ବୋଲିବେ ମୁନିଙ୍କ ସଙ୍ଗେ ଯେ ଥିଲାକ ସମୟେ
ଦୁର୍ବାସାଙ୍କର ରମଣେ ଯେ ଉପୁଜିଲା ତନୟେ । (ପୃ-୧୬୦)

ଅପଖ୍ୟାତି ଭୟରେ କାଦୁଅର ପେଡ଼ିକରି ସେଥିରେ ନବଜାତ ଶିଶୁଟିକୁ ରଖି ଯମୁନା ଜଳରେ ଭସାଇଦେଇ ଘରକୁ ଫେରିଗଲେ ।

**୧୪ । କର୍ଣ୍ଣଙ୍କ ପାଳନ :** ସଂସ୍କୃତ ମହାଭାରତ ଅନୁଯାୟୀ କର୍ଣ୍ଣଙ୍କ ପାଳିତ ପିତା ହେଲେ ସୁତବଂଶୀୟ ଅଧିରଥ ଓ ତାଙ୍କ ଭାର୍ଯ୍ୟା ରାଧା । ସାରଳା ଦାସ ରାଧା ନାମ ଠିକ୍ ରଖିଥିଲେ ହେଁ ସେ ହେଲେ ସଞ୍ଜୟ ମନ୍ତ୍ରୀଙ୍କର ପାଳିତା କନ୍ୟା । ସଞ୍ଜୟ ଯମୁନାରେ ତୀର୍ଥସ୍ନାନ କରିବାକୁ ଯାଇ ଥିଲାବେଳେ ପରିତ୍ୟକ୍ତା କୁମାରୀକୁ ଆଣି ପାଳନ କଲେ । ତାଙ୍କର ନାମ ହେଲା ରାଧା । ଯମୁନାରେ ସ୍ନାନ କରୁଥିଲା ବେଳେ ରାଧା ମଞ୍ଜୁଷାକୁ ଦେଖିଥିଲେ ଏବଂ ସଞ୍ଜୟଙ୍କ ଅନୁମତି କ୍ରମେ ମଞ୍ଜୁଷାରେ ଥିବା ପୁତ୍ରର ପାଳନ କରିଥିଲେ ।

**୧୫ । କର୍ଣ୍ଣଙ୍କ ବିଭିନ୍ନ ନାମ :** ସଂସ୍କୃତ ମହାଭାରତରେ କର୍ଣ୍ଣଙ୍କର ବହୁ ନାମ ମଧ୍ୟରୁ ୧। ବସୁସେଣ, ୨। କର୍ଣ୍ଣ ଓ ୩। ବୈକର୍ତ୍ତନ ନାମ ପ୍ରସିଦ୍ଧ ।

ବସୁ (ସ୍ୱର୍ଣ୍ଣ କୁଣ୍ଡଳ) ସହ ଜନ୍ମଲାଭ କରିଥିବାରୁ ତାଙ୍କର ପ୍ରଥମ ନାମ ହେଲା ବସୁସେଣ । କବଚ କାଟି ଇନ୍ଦ୍ରକୁ ଦାନ କରିବା ପରେ ତାଙ୍କର ଆଉ ଦୁଇଟି ନାମ ହେଲା । କର୍ଣ୍ଣ ଓ ବୈକର୍ତ୍ତନ । ସାରଳା ଦାସ ଏଥିରୁ କେବଳ କର୍ଣ୍ଣ ନାମକୁ ଗ୍ରହଣ କରିଛନ୍ତି । ଅଥଚ କାରଣ ଭିନ୍ନ । କାନ ବାଟେ ଜନ୍ମ ହେବାରୁ ଏହାଙ୍କର 'କର୍ଣ୍ଣ' ନାମ ହୋଇଥିଲା । ସଞ୍ଜୟଙ୍କ ପାଳିତା କନ୍ୟା ରାଧା ତାଙ୍କୁ ପାଳନ କରିବାରୁ ତାଙ୍କର ନାମ ହେଲା 'ରାଧେନୟେ' ।

**୧୬ । ଅଗ୍ନିକା ମହାଋଷିଙ୍କ ଅଭିଶାପ :** ସାରଳାଦାସଙ୍କ ଅଗ୍ନିକାର ସଂସ୍କୃତ ମହାଭାରତର କିମିନ୍ଦମ । ପାଣ୍ଡୁଙ୍କ ଉପରେ ଋଷିଙ୍କର ଅଭିଶାପ ଉଭୟ ଗ୍ରନ୍ଥର ବିଷୟବସ୍ତୁ । କିମିନ୍ଦମ ମୁନି ମୃଗ ରୂପରେ ନିଜର ମୃଗୀରୂପୀ ରମଣୀସହ ରମଣରତ ଥିବାବେଳେ ପାଣ୍ଡୁଙ୍କ ଦ୍ୱାରା ଶରବିଦ୍ଧ ହୋଇ ମୃତ୍ୟୁ ବରଣ କଲେ । ମୃଗରୂପୀ ଋଷିଙ୍କର ଅଭିଶାପ ଦେବାର ମୁଖ୍ୟ କାରଣ ହେଲା କାମମତ୍ତ କୌଣସି ପ୍ରାଣୀକୁ ବଧ କରିବା ଶାସ୍ତ୍ରାନୁମୋଦିତ ନୁହେଁ ।

ସାରଳା ମହାଭାରତରେ ଅଗ୍ନିକାର ଋଷି ମୃଗ ରୂପ ନୁହେଁ, ମନୁଷ୍ୟ ରୂପରେ

ମୃଗୁଣୀସହ ମୈଥୁନରତ ଥିଲେ । ପାଣ୍ଡୁ ଦୂରରୁ ମୃଗୁଣୀର ଚିତ୍କାର ଶ୍ରବଣ କଲେ ଏବଂ ଶବ୍ଦଭେଦୀ ଶର ପ୍ରହାର କରିବା ଫଳରେ ଋଷି ଓ ମୃଗୁଣୀ ଉଭୟଙ୍କର ମୃତ୍ୟୁ ହେଲା । ୯

ଋଷି ହୋଇ ମୃଗୁଣୀ ସହ ସହବାସ ପ୍ରସଙ୍ଗର ବର୍ଣ୍ଣନା କଲାବେଳେ ସାରଳାଦାସ ଏହାର ପ୍ରାସଙ୍ଗିକତା ପ୍ରତିପାଦନ କରିବା ପାଇଁ ଆଗ୍ରହୀ ଥିବା ଜଣାଯାଏ । ସେଥିପାଇଁ ସେ ଅଗ୍ନିକାର ଋଷିଙ୍କ ପୂର୍ବଜନ୍ମ ବୃତ୍ତାନ୍ତ, ସଂଯମର କଠୋରତା, କାମାତୁରା ନାରୀର ଆକୁଳ ନିବେଦନ ରକ୍ଷା ନ କରିବାର ଦୋଷ, ସନ୍ତାନ ଉତ୍ପତ୍ତିର ଆବଶ୍ୟକତା ଓ ମହିମା ପ୍ରଭୃତି ବହୁ ପ୍ରସଙ୍ଗର ଅବତାରଣା କରିଛନ୍ତି । ସଂସ୍କୃତ ମହାଭାରତରେ ଏସବୁ ପ୍ରସଙ୍ଗ ନଥିଲେ ହେଁ ସାରଳାଦାସ ଏଥିରେ ବହୁ ସାମାଜିକ ତତ୍ତ୍ୱର ସମାବେଶ କରିଛନ୍ତି ।

ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଶା ତଥା ସମଗ୍ର ଭାରତବର୍ଷରେ ପୁରୋହିତବାଦ ବିରୁଦ୍ଧରେ ସାଧକମାନେ ସ୍ୱର ଉତ୍ତୋଳନ କରିଥିଲେ । ବ୍ରାହ୍ମଣମାନଙ୍କର ଯାଗ, ଯଜ୍ଞ, ନିତ୍ୟକର୍ମ ଓ ହୋମ ପ୍ରଭୃତି ମନୁଷ୍ୟକୁ ମୁକ୍ତି ପ୍ରଦାନ କରେନାହିଁ । ଏ ସବୁକୁ ସାରଳା ଦାସ 'ଚିରନ୍ତନ କୀରତି' କହି ନାହାନ୍ତି । ଏହା ଅପେକ୍ଷା ବରଂ ଗୃହସ୍ଥାଶ୍ରମରେ ରହି ସନ୍ତାନ ଉତ୍ପତ୍ତି କରିବା ବହୁଗୁଣରେ ଶ୍ରେୟସ୍କର । ଅଗ୍ନିକାର ମହର୍ଷି ବ୍ରାହ୍ମଣୋଚିତ ସମସ୍ତ କାର୍ଯ୍ୟ କରିଥିଲେ ହେଁ ନିଜର ବଂଶର କାରଣ ପାଇଁ ଦାରା ଗ୍ରହଣ କରି ନ ଥିଲେ । ସେଥିପାଇଁ ଯମପୁରରେ ସେ ଦଣ୍ଡିତ ହୋଇ ସନ୍ତାନ ଉତ୍ପତ୍ତି ନିମିତ୍ତ ପୁଣି ଥରେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କଲେ ।

ସେ ଯୁଗର ଏହି ତତ୍ତ୍ୱ ସାରଳା ଦାସଙ୍କ ଭାଷାରେ ଅତି ମନୋଜ୍ଞ ଭାବେ ପ୍ରକାଶ ପାଇଛି । କବି କହିଛନ୍ତି-

ଆହୋ ଅଗ୍ନିକାର ତୁମ୍ଭେ ଯେ ମଞ୍ଚପୁରେ ଥିଲ
ଚିରନ୍ତନ କୀରତ୍ତି ତୁମ୍ଭେ କିସ କିସ ରୁହାଇଲ ।
ବଦୟନ୍ତି ମହତମା କଲୁ ଅନେକ ଧର୍ମ
ଯହୁଁ ସେ ବ୍ରାହ୍ମଣମାନଙ୍କର ନିତ୍ୟକର୍ମ ।
ଅନେକ ଯାଗଯଜ୍ଞ କଲୁ ରାଜାର ନିମନ୍ତେ
ଖଣ୍ଡିଲୁ ମହାପାତକ ଆପାଦ ଶାନ୍ତି ଅର୍ଥେ ।
ମେଘେ ଅନାବୃଷ୍ଟି କରନ୍ତି ଯେବଣ କାଳେ
କୋଟି ହୋମ କରାଇ ବୃଷ୍ଟି କଲୁ ମଞ୍ଚ ସ୍ଥଳେ ।
ଋଷିଙ୍କର ବଚନେ ବଦୟନ୍ତି ନାଶକର ଯନ୍ତୁପତି ।
ତୁମ୍ଭର ବଂଶକୁ କାରଣ ଅଛନ୍ତି କି ସନ୍ତତି । (ପୃ ୧୭୯-୮୦)

ବ୍ରାହ୍ମଣମାନଙ୍କ ଧର୍ମକର୍ମକୁ ନିନ୍ଦା କରିବା ପରି ସମାଜକୁ ନିୟନ୍ତ୍ରଣ କରିବା ଦିଗରେ ପୁରାଣ ସବୁର ବ୍ୟର୍ଥତା ପ୍ରଚାର କରିବା ପାଇଁ ସେ ମୃଗୁଣୀର ପୂର୍ବଜନ୍ମ କଥା କହିଛନ୍ତି ।

ଏହା ହେଉଛି ସତ୍ୟଯୁଗର କଥା । ସେତେବେଳେ କୁଶ ଦ୍ୱୀପର ରାଜା ଥିଲେ ଅନଙ୍ଗସେନ । ତାଙ୍କ ଭାର୍ଯ୍ୟାଙ୍କ ନାମ ରତ୍ନବତୀ । ରାଜା ହେଲେ ହେଁ, ସେ ଥିଲେ ମହାଜ୍ଞାତା, ଜିତେନ୍ଦ୍ରିୟ ଓ ସତ୍ୟବାଦୀ । ସକଳ ତପ ଧର୍ମରେ ନିପୁଣ । ଅଥଚ ରାଣୀ ରତ୍ନାବତୀ ଠିକ୍ ତାର ଓଲଟା । ସବୁବେଳେ ପରଦାରରେ ଅନୁରକ୍ତ । ରାଜା ନିଜର ଏକମାତ୍ର ରାଣୀଙ୍କୁ ଭଲ ବାଟକୁ ଆଣିବା ପାଇଁ ବହୁ ଚେଷ୍ଟା କଲେ । ଭଟ୍ଟ ମିଶ୍ର ବସାଇ ତିଆରିଲେ । ଦ୍ୱାଦଶ ବରଷ ପର୍ଯ୍ୟନ୍ତ ପୁରାଣ ପାଠ ହେଲା । ସବୁ କିନ୍ତୁ ବ୍ୟର୍ଥ ।

ଶୁଣିମା ପରିଯନ୍ତେ ସେ ଘେନି ଥାଇ ହୃଦେ
ରାଜା ଅନ୍ତର ହୋଇଲେ ସେ ଚଳଇ କାମ ଖେଦେ । (ପୃ-୧୯୦)

ଅଗ୍ନିକାର ଋଷି ପ୍ରସଙ୍ଗ ମହାଭାରତର କଥା ଦୃଷ୍ଟିରୁ ମଧ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏଥିରେ ଦୁଇଟି ତତ୍ତ୍ୱ ଅଛି । ସମାଜରେ ସନ୍ତାନ ଉତ୍ପତ୍ତିର ମହତ୍ତ୍ୱ ଓ ପରଦାର ଗ୍ରହଣର ଦୋଷ । ପ୍ରଥମରେ କୁହାଯାଇଛି, ସନ୍ତାନ ଉତ୍ପତ୍ତି ସଂସାରର ସର୍ବଶ୍ରେଷ୍ଠ ଧର୍ମ । ସେଥିପାଇଁ ମନୁଷ୍ୟ ଧର୍ମକର୍ମକୁ ପଛରେ ରଖି ଯେ କୌଣସି ଉପାୟରେ ସନ୍ତାନ ଉତ୍ପତ୍ତି ପାଇଁ ଚେଷ୍ଟା କରିବା ଦରକାର । ଏହି ସଙ୍କଟର ସମ୍ମୁଖୀନ ହୋଇ ଅଗ୍ନିକାର କୁମ୍ଭୀପାକ ନର୍କ ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ମୃଗୁଣୀ ପର୍ଯ୍ୟନ୍ତ ଗ୍ରହଣ କରିବାକୁ କୁଣ୍ଠାବୋଧ କରିନାହାନ୍ତି ।

ସନ୍ତାନ ଉତ୍ପତ୍ତି ପୁଣି କାମବାସନା ତୃପ୍ତ କରିବା ପାଇଁ ସ୍ତ୍ରୀ ସହବାସ ଏକା କଥା ନୁହେଁ । ସେଥିପାଇଁ ଅଗ୍ନିକାର ମହର୍ଷିଙ୍କ ବିଭିନ୍ନ ଚେଷ୍ଟାକୁ ସାରଳା ଦାସ ଅନୁମୋଦନ କରୁଥିବା ବେଳେ ରତ୍ନାବତୀ ରାଣୀର କାମବାସନାକୁ ଭର୍ତ୍ସନା କରିଛନ୍ତି । ଏହି ଦୁଇ ଉପାଖ୍ୟାନକୁ ମିଳେଇ କୁନ୍ତୀ ଓ ମାଦ୍ରୀଙ୍କ ପରଦାର ଗ୍ରହଣ କଥା ବିଚାର କରାଯାଇ ପାରେ । ସେମାନେ କାମବାସନାର ପରିତୃପ୍ତି ପାଇଁ ନୁହେଁ, ବଂଶରକ୍ଷା ଉଦ୍ଦେଶ୍ୟରେ ସ୍ୱାମୀଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ବିଭିନ୍ନ ଦେବତାମାନଙ୍କ ସହ ମିଳିତ ହେଲେ । ସେମାନେ ଦୂଷିତା ନୁହନ୍ତି । ସାରଳା ଦାସ କୁନ୍ତୀ ଓ ମାଦ୍ରୀଙ୍କ ପରଦାର ଦୋଷର ପ୍ରକ୍ଷାଳନ ପାଇଁ ପୂର୍ବପୀଠିକା ରୂପେ ଏହି ଦୁଇଟି ଉପାଖ୍ୟାନକୁ ବର୍ଣ୍ଣନା କରିଥିବା ପରି ମନେ ହୁଏ ।

ସ୍ୱେଚ୍ଛାଚାରିଣୀ ନାରୀ ଓ ସ୍ୱାମୀ ଆଦେଶରେ ବଂଶରକ୍ଷା ଉଦ୍ଦେଶ୍ୟରେ ପରପୁରୁଷ ସହ ମିଳିତ ହେଉଥିବା ନାରୀଙ୍କ ମଧ୍ୟରେ ପାର୍ଥକ୍ୟ ଦର୍ଶାଇବା ପାଇଁ ପାଣ୍ଡୁ ସଂସ୍କୃତ ମହାଭାରତରେ ଉଦ୍ଦାଳକ ମୁନିଙ୍କ ଉପାଖ୍ୟାନର ବର୍ଣ୍ଣନା କରିଛନ୍ତି । ଉଦ୍ଦାଳକ ମୁନିଙ୍କ ସମ୍ମୁଖରେ ତାଙ୍କ ସ୍ତ୍ରୀଙ୍କୁ ଅନ୍ୟ ଜଣେ ବ୍ରାହ୍ମଣ ଟାଣି ନେଇ 'ଚାଲ ଆମେ ଯିବା ' କହିବାରୁ ଉଦ୍ଦାଳକ ମୁନିଙ୍କ ପୁତ୍ର ଶ୍ୱେତକେତୁ କ୍ରୋଧାନ୍ୱିତ ହେଲେ । ଉଦ୍ଦାଳକ ପୁତ୍ର ଶ୍ୱେତକେତୁଙ୍କୁ ଶାନ୍ତ କରିବାକୁ ଯାଇ କହିଲେ, ନାରୀମାନେ ଗୋରୁ ପରି ସ୍ୱେଚ୍ଛାଚାରିଣୀ । ଏହା ସେମାନଙ୍କର ଧର୍ମ । ଏଥିରେ ବି[illegible]ଭାବିକ ନୁହେଁ । ଶ୍ୱେତକେତୁ କିନ୍ତୁ ପିତାଙ୍କ କଥାରେ ଶାନ୍ତ ହେଲେ ନାହିଁ । ସେ

ନାରୀମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ଶାସ୍ତ୍ର-ନିୟମ ସବୁ ପ୍ରଣୟନ କଲେ । ସେଥିରେ କିନ୍ତୁ ସ୍ୱାମୀ ଆଦେଶରେ ପରପୁରୁଷ ସହ ମିଳିବାରେ ବାଧା ନଥିଲା । ଏହି ସବୁ କଥା କହି, ପାଣ୍ଡୁ କୁନ୍ତୀଙ୍କୁ ବ୍ରାହ୍ମଣ ଓ ଦେବତାଙ୍କ ମଧ୍ୟରୁ କାହାରି ସହ ମିଳିତ ହେବାପାଇଁ ଅନୁରୋଧ କଲେ ।

**୧୭। ଯୁଧିଷ୍ଠିର ଜନ୍ମ :** ସଂସ୍କୃତ ଓ ଓଡ଼ିଆ ଉଭୟ ମହାଭାରତରେ ଧର୍ମ ଦେବତା ହେଉଛନ୍ତି ଯୁଧିଷ୍ଠିରଙ୍କ ଜନକ । ସଂସ୍କୃତ ମହାଭାରତରେ ଧର୍ମ ଦେବତାଙ୍କୁ ଆମନ୍ତ୍ରଣ କରିବା ପୂର୍ବରୁ ଯେଉଁ ସବୁ ବିଚାର ହେଲା ସେଥିରୁ ଦୁଇଟି କଥା ମୁଖ୍ୟ । ପ୍ରଥମ ହେଉଛି ବ୍ରାହ୍ମଣ ଓ ଦେବତାଙ୍କ ମଧ୍ୟରୁ ଦେବତାଙ୍କୁ ଆମନ୍ତ୍ରଣ କରିବା ଉଚିତ । କାରଣ ଦେବତାଙ୍କ ଠାରୁ ପୁତ୍ର ସଦ୍ୟ ଜାତ ହେବ ଏବଂ ମନୁଷ୍ୟଙ୍କ ଠାରୁ ସନ୍ତାନ ଜାତ ହେବା ପାଇଁ ସମୟ ଆବଶ୍ୟକ । ଦ୍ୱିତୀୟରେ ବିଭିନ୍ନ ଦେବତାଙ୍କ ମଧ୍ୟରୁ ଧର୍ମ ଦେବତାଙ୍କୁ ନିର୍ବାଚନ କରିବାର କାରଣ ହେଲା, ରାଜାମାନେ ଧର୍ମଜ୍ଞ ହେଲେ ପ୍ରଜାମାନେ ସୁଖରେ ରହିବେ ।

ସାରଳା ମହାଭାରତରେ ସଦ୍ୟ ବା ସଇନ୍ଦୁ ଜାତ କଥାଟି ଥିଲେ ମଧ୍ୟ କାରଣ ସମାନ ନୁହେଁ । ସାରଳା ଦାସଙ୍କ ମତରେ ପରପୁରୁଷ ସହ ସମାଗମ କଲେ ନାରୀ ବ୍ୟଭିଚାରିଣୀ ହୁଏ, ଅଥଚ ଦେବତା ସହବାସରେ ସେ ଦୋଷ ନାହିଁ । ସେଥିପାଇଁ ଅଗସ୍ତିଙ୍କ ପରାମର୍ଶରେ ଦେବତାମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ସ୍ଥିର ହେଲା ।

ସଂସ୍କୃତରେ ଦ୍ୱିତୀୟ କଥାକୁ ମଧ୍ୟ ସାରଳା ଦାସ ପରିବର୍ତ୍ତନ କରିଛନ୍ତି । ରାଜ୍ୟପାଳକ ପାଇଁ ଧର୍ମଜ୍ଞ ପୁରୁଷର ଆବଶ୍ୟକତା ସେ ଅନୁଭବ କରି ନାହାନ୍ତି । ଯାହା ହେବାର ଅଛି ତାହାହିଁ ହେବ । ଅଗସ୍ତି ଶାସ୍ତ୍ର ପୁରାଣ ଦେଖି କହିଲେ-

ଯେବେ ତୋତେ ହୋ କହୁ ଅଛୁଂ ଆଗତକୁ
ଧର୍ମେଣ ପୁତ୍ର ଗୋ ପ୍ରାପତ ହେବ ତୁକୁ ।
ପବନେଣ ପୁତ୍ର ହୋଇବ ସମ୍ଭୂତ
ଇନ୍ଦ୍ର ଦେବତା ତହୁଂ ଗୋ ପୁତ୍ରେକ ହେବ ଜାତ । (ପୃ-୨୦୭)

ସେହିପରି ମାଦ୍ରୀଙ୍କର ଅଶ୍ୱିନୀକୁମାରଙ୍କ ଠାରୁ ଦୁଇ ପୁତ୍ର ଜାତ ହେବେ । ଅଗସ୍ତି ଆଗତା କଥାର ସୂଚନା ଦେଇ କୁନ୍ତୀଙ୍କୁ ଦେଲେ ଅଭିମନ୍ତ୍ରିତ କୁଶ ଶଯ୍ୟା ଓ ମାଦ୍ରୀଙ୍କୁ ଦେଲେ ମୋହନ ଅଞ୍ଜନ ।

ସଂସ୍କୃତ ମହାଭାରତରେ ଧର୍ମଦେବତା ହେଉଛନ୍ତି, ଦେବଗଣ ମଧ୍ୟରେ ସର୍ବାପେକ୍ଷା ପୁଣ୍ୟବାନ (ସହିଦେବେଷୁ ପୁଣ୍ୟଭାକ୍) । ସେ ସୂର୍ଯ୍ୟ ତୁଲ୍ୟ ଉଜ୍ଜ୍ୱଳ ବିମାନ ଅରୋହଣ କରି କୁନ୍ତୀଙ୍କ ପାଖରେ ଉପସ୍ଥିତ ହେଲେ । ସାରଳା ମହାଭାରତରେ ଧର୍ମଦେବତା ହେଉଛନ୍ତି, 'ନିରଞ୍ଜନ ପୁରୁଷ', 'ଶୁକ୍ଳାମ୍ବର ପୁରୁଷ', 'ଧର୍ମନିରଞ୍ଜନ', 'ଅକ୍ଷୟ ନିରଞ୍ଜନ', ଓ 'ଶୂନ୍ୟପୁରୁଷ' । ଶୁଦ୍ଧ ସ୍ଫଟିକ ବା ଶରଦ ଆଦିତ୍ୟ ପ୍ରାୟେ ତାଙ୍କର ତନୁ । ସଂସ୍କୃତରେ ଅଛି

ଧର୍ମଦେବତାର ଔରସରୁ ଜାତ ପୁତ୍ର କେବେ ହେଲେ ଅଧର୍ମରେ ପ୍ରବୃତ୍ତ ହେବ ନାହିଁ (୪୭) । ଧର୍ମରେ ପ୍ରଜାପାଳନ ହେବ ଓ ଲୋକେ ସେହି ପୁତ୍ରକୁ ସାକ୍ଷାତ ଧର୍ମ ଭାବେ ପୂଜା କରିବେ । ସାରଳା ଦାସ ମଧ୍ୟ କହିଛନ୍ତି-

ଯେ ମଧ୍ୟ ଭୁବନେ ହେବୁ ତୁହି ସେ ଧର୍ମ ଦେବତା । (ପୃ-୯-୨୧୧)

ମଞ୍ଚପୁରରେ ଯେଉଁ ଦେବତାମାନେ ଜନ୍ମଗ୍ରହଣ କରିବେ ଏପରିକି ନାରାୟଣ ହେଲେ ମଧ୍ୟ ତୋତେ ସେବା କରିବେ । ତୋର ନାମ ଉଚ୍ଚାରଣ କଲେ କୋଟି ଅଶ୍ୱମେଧ ଯଜ୍ଞ ଏବଂ କୋଟି ତୀର୍ଥସ୍ଥାନର ଫଳ ମିଳିବ ।

ଅନୁବ୍ରତେ ଧର୍ମବ୍ରତ ଯେ ତୋହୋର ଇଚ୍ଛା
ଯେବେ ଯେ ସୃଷ୍ଟି ବାବୁ ଧର୍ମେକର ରକ୍ଷା । (ପୃ-୨୧୨)

୧୮। **ଦୁର୍ଯ୍ୟୋଧନ ପ୍ରଭୃତିଙ୍କର ଜନ୍ମ :** ସାରଳା ଦାସଙ୍କ ମହାଭାରତରେ ନବଜାତ ଯୁଧିଷ୍ଠିରଙ୍କୁ ଦେଖିବାକୁ ଆସିଥିବା ଧୃତରାଷ୍ଟ୍ରଙ୍କୁ ପାଣ୍ଡୁ କହିଛନ୍ତି-

ସନ୍ତାନକୁ ଇଚ୍ଛା ତୁ କର ନୃପମଣି
ଗାନ୍ଧାରୀକି ପୁତ୍ର ନାହିଂ ମୁଂ ବଶିଷ୍ଠଙ୍କ ତହୁଂଅଛି ଶୁଣି । (ପୃ-୨୧୭)

ଏହାପରେ ପାଣ୍ଡୁ ବ୍ୟାସଙ୍କୁ ଅନୁନୟ କରି କହିଛନ୍ତି-

ବୁଡ଼ନ୍ତେଣ ବଂଶ ସ୍ୱାମୀ ତୁହି ସେ କଲୁ ରକ୍ଷା
ଯେବେ ଏମନ୍ତ ଧୃତରାଷ୍ଟ୍ରଙ୍କର ସନ୍ତାନ ହୋଅଇ ସେକଥା କର ବାଞ୍ଛା ।

ସଂସ୍କୃତ ମହାଭାରତ ଅନୁଯାୟୀ ଗାନ୍ଧାରୀ ଶତପୁତ୍ର ଲାଭ କରିବା ପାଇଁ ଦୁଇଥର ବର ପାଇଥିଲେ । ଥରେ ବିବାହ ପୂର୍ବରୁ ମହାଦେବଙ୍କୁ ସେବାକରି ଓ ଦ୍ୱିତୀୟଥର ବିବାହ ପରେ କ୍ଷୁଧା ଓ ପଥଶ୍ରମରେ କାତର ହୋଇଥିବା ବ୍ୟାସଦେବଙ୍କୁ ପରିଚର୍ଯ୍ୟାରେ ସନ୍ତୁଷ୍ଟ କରି । ଦ୍ୱିତୀୟ ବର ପାଇବା ପରେ ସେ ଗର୍ଭ ଧାରଣ କଲେ । ଦୁଇ ବର୍ଷ ପର୍ଯ୍ୟନ୍ତ ଗର୍ଭଧାରଣ କଲେହେଁ ପ୍ରସବ ହୋଇ ନ ଥିଲା । ଇତି ମଧ୍ୟରେ କୁନ୍ତୀ ଦେବୀଙ୍କର ପୁତ୍ର ଜାତ ହେଲା । ଏକଥା ଶୁଣି, ସେ ଅତ୍ୟନ୍ତ ମନୋଦୁଃଖରେ କର୍ତ୍ତବ୍ୟ ଜ୍ଞାନ ଶୂନ୍ୟ ହୋଇ, ଧୃତରାଷ୍ଟ୍ରଙ୍କର ଅଜ୍ଞାତରେ ଗର୍ଭପାତ କଲେ । ସେହି ଗର୍ଭରୁ ଲୌହପିଣ୍ଡ ସଦୃଶ କଠିଣ ଏକ ମାଂସପିଣ୍ଡ ଜନ୍ମ ହେଲା । ଗାନ୍ଧାରୀ ସେଇ ମାଂସ ପିଣ୍ଡକୁ ପକେଇ ଦେବାପାଇଁ ଉଦ୍ୟୋଗ କଲେ । ବେଦବ୍ୟାସ ଏ ସବୁ କଥା ଧ୍ୟାନ ବଳରେ ଜାଣି ସେହି ସ୍ଥାନରେ ଶୀଘ୍ର ଉପସ୍ଥିତ ହେଲେ ଏବଂ ଏକଶତ କଳସୀରେ ଘୃତପୂର୍ଣ୍ଣ କରିବାକୁ ଆଦେଶ ଦେଲେ । ଏହାପରେ ସେହି ମାଂସ ପିଣ୍ଡକୁ ଶୀତଳ ଜଳରେ ସିକ୍ତ କରିବା ଫଳରେ ଏହା ବହୁ ଖଣ୍ଡରେ ବିଭକ୍ତ ହୋଇଗଲା । ପରେ ସେହି ମାଂସପିଣ୍ଡ ଅଙ୍ଗୁଷ୍ଠ ପର୍ବ ପ୍ରମାଣରେ ଏକଶତ ଏକ ଗର୍ଭରେ ପରିଣତ ହୋଇ ପୃଥକ ପୃଥକ ଭାବେ ବିଶ୍ଳିଷ୍ଟ ହୋଇଗଲା । ଗାନ୍ଧାରୀ ସେହି ଗର୍ଭ ସବୁକୁ ଘୃତ କଳସୀ ମଧ୍ୟରେ ରଖି ସୁରକ୍ଷିତ ସ୍ଥାନରେ

ରଖିଲେ । ବ୍ୟାସଙ୍କ ଉପଦେଶାନୁଯାୟୀ ଏକବର୍ଷ ପରେ ସେହି ସବୁ କଳସୀକୁ ଖୋଲିବାରୁ ସେଥିରୁ ଏକଶତ ପୁତ୍ର ଓ ଏକ କନ୍ୟା ଜାତ ହେଲେ ।

ସଂସ୍କୃତ ମହାଭାରତର ଏହି ଗଳ୍ପ ସାରଳା ମହାଭାରତରେ ଦେଖିବାକୁ ମିଳେନାହିଁ । ପଣ୍ଡୁଙ୍କ ପରାମର୍ଶ ଶୁଣିବା ପରେ ଧୃତରାଷ୍ଟ୍ର ବିଷଣ୍ଣ ବଦନରେ ବ୍ୟାସଙ୍କୁ ପୁତ୍ର ପାଇଁ ଅନୁରୋଧ କଲେ । ବ୍ୟାସ ମଧ ଦେଖିଲେ ଯେ ଧୃତରାଷ୍ଟ୍ରଙ୍କ ଜାତକରେ ପୁତ୍ର ନାହିଁ । ସେଥିପାଇଁ ସେ ଏକ ମହାଯଜ୍ଞର ଆୟୋଜନ କଲେ । ବିଛା ମାସ ଶୁକ୍ଳପକ୍ଷ ଚଉଠି ତିଥି ଗୁରୁବାର ଦିନ ବାଣିଜ୍ୟକରଣ ଓ ଶୂଳ ଯୋଗରେ ଯମୁନା ନଦୀ କୂଳରେ ଯଜ୍ଞ ଆରମ୍ଭ ହେଲା । ଜମି ଚାଷ ହୋଇ ପାଗ ହେଲା । ମକର ମାସ ମଧରେ ତିଳରେ ଫୁଲ ଫୁଟିଲା । ଶୁଭ ଅନୁକୂଳରେ ଯଜ୍ଞଶାଳ ନିର୍ମାଣ କରି ମକର ପଞ୍ଚମୀ ଦିନ ଯଜ୍ଞର ଆରମ୍ଭ ହେଲା । ବଶିଷ୍ଠ, ମାର୍କଣ୍ଡ, ବିଶ୍ୱାମିତ୍ର ଓ ଅଗସ୍ତି ପ୍ରଭୃତି ବିଶିଷ୍ଟ ଋଷିମାନେ ଆସି ସେଠାରେ ଉପସ୍ଥିତ ହେଲେ । ଚତୁର୍ବେଦରୁ ବ୍ରାହ୍ମଣ ମଧ ନିମନ୍ତ୍ରିତ ହେଲେ । ଦିଗପାଳମାନଙ୍କୁ ବରଣ କରାଗଲା । ରାଜା ମହାଯଜ୍ଞ କୁଣ୍ଡରେ ଶହେ ଆଠଥର କନକ ଆଞ୍ଜୁଳି, ଶହେ ଥର ଘୃତ ଆଞ୍ଜୁଳି ଦେଲେ । ଯବ ତିଳ ଓ ପୁଷ୍ପ ଶହେଥର ବିଞ୍ଚିଲେ । ଏତିକିବେଳେ ତପସ୍ୱୀମାନେ ମହାମନ୍ତ୍ର ପାଠ କରୁଥିଲେ, ବ୍ରାହ୍ମଣମାନେ ହବି ପ୍ରଦାନ କଲେ । ବିଭିନ୍ନ ପ୍ରକାରର ଶୀତଳ ଦ୍ରବ୍ୟ ଭୋଗ ରୂପେ ସମର୍ପିତ ହେଲା । ଧୃତରାଷ୍ଟ୍ର ରାଜ୍ୟର ଚାରିପଟେ ଥିବା ପଞ୍ଚ ତୀର୍ଥରେ ସ୍ନାନ କଲେ । ପାଞ୍ଚଦିନ ପର୍ଯ୍ୟନ୍ତ ଆହୁତି ପ୍ରଦାନ କରାଗଲା । ଏସବୁ ସତ୍ତ୍ୱେ ଅଗ୍ନି ବାମାବର୍ତ୍ତ ହୋଇ ବୁଲିଲା ।

କନ୍ୟା ଜାତର ଏହା ସଙ୍କେତ । ପୁଣି ଅଗ୍ନିକୁ ଆରାଧନା କରିବା ଫଳରେ ଅଗ୍ନି ଡାହାଣ ବ୍ରତ ହୋଇ ବୁଲିଲା । କନକ ଭାଣ୍ଡ ଭିତରେ ଘୃତ ଦେଇ ତିନିପୋଷ ତଣ୍ଡୁଳ ଦିଆଗଲା । ସେଥିରୁ ମାତ୍ର 'ଶତେଗୋଟି' ଫୁଟିଲା । ସେହି ଅନ୍ନ ଗ୍ରାସ କରିବାରୁ ଗାନ୍ଧାରୀ ଗର୍ଭବତୀ ହେଲେ ।

ଦିନେ ଗାନ୍ଧାରୀ ବୈଶାଖମାସ ଖରାରେ ବିମାନ ଆରୋହଣ କରି ଗଙ୍ଗାସ୍ନାନ କରିବାକୁ ବାହାରିଲେ । ଖରା ତାପରେ ଗର୍ଭଭାରା ସମ୍ଭାଳି ପାରିଲେ ନାହିଁ । ଚରୁଅନ୍ନ ସବୁକୁ ଉଦ୍‌ଗାର କରି ପକାଇ ମୂର୍ଚ୍ଛାଗଲେ । ସେ ସବୁ ଅନ୍ନ ସେହିପରି ଅତୁଟ ଥିଲା । ଜଳରେ ପଡି ସୁନାପରି ଦେଖାଗଲା । ଏତିକିବେଳେ ବ୍ୟାସ ସ୍ନାନ କରିବାକୁ ଯାଉଥିଲେ । ଏଥକ [illegible] ଘଟଣା ଦେଖି ମହାମନ୍ତ୍ରରେ କମଣ୍ଡଳରୁ ଜଳ ସିଞ୍ଚି ସେ ସବୁଙ୍କୁ ଜୀବନ୍ୟାନ [illegible] ଦେଲେ । ଗାନ୍ଧାରୀ ସେହି ଶତ ପୁତ୍ରଙ୍କୁ ବିମାନରେ ଶୁଆଇ ରାଜମନ [illegible] ନେଇ ଆସିଲେ ।

ଉଭୟ [illegible] ରେ ବ୍ୟାସଙ୍କ ଅଲୌକିକ ଶକ୍ତିହିଁ ପୁତ୍ର ଜନ୍ମର କାରଣ । ସଂସ୍କୃତରେ ବ୍ୟାସଙ୍କ ବରଦାନକୁ ଗୁରୁତ୍ୱ ଦିଆଯାଇଥିବା ବେଳେ ସାରଳା ଦାସ ବ୍ୟାସଙ୍କ ଅନୁଷ୍ଠିତ ପୁତ୍ରେଷ୍ଟି ଯଜ୍ଞକୁ ମହତ୍ତ୍ୱ ଦେଇଛନ୍ତି । ଏହି ପାର୍ଥକ୍ୟରୁ କେବଳ ଏତିକି ଅନୁମାନ କରାଯାଇ ପାରେ ଯେ ସାରଳାଦାସ ମୂନୀ ମାନଙ୍କ ବରଦାନ ଓ ମାଂସ ପିଣ୍ଡରୁ ପୁତ୍ରୋତ୍ପତ୍ତି ଅପେକ୍ଷା ଯଜ୍ଞ ଫଳ ଓ

ତରୁ ଅନ୍ନରୁ ପୁତ୍ରଜାତକୁ ଅଧିକ ସ୍ବାଭାବିକ ଭାବିଛନ୍ତି । ରାମ କଥାର ବିକାଶରେ ମଧ ଏହି ପରିବର୍ତ୍ତନ ପରିଲକ୍ଷିତ ହୁଏ । ବାଲ୍ମିକୀ ରାମାୟଣର ଅଶ୍ୱମେଧ ଯଜ୍ଞ ପରେ ପୁତ୍ରେଷ୍ଟି ଯଜ୍ଞରେ ପରିଣତ ହୋଇଥିଲା ।

ସଂସ୍କୃତ ମହାଭାରତରେ ଦୁର୍ଯ୍ୟୋଧନ ଜନ୍ମହେବା କ୍ଷଣି ଗର୍ଦ୍ଦଭ ସଦୃଶ କର୍କଶ ସ୍ୱରରେ, ରୋଦନ କରିଥିଲେ । ସେହି ଶବ୍ଦକୁ ଲକ୍ଷ୍ୟ କରି ଗର୍ଦ୍ଦଭ, ଶକୁନ, ଶୃଗାଳ ଓ କାକଗଣ ଶବ୍ଦ କରିବାକୁ ଲାଗିଲେ । ପ୍ରବଳ ବେଗରେ ପବନ ପ୍ରବାହିତ ହେବାକୁ ଲାଗିଲା ଓ ଚାରି ଆଡ଼େ ଅଗ୍ନି ବର୍ଷା ହେଲା । ଏଥିରେ ଧୃତରାଷ୍ଟ୍ର ଭୟଭୀତ ହୋଇ ବହୁ ବ୍ରାହ୍ମଣ, ଭୀଷ୍ମ, ବିଦୁର, ଅନ୍ୟାନ୍ୟ ବନ୍ଧୁଗଣ ଓ କୁରୁ ବଂଶୀୟ ଅନ୍ୟାନ୍ୟ ଲୋକମାନଙ୍କୁ ଡ଼ାକି ଏସବୁ ଅପଶକୁନ କଥା ବର୍ଣ୍ଣନା କଲେ । ତାଙ୍କ ବର୍ଣ୍ଣନା ସମାପ୍ତ ହେବା ସଙ୍ଗେ ସଙ୍ଗେ ମାଂସଭୋଜି ଭୟଙ୍କର ପ୍ରାଣୀଗଣ ଏବଂ ଅମଙ୍ଗଳସୂଚକ ଶୃଗାଳ ଗଣ ରବ କରିବାକୁ ଲାଗିଲେ । ସବୁଆଡ଼େ ଏହି ସବୁ ଦୁର୍ଲକ୍ଷଣ ଦେଖି ବ୍ରାହ୍ମଣଗଣ ତଥା ବିଦୁର ଧୃତରାଷ୍ଟ୍ରଙ୍କୁ କହିଲେ ଯେ ତାଙ୍କର ଜ୍ୟେଷ୍ଠପୁତ୍ର ବଂଶନାଶର କାରଣ ହେବ । ତେଣୁ ଏହାକୁ ପରିତ୍ୟାଗ କରିବା ସର୍ବଥା କର୍ତ୍ତବ୍ୟ । ପୁତ୍ର ସ୍ନେହ ହେତୁ ଧୃତରାଷ୍ଟ୍ର ଏହା କରିପାରି ନ ଥିଲେ ।

ଓଡ଼ିଆ ମହାଭାରତରେ ଉପଦେଷ୍ଟା ଭାବରେ କେବଳ ବିଦୁରଙ୍କୁ ଦେଖିବାକୁ ମିଳେ । ସେ ଦୁର୍ଯ୍ୟୋଧନଙ୍କୁ ଏକ ପକ୍ଷରେ ଗୁଣବନ୍ତ, ଲକ୍ଷଣବନ୍ତ, ବିବେକୀ ଓ ଧାର୍ମିକ କହୁଥିବା ବେଳେ ଅନ୍ୟ ପକ୍ଷରେ ତାଙ୍କୁ 'ଦୁଷ୍ଟ ପ୍ରକୃତି' ବିଶିଷ୍ଟ, 'ମହାମାନୀ,' 'ମଧୁ ପିଙ୍ଗଳ' ଓ 'କଳହ ପ୍ରିୟ' କହିଛନ୍ତି । ସେ ଦୁର୍ଯ୍ୟୋଧନଙ୍କୁ ସ୍ୱୟଂ 'ପନ୍ନଗା ନାରାୟଣ', 'ଜଗୁଜନ ମୋହନ, 'ପୃଥ୍ୱୀକି ଧାରଣା' ରୂପେ ବର୍ଣ୍ଣନା କରୁଥିବା ବେଳେ ଅନ୍ୟସ୍ଥଳରେ 'କଳି ଅଂଶେ ଜାତ' ହେତୁ ଜଗତରେ ବହୁ ଅପଖ୍ୟାତ ଓ ଅପକୀର୍ତ୍ତି ଅର୍ଜନ କରିବାର କାରଣ ରୂପେ ଗ୍ରହଣ କରିଛନ୍ତି । ପରିଶେଷରେ ସଂସ୍କୃତ ମହାଭାରତ ପରି ବିଦୁର ଦୁର୍ଯ୍ୟେଧନଙ୍କୁ ପରିତ୍ୟାଗ କରିବା ପାଇଁ ଉପଦେଶ ଦେଇ କହିଛନ୍ତି-

ଯେକ ପୁତ୍ରକୁ ଯେବେ ମୂର୍ଚ୍ଛିପାରିବୁ ଦଣ୍ଡଧାରୀ
ଆଂଗ୍ୟା ଦେବୁ ଏହାକୁ କି ପକାଇବି ମାରି ।
ଯେକ ପୁତ୍ରନାଶ ଗଲେ ତୋର ଅନେଶ୍ୱତ ପୁତ୍ର ଭଲେଥିବେ
ଚିରନ୍ତନ ପୃଥ୍ୱୀ ଭୋଗ କରିବୁ ତୋତେ ଧର୍ମ ନଛାଡ଼ିବେ । (ପୃ-୨୨୫)

ଧୃତରାଷ୍ଟ୍ର ପରେ ଅନ୍ୟ ପୁତ୍ରମାନଙ୍କ ଗୁଣ, ଲକ୍ଷଣ, କଥା ପଚାରିବାରେ ବିଦୂର-

ଗୋଟି ଗୋଟି କରି ଲକ୍ଷଣ ବିଚାରି ବିଦୁର ମହାତମା
ଯେକୁଂ ଯେକ ଦୁଷ୍ଟ ଯେ ଅଟନ୍ତି ଅପ୍ରତିମା
ଅପ୍ରୀତି ଲକ୍ଷଣ ଯେ ସମସ୍ତେ ମହାଦୁଷ୍ଟ

ଯେବେ ଆନନ୍ଦ ହୋଇଛୁଂ ପଛନ୍ତେ ପାଇବୁ ଦାରୁଣ କଷ୍ଟ (ପୃ-୨୨୫)

ବିଦୁରଙ୍କ ଠାରୁ ସବୁ ପୁଅଙ୍କର ଲକ୍ଷଣ ଶୁଣିବା ପରେ ଧୃତରାଷ୍ଟ୍ରଙ୍କ ଶେଷ ନିଷ୍ପତି ହେଲା-

କର୍ମେ ଯାହା ଫଳିବ ତାହା କେହୁ ଆନ କରି ।
ଭାଗ୍ୟେ ଯେ ପ୍ରାପତ ତାହା ମୂର୍ଚ୍ଛିବା କେମନ୍ତେ । (ପୃ-୨୨୬)

କର୍ମକୁ ଆଦରି ସବୁ ସହିବା ପାଇଁ ବିଚାର କଲେହେଁ ମନ ବୁଝିଲା ନାହିଁ । ଭଲ କରି ଜାଣିବା ପାଇଁ ବ୍ୟାସଙ୍କୁ ସ୍ମରଣ କଲେ । ବ୍ୟାସ ଆସି ପହଞ୍ଚି ପ୍ରଥମ ପୁତ୍ରକୁ କୋଳକୁ ନେଇ କହିଲେ ''ଯେ ପୁତ୍ର ବଡ଼ ବିଚକ୍ଷଣ'' । ଶରୀର ଆଉଁଶି ଶରୀରକୁ ବଜ୍ର କଲେ । ଦୁଇ ଜାନୁ ଏକ ସ୍ଥାନରେ ଲାଗିଥିବାରୁ ତହିଁରେ ବ୍ୟାସଙ୍କର ହସ୍ତ ଲାଗିଲା ନାହିଁ, ଛିଦ୍ର ରହିଗଲା ।

ଆମ୍ଭର ପର୍ଜନ ଯେହାରି ତହିଁ କଥାଯେ ଥାଉ

ଏହି ଅଭିମାନରେ ବ୍ୟାସଋଷି ଗୋଟିକ ପରେ ଗୋଟିଏ ବର ଦେଲେ । 'ଅଇବ୍ରତେକ ସିଂହର ପରାକର୍ମ' ହେଉ । ଜଗଜିଣା ହୋଅ । ସଂସାରରେ କେହି ସଂଗ୍ରାମରେ ଜିଣନ୍ତା ହେବେ ନାହିଁ । ଏହିପରି ଗୋଟିକପରେ ଗୋଟିଏ ବର ଦେଇ ଯାଉଥିବା ବେଳେ ଦୁର୍ଯ୍ୟୋଧନର ଦକ୍ଷିଣ ଚରଣ ବ୍ୟାସଙ୍କ ହୃଦୟରେ ବାଜିବାରୁ ସେ ଅସାଷ୍ଟମ ହୋଇ ପଡ଼ିଗଲେ । ନାକରୁ ରକ୍ତ ବାହାରିଲା । ଚେତା ପଶିବାରୁ ଋଷି ରାଗିକରି କହିଲେ, ଯେଉଁ ଚରଣ ଘାତରେ ମୋର କଚ୍ଛଆତ୍ମା କଷ୍ଟ ପାଇଲା ସେହି ଚରଣ ଭାଙ୍ଗି ତୋର ମୃତ୍ୟୁ ହେଉ । ପୁଣି କହିଲେ-

ଅଇବ୍ରତେକ ସିଂହର ପ୍ରାର୍କମ ତୋହୋର
ଯେକା ସିଂହର ପ୍ରାକର୍ମେ ତୁ ହୋଅ ଅପହାର ।

ପ୍ରଥମେ ହୃଦୟରେ ଦୁର୍ବୁଦ୍ଧି ଜାତ କରାଇବାରୁ ପୁତ୍ରର ନାମ ହେଲା ଦୁର୍ଯ୍ୟୋଧନ । ନିକଳଙ୍କ ପୁତ୍ରକୁ କଳଙ୍କ ଲାଗି ବାରୁ ଧୃତରାଷ୍ଟ୍ର ଦୁର୍ଭାସାଙ୍କୁ ଚିନ୍ତାକଲେ । ଦୁର୍ଭାସା ଆସି ଦ୍ୱିତୀୟ ପୁତ୍ରକୁ ମୁଖେ ଚୁମ୍ବନ ଦେଇ କୋଳକୁ ନେଲେ । ବ୍ୟାସଙ୍କ ପରି ସେ ଦ୍ୱିତୀୟ ପୁତ୍ରକୁ ଶତସିଂହର ପରାକ୍ରମ ଲାଭ କରିବା ପାଇଁ ବର ଦେଲେ । ସେତିକିବେଳେ ବାଳ ତନୟର ହସ୍ତ ମୁଷ୍ଟି ଦୁର୍ଭାସାଙ୍କ ବକ୍ଷସ୍ଥଳରେ ବାଜିବାରୁ ସେ ଅସାଷ୍ଟମ ହୋଇ ପଡ଼ିଗଲେ । ଦୁଃସହ ଘାତ ହେବାରୁ ପୁତ୍ରର ନାମ ହେଲା ଦୁଃଶାସନ । ଋଷି ରାଗରେ ଅଭିଶାପ ଦେଇ କହିଲେ-

ମୋହୋର ଶାପ ତୋତେ ନ ଯାଉରେ ଗଡ଼ି ।
ସୋଦର ଶାସ୍ତି ଦେଉ ତୋତେ ଦକ୍ଷିଣ ଭୁଜ ଉପାଡ଼ି (ପୃ-୨୨୮)

ସଞ୍ଜୟ ଯେତେବେଳେ ଦେଖିଲେ ଋଷିମାନେ ବର ଦେବାକୁ ଆସି ଅଭିଶାପ ଦେଉଛନ୍ତି, ସେତେବେଳେ ସେ ଆଉ ଋଷି ଙ୍କୁ ନ ଡାକିବା ପାଇଁ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଲେ ।

**୧୯- ଦୁର୍ଯ୍ୟୋଧନଙ୍କ ଅନ୍ୟାନ୍ୟ ଭ୍ରାତାଙ୍କ ନାମ :** ପ୍ରଥମ ପୁତ୍ରର ନାମ ଦୁର୍ଯ୍ୟୋଧନ

ଓ ଦ୍ୱିତୀୟ ପୁତ୍ରର ନାମ ଦୁଃଶାସନ ହେବାରୁ ଅନ୍ୟାନ୍ୟ ସବୁ ପୁତ୍ରଙ୍କ ନାମ 'ଦୁ' ଅକ୍ଷରରୁ ହିଁ ଆରମ୍ଭ ହେଲା ।

ସଂସ୍କୃତ ମହାଭାରତରେ ଦୁର୍ଯ୍ୟୋଧନଙ୍କ ଶତଭାଇମାନଙ୍କ ମଧ୍ୟରୁ ଯେଉଁ କେତେକଙ୍କ ନାମୋଲ୍ଲେଖ ହୋଇଛି ସେମାନେ ହେଲେ ।

୧-ଦୁଃଶଳ, ୨-ଦୁଃଶାସନ, ୩-ଦୁଃସହ, ୪-ଦୁରାଧନ, ୫-ଦୁରାଧର, ୬-ଦୁର୍ଜ୍ଜୟ, ୬-ଦୁର୍ଦ୍ଧର୍ଷ, ୮-ଦୁର୍ମ୍ମଦ, ୯-ଦୁର୍ମର୍ଷଣ, ୧୦-ଦୁର୍ମ୍ମୁଖ, ୧୧-ଦୁର୍ବଗାହ, ୧୨-ଦୁର୍ବିମୋଚନ, ୧୩ - ଦୁର୍ବିରୋଚନ, ୧୪- ଦୁର୍ବିସହ, ୧୫- ଦୁଷ୍କର୍ଣ୍ଣ,୧୬- ଦୁଷ୍ପରାଜୟ, ୧୭-ଦୁଷ୍ପ୍ରଧର୍ଷ, ୧୮-ଦୁଷ୍ପ୍ରଧର୍ଷଣ, ୧୯- ଦୃଢବର୍ମା ୨୦- ଦୃଢ଼କ୍ଷତ୍ର, ୨୧-ଦୃଢ଼ରଥ, ୨୨-ଦୃଢ଼ ରଥାଶ୍ରୟ, ୨୩-ଦୃଢ଼ସଂଧ, ୨୪-ଦୃଢ଼ ହସ୍ତ, ୨୫-ଦୃଢ଼ାୟୁଧ ।

ସାରଳା ଦାସ ଏହି ସବୁ ନାମ ମଧ୍ୟରୁ କେବଳ ଦୁର୍ଯ୍ୟୋଧନ, ଦୁଃଶାସନ, ଦୁର୍ଜ୍ଜୟ, ଦୁର୍ଦ୍ଧର୍ଷ, ଦୁର୍ମର୍ଷଣ, ଦୁର୍ବିଗ୍ରାହ, ଦୁର୍ବିମୋଚନ ନାମକୁ ରଖି ଅନେକ ପ୍ରବୃତ୍ତିରୁ 'ଦୁ'ଅକ୍ଷର ବିଶିଷ୍ଟ ଅନ୍ୟସବୁ ନାମର ସଂଯୋଜନା କରିଛନ୍ତି ।

**୨୦-ଭୀମ ଜନ୍ମ :** ଧର୍ମଙ୍କ ଯୁଧିଷ୍ଠିରଙ୍କ ଜନ୍ମର ଅବ୍ୟବହିତ ପରେ ପାଣ୍ଡୁ ପୁନର୍ବାର କୁନ୍ତୀଙ୍କୁ ଅନୁରୋଧ କରି କହିଲେ,''କୁନ୍ତୀ, ଲୋକେ କୁହନ୍ତି ଯେ କ୍ଷତ୍ରିୟ ଜାତି ପରାକ୍ରମରେ ସବୁ ଜାତିଠାରୁ ଶ୍ରେଷ୍ଠ । ଅତଏବ ଏକ ବଳଶାଳୀ ପୁତ୍ର ଲାଭକରିବା ପାଇଁ ଇଚ୍ଛା କର ।''

ପାଣ୍ଡୁଙ୍କଠାରୁ ଏକଥା ଶୁଣି କୁନ୍ତୀ ବାୟୁଦେବଙ୍କୁ ଆହ୍ୱାନ କଲେ ।

ବାୟୁଦେବ ମୃଗ ବାହନରେ ଆରୋହଣ କରି ଆସିଲେ ଓ କୁନ୍ତୀଙ୍କୁ କହିଲେ-''କୁନ୍ତି ମୁଁ ତୁମକୁ କଣ ଦେବି, ତୁମ୍ଭର ଅଭୀଷ୍ଟ କଣ-ତାହା କୁହ ?''

ବାୟୁଦେବଙ୍କର ଏହି ପ୍ରଶ୍ନର ଉତ୍ତର ଦେଇ କୁନ୍ତୀ କହିଲେ, ଦେବଶ୍ରେଷ୍ଠ । ମୋତେ ଏକ ବଳଶାଳୀ ପୁତ୍ର ଦାନ କରନ୍ତୁ ।

ସେହି ବାୟୁଦେବଙ୍କ ଠାରୁ ଭୟଙ୍କର ପରାକ୍ରମଶାଳୀ ଭୀମସେନ ଜନ୍ମଲାଭ କଲେ ।

ଭୀମସେନ ଜନ୍ମିବା ମାତ୍ରେ ଏକ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଥିଲା । କୁନ୍ତୀ ବ୍ୟାଘ୍ରର ଗର୍ଜ୍ଜନ ଶୁଣି ଭୟଭୀତ ହୋଇ ହଠାତ୍ ଉଠିଯିବା ଫଳରେ ଭୀମସେନ ଏକଖଣ୍ଡ ପଥର ଉପରେ ପଡ଼ି ସେହି ପଥର ଖଣ୍ଡକୁ ଶତ ଖଣ୍ଡରେ ଚୂର୍ଣ୍ଣ କରିଥିଲେ ।

ସାରଳାଦାସଙ୍କ ମହାଭାରତରେ ଭୀମସେନଙ୍କ ଜନ୍ମକଥା ଅତି ବିସ୍ତୃତ । ଯୁଧିଷ୍ଠିରଙ୍କୁ ସାତ ବର୍ଷ ହୋଇଥିବା ବେଳେ ଦିନେ ତାଙ୍କ ଦେହରେ ଗୋଟିଏ ମଶା ବସି କାମୁଡୁଥିଲା । ସେ ମଶାକୁ ମାରିବା ପରିବର୍ତ୍ତେ ଯୁଧିଷ୍ଠିର ତାକୁ ଧୀର କରି ଉଡ଼ାଇ ଦେଲେ । ସେହିପରି ଆଉ ଗୋଟିଏ ଘଟଣା ହେଉଛି, ଦିନେ ଲିମ୍ବ ଗଛରୁ ଗୋଟିଏ ଝିଟିପିଟି ପଥର ଉପରେ ପଡ଼ି

ଅଚେତ ହୋଇଗଲା । ଯୁଧିଷ୍ଠିର ଖେଳ ଖେଳିବା ବେଳେ ଏକଥା ଦେଖିପାରିଥିଲେ । ସେ ଝିଟିପିଟିରେ ବ୍ୟଥାରେ ବ୍ୟଥିତ ହୋଇ ତାହାର କାନ ଫୁଙ୍କିବାକୁ ଆରମ୍ଭ କଲେ । କୁନ୍ତୀ ପୁତ୍ରର ଏସବୁ କାର୍ଯ୍ୟକଳାପ ଦେଖି ମନେ ମନେ ଚିନ୍ତାକଲେ-

ଅତି ହିଁ ଧର୍ମପଣେ କି ରହଇ ଛତ୍ରୀପଣା (ପୃ-୨୩୨)

ଏକଥା ବିଚାର କରି ଶ୍ରାବଣ ଶୁକ୍ଳପକ୍ଷ ଚତୁର୍ଥୀ ବୃହସ୍ପତି ବାରରେ ଦୁର୍ଦ୍ଦଣ୍ଡ ପବନ ଦେବତାଙ୍କୁ ସ୍ମରଣ କଲେ ।

ପବନ ଦେବତାଙ୍କର ବାମ କରରେ ପାଶ,ଦକ୍ଷିଣ କରରେ 'ମୁଦ୍ଗର', ତାଙ୍କର ବର୍ଣ୍ଣ ଲୋହିତ । କବି ତାଙ୍କୁ 'ଅଦ୍ଭୁତ ମହାତ୍ମା', 'ଶୂନ୍ୟପୁରୁଷ', 'ଚେତନ ପୁରୁଷ' ଓ 'ଅମୃତ ପୁରୁଷ' ରୂପେ ବର୍ଣ୍ଣନା କରିଛନ୍ତି ।

ସଂସ୍କୃତ ମହାଭାରତର ଆଶ୍ଚର୍ଯ୍ୟ ଘଟଣା ସାରଳା ମହାଭାରତରେ ବହୁଗୁଣିତ ହୋଇ ପ୍ରକାଶ ପାଇଛି । ସେଠି ଖଣ୍ଡେ ପଥର ଶହେ ଖଣ୍ଡରେ ପରିଣତ ହୋଇଥିଲା । ଅଥଚ ସାରଳାଦାସଙ୍କ ମହାଭାରତରେ ଭୀମଙ୍କ ଜନ୍ମ ମାତ୍ରେ ଚାରିଶତ ଜୁଣ ଶତଶିଙ୍ଗ ଗିରି, ଆକାଶ ସମେତ ସପ୍ତବ୍ରହ୍ମାଣ୍ଡ, ନବଖଣ୍ଡ ମେଦିନୀ, ଆଠଲକ୍ଷ ପର୍ବତ, ଭୂବି ଭବନ, ଦେବରାଜା, ଗିରିରାଜା ଓ ଯମରାଜା କମ୍ପିବାକୁ ଆରମ୍ଭ କଲେ ।

ସଂସ୍କୃତରେ ବ୍ୟାଘ୍ର ଗର୍ଜନ ଶୁଣି କୁନ୍ତୀ ଉଠି ପଡ଼ିବାରୁ ଭୀମସେନ ତଳେ ପଡ଼ିଗଲେ । ସାରଳା ଦାସଙ୍କ ମହାଭାରତରେ ବ୍ୟାଘ୍ର ଗର୍ଜନ ଶୁଣି କୁନ୍ତୀ ଭୟଭୀତା ହୋଇ ଶତଶିଙ୍ଗ ପର୍ବତରେ ପୁତ୍ରକୁ ପକାଇ ଦେଇ ପଳାଇଲେ । ଭୀମସେନ ଶତଶିଙ୍ଗ ପର୍ବତ ଉପରେ ପଡ଼ିବାରୁ ପର୍ବତ ରସାତଳଗତ ହେଲା । ଏହା ଦେଖି ସକଳ ଦିଗପାଳ ଭୟଭୀତ ହୋଇଗଲେ ।

ବାଘ ଡରରେ କୁନ୍ତୀ ଯାଇ ଗଛ ଉପରେ ଚଢିଗଲେ । ଶ୍ରାବଣ ମାସର ଘୋର ଅନ୍ଧକାର । ପଶ୍ଚିମ ଦିଗରୁ ଖୁବ୍ ଜୋରରେ ବର୍ଷା ଓ ବତାସ ହେଉଛି । ବାଘ ଭୀମକୁ ଖାଇବ ବୋଲି ମାଡି ଆସିଲା । ଭୀମ ଗୋଡ଼ ହଲେଇ କାନ୍ଦୁଥିଲେ । ଦକ୍ଷିଣ ଗୋଡ଼ ବାଘ ମୁଣ୍ଡରେ ବାଜିବାରୁ ବାଘ ମୁଣ୍ଡ ଶତଖଣ୍ଡ ହୋଇ ଫାଟିଗଲା ।

ସକାଳ ହେଲା । ପାଣ୍ଡୁ ଫେରିଆସି ଦେଖିଲେ ସୁନ୍ଦର ବାଳୁତଟିଏ କାନ୍ଦୁଛି । ପାଖରେ ଏକ ବିରାଟ ବାଘ ମରି ଶୋଇଛି । ତାଙ୍କରି ଆଖି ଆଗରେ ପୁଅର ବାମ ଆଙ୍ଗୁଠି ବାଜି ଶତଶିଙ୍ଗ ଗିରିର ଶୃଙ୍ଗ ଶତଖଣ୍ଡ ହୋଇ ଭାଙ୍ଗିଗଲା । ଶତଶିଙ୍ଗ ରାଗି କରି ଶାପ ଦେଲା, ''ଆରେ ଆରେ ଭୀମା ତୁ ପ୍ରଥମ ଯୁଦ୍ଧେ ହାର ।''

ପାଣ୍ଡୁଙ୍କୁ ଦେଖି କୁନ୍ତୀ ଗଛରୁ ଓହ୍ଲାଇ ଆସି ସ୍ୱାମୀଙ୍କ ଆଗରେ ସବୁକଥା କହିଲେ । ପୁତ୍ରକୁ ପାଣ୍ଡୁଙ୍କ କୋଳରେ ସମର୍ପଣ କଲେ । ଶତଶିଙ୍ଗ ପର୍ବତର ଅଭିଶାପରେ କୁନ୍ତୀ ବ୍ୟଥିତ ହୋଇ କହିଲେ, ଲୋକେ ତୋତେ ଖଣ୍ଡ ଖଣ୍ଡ କରି କାଟିବେ । ଏତିକିରେ ତାଙ୍କ ମନ ଶାନ୍ତି

ହେଲା ନାହିଁ । ସେ ଆହୁରି ଶାପ ଦେବାକୁ ଇଚ୍ଛା କରୁଥିବା ଦେଖି ଶତଶୃଙ୍ଗ ପ୍ରସନ୍ନ ହୋଇ ଭୀମସେନକୁ ବରଦେଲା-

ଅବଶ୍ୟ ଯେ ପୁତ୍ର ତୋର ପ୍ରଥମ ଯୁଝରେ ହାରିବ
ଦୁଜ ଯୁଝରେ ମୋତେ ସୁମରଣା କରିବ ।
ପବନର ବୀର୍ଯ୍ୟେ ଜାତ ଯେ ତୋହୋର ପୁତ୍ର ଭୀମ
ଶତେ ସିଂହର ଯେହାର ହୋଇବ ପରାକ୍ରମ ।
ମୁଁ ଯେତେବେଳେ ବସିବି ଯେହାର ଦକ୍ଷିଣ ପାଣି
ବ୍ରିକୋଦର ମୂରତି ହୋଇବ ବ୍ରହ୍ମାଣ୍ଡ ଶିରୋମଣି ।
ଯଦ୍ୟପି ବ୍ରହ୍ମା, ବିଷ୍ଣମହେଶ୍ୱର ହୋଇବ
ବ୍ରିକୋଦର ମୂରତି ଦେଖି ସବୁନ୍ତି ଭୟେ ଉପୁଜିବ । (ପୃ-୨୩୮)

ଏହିଥିରୁ ଓଡ଼ିଆରେ ''ପ୍ରଥମ ଯୁଦ୍ଧରେ ଭୀମ ହାରେ'' ପ୍ରବଚନର ସୃଷ୍ଟି । ଶତଶୃଙ୍ଗର ବର କଥା ଶୁଣି କୁନ୍ତୀ ବି ଖୁସି ହୋଇଗଲେ । ସେ ତାଙ୍କ ଅଭିଶାପକୁ ଟିକିଏ ପରିବର୍ତ୍ତନ କରି କହିଲେ ଏହି ଶିଳା ଖଣ୍ଡକୁ ସମସ୍ତେ ଦେବତା ରୂପେ ପୂଜା କରିବେ ଓ ପର୍ବତ ଥିବା ସ୍ଥାନ ଦେବ ସ୍ଥାନରେ ପରିଣତ ହେବ ।

ଭୀମସେନଙ୍କ ପରାକ୍ରମ କଥା ସାଙ୍ଗକୁ ସାରଳା ଦାସ ଭୀମକୁ ପେଟୁ ଭାବରେ ବର୍ଣ୍ଣନା କରିଛନ୍ତି । ଏହା ହେଉଛି, ଭୀମସେନଙ୍କ ''ବାଳୁତ କୁତୂହଳ ଚରିତ'' । ଶ୍ରୀକୃଷ୍ଣ ପିଲାଦିନେ ଗୋପୀମାନଙ୍କ ଘରେ ପଶି ଦହି, ଦୁଧ, ସର, ଲବଣୀ ଚୋରିକରି ଖାଉଥିଲେ । ହାଣ୍ଡି ଭାଙ୍ଗୁଥିଲେ । ଗୋପୀମାନେ କିଛିଦିନ ତ ସହିଲେ । ଶେଷରେ ବିରକ୍ତ ହୋଇ କୃଷ୍ଣଙ୍କୁ ଯଶୋଦା ତେନ୍ତୁଳି ଛାଟରେ ପିଟିଥିଲେ । ସେହିପରି ଭୀମସେନ ପ୍ରତିଦିନ ଲୁଚି ଲୁଚି ମଡ଼ଫୁଲି ଘରେ ପଶି ସବୁ ପାକ ଖାଇଯାନ୍ତି । କେହି ଜାଣିପାରନ୍ତି ନାହିଁ । ଦିନେ ପାଣ୍ଡୁ ଜଗିକରି ବସି ରହିଲେ । ଦେଖିଲେ, ଭୀମ ହାଣ୍ଡିକ ଯାକ ଖାଦ୍ୟ ଏକା ପାଟିକେ ଗିଳିଦେଲେ । ପାଣ୍ଡୁ ଆଉ ସହ୍ୟ କରି ପାରିଲେ ନାହିଁ । ଅସ୍ତ୍ରାଗାରରୁ ଖଣ୍ଡା ଆଣି ଭୀମଙ୍କୁ ମାରିବାକୁ ବାହାରିଲେ । ଭୀମ ଦୌଡ଼ିଲେ । ପଛେ ପଛେ ପାଣ୍ଡୁ । ଭୀମ ଦୌଡ଼ିବା ବେଳେ କେତେ ବନ, ପର୍ବତ ଭାଙ୍ଗି ଚୂରମାର ହୋଇଗଲା, ତା'ର ଇୟତ୍ତା ନାହିଁ । ପାଣ୍ଡୁ ଥକି ପଡ଼ିଲେ । ଏତିକିବେଳେ ଅଗ୍ନିଦେବ ବ୍ରାହ୍ମଣ ରୂପରେ ଉପସ୍ଥିତ ହୋଇ ପାଣ୍ଡୁଙ୍କୁ ଶାନ୍ତ କଲେ, ଭୀମସେନଙ୍କୁ ବର ପ୍ରଦାନ କରି କହିଲେ-

ଦୋହୋରାଯେ ବୋଇଲେ ଆମ୍ଭେ ହୋଇଲୁ ପ୍ରସନ୍ନ
ନିତି ପ୍ରତି ରାନ୍ଧଣା ଏହାକୁ ହୋଇବ ବିଦ୍ୟମାନ
ଗଉରୀ ଶଉରୀ ଆବର ନଳବିଧି
ଏ ତିନି ପାକ ଏହାକୁ ହୋଇବ ପରସିଦ୍ଧି ।

ଅଜଟା ଅବଟା ଯେ କଞ୍ଚା ଯୋଗାଡ଼ର
ଏହା ହସ୍ତ ଲାଗନ୍ତେ ହୋଇବ ଅମିୟ ରସ ସାର ।
ଭୋଜନେ ଅତ୍ରିପୁତି ହୋଉ ତୋହୋର ବଳା
ସଂଗ୍ରାମେ ଅତ୍ରିପୁତି ହୋଉ ଅଚାର୍ଗଳା ।
ଶୃଙ୍ଗାରେ ଅତ୍ରିପୁତି ହୁଅସିରେ ଭୀମ
ବ୍ରିକୋଦର ମୂରତିକି ତୋର କେହି ନୋହିବେ ସମ । (ପୃ-୨୫୨)

ଏହି ତିନୋଟି ବିଶିଷ୍ଟ ଗୁଣ ଘେନି ଭୀମ ଦ୍ୱାପର ଯୁଗରେ ''ଭାରା ନିବାରିବା ଅର୍ଥେ'' ଜନ୍ମ ହେଲେ ଓ ଦ୍ୱାପର ଯୁଗର ମହାମଲ୍ଲ ପୁଣି ଭାରୋଇ ମଲ୍ଲରେ ପରିଣତ ହେଲେ ।

୨୧ । **ଅର୍ଜ୍ଜୁନ ଜନ୍ମ :** ସଂସ୍କୃତ ଓଡ଼ିଆ ଉଭୟ ମହାଭାରତରେ ଇନ୍ଦ୍ର ଅର୍ଜ୍ଜୁନ ଜନ୍ମର କାରଣ ହେଲେ ହେଁ, କଥାର ଗତି ଭିନ୍ନ ରୂପ ଧାରଣ କରିଛି । ସଂସ୍କୃତ ମହାଭାରତରେ ଭୀମସେନଙ୍କ ଜନ୍ମପରେ ପାଣ୍ଡୁ ଲୋକଶ୍ରେଷ୍ଠ ଅନ୍ୟ ଗୋଟିଏ ପୁତ୍ରଲାଭ ପାଇଁ ଚିନ୍ତାକଲେ । ଏହି ସଂସାର ଦୈବ ଓ ପୁରୁଷକାର ଉପରେ ପ୍ରତିଷ୍ଠିତ । ପୁରୁଷକାର ଥିଲେ ଯଥାସମୟରେ ଦୈବଶକ୍ତି ପ୍ରାପ୍ତ ହୁଏ । ଦେବଗଣଙ୍କ ମଧ୍ୟରେ ଶ୍ରେଷ୍ଠ ହେଉଛନ୍ତି ଇନ୍ଦ୍ର । ତାଙ୍କର ବଳ,ଉତ୍ସାହ, ତେଜ ଓ ସାହସ ଅସାଧାରଣ । ତାଙ୍କରିଠାରୁ ପୁତ୍ର ଉତ୍ପନ୍ନ ହେଲେ ସେ ଯେ ମହାବୀର ହେବ, ଏହା ନିଶ୍ଚିତ । ଏକଥା ବିଚାର କରି ପାଣ୍ଡୁ ଓ କୁନ୍ତୀ ଉଭୟ ଦେବରାଜ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରିବା ପାଇଁ କଠୋର ବ୍ରତ ଓ ତପସ୍ୟା କରିବାକୁ ଲାଗିଲେ । ପାଣ୍ଡୁଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଇନ୍ଦ୍ର ତାଙ୍କୁ ଗୋଟିଏ ପୁତ୍ରଦାନ କରିବା ପାଇଁ ସମ୍ମତ ହେଲେ । ପାଣ୍ଡୁଙ୍କ ଅନୁରୋଧ କ୍ରମେ କୁନ୍ତୀ ଇନ୍ଦ୍ରଙ୍କୁ ଆହ୍ୱାନ କରି ଫାଲ୍‌ଗୁନ ମାସରେ ଫାଲ୍‌ଗୁନୀଙ୍କୁ ପ୍ରାପ୍ତ ହେଲେ ।

ସାରଳା ଦାସ ଅନ୍ୟ ଦୁଇ ପୁତ୍ରଙ୍କ ଜନ୍ମକଥା ପରି ଏଥିରେ ମଧ୍ୟ ସଂସ୍କୃତ ମହାଭାରତକୁ ଅନୁସରଣ କରିନାହାନ୍ତି । ଫାଲ୍‌ଗୁନ ମାସରେ ଜନ୍ମ ହେତୁ ଅର୍ଜ୍ଜୁନଙ୍କ ନା ହୋଇଥିଲା ଫାଲ୍‌ଗୁନୀ । ସାରଳା ଦାସ ଏ କଥାକୁ ମଧ୍ୟ ସ୍ୱୀକାର କଲେନାହିଁ । ଫାଲ୍‌ଗୁନ ପୂର୍ଣ୍ଣିମାର ବାସିଦିନ କୃଷ୍ଣପକ୍ଷ ଦ୍ୱିତୀୟା ବୁଧବାର ଉତ୍ତରା ଫାଲ୍‌ଗୁନୀ ରାତିରେ କୁନ୍ତୀ ଦେବରାଜଙ୍କୁ ସ୍ମରଣ କଲେ ।

ଦେବରାଜ ହୃଦୟରେ ''ପାରିଜାତକ ପୁଷ୍ପମାଳ ଲମ୍ବାଇ'' ''ଅଳଙ୍କାର ଲାଇ'' ''ମୃଗଲାଭ କସ୍ତୁରୀରେ ଶ୍ରୀଅଙ୍ଗକୁ ସୁସଜ୍ଜିତ କରି'' କୁନ୍ତୀଙ୍କ ଶଯ୍ୟା ନିକଟରେ ଉପସ୍ଥିତ ହେଲେ ।

ସଂସ୍କୃତରେ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଯେଉଁ ତପସ୍ୟାର ଉଲ୍ଲେଖ ହୋଇଥିଲା, ସାରଳା ଦାସ ତାକୁ କୁନ୍ତୀଙ୍କ ସ୍ତୁତିରେ ପରିଣତ କଲେ ।

ଦେବରାଜଙ୍କୁ ଦେଖି କୁନ୍ତୀ ତୀର୍ଥ ଜଳରେ ତାଙ୍କ ପାଦ ପ୍ରକ୍ଷାଳନ କରି ପାଦାର୍ଘ୍ୟ ପ୍ରଦାନ କଲେ ଓ ଅନେକ ପ୍ରକାରରେ ସ୍ତୁତି କରିବାକୁ ଲାଗିଲେ ।

ସାରଳା ଦାସ ଦେବରାଜ  କୁନ୍ତୀଙ୍କ ମିଳନକୁ ଦୀର୍ଘ କରିବାକୁ ଇଚ୍ଛା କରିଛନ୍ତି । ସେଥିପାଇଁ କେତେବେଳେ ଶତଶୃଙ୍ଗ ପର୍ବତରୁ ନିର୍ଗତ ହୋଇଥିବା ବିଭିନ୍ନ ନଦୀର ବର୍ଣ୍ଣନା କରି, କେତେବେଳେ ରତି କ୍ରୀଡ଼ାରେ ପବନର ଗତିକୁ ନିୟନ୍ତ୍ରିତ କରିବା ପଦ୍ଧତି କହି, ପୁଣି କେତେବେଳେ ସମ୍ଭୋଗ-ସଂଗ୍ରାମର ଚିତ୍ର ଆଙ୍କି, କେତେବେଳେ କୁନ୍ତୀଙ୍କ ମନ କଥାର ସୂଚନା ଦେଇ ସେଥିରେ ନିଜ ରସିକତାର ସଞ୍ଚାର କରି, ସେ ପାଠକ ମନକୁ ବାରମ୍ବାର ବିଭ୍ରାନ୍ତ  କରି ପୁଣି କୁନ୍ତୀ ଓ ଦେବରାଜଙ୍କ ମିଳନ ଦୃଶ୍ୟ ପାଖକୁ ଫେରାଇ ଆଣିଛନ୍ତି । ଶେଷରେ-

ଦୁହେଁ ମନଶାନ୍ତି ସେ ପରମ ସାନନ୍ଦେ
ସୁସଙ୍ଗେ କୁମାରେକ ଉପେଜି ହୋଇଲା ସଇନ୍ଦେ । (ପୃ-୨୬୦)

ପୁତ୍ର ଜନ୍ମପରେ ସଂସ୍କୃତ ମହାଭାରତରେ ଦେବତା, ସର୍ପ, ଗରୁଡ଼ାଦି ପକ୍ଷୀ, ଗନ୍ଧର୍ବ, ଅପ୍‌ସରା, ପ୍ରଜାପତି ଓ ସପ୍ତର୍ଷିଗଣ ଆସି ଅର୍ଜ୍ଜୁନର ସ୍ତବ କରିବାକୁ ଲାଗିଲେ । ଭରଦ୍ୱାଜ, କଶ୍ୟପ, ଗୌତମ, ବିଶ୍ୱାମିତ୍ର, ଯମଦଗ୍ନି, ବଶିଷ୍ଠ ଓ ଅତ୍ରି ପ୍ରଭୃତି ଋଷି ଆସି ଉପସ୍ଥିତ ହେଲେ ଓ ସନ୍ତାନର ମଙ୍ଗଳ ପାଇଁ ଇଷ୍ଟମନ୍ତ୍ର ଜପ କଲେ । ବହୁ ଗନ୍ଧର୍ବ ଆସି ଗାନ କଲେ । ଅଠାଇଶ ଅପ୍‌ସରା ଆସି ନୃତ୍ୟ କଲେ ଓ ମେନକା, ଉର୍ବଶୀ, ଉମ୍ଳୋଚା, ପ୍ରମ୍ଳୋଚା, ପୂର୍ବଚିତି ପ୍ରଭୃତି ଏଗାର ଜଣ ଅପ୍‌ସରା ଗାନ କରିବାକୁ ଲାଗିଲେ । ସେଠାରେ ଦ୍ୱାଦଶ ଆଦିତ୍ୟ, ଏକାଦଶ ରୁଦ୍ର, ଅଶ୍ୱିନୀ କୁମାର ଦ୍ୱୟ, ଅଷ୍ଟବସୁ, ଅଣଞ୍ଚାଶ ବାୟୁ, ବିଶ୍ୱ ଦେବଗଣ ଓ ମଧଗଣ ଉପସ୍ଥିତ ହେଲେ ।

ସାରଳା ଦାସ ଏତେକଥା କହି ନାହାନ୍ତି । ତେବେ ମାତଳି ପୁଷ୍ପକଯାନରେ ଚଉଷଠି କୋଟି ଚଞ୍ଚଳାଙ୍କୁ ଆଣି ପହଞ୍ଚିଥିବା ରହିଛି । ପୁତ୍ର ଜାତ ହେବା ହେବା ଦେଖି ଦେବତାମାନେ ଦୁନ୍ଦୁଭି ବଜାଇଲେ । ଚଉଷଠି କୋଟି ଅପ୍‌ସରାମାନେ ହୁଳହୁଳି ଧ୍ୱନି ଦେଲେ । ତପ୍ତ ସୁବାସିତ ଜଳରେ କୁମାରକୁ ସ୍ନାନ କରାଇଲେ । ଅପ୍‌ସରାମାନଙ୍କ ମଧ୍ୟରୁ କେବଳ ରମ୍ଭା, ଉର୍ବଶୀ, ମଦନା, ମେନକା ଓ କାମସେଣାର ସେ ଉଲ୍ଲେଖ କରିଛନ୍ତି । ଅର୍ଜ୍ଜୁନ ବନରେ ଉତ୍ପତ୍ତି ହେତୁ ପୁତ୍ରର ନାମ ହେଲା ଅର୍ଜ୍ଜୁନ । ଫାଲ୍‌ଗୁନ ମାସରେ ନୁହେଁ, ପୂର୍ବା ଫାଲ୍‌ଗୁନୀ ଓ ଉତ୍ତରା ଫାଲ୍‌ଗୁନୀ ନକ୍ଷତ୍ରର ସନ୍ଧି ବେଳରେ ଜନ୍ମହେତୁ ନୁହେଁ, କେବଳ ଉତ୍ତରା ଫାଲ୍‌ଗୁନୀ ନକ୍ଷତ୍ରରେ ଜନ୍ମହେତୁ ଦେବଗୁରୁ ପ୍ର[illegible]ଙ୍କର ନାମ ହେଲା ଫାଲ୍‌ଗୁନୀ । ଉର୍ବଶୀ ତାଙ୍କ ନାମ ଦେଲେ ସବ୍ୟସାଚୀ ।

**୨୨ । ନକୁଳ ଓ ସହଦେବଙ୍କ ଜନ୍ମ :** ସଂସ୍କୃତ ମହାଭାରତରେ ଅର୍ଜ୍ଜୁନଙ୍କ ଜନ୍ମ ପରେ ପୁନର୍ବାର ପୁତ୍ରଲାଭ କରିବା ପାଇଁ ପାଣ୍ଡୁ କୁନ୍ତୀଙ୍କୁ ଅନୁରୋଧ କଲେ । ଏଥର କୁନ୍ତୀ ଆଉ ରାଜି ହେଲେ ନାହିଁ । ସେ ଶାସ୍ତ୍ରକୁ ନିର୍ଦ୍ଦେଶକରି କହିଲେ-

ନାତଶ୍ଚତୁର୍ଥଂ ପ୍ରସବମାପତସ୍ୱପି ବଦନ୍ତ୍ୟୁତ
ଅ[illegible] ପରଂ ସ୍ୱୈରିଣୀସ୍ୟାତ ପଞ୍ଚମେ ବନ୍ଧକୀ ଭବେତ

(ଆଦି, ୧୧୭-୮୧)

ୀ ଚତୁର୍ଥ ଥର ପାଇଁ ପରପୁରୁଷ ସହ ସହବାସ କଲେ ସେ ସ୍ତ୍ରୀକୁ ସ୍ୱୈରିଣୀ ଓ ପଞ୍ଚମ ଥର ପାଇଁ କଲେ ବନ୍ଧକୀ କୁହାଯାଏ । ତେଣୁ ଏହା ଶାସ୍ତ୍ର ବିରୁଦ୍ଧ । ସାରଳା ମହାଭାରତରେ ପାଣ୍ଡୁଙ୍କ ଅନୁରୋଧ ନାହିଁ । କୁନ୍ତୀ ମନେ ମନେ ସ୍ଥିର କରିଛନ୍ତି-

ତିନିପୁତ୍ର ଘେନି ସେ କୋଇନ୍ତା ଦେବୀ ଭାଳି
ସହି ନୁଆଇର ଆଉ ପର ଶୃଙ୍ଗାର ଆର୍ଦ୍ଧୋଳି
ଆପଣା ସ୍ୱାମୀ ଜାଣଇ ଆପଣା ଭାରିଯାର ଚିନ୍ତା
ପର ପୁରୁଷ ଶୃଙ୍ଗାରେ ବଢ଼ାଇ ଅବସ୍ଥା । (ପୃ-୨୬୨)

ସଂସ୍କୃତ ମହାଭାରତ ଅନୁଯାୟୀ ତୃତୀୟପୁତ୍ର ପରେ ଆଉ ପୁତ୍ର ଜାତ କରିବା ପାଇଁ କୁନ୍ତୀ ଅନିଚ୍ଛା ପ୍ରକାଶ କରି ପାଣ୍ଡୁଙ୍କ ଅନୁରୋଧ କ୍ରମେ ମାଦ୍ରୀଙ୍କୁ ଜପାମାଳୀ ପ୍ରଦାନ କଲେ ଏବଂ କେବଳ ଥରକ ପାଇଁ ଯେକୌଣସି ଦେବତାଙ୍କୁ ସ୍ମରଣ କରିବାକୁ ଅନୁମତି ଦେଲେ । ଏହାପରେ ମାଦ୍ରୀ ମନେ ମନେ ଚିନ୍ତାକରି ଅଶ୍ୱିନୀ କୁମାର ଦ୍ୱୟଙ୍କୁ ଚିନ୍ତାକଲେ ଓ ସେମାନେ ଆସି ମାଦ୍ରୀଙ୍କ ଗର୍ଭରୁ ଦୁଇଟି ଯମଜପୁତ୍ର ଉତ୍ପାଦନ କରିଥିଲେ । ସେମାନେ ହେଲେ ନକୁଳ ଓ ସହଦେବ ।

ସାରଳା ମହାଭାରତରେ ଏହି କଥାର ଦୁଇଟି ରୂପ ଦେଖିବାକୁ ମିଳେ । ଅଗସ୍ତି, ମଦନା ବା ମାଦ୍ରୀଙ୍କୁ ମୋହନ ଅଞ୍ଜନ ଦେବାବେଳେ, ସୁକୁମାର ସୁନ୍ଦର ଅଶ୍ୱିନୀ କୁମାରଙ୍କ ଠାରୁ ବେନିପୁତ୍ର ଜାତହେବା କଥା କହିଥିଲେ । ସାରଳା ଦାସ ମଧ୍ୟ ଅଶ୍ୱିନୀ କୁମାରଙ୍କୁ 'ସଞ୍ଚାର ଚାଟ', 'ବେନିକୁମାର', 'ଆକାଶରେ କୁମାର ସମ୍ମୁଖରେ ପାଟ' ଥିବା କହି ନିଜ ପୁରାଣ ଜ୍ଞାନର ପରିଚୟ ଦେଇଥିଲେ । ଅଥଚ ନକୁଳ ଓ ସହଦେବଙ୍କ ଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କଲାବେଳକୁ ସେ ମୂଳ କଥାକୁ ପରିବର୍ତ୍ତନ କଲେ ।

ସାରଳା ମହାଭାରତରେ ପାଣ୍ଡୁଙ୍କ ଅନୁରୋଧ ପ୍ରସଙ୍ଗ ନାହିଁ । ନିଜେ କୁନ୍ତୀ ନିଜ ଆଡ଼ୁ ଏ ପ୍ରସ୍ତାବ ଆଣି କହିଛନ୍ତି-

ତୁ ମାଦ୍ରୀ ମୋହୋର ସପତଣୀ ହୋଇଲୁ ଅବା
ଭୃତ୍ୟର ଭୃତ୍ୟ ହୋଇଣ ତୁ ମୋତେ ବହୁତ କଲୁ ସେବା
ତୁ ମୋହୋର ଅଭିନ୍ନ ପ୍ରାଣର ସଙ୍ଘାତୁଣୀ
ମୋତେ ସେବାକରି ହୋଇବୁକି ଅପୁତ୍ରିକ ଅଲକ୍ଷଣୀ । (ପୃ-୨୬୩)

କୁନ୍ତୀଙ୍କ ଉକ୍ତିରୁ ତାଙ୍କ ଚରିତ୍ରର ଉଦାରତା ପ୍ରକାଶିତ ହୁଏ । ସଂସ୍କୃତ ପରି ଏଥିରେ ମଧ୍ୟ ''ଦିଗପାଳ ଗୋଟିକୁ'' ସ୍ମରଣ କରିବା ପାଇଁ ଅନୁମତି ଦିଆଯାଇଛି । କୁନ୍ତୀ ନିଜେ ମଧ୍ୟ ମଦନା ପାଇଁ ଶଯ୍ୟା କରିଦେଇ ଆଡ଼ହୋଇ ଯାଇଛନ୍ତି । ମାଦ୍ରୀ ନିଜକୁ ସୁସଜ୍ଜିତ କରି ଦେବତା ଆରାଧନା କଲାବେଳେ ତାଙ୍କ ମନରେ ସପତଣୀ ଭାବ ଉଦୟ ହୋଇଛି । ସେ ଭାବିଛନ୍ତି,

ଧର୍ମ, ପବନ, ଇନ୍ଦ୍ରଙ୍କଠାରୁ କୁନ୍ତୀ ପୁତ୍ରଜାତ କରିସାରିବା ପରେ ଦେବତାଙ୍କ ମଧ୍ୟରେ ଆଉ ବଳବନ୍ତ ତ କେହି ରହିଲେ ନାହିଁ । କେବଳ ବାକି ରହିଲେ ନାରାୟଣ । ତାଙ୍କୁ ହିଁ ସ୍ମରଣ କଲେ ମୋର ସପ୍ତ ବ୍ରହ୍ମାଣ୍ଡରେ ଶ୍ରେଷ୍ଠ ତଥା ବଳବନ୍ତ ପୁତ୍ର ଜାତ ହେବ । ଏକଥା ବିଚାରକରି ସେ ନାରାୟଣଙ୍କୁ ସ୍ମରଣ କଲେ । ନାରାୟଣ କୃଷ୍ଣ ରୂପରେ ଆସି ମାଦ୍ରୀଙ୍କ ଶଯ୍ୟା ନିକଟରେ ଉପସ୍ଥିତ ହେଲେ । ମାଦ୍ରୀଦେବୀ ଅର୍ଘ୍ୟ ଘେନି ନାରାୟଣଙ୍କୁ ପୂଜାକଲା ବେଳକୁ ନାରାୟଣ କହିଲେ ଯେ, ନିରାକାର ବା ନିରଞ୍ଜନ ଦେବତା ମୋର ପିତା । ତାଙ୍କଠାରୁ ଯୁଧିଷ୍ଠିରଙ୍କର ଜନ୍ମ । ତେଣୁ କୁନ୍ତୀ ହେଲେ ନିରଞ୍ଜନୀ । କୁନ୍ତୀଙ୍କର ସଉତୁଣୀ ହେତୁ ତୁମେ ମଧ୍ୟ ମୋର ମା' ସମାନ । ଜ୍ଞାନ ଥାଉଁ ଥାଉଁ ଗୁରୁ ପତ୍ନୀ ହରଣ କରିବା ଦୋଷାବହ । ଏଣେ ପୁଣି ଦୁର୍ବାସାଙ୍କ ଜପାମାଳୀର ଆଜ୍ଞା ମେଣ୍ଟି ହେଉନାହିଁ ।

କୁନ୍ତୀ ଏସବୁ ରହସ୍ୟ ଆଡୁଆଳରେ ଥାଇ ଦେଖୁଥିଲେ । କ୍ଷଣକ ପାଇଁ ତାଙ୍କ ମନରେ ମଧ୍ୟ ଈର୍ଷାଭାବ ଜାଗ୍ରତ ହେଲା । ସୁଜ୍ଞାନୀ ମାଦ୍ରୀ ଦେବରାଜ ନାରାୟଣଙ୍କଠାରୁ ଯେଉଁ ପୁତ୍ର ଲାଭକରିବ ସେ ଯେ ସବୁ ପୁଅଙ୍କ ମଧ୍ୟରେ ବଳବନ୍ତ ହେବ, ଏହା ନିଶ୍ଚିତ । କୁନ୍ତୀଙ୍କୁ ଦେଖି ନାରାୟଣ ଗରୁଡ଼ ପୃଷ୍ଠରୁ ଅବତରଣ କରି ଯେତେବେଳେ ନିଜକୁ କୁନ୍ତୀଙ୍କ ପୁତ୍ରଭାବେ ବର୍ଣ୍ଣନା କଲେ, ସେତେବେଳେ ଯାଇ ତାଙ୍କ ମନ ଶାନ୍ତ ହେଲା ଓ ସେ ମାଦ୍ରୀଙ୍କୁ ଅନ୍ୟ ଦେବ ସ୍ମରଣ କରିବା ପାଇଁ ଆଦେଶ ଦେଲେ । କଥା କିନ୍ତୁ ସେତିକିରେ ସରିଲା ନାହିଁ । ଶ୍ରୀକୃଷ୍ଣଙ୍କ ଅନୁରୋଧ କ୍ରମେ କୁନ୍ତୀ ଦୁର୍ବାସାଙ୍କୁ ସ୍ମରଣ କଲେ । ଦୁର୍ବାସା ଆସି ପାଲଟ ମନ୍ତ୍ର ଦ୍ୱାରା ନାରାୟଣଙ୍କ ଆପଦ ଖଣ୍ଡନ କଲେ ଓ ମାଦ୍ରୀଙ୍କୁ ଅନ୍ୟ ଦେବତା ସ୍ମରଣ କରିବା ପାଇଁ ଅନୁମତି ଦେଲେ ।

ସଂସ୍କୃତ ମହାଭାରତ ଅନୁଯାୟୀ କୁନ୍ତୀଙ୍କ ବଂଶର ଯେଉଁ ପରିଚୟ ପ୍ରଦାନ କରାଯାଇଛି ତଦନୁଯାୟୀ ସେ ଶ୍ରୀକୃଷ୍ଣଙ୍କର ପିଉସୀ । କାରଣ ଯଦୁବଂଶୀୟ ସୁର ମହାବୀରଙ୍କର କନ୍ୟା ହେଉଛନ୍ତି କୁନ୍ତୀ ଓ ପୁତ୍ର ହେଉଛନ୍ତି ବସୁଦେବ । ସାରଳାଦାସ କଥାର ସୂଚନା ନଦେଇ ନିରଞ୍ଜନ ଓ ନିରଞ୍ଜନୀଙ୍କ ପୁତ୍ର ରୂପେ କୃଷ୍ଣଙ୍କ ବର୍ଣ୍ଣନା କରି ମୂଳ କଥାର ପିଉସୀ ସମ୍ପର୍କକୁ ଅକ୍ଷୁର୍ଣ୍ଣ ରଖିଛନ୍ତି ।

ଦେବରାଜ ନାରାୟଣଙ୍କୁ ସ୍ମରଣ କରି ମାଦ୍ରୀ ଅପ୍ରାପତ ହେବାରୁ ଆଶ୍ୱିନ ଶୁକ୍ଳ ଦଶମୀ ଗୁରୁବାର ଅର୍ଥାତ ପବିତ୍ର ଦଶହରା ପୁଣି ସୁଦଶା ବ୍ରତ ଦିନ ଆଦିତ୍ୟ ସୁତ ଅଶ୍ୱିନୀ କୁମାରଙ୍କୁ ଆହ୍ୱାନ କଲେ । ତାଙ୍କରି ଠାରୁ ନକୁଳଙ୍କର ଜନ୍ମହୁଏ ।

ନବନଦୀ କୂଳେ ଯେଣୁ କୁମାର ଉପୁଜିଲା
ତେଣୁ କରି ମହାତମା ନକୁଳ ନାମ ଦିଲା । (ପୃ-୨୭୫)

**ସହଦେବଙ୍କ ଜନ୍ମ :** ନକୁଳଙ୍କ ଜନ୍ମ ପରେ କୁନ୍ତୀ ଚାରିପୁତ୍ରଙ୍କୁ ନେଇ ହସ୍ତିନାକୁ ଚାଲିଗଲେ । ବନ ମଧ୍ୟରେ ରହିଲେ ମାଦ୍ରୀ ଏକୁଟିଆ । ଏହିପରି ଏକଦିନେ ମହାନିଶା କାଳରେ ମାଦ୍ରୀ ପଲଙ୍କ ଉପରେ ଉତ୍ତାନଶାୟୀ ହୋଇ ଶୋଇ ମନେ ମନେ ପାଣ୍ଡୁଙ୍କ ଅଭିଶାପ କଥା

ଚିନ୍ତା କରିବାକୁ ଲାଗିଲେ । ହାତରେ ଦୁର୍ବାସାଙ୍କର ଜପାମାଳୀ ଥିଲା । ଫଳରେ ପାଣ୍ଡୁ ଆସି ପହଞ୍ଚିଲେ । ଉଭୟେ ଆସନ୍ନ ମୃତ୍ୟୁ କଥା ଜାଣି ମଧ ଆଉ ଉପାୟ ନଥିଲା । ମୃତ୍ୟୁ ବେଳ ହେଲେ ମଣିଷର ବିପରୀତ ବୁଦ୍ଧି ଉପସ୍ଥିତ ହୁଏ । ସେହି କଥାହିଁ ହେଲା । ଶୃଙ୍ଗାର ସମୟରେ ଆକାଶରୁ ଶର ଆସି ଅଦ୍ଭୁତ ଭାବେ ଉଭୟଙ୍କୁ ବିଦ୍ଧ କଲା ।

ପଣ୍ଡୁ ଓ ମାଦ୍ରୀଙ୍କ ମିଳନରୁ ଗୋଟିଏ ପୁତ୍ର ଜାତ ହେଲା । ପୁତ୍ର ଉତ୍ତାନଶାୟୀ ହୋଇ ଜାଳୁଥିବା ବେଳେ ବନଜନ୍ତୁ ସବୁ ତାକୁ ଖାଇବା ଆଶାରେ ଚାରିପଟେ ଘେରି ଠିଆ ହୋଇଥିଲେ । ଶିଶୁର ଆଖିର ତେଜରେ ସେମାନେ ଜଳିଗଲେ । ସୂର୍ଯ୍ୟଦେବ ଏସବୁ ଦେଖି ଅଶ୍ୱିନୀ କୁମାରଙ୍କୁ ପୁତ୍ରର ରକ୍ଷା କରିବା ପାଇଁ ପଠାଇଲେ । ଅଶ୍ୱିନୀ କୁମାର ଆସି ପହଞ୍ଚିଲା ବେଳକୁ କ୍ଷୀର ନପାଇ ପୁତ୍ରର ମୃତ୍ୟୁ ହୋଇ ଯାଇଥିଲା । ସେ ଆସି ପୁଅକୁ ଛୁଇଁଲା ବେଳକୁ ପୁଅର ଆଉ ଜୀବନ ନଥିଲା । ମୃତପିଣ୍ଡକୁ ପକାଇ ବାହୁଡ଼ି ଗଲେ ଦେବତାମାନେ ଉପହାସ କରିବେ । ଏହି ଭୟରେ ସେ ନିଜ ଶରୀରରୁ ଅର୍ଦ୍ଧ ଆତ୍ମା କାଢ଼ି, ଜୀବନ୍ୟାସ ମନ୍ତ୍ର ପାଠକରି, ଅମୃତ ଭାବେ ପୁତ୍ରକୁ ଚାହିଁ, କାନ ଫୁଙ୍କି, ପୁତ୍ରକୁ ଜୀବଦାନ ଦେଲେ । ନିଜ ଶରୀରରୁ ଜୀବକାଢ଼ି କୁମାରକୁ ଜୀବଦାନ ଦେବାରୁ ପୁତ୍ରର ନାମ ହେଲା ସହଦେବ ।

ଆପଣା ତହୁଁ କାଢ଼ି ଭରିଦେଲେ ଯହୁଁ ଜୀବ
ତେଣୁ କରି ଅଶ୍ୱିନୀ କୁମାରେ ନାମଦିଲେ ସହଦେବ । (ପୃ-୨୮୯)

କେବଳ ଜୀବଦାନ ହେଲେ ହୁଏନାହିଁ, ନିଜର ଯଶ ରଖିବା ପାଇଁ ସେ ସହଦେବଙ୍କୁ ଅଲୌକିକ ଶକ୍ତି ପ୍ରଦାନ କଲେ । ଫଳରେ ସହଦେବ ହେଲେ ଭୂତ ଭବିଷ୍ୟତ ଜ୍ଞାତା । କରକୁ ଚାହିଁବା କ୍ଷଣି ତିନିକୋଟି ବ୍ରହ୍ମାଣ୍ଡ ଦେଖାଗଲା । ଗତ ଆଗତ କଥା ସବୁ ସେ ଜାଣି ପାରିଲେ । ଅଶ୍ୱିନୀକୁମାର ଏହି ବରଦାନ କରି ବିଶ୍ୱଦେବତାଙ୍କ ହାତରେ ପୁତ୍ରକୁ ସମର୍ପି ଆକାଶ ମଣ୍ଡଳକୁ ଫେରିଗଲେ ।

**୨୩ । ଯୁଯୁତ୍ସୁ ଓ ଦୁଃଶିଳାର ଜନ୍ମ :** ସଂସ୍କୃତ ମହାଭାରତରେ ଗାନ୍ଧାରୀଙ୍କର ଶତପୁତ୍ର ଜନ୍ମ ହେଉଥିବା ବେଳେ ସେ ଗୋଟିଏ କନ୍ୟାପାଇଁ ମନେ ମନେ କଳ୍ପନା କରିଥିଲେ । ଫଳରେ ଶହେଟି ପୁଅ ସାଙ୍ଗକୁ କନ୍ୟାଟିଏ ବି ହେଲା । ଯେତେବେଳେ ଗାନ୍ଧାରୀ ଗର୍ଭବତୀ ଥିଲେ, ସେତେବେଳେ ଜଣେ ଯୁବତୀ ବେଶ୍ୟା ଧୃତରାଷ୍ଟ୍ରଙ୍କର ସେବା ଶୁଶ୍ରୁଷା କରୁଥିଲା । ତାଙ୍କରି ଠାରୁ ଯୁଯୁତ୍ସୁଙ୍କର ଜନ୍ମ ହୁଏ ।

ସାରଳା ଦାସ ଯୁଯୁତ୍ସୁ ଓ ଦୁଃଶିଳାର ଜନ୍ମକଥା ବର୍ଣ୍ଣନା କଲାବେଳେ ସଂସ୍କୃତକୁ ଅନୁସରଣ କରିନାହାନ୍ତି ।

ଭାଦ୍ରବ ଶୁକ୍ଳ ଅଷ୍ଟମୀଦିନ ଦୁର୍ବାସା ଆସି ହସ୍ତିନାରେ ଉପସ୍ଥିତ ହେଲେ । ଗାନ୍ଧାରୀ ତାଙ୍କୁ ଦେଖି ବହୁଭାବେ ପୂଜା କଲେ । ସେଥିରେ ସନ୍ତୁଷ୍ଟ ହୋଇ ଦୁର୍ବାସା ବରମାଗିବା ପାଇଁ

ଗାନ୍ଧାରୀଙ୍କୁ ନିର୍ଦ୍ଦେଶ ଦେଲେ । ଏପରି ସୁଯୋଗ ହରାଇବାର ନୁହେଁ । ଗାନ୍ଧାରୀ ନିଜ ପୁତ୍ରମାନଙ୍କର ଦୁଷ୍ଟପଣ କଥା ବ୍ୟାସଙ୍କ ମୁଖରୁ ଶୁଣିଥିଲେ । ତେଣୁ 'ବଂଶକୁ କାରଣ' ଆଉ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ପାଇଁ ବର ମାଗିଲେ । ଦୁର୍ବାସା ରାମ ତୁଳସୀ ଗଛରୁ ଗୋଟିଏ ଫୁଲ ଓ ଗୋଟିଏ ପତ୍ର ତୋଳି, କମଣ୍ଡଳୁ ଜଳ ସହ ଗାନ୍ଧାରୀଙ୍କୁ ଦେଲେ । ଏହା ଗ୍ରହଣ କରିବା ଫଳରେ ଗୋଟିଏ ପଣ୍ଡିତ ପୁତ୍ର ଓ ଗୋଟିଏ ସୁନ୍ଦରୀ ସୁକୁମାରୀ କନ୍ୟା ଜାତ ହେଲେ । ସେମାନେ ହେଲେ ଦୁରୁଦକ୍ଷ ବା ଦୃଦକ୍ଷ ଓ ଦୁଃଶିଳା । ଦୁର୍ବାସାଙ୍କ ମନ୍ତ୍ରରୁ ସନ୍ତାନ ହେବାରୁ ସବୁପୁତ୍ରଙ୍କ ନାଁ 'ଦୁ' ଅକ୍ଷରରୁ ହିଁ ଆରମ୍ଭ ହୋଇଥିଲା ।

**କଥା କହିବାରେ ସାରଳା ଦାସଙ୍କ ଦୃଷ୍ଟିକୋଣ :**

କଥା କହିବାରେ ସାରଳା ଦାସ ଥିଲେ ଧୁରନ୍ଧର ବ୍ୟକ୍ତି । ସଂସ୍କୃତର କଥାସବୁକୁ ଭାଙ୍ଗି ନୂଆକରି ଗଢ଼ିବାରେ ତାଙ୍କ ମନର କେତେ ଗୁଡ଼ିଏ ପ୍ରବୃତ୍ତି ଲକ୍ଷ୍ୟ କରିହୁଏ । ସେ ସବୁକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ ।

(୧) ଅନେକ କଥା ।
(୨) କଥାର ଅତିରଞ୍ଜିତ ରୂପ ।
(୩) କଥାରେ ସାମାଜିକ ନୀତି ନିୟମର ସ୍ଥାନ ।
(୪) ସାମାଜିକ ଆଦର୍ଶ ।

**୧ । ଅନେକ କଥା :** କଥା କହି ଲୋକମନକୁ ଆକୃଷ୍ଟ କରିବାକୁ ହେଲେ, ବହୁଆଡୁ ବହୁକଥା ଆଣି କହିବାକୁ ହୁଏ । ସଂସ୍କୃତରେ ରଚିତ **ପଞ୍ଚତନ୍ତ୍ର, ହିତୋପଦେଶ** ପ୍ରଭୃତିରେ ଏହି ପ୍ରବୃତ୍ତି ଅନୁସୃତ । ସେଥିପାଇଁ ସେମାନେ କଥା ଭିତରେ କଥା ରଖୁଥିଲେ । ଗୋଟିଏ କଥା ଆରମ୍ଭକରି, ସେଥିରେ ଆଉ ସବୁକଥା ରଖି, ଶେଷରେ ସେମାନେ ମୂଳ କଥାକୁ ଫେରୁଥିଲେ । ପୁରାଣର କଥା କହିବା ଭଙ୍ଗୀ ଅନ୍ୟ ପ୍ରକାର । ଏଥିରେ ମୂଳ କଥାକୁ ଫେରିବାର ପ୍ରଶ୍ନ ନାହିଁ । କଥା ଆଗକୁ ହିଁ ବଢ଼ିଥାଏ । ସେଥିପାଇଁ କଥା ସାଙ୍ଗକୁ କଥା କହି ପୁରାଣକାର ଆଗକୁ ଯାଏ । ସାରଳା ଦାସଙ୍କ ମହାଭାରତରେ ଏହି ପ୍ରବୃତ୍ତି 'ଅନେକ' ଶବ୍ଦର ଅନେକ ବ୍ୟବହାରରୁ ହିଁ ଜଣାଯାଏ ।

(୧) ଅନେକ ବାଗେଣ ସେ ମୁନିଙ୍କି କଲେ ପାଦ ପୂଜା
(୨) ଅନେକ ଦୁଷ୍ଟନ୍ତ ମାରି ସେ ଉଶ୍ୱାସିଲେ ମହୀଭାର
(୩) ଅନେକ ସମ୍ଭବେଂ ସେ ରାଜାଧିରାଜ ପତି
(୪) ଅନେକ ତୀର୍ଥ ସେ କଲେ ବିଶ୍ୱକାଶୀ
(୫) ଅନେକ ଜନ୍ମରେ ମୁହିଂ ସଦାଶିବଙ୍କ ମନୋହାରୀ
(୬) ଅନେକ ବାଗେଣ ସେ ଯେ ପୂଜା ବିଧି କଲା

(୭) ଅନେକ ଦୋଷ କଲେ କୋପ ନ କରିବୁ
(୮) ଅନେକ ଦୋଷ କଲେ ସହିବି ତୋତେ ହୋଇବି ଭଗତା
(୯) ଅନେକ ସମ୍ଭରେଣ ସେ ଦେଲେକ ଦୁହିତା
(୧୦) ଅନେକ ସମ୍ପଦେ ଯେ ଖଟନ୍ତି ମହଋଷି
(୧୧) ଯେମନ୍ତେଣ ଅନେକ ବଢ଼ିଲା ପୀରତି ଗଙ୍ଗର ତୁଲେ ସେ
ଅନେକ ମେଳ ମତି
(୧୨) ଅନେକ ଅଭାବ ବୋଲି ବୋଇଲା ମହାସତୀ
(୧୩) କହଇ ଅନେକ ମତେ ଚାଟୁ ପଟଳେ
(୧୪) ଯେମନ୍ତେ ଅନେକ ଯେ ବଢ଼ିଲା ପୀରତି
(୧୫) ଯେମନ୍ତ ସମୟେ ପ୍ରୀତି ଅନେକ ବଢ଼ିଗଲା
(୧୬) ଶାୟେଂତନୁ ଋଷିଙ୍କି ସେ ଅନେକ ଦୁଃଖ ଦିଲା
(୧୭) ଅନେକ ଚାଟୁ ପଟଳ କରନ୍ତି ଗଙ୍ଗାକୁ ବାଉନି
(୧୮) ଯେମନ୍ତେ ଅନେକ ମତେ କରାଇଲା ବିମୁଖ
ଗୃହବାସ ନିମନ୍ତେ ଋଷି ସହିଲେ ଅନେକ ଦୁଃଖ

ଏହି ଅନେକ କହିବା ପ୍ରବୃତ୍ତି ସାରଳା ମହାଭାରତରେ ବେଳକାଳ, ବିବାହର ବିଭିନ୍ନ ବିଧି, ଋଷି, ବ୍ରାହ୍ମଣ ପ୍ରଭୃତିଙ୍କ ବିଭିନ୍ନ ପ୍ରକାର ବେଶ ପରିଧେୟ, ସୋମବଂଶ, ପାଂଋଷିବଂଶ, କୁନ୍ତୀ, ମାଦ୍ରୀ, ଗାନ୍ଧାରୀ, ଅମ୍ବା ପ୍ରଭୃତି ନାରୀ ମାନଙ୍କ ବଂଶଲତା, ବିଭିନ୍ନ ପର୍ବତ, ନଦୀ ଓ କାନନ ପ୍ରଭୃତିର ବିସ୍ତୃତ ବର୍ଣ୍ଣନାରେ ଦେଖିବାକୁ ମିଳେ । ଏହି ପ୍ରବୃତ୍ତିରୁ କବି ଗୋଟିଏ ଦୃଷ୍ଟାନ୍ତରେ ସନ୍ତୁଷ୍ଟ ନ ହୋଇ ବହୁ ଦୃଷ୍ଟାନ୍ତ ଦେଉଥିଲେ । ଗୋଟିଏ କଥାରେ ଶେଷ ନକରି ଆହୁରି କଥା କହୁଥିଲେ । ଟିକିନିଖି କରି କଥା କହିବାର ଭଙ୍ଗୀ ମଧ୍ୟ ଏହି ପ୍ରବୃତ୍ତିର ଫଳ ।

**୨ । କଥାର ଅତିରଞ୍ଜନ ରୂପ :** ଅନେକ କଥା କହିବାକୁ ଇଚ୍ଛା କଲେ, ଜ୍ଞାନ ଓ ପାଣ୍ଡିତ୍ୟ ସାଙ୍ଗକୁ କଳ୍ପନାର ଆବଶ୍ୟକ ହୁଏ । ଏଇଥିରୁ ସାରଳା ମହାଭାରତରେ ଅତିରଞ୍ଜନ ପ୍ରବୃତ୍ତି ଅତିମାତ୍ରାରେ ଓ ବିଭିନ୍ନ ଭାବେ ପ୍ରକାଶ ପାଇଛି । ଉଦାହରଣ ପାଇଁ ଭୀମଙ୍କ ବାଲ୍ୟକାଳ ଚରିତକୁ ଗ୍ରହଣ କରାଯାଇପାରେ । ସଂସ୍କୃତ ମହାଭାରତରେ କୁନ୍ତୀ ବାଘ ଗର୍ଜନ ଶୁଣି ହଠାତ୍ ଉଠିଗଲେ । କୋଳରେ ଶୋଇଥିବା ପୁଅ କଥା ମନେନାହିଁ । ଭୀମ ତଳେ ଗୋଟିଏ ପଥର ଉପରେ ପଡ଼ିଗଲେ ଓ ସେ ପଥର ଖଣ୍ଡି ଚୂନା ହୋଇ ଯାଇଥିଲା । (ଆଦି-୧୧୭-୧୧୮)

ସାରଳାଦାସ ସଂସ୍କୃତର 'ବାଘ' ଓ 'ପଥର'ରୁ ଦୁଇଟି କଥା ସୃଷ୍ଟି କଲେ । ମହାଭାରତର ଘରୋଇ ମଲ୍ଲ ଭୀମଙ୍କର ଶକ୍ତି ଓ ସାମର୍ଥ୍ୟର ପରିଚୟ ଦେବାପାଇଁ ସାରଳା ଦାସ ବାଘ କଥାକୁ ପରିବର୍ଦ୍ଧିତ କରି ଲେଖିଥିଲେ -

ପଡ଼ିଅଛି ନନ୍ଦନ ଉତ୍ତାନଶାୟୀ ହୋଇଂ
କାନ୍ଦଇ ନନ୍ଦନ ଯେ ବାଳୁତ ରାବ ଦେଇ ।
ଗର୍ଜନ ନାଦ କରି ଧାମଇ ମତ୍ତବ୍ୟାଘ୍ର
ପୁତ୍ରକୁ ଘୋଟିଲା ସେ କରିବ ଆଧାର ଯୋଗ ।
କାନ୍ଦଇ ସେ ଭୀମସେନ ଚରଣ ହଲାଇ
ବ୍ୟାଘ୍ରର ମୁଧ୍ନିରେ ବାଜିଲା ପାଦ ଯାଇ ।
ଭୀମର ଦକ୍ଷିଣ ଚରଣ ବାଜିଲା ବ୍ୟାଘ୍ରର ମୁଧ୍ନା
ବାଜନ୍ତେ ମୁଧ୍ନା ତାର ହୋଇଲା ଶତେ ଚୂନା ।

(ପୃ-୨୩୫ -୨୩୬)

ପଥର ଚୂନା ହୋଇଯିବା କଥାକୁ ସାରଳା ଦାସ କିପରି ଅତିରଞ୍ଜନ କଲେ, ତାହା ନିମ୍ନୋକ୍ତ ଉଦ୍ଧୃତାଂଶ ପାଠକଲେ ସ୍ପଷ୍ଟ ହୁଏ ।

ଶିଂଗ ଦ୍ୱାଦଶ ଯୋଜନ ତଳି ଶତେ ଯୋଜନ ଶିର
ବାମ ପାଦ ଅଙ୍ଗୁଷ୍ଠି ଲାଗି ହୋଇଲା ଶତେ ଚୂର ।

(ପୃ-୨୩୭)

ଏତିକି ବର୍ଣ୍ଣନା ବି ସାରଳା ଦାସଙ୍କ ମନକୁ ଗଲା ନାହିଁ । ପଣ୍ଡୁଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବାପାଇଁ ଭୀମ ଯେତେବେଳେ ବନ, କନ୍ଦର, ପର୍ବତ, ନିର୍ଝର ଓ ଅଟବୀ ଅତିକ୍ରମକରି ପଳାୟନ କଲେ ସେତେବେଳେ ତାଙ୍କ ପାଦ ବାଜି ବଡ଼ ବଡ଼ ପାହାଡ ମଧ ଚୂନା ହୋଇ ଯାଇଥିଲା । ସାରଳା ଦାସ ଏହି ଦୃଶ୍ୟର ବର୍ଣ୍ଣନା କରି ଲେଖିଛନ୍ତି -

ଯେମନ୍ତେ ପଳାଇ ସେ ଯେ ବାଳୁତ ନନ୍ଦନ
ଭୀମସେନ ପଳାଇଲା ଶତଷଠି ଯୋଜନ ।
ଉର୍ଦ୍ଧ୍ୱବାହୁ ବୋଲିଣ ଯେ ପର୍ବତ ଗୋଟିଏ
ସନ୍ଧ୍ୟାବେଳେ ଝୁଣ୍ଡିଲା ତାହା ବାଳୁତ ତନୟେ ।
ତିନି ଯୋଜନ ଆୟତନ ସେ ପର୍ବତ ପ୍ରଚଣ୍ଡା
ଭୀମସେନ ଝୁଣ୍ଟନ୍ତେଣ ହୋଇଲା ମସିଗୁଣ୍ଡା । (ପୃ-୨୪୩-୨୪୪)

ଭୀମଙ୍କର ପରାକ୍ରମ ବର୍ଣ୍ଣନା କଲାପରି କବି ସାରଳା ଦାସ ଯୁଧିଷ୍ଠିରଙ୍କ 'ଅତି ସନ୍ଥ ପଣ', ପୁଣି ଦୁର୍ଯ୍ୟୋଧନ ଓ ଦୁଃଶାସନ ପ୍ରଭୃତିଙ୍କର ଅତି ଦୁଷ୍ଟ ପଣ ଦର୍ଶାଇବା ପାଇଁ କଥାକୁ ଅତିରଞ୍ଜନ କରି କହିଛନ୍ତି । କେବଳ କେତେକ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ନୁହେଁ, ମହାଭାରତର ପ୍ରାୟ ପ୍ରତ୍ୟେକ କଥାରେ ଏହି ପ୍ରବୃତ୍ତି ଦେଖିବାକୁ ମିଳେ । କଥା କହିବାରେ ଏହା ଥିଲା ତାଙ୍କର ଏକ ବୈଶିଷ୍ଟ୍ୟ ।

**୩। ସାମାଜିକ ନୀତି ନିୟମର ଅନୁସରଣ :** ସାରଳା ଦାସ ଅନେକ ବାଗରେ ଜୀବନର ଅନେକ ସୁଖ ଦୁଃଖ କଥା କହିବା ଭିତରେ ସମାଜରେ ପ୍ରଚଳିତ ପରମ୍ପରା ପ୍ରତି ବିଶେଷ ସଚେତନ ଥିଲେ। ସେଥିପାଇଁ ସଂସ୍କୃତର ବହୁ ପ୍ରସିଦ୍ଧ କଥାକୁ ସେ ସମାଜ ଦୃଷ୍ଟିରୁ ପରିବର୍ତ୍ତନ କରିଛନ୍ତି।

କଥାବସ୍ତୁର ଏହି ପରିବର୍ତ୍ତନକୁ ଦୁଇଟି ଦୃଷ୍ଟିରୁ ବ୍ୟାଖ୍ୟା କରାଯାଇପାରେ। ସାରଳା ଦାସ ନିଜକୁ ଅଜ୍ଞ, ମୂର୍ଖ ଓ ଅପଣ୍ଡିତ ଭାବେ ବାରମ୍ବାର ବର୍ଣ୍ଣନା କରିଥିବାରୁ, ଏ କଥା ଅନୁମାନ କରାଯାଇପାରେ ଯେ, ସେ ସଂସ୍କୃତ ମହାଭାରତ ନ ପଢ଼ି, ଶୁଣାଶୁଣିରୁ ଯେତିକି ମନେ ରଖିଥିଲେ, ତାକୁ ହିଁ ବର୍ଣ୍ଣନା କଲେ। ଫଳରେ କଥାରେ ସଙ୍ଗତି ରହିପାରିଲା ନାହିଁ। ଏକଥା ମଧ୍ୟ କୁହାଯାଇପାରେ ଯେ ସଂସ୍କୃତ ମହାଭାରତର ବହୁ କଥା ଓଡ଼ିଆ ସମାଜ ଦୃଷ୍ଟିରୁ ଦୋଷାବହ ଥିଲା। ସେ ସବୁକୁ ଅବିକଳ ଭାବେ ଓଡ଼ିଆରେ ଗ୍ରହଣ କଲେ, ସମାଜରେ ମହାଭାରତ ପରି ଧର୍ମଗ୍ରନ୍ଥର ପ୍ରତିଷ୍ଠା ରହିବ ନାହିଁ। ସେଥିପାଇଁ ସାରଳା ଦାସ ଯେତେ ଦୂର ସମ୍ଭବ ଏ ସବୁର ପରିବର୍ତ୍ତନ କରି ଓଡ଼ିଆ ସମାଜର ଉପଯୋଗୀ କରିଥିଲେ। ସତ୍ୟବତୀ, ପରାଶର, ଭୀଷ୍ମ ଓ ଶାନ୍ତନୁଙ୍କ ଉପାଖ୍ୟାନକୁ ବିଶ୍ଳେଷଣ କଲେ ଦ୍ୱିତୀୟ ଅନୁମାନ ହିଁ ବିଶେଷ ଯୁକ୍ତିଯୁକ୍ତ ମନେହୁଏ।

ସଂସ୍କୃତରେ କୈବର୍ତ୍ତ କନ୍ୟା ସତ୍ୟବତୀଙ୍କୁ ପ୍ରଥମେ ପରାଶର ମୁନି ଉପଭୋଗ କରିଥିଲେ। ପରେ ସେ ହେଲେ ଶାନ୍ତନୁଙ୍କର ବିବାହିତା ପତ୍ନୀ। ପରାଶରଙ୍କ ଆଡୁ ସେ ହେଲେ ବ୍ୟାସ ମୁନିଙ୍କର ମାତା ଓ ଶାନ୍ତନୁଙ୍କ ଔରସରୁ ସେ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟଙ୍କୁ ଜନ୍ମ ଦେଲେ। ସତ୍ୟବତୀଙ୍କୁ ବିବାହ କରିବା ପୂର୍ବରୁ ଶାନ୍ତନୁ ଗଙ୍ଗାଙ୍କୁ ବିବାହ କରିଥିଲେ। ଗଙ୍ଗାଙ୍କଠାରୁ ତାଙ୍କର ମଧ୍ୟ ଗୋଟିଏ ପୁତ୍ର ଜନ୍ମ ହୋଇଥିଲେ। ସେ ହେଲେ ଦେବବ୍ରତ ବା ଭୀଷ୍ମ। ଶାନ୍ତନୁ ଓ ସତ୍ୟବତୀଙ୍କ ବିବାହ ବେଳେ କୈବର୍ତ୍ତ ରାଜାଙ୍କର ସର୍ତ୍ତ ଥିଲା ଯେ ସତ୍ୟବତୀଙ୍କ ପୁତ୍ର ହିଁ ଶାନ୍ତନୁଙ୍କ ପରେ ରାଜ୍ୟର ରାଜା ହେବେ। ଏହି ସର୍ତ୍ତରେ ଶାନ୍ତନୁଙ୍କ ବଡପୁଅ ଭୀଷ୍ମ ରାଜି ହେବାରୁ ବିବାହ ସମ୍ପନ୍ନ ହେଲା। ଫଳରେ ଭୀଷ୍ମ ବିବାହ କଲେ ନାହିଁ। ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ମଧ୍ୟରୁ ଚିତ୍ରାଙ୍ଗଦ ଅଳ୍ପ ବୟସରେ ମରିଗଲେ। ବିଚିତ୍ରବୀର୍ଯ୍ୟ ଦୁଇଟି ସ୍ତ୍ରୀ ବିବାହ କରିଥିଲେ ସତ, କିନ୍ତୁ ସେ ଅପୁତ୍ରିକ ହୋଇ ପ୍ରାଣତ୍ୟାଗ କଲେ। ଫଳରେ ସୋମବଂଶ ବୁଡ଼ିଯିବାକୁ ବସିଲା। ଏତିକିବେଳେ ସତ୍ୟବତୀ ବଂଶରକ୍ଷା କରିବା ପାଇଁ ବିଚିତ୍ରବୀର୍ଯ୍ୟଙ୍କ ଦୁଇ ପତ୍ନୀଙ୍କୁ ପ୍ରଥମେ ଭୀଷ୍ମଙ୍କ ସହ, ପରେ ବ୍ୟାସଙ୍କ ସହ ମିଳିତ ହୋଇ ବଂଶରକ୍ଷା କରିବାପାଇଁ ପ୍ରବର୍ତ୍ତାଇଲେ। ସତ୍ୟବତୀ ଶାଶୁ ହୋଇ ବୋହୂମାନଙ୍କୁ ଅବାଟରେ ଯିବାପାଇଁ କହିବା ପୁଣି ଭୀଷ୍ମ ଓ ବ୍ୟାସ ଅର୍ଥାତ୍ ଦେଢ଼ଶୁରମାନଙ୍କ ସହ ମିଳିତ ହେବାପାଇଁ ଉପଦେଶ ଦେବା, ଓଡ଼ିଆ ସମାଜ ଦୃଷ୍ଟିରୁ ଅତ୍ୟନ୍ତ ଗର୍ହିତ କାର୍ଯ୍ୟ। ସାରଳାଦାସଙ୍କ ପରି ପୁରାଣକାର ଏକଥା କହିବେ ବା କିପରି ? ସେଥିପାଇଁ ସାରଳା ଦାସ ମୂଳ କଥାରେ କେତେକ ପରିବର୍ତ୍ତନ କରିବାପାଇଁ ବାଧ୍ୟ ହୋଇଥିଲେ। ସେଥିରୁ ପ୍ରଥମ କଥା ହେଲା, ପରାଶର ଓ ସତ୍ୟବତୀଙ୍କର ମିଳନ।

ସଂସ୍କୃତ ମହାଭାରତ ଓ ବିଷ୍ଣୁପୁରାଣ ଅନୁଯାୟୀ ପରଶର ସକ୍ତ୍ରିଙ୍କର ପୁତ୍ର ଓ ବଶିଷ୍ଠଙ୍କର ନାତି । ନିରୁକ୍ତରେ ତାଙ୍କୁ ବଶିଷ୍ଠଙ୍କ ପୁତ୍ରଭାବେ ବର୍ଣ୍ଣନା କରାଯାଇଛି । ଯେକୌଣସି ଭାବେ ସେ ବଶିଷ୍ଠଙ୍କ ସହ ସଂପୃକ୍ତ ଥିଲେ । ତେଣୁ ସେ ଜାତିରେ ବ୍ରାହ୍ମଣ । ମୁନି ଭାବରେ ମଧ୍ୟ ତାଙ୍କର ପ୍ରତିଷ୍ଠା କମ ନଥିଲା । କିନ୍ତୁ କାମଦେବଙ୍କ ପାଇଁ ଏ ସବୁର କିଛି ମୂଲ୍ୟ ନଥିଲା । ଯେତେ ବଡ଼ ଦେବତା ବା ମୁନି ହୁଅନ୍ତୁ ସମସ୍ତେ କାମର ଅଧୀନ । ପ୍ରତାପଶାଳୀ କାମଦେବଙ୍କ ଶକ୍ତି ଉପରେ ସାରଳା ଦାସଙ୍କର ଅଗାଧ ବିଶ୍ୱାସ ଥିଲା । ସେଥିପାଇଁ ପରାଶରଙ୍କ ପରି ପ୍ରସିଦ୍ଧ ମୁନି ଆସନ୍ନ ଯୌବନା ସତ୍ୟବତୀଙ୍କୁ ଦେଖିବାକ୍ଷଣି କାମାସକ୍ତ ହୋଇ ପଡିଲେ ଓ ତଳେ ଧର୍ମ (ଗଙ୍ଗାଜଳ), ଉପରେ ଧର୍ମ (ସୂର୍ଯ୍ୟ ଦେବତା) ଥାଉଁ ଥାଉଁ ମଝିରେ ଧର୍ମନୌକାରେ ଦିବସ ବେଳେ, ନଈର ଦୁଇ କୂଳରେ ଥିବା ଲୋକଙ୍କ ସମ୍ମୁଖରେ ତାଙ୍କୁ ରମଣ କରିବାପାଇଁ ପ୍ରସ୍ତାବ ଦେଲେ । ସତ୍ୟବତୀ ଏ ପ୍ରସ୍ତାବ ଶୁଣିବା କ୍ଷଣି ବିବ୍ରତ ହୋଇ ପଡ଼ିଲେ ଓ କାମାସକ୍ତ ମୁନିଙ୍କର ଜ୍ଞାନୋଦୟ ପାଇଁ ଗୋଟିଗୋଟି କରି ସବୁ ଅଧର୍ମର ବର୍ଣ୍ଣନା କଲେ । ଅଥଚ କାମମୋହିତ ପରାଶର ସେ ମୁହୂର୍ତ୍ତରେ ଏ ସବୁକୁ ଆଉ ମାନିବାକୁ ପ୍ରସ୍ତୁତ ନଥିଲେ । ସେ ନିଜର ଅଲୌକିକ ଶକ୍ତି ବଳରେ ଏସବୁ ବାଧା ବିଘ୍ନକୁ ଅପସାରିତ କରି, ମତ୍ସ୍ୟଗନ୍ଧା ସତ୍ୟବତୀଙ୍କୁ ଯୋଜନଗନ୍ଧାରେ ପରିଣତ କରି ଉପଭୋଗ କଲେ ସତ, କିନ୍ତୁ ସାରଳା ଦାସ ପରାଶରଙ୍କର ଏହି କାର୍ଯ୍ୟକୁ ଅନୁମୋଦନ କରିପାରି ନଥିଲେ । କଥାରୁ ପରାଶରଙ୍କୁ ବାଦ୍‌ଦେବା ମଧ୍ୟ ସମ୍ଭବ ନ ଥିଲା । ସେଥିପାଇଁ ସେ ପରାଶର ଓ ସତ୍ୟବତୀଙ୍କୁ ବିବାହ ବନ୍ଧନରେ ଆବଦ୍ଧ କଲେ । କଥାରେ ଏତିକି ପରିବର୍ତ୍ତନ କରିବା ଫଳରେ ସେ ପରାଶରଙ୍କୁ ଦୋଷମୁକ୍ତ କରି, କାମ ପ୍ରବୃତ୍ତିରୁ ହୋଇଥିବା ମିଳନକୁ ସାମାଜିକ-ବ୍ୟବସ୍ଥା ମଧ୍ୟରେ ନିୟନ୍ତ୍ରିତ କଲେ ଏବଂ ପରବର୍ତ୍ତୀ କଥା ସବୁକୁ ସମାଜ ଦୃଷ୍ଟିରୁ ବର୍ଣ୍ଣନା କରିବାରେ ଅସୁବିଧା ରହିଲା ନାହିଁ । ସଂସ୍କୃତ ଓ ଓଡ଼ିଆ ଉଭୟ ମହାଭାରତରେ ସତ୍ୟବତୀ ଚରିତ୍ର ରହିଲା ସତ, କିନ୍ତୁ ସମାଜ ଦୃଷ୍ଟିରୁ ସେ ସମ୍ପୂର୍ଣ୍ଣ ଅଲଗା ହୋଇଗଲେ । ସଂସ୍କୃତରେ ସତ୍ୟବତୀ ଥିଲେ ଶାନ୍ତନୁଙ୍କର ସ୍ତ୍ରୀ, ଅମ୍ବିକା ଓ ଅମ୍ବାଳିକାଙ୍କର ଶାଶୂ, ଚିତ୍ରାଙ୍ଗଦ ବିଚିତ୍ରବୀର୍ଯ୍ୟଙ୍କର ମାତା ଓ ଭୀଷ୍ମଙ୍କର ବିମାତା । ଅଥଚ ଓଡ଼ିଆ ମହାଭାରତରେ ସେ ହେଲେ, ଶାନ୍ତନୁଙ୍କ ବ୍ରାହ୍ମଣ ବନ୍ଧୁ ପରାଶରଙ୍କର ସ୍ତ୍ରୀ, ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କର ପାଳୟିତ୍ରୀ । ଶାନ୍ତନୁଙ୍କ ବନ୍ଧୁପତ୍ନୀ ଭାବରେ ସେ ଅମ୍ବିକା ଓ ଅମ୍ବାଳିକାଙ୍କର ଶାଶୂ ସ୍ଥାନୀୟା ଏବଂ ସୋମବଂଶର ଜନୈକା ହିତୈଷିଣୀ ନାରୀ; ଅଥଚ ଶାଶୂ ନଥିଲେ । ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କୁ ବାଲ୍ୟକାଳରେ ପାଳନ କରିଥିବା ହେତୁ ବିପତ୍ନୀକ ଶାନ୍ତନୁଙ୍କ ବୋହୂମାନେ ତାଙ୍କୁ ଶାଶୂ ତୁଲ୍ୟ ସମ୍ମାନ ପ୍ରଦର୍ଶନ କରୁଥିଲେ । ତେଣୁ ବଂଶରକ୍ଷା ପାଇଁ ବଧୂମାନଙ୍କୁ ସତ୍ୟବତୀ ଯେଉଁ ପରାମର୍ଶ ଦେଲେ, ତାହା ସମାଜ ଦୃଷ୍ଟିରୁ ଅସଙ୍ଗତ ହେଲାନାହିଁ ।

ସତ୍ୟବତୀ ଉପାଖ୍ୟାନରେ ପରିବର୍ତ୍ତନ କରିବା ଫଳରେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କ ଜନ୍ମ ନିଶ୍ଚିତ ଭାବେ ସାରଳା ଦାସଙ୍କ ସମ୍ମୁଖରେ ଏକ ସମସ୍ୟା ରୂପେ ଦେଖା ଦେଇଥିବ । କିନ୍ତୁ ପୁରାଣକାର ସାରଳାଦାସଙ୍କ ପାଇଁ ଏହା ଆଦୌ ସମସ୍ୟା ନଥିଲା । ପୁରାଣର ସୀତା,

ଦ୍ରୌପଦୀ ଓ ଅହଲ୍ୟା ପ୍ରଭୃତି ଚରିତ୍ର ଅଯୋନି ସମ୍ଭୂତା ହିଁ ଥିଲେ । ସେଥିପାଇଁ ଶବ୍ଦଗତ ସାଦୃଶ୍ୟରୁ ଚିତ୍ର ଓ ବୀର୍ଯ୍ୟର ମିଳନରୁ ଜାତ ହେଲେ ଚିତ୍ରବୀର୍ମ୍ୟ ଓ ବିଚିତ୍ରବୀର୍ଯ୍ୟ । ଭୀଷ୍ମଙ୍କ ପୂର୍ବରୁ ଏମାନେ ଜନ୍ମହେବା ଫଳରେ ଭୀଷ୍ମ ହେଲେ ସେମାନଙ୍କର ସାନଭାଇ ଓ ବଧୂମାନଙ୍କର ଦେବର । ତେଣୁ ଭୀଷ୍ମଙ୍କୁ ଅନୁରୋଧ କରିବାରେ ଅସଙ୍ଗତି ନାହିଁ । ସତ୍ୟବତୀ ସୁତ ବ୍ୟାସ ବୟସରେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କ ଠାରୁ ବଡ଼ ଥିଲେ ହେଁ, ବ୍ୟାସ ଥିଲେ ବ୍ରାହ୍ମଣ ଓ ସେମାନେ ଥିଲେ କ୍ଷତ୍ରୀୟ । ଏସବୁ ପରିବର୍ତ୍ତନ ସତ୍ତ୍ୱେ ପରପୁରୁଷ ସହ ମିଳିତ ହେବା ଯେ ପାପ ଓ ଅନ୍ୟାୟ ଏବଂ ସମାଜ ବିରୋଧୀ କାର୍ଯ୍ୟ, ଏହା ସାରଳା ଦାସ ଭଲଭାବେ ବୁଝିଥିଲେ । ସେଥିପାଇଁ ବ୍ୟାସଙ୍କ ସହ ସହବାସ କାଳରେ ଅମ୍ବିକାର ମୃତ୍ୟୁହେଲା ଏବଂ ଅମ୍ବାଳିକା ପଣ୍ଡୁଙ୍କୁ ଜନ୍ମ ଦେଇସାରି ପାପରୁ ମୁକ୍ତି ପାଇବା ପାଇଁ ପ୍ରୟାଗରେ ଝାସ ଦେଲେ ।

କେବଳ ସତ୍ୟବତୀ ଉପାଖ୍ୟାନ ନୁହେଁ, ମହାଭାରତର ଅସଂଖ୍ୟ ଉପାଖ୍ୟାନରେ ସାରଳା ଦାସଙ୍କ ମାତା-ସଚେତନ ଦୃଷ୍ଟି ସ୍ପଷ୍ଟଭାବେ ପ୍ରକାଶ ପାଇଥାଏ ।

**୪ । ସାରଳା ଦାସଙ୍କ ସାମାଜିକ ଆଦର୍ଶ*** : ଓଡ଼ିଆ ସମାଜର ଚଳଣିକୁ ଆଖିରେ ରଖି, କଥାର ପରିବର୍ତ୍ତନ କଲାବେଳେ, କବି ସାରଳା ଦାସଙ୍କ ମନରେ ସଂସାରର ବହୁ ବିଚିତ୍ରତା ପ୍ରତିବିମ୍ବିତ ହେଉଥିଲା । ତାଙ୍କ ମତରେ ସଂସାର ହେଉଛି ଅଣାକାର ଓ ଅଗାଧ ଜଳରାଶି ସଦୃଶ । ଏଥିରେ ମଣିଷ ରାଗ, ମୋହ, ଅହଙ୍କାର, ହିଂସାରେ ବନ୍ଧା । ଏହି ବନ୍ଧନକୁ ସେ 'ଅଦଉଡ଼ି ବନ୍ଧନ' କହିଛନ୍ତି । ଏହି ବନ୍ଧନରୁ ମୁକ୍ତି ପାଇବାକୁ ହେଲେ, ଧର୍ମ ଏକମାତ୍ର ନୌକା । ସେଥିପାଇଁ ସାରଳା ଦାସ ଧର୍ମ ପଥରେ ଚଳି, ସଂଯତ ଜୀବନଯାପନ କରିବା ପାଇଁ ଉପଦେଶ ଦେଇଛନ୍ତି ।

ସାରଳା ଦାସଙ୍କ ସଂସାର କହିଲେ, ସମାଜକୁ ହିଁ ବୁଝୁଥିଲେ । ପୁରୁଷ ଓ ନାରୀର ମିଳନରେ ସମାଜର ସୃଷ୍ଟି । ଏହି ମିଳନର ବହୁ ପ୍ରକାର ଦୃଶ୍ୟ ତାଙ୍କ ମହାଭାରତରେ ଦେଖିହୁଏ । ସେଥିରୁ ମୁଖ୍ୟ ହେଉଛି, ବୈବାହିକ ବନ୍ଧନ । ଗଙ୍ଗା-ଶାନ୍ତନୁ, ଧୃତରାଷ୍ଟ୍ର-ଗାନ୍ଧାରୀ, ପଣ୍ଡୁ-କୁନ୍ତୀ ଓ ମାଦ୍ରୀ ଏହାର ଉଦାହରଣ । ପିତା, ମାତା ଓ ଅନ୍ୟାନ୍ୟ ଗୁରୁଜନଙ୍କ ମଧ୍ୟସ୍ଥତା ତଥା ସ୍ୱୀକୃତି କ୍ରମେ ଏସବୁ ମିଳନ ସମ୍ପାଦିତ ହୁଏ । ଏହି ମିଳନରେ ମଧ୍ୟ ନିୟମ ଅଛି । ବିବାହ ପରେ ଉଚ୍ଛୃଙ୍ଖଳ ଜୀବନଯାପନ କରିବା ଅନୁଚିତ । ବିବାହ ପରେ ଶୃଙ୍ଗାର ବଞ୍ଚାଇବା ଯେପରି ଏକ ଅପରାଧ, ଦିନ ବାର ନ ମାନି ଶୃଙ୍ଗାରରେ ଲିପ୍ତ ହେବା ମଧ୍ୟ ସେହିପରି ଏକ ଦୋଷ । ଅମ୍ବାକୁ ବିବାହ କରି 'ଶୃଙ୍ଗାର ବଞ୍ଚାଇ ପଛେ ଅପବାଦ ଦିଅ' ଉପଦେଶର ବିରୋଧକରି ପାରେଶ୍ୱର ପ୍ରଭୃତି ଗୁରୁଜନମାନଙ୍କୁ ଭୀଷ୍ମ 'ଅଗସ୍ତି ପୁରାଣ'ରୁ ଯେଉଁ ଅଂଶ କହିଥିଲେ, ସେଥିରେ ଅଛି-

ଭୀଷ୍ମେ ବୋଇଲେ ତୁମ୍ଭେ ଶୁଣ ପିତୃଗଣେ
ମୁହିଂ ଶୁଣିଲି ଦେବ ଅଗସ୍ତିଙ୍କ ପୁରାଣେ ।

ତିରିଶ ଦିବସେ ଯେ ଅଶୁଦ୍ଧ ହୋଏ ନାରୀ
ତାହାକୁ ଛୁଇଁଲେ ଯେ ଚାଣ୍ଡାଳ ଛୁଇଁଲା ସରି ।
ଯେତେ ବସ୍ତ୍ରେ ଛୁଇଁ ତେତେ ବସ୍ତ୍ରେ ସ୍ନାହାନ କରି
ସେ ଦିନେକ ଉପବାସେଣ ଦିନ ହରି ।
ଦ୍ବିତୀୟ ଦିବସେଣ ଛୁଅନ୍ତି ଯେବଣ ନାରୀ
ପ୍ରତକ୍ଷେ ଦୋଷ ହୋଅଇ ବ୍ରହ୍ମ ହତ୍ୟା ପାପ ସଙ୍ଗେ ସରି ।
ତୃତୀୟ ଦିବସେ ଛୁଅନ୍ତି ଯେବଣ ଯୁବତୀ
ପୂଜାଲିଙ୍ଗ ଭାଙ୍ଗିଲେ ହୁଅଇ ଯେବଣ ଗତି ।
ଚତୁର୍ଥ ଦିବସେ ଯେ ହୁଅନ୍ତି ଯୁବତୀଙ୍କର ପାଶ
ଗୋ ହତ୍ୟା ବ୍ରହ୍ମ ହତ୍ୟା ମାତୃହରଣ ସୁରାପାନ ଦୋଷ ।
ଶୁଦ୍ଧ ସ୍ନାହାନ କରିବ ପାଞ୍ଚ ଦିବସେ
ସେଦିନ ଯିବ ପୁରୁଷ ତାହାର ପାଶେ ।
ନାନା ଧର୍ମ ଇଚ୍ଛି ପିତୃକାର୍ଯ୍ୟ ଆଦି କରି
ସମସ୍ତ ତେଜ୍ୟା କରି ତାହାରେ ହୋଇବ ବ୍ରତଚାରୀ ।
ଷଷ୍ଠ ଦିନ ଯେ ସପ୍ତମ ଦିନ ପରିଯନ୍ତେ
ଯେବଣ ପୁରୁଷ ନ ଯାନ୍ତି ଦୋଷକୃତ ଅର୍ଥେ ।
ସେ ବୋହିଲା ଶ୍ରୋଣିତ ଆଧାର କରନ୍ତି ତାହାର ପିତୃଲୋକେ
ଯେସନେକ ଅଛି ଶାହାସ୍ତ୍ର ଧର୍ମବାକ୍ୟେ ! (ପୃଷ୍ଠା -୮୧-୮୨)

ଅଗସ୍ତି ପୁରାଣ, ଶାସ୍ତ୍ର, ଧର୍ମବାକ୍ୟ ଓ ବିଭିନ୍ନ ପ୍ରକାର ପାପର ଉଲ୍ଲେଖ କରି ସାରଳା ଦାସ ବିବାହିତ ଦମ୍ପତିଙ୍କୁ ସରଳ ଜୀବନଯାପନ କରିବା ପାଇଁ ଉପଦେଶ ଦେବା ପରି, କନ୍ୟା ଋତୁବତୀ ହେବା ପୂର୍ବରୁ ବିବାହ କରିଦେବା ପାଇଁ ପିତାମାତାଙ୍କୁ କହିଛନ୍ତି । ପ୍ରାୟ ପ୍ରତ୍ୟେକ କନ୍ୟାର ବିବାହ ପୂର୍ବରୁ ଏହି ପ୍ରସଙ୍ଗର ଅବତାରଣା କରାଯାଇଛି । ତପତୀର ବିବାହ ବେଳେ ଆଦିତ୍ୟ କହିଛନ୍ତି -

ଦୋହିତା ପିତା ଘରେଣ ହୋଇଲେ ରଜବତୀ
ପିତୃଲୋକମାନେ ଯେ ହୁନ୍ତି ନର୍କଗତି । (ପୃଷ୍ଠା-୧୫)
ଅବିବାହୀ ଦୋହିତା ପିତା ଘରେ ହେଲେ ରଜବତୀ
ଏକୋଇଶ ପୁରୁଷ ପରିଯନ୍ତେ ପିତୃଲୋକଙ୍କୁ ଅଗତି (ପୃ-୨୦)

---

* ଏହାର ଦୃଷ୍ଟାନ୍ତ ସବୁ କେବଳ ଆଦିପର୍ବରୁ ସଂଗୃହୀତ ।

ଅବିବାହୀ କନ୍ୟା ପିତାଘରେ ରଜବତୀ ହେବାପରି କୌଣସି ପୁରୁଷ ସହ ସହବାସ କରିବା ମଧ ଅପରାଧ । ସାରଳା ମହାଭାରତରେ ଏହିପରି ଦୁଇଟି ପ୍ରସଙ୍ଗ ଦେଖିବାକୁ ମିଳେ । ଗୋଟିଏ ହେଲା ପରାଶର ସତ୍ୟବତୀ ମିଳନ ଓ ଅନ୍ୟଟି ହେଲା ସୂର୍ଯ୍ୟ କୁନ୍ତୀଙ୍କର ମିଳନ । ପରାଶର ଓ ସତ୍ୟବତୀଙ୍କ ମିଳନ ବେଳେ ପରାଶର ଅବିବାହିତ ଓ ଅରଜବତୀ ସତ୍ୟବତୀଙ୍କୁ 'କାମ ଅସାଷ୍ଟମେ' ରମଣ କରିଥିଲେ ହେଁ ଏହାପରେ ବିଧିବଦ୍ଧ ବିବାହରେ ପରିଣତ ହୁଏ ।

ଆଗୋ ବାରତା ପାଇଣ ଯେ ଆସଇ ଦାସ ରାୟେ
ପାରେଶ୍ୱରଙ୍କୁ ଆଣିଣ ମୋତେ ପ୍ରଦାନ କୟେ ।
ଆମ୍ଭେ ଆଦି ଜନ୍ମେ ଅଟୁ କଇବ୍ରତୀ
ବ୍ୟାସେ ବଞ୍ଚାଇଲେ ହାଦେ ଅଜାତି ଅଗତି । (ପୃଷ୍ଠା -୧୦୩)

ସୂର୍ଯ୍ୟ କୁନ୍ତୀଙ୍କ ମିଳନରେ ବଳାତ୍କାର କାମଚେଷ୍ଟା ନ ଥିଲା । ମନ୍ତ୍ର ବଳରେ ସୂର୍ଯ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । କୁନ୍ତୀ ଅରଜବତୀ ଓ ଅବିବାହୀ ଥିଲେ ହେଁ ଏବଂ ମିଳନରୁ କର୍ଣ୍ଣଜନ୍ମ ହୋଇଥିଲେ ହେଁ ସାରଳା ଦାସ ଏହାକୁ ଏକ ଅଲୌକିକ ଘଟଣା ରୂପେ ବର୍ଣ୍ଣନା କରିଛନ୍ତି । କୁନ୍ତୀଙ୍କର କୁମାରୀତ୍ୱ ନଷ୍ଟ ହୋଇନାହିଁ । କୁନ୍ତୀ ନିଜର ସତୀତ୍ୱ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥାଇ, ସୂର୍ଯ୍ୟଦେବଙ୍କୁ ଅନୁରୋଧ କରି କହିଛନ୍ତି-

କୋଇନ୍ତା ବୋଇଲେ ଭୋ ଦେବ ଭବଦ୍ୱାରୁ ଜାତ ନ ହୋଉ ସନ୍ତତି
ଭବ ଗଲନ୍ତେ ମୁଁ ଯେ ହୋଇବି ଅସତୀ
କୁଳକୁ ଦୂଷିତ କଲି ଯେ ମୋହୋର ଦୁହିତା ପଣେ
ବିକଳେ ଦେଖି ଦୟା କଲେ ବିରଞ୍ଚି ନାରାୟଣେ । (ପୃଷ୍ଠା-୧୫୮)

ଦେବତାଙ୍କ ସହ ମିଳିତ ହୋଇ ସନ୍ତାନ ଜାତ କଲେ ନାରୀ ଅସତୀ ହୁଏ ନାହିଁ । ଏହା ହିଁ ଥିଲା ସାରଳା ଦାସଙ୍କ ମତ । ତେଣୁ ଏହି ମିଳନ ସମାଜ ଦୃଷ୍ଟିରୁ ଦୂଷଣୀୟ ହେଲେ ହେଁ, ଏଥିରେ ସାମାଜିକ ଆଦର୍ଶ ବ୍ୟାହତ ହୋଇ ନାହିଁ ।

ବିବାହ ପରେ ପରପୁରୁଷ ଗ୍ରହଣ ଏକ ଗର୍ହିତ କାର୍ଯ୍ୟ । ତେବେ ସଂସ୍କୃତ ମହାଭାରତରେ ଏପରି ବହୁ ପ୍ରସଙ୍ଗର ଅବତାରଣା କରାଯାଇଛି, ଯାହାକୁ ନ ଲେଖିଲେ ନ ଚଳେ । ସୋମବଂଶର ରକ୍ଷାପାଇଁ ଅମ୍ବିକା, ଅମ୍ବାଳିକା, କୁନ୍ତୀ ଓ ମାଦ୍ରୀ ପ୍ରଭୃତି ନାରୀମାନେ ପରପୁରୁଷ ସହ ମିଶି ସନ୍ତାନ ଉତ୍ପତ୍ତି କରିଛନ୍ତି । ସାରଳାଦାସ ଏସବୁ ଗଳ୍ପକୁ ଯେତେଦୂର ସମ୍ଭବ ସମାଜ ଉପଯୋଗୀ କରି ବର୍ଣ୍ଣନା କରିଥିଲେହେଁ, ପରପୁରୁଷ ଗ୍ରହଣ କଥାକୁ ସେ ଆଦୌ ସହ୍ୟ କରି ପାରିନାହାନ୍ତି । ସେଥିପାଇଁ ପ୍ରତ୍ୟେକ କ୍ଷେତ୍ରରେ ସେ ନିଜର ସ୍ୱତନ୍ତ୍ର ବିଚାର ପ୍ରଦାନ କରି, କଥାକୁ ନୂଆ ରୂପ ଦେଇଛନ୍ତି । ସଂସ୍କୃତରେ ନ ଥିବା ସ୍ଥଳେ, ବ୍ୟାସଙ୍କ ସହ ମିଳିତା ହେବା ପରେ ଅମ୍ବିକାର ମୃତ୍ୟୁ, ଅମ୍ବାଳିକାର ପ୍ରୟାଗରେ ଝାସ ପ୍ରଭୃତି ପରପୁରୁଷ ମିଳନଜନିତ ପାପର ପରିଣାମ । କୁନ୍ତୀ ଓ ମାଦ୍ରୀଙ୍କୁ ଏହି ପାପରୁ ମୁକ୍ତ କରିବା ପାଇଁ ସେ

ଦେବତା ଓ ମନୁଷ୍ୟ ମଧ୍ୟରେ ପାର୍ଥକ୍ୟ ସ୍ଥିର କରିଛନ୍ତି । ଦେବତା ସହ ମିଳିତ ହେଲେ ନାରୀ ଅସତୀ ହୁଏ ନାହିଁ - ଏହା କହିବା ସତ୍ତ୍ୱେ କୁନ୍ତୀଙ୍କ ମନ ଏହି ସବୁ ପାପକର୍ମ ପାଇଁ ଘାଣ୍ଟି ହୋଇଛି । ସେଥିପାଇଁ ସେ କହିଛନ୍ତି-

ଭୋ ଧର୍ମ ପୁରୁଷ ଯେହେର୍ଣ୍ଣେକ ମୋର କର୍ମ
କେବଣ ପାପକ୍ଷଣେ ହୋଇଲି ମୁହିଁ ଜନ୍ମ ।
ସ୍ତିରୀ ଜନ୍ମରେ ମୁଁ ହୋଇଲି ଅସତୀ
କେତେ ଭ୍ରଥାରେ ଦିନ ଯିବ କର୍ମରେ ଅଗତି ।       (ପୃ-୨୩୨)

x x x x

ସଂସାରେ ଉପୁଜି ଦେବ ନ କଲି କିଛି ଧର୍ମ
କେମନ୍ତେ କରି ମୁକତ କରିବଟି ଯମ ।
ରାଗ ମୋହି ଅହଙ୍କାର  ଥିଲେ ଉପୁଜିଟି ଅନେକ ପାପ
ରାଜପଦେ ବସିଲେ ବଢ଼ାଇ ପରତାପ ।       (ପୃ-୨୩୩)

କାମ ବଶ ହେଲେ, ପାପ ପୁଣ୍ୟର ବିଚାର କରିହୁଏ ନାହିଁ । ଏକଥା ସବୁ କ୍ଷେତ୍ରରେ ସତ ହେଲେ ହେଁ, ସାଧାରଣ ଲୋକ ଅପେକ୍ଷା ଜ୍ଞାନୀ ଓ ପଣ୍ଡିତମାନଙ୍କର ଏଥିରେ ଦାୟିତ୍ୱ ବେଶୀ । ସାଧାରଣ ଘରର ନାରୀ ଅପେକ୍ଷା ରାଜା ଘରର ଝିଅ, ବୋହୂ ଏଥିପ୍ରତି ବିଶେଷ ସତର୍କ ହେବା ଉଚିତ । ପରାଶରଙ୍କ ସହ ମିଳିତ ହେବାବେଳେ ସତ୍ୟବତୀଙ୍କ ମୁଖରୁ ସାରଳା ଦାସ ଏହି ନୀତିବାକ୍ୟ ଶୁଣାଇ କହିଛନ୍ତି -

ପରସ୍ତିରୀ, ବ୍ରହ୍ମସ୍ତିରୀ ଆବର ଗୁରୁଙ୍କ ପତ୍ନୀ
ଏଥିରେ ପାପ ପୁଣ୍ୟ ଅଟ ତୁମ୍ଭେ ଜ୍ଞାନୀ ।
ଅଜ୍ଞାନୀ ପ୍ରାଣୀଙ୍କର ପାପ ପୁନ୍ୟ ନାହିଂ ।
ପଣ୍ଡିତ ହୋଇ ପାପ କଲେ ମୋକ୍ଷ ଅଛି କାହିଂ ।

ବ୍ୟାସଙ୍କ ସହ ମିଳିତା ହେବା ପାଇଁ ସତ୍ୟବତୀଙ୍କ ପରାମର୍ଶରେ ରାଜବଧୂ ଅମ୍ବିକା ମଧ କହିଛନ୍ତି-

ଅମ୍ବିକା ବୋଲନ୍ତି ଗୋ ଶୁଣ ସତ୍ୟବତୀ
ସ୍ତିରୀଜନ ଆମ୍ଭେ ଅଟୁ ମନ୍ଦ ଜାତି ।
ସଦାଏଣ ଅଶଉଚ ଅନୀତି ଅକ୍ରିୟା
ସମସ୍ତ ବିଧଂସିଲୁ ନାମ ସତକ୍ରିୟା ।
ସୁରା ଖାଇଲେ ଯେହ୍ନେ ହେଂ ମାଥ ଅସମ୍ଭାଳି
ପରପୁରୁଷ ଆମ୍ଭେ ଦେଖିଲେ ହୋଇ ମଉଭୋଳି ।

ତେଣୁଟି ପ୍ରମଦା ନାମ ଯେ ଆନ୍ଥର
ଅନୁବ୍ରତେ ଇଚ୍ଛା କରୁଂ ପରପୁରୁଷ ସୁନ୍ଦର ।
ଆମ୍ଭେ ଅବା ବାଞ୍ଛା କଲୁ ଅନିର୍ଯାପି
ସେ କିମ୍ପାଇ ଲଙ୍ଘିବେ ପଣ୍ଡିତ ମହାତପୀ ।

(ପୃ-୧୦୩-୧୦୪)

ପାପ, ପୁଣ୍ୟର ବିଚାର କଲାବେଳେ ପଣ୍ଡିତ ଓ ଅପଣ୍ଡିତଙ୍କ ମଧ୍ୟରେ ପାର୍ଥକ୍ୟ ଥିଲେ ହେଁ, ସାଧାରଣ ଲୋକେ ଏଥିରୁ ଏକାବେଳକେ ମୁକ୍ତ ନୁହନ୍ତି । ଦାସରାଜାର ପାଟରାଣୀମାନେ ସନ୍ତାନ ଲାଭ ଆଶାରେ ମଳାଶୁର, ଜ୍ୟେଷ୍ଠାଶୁର, ତାତ, ଭଗ୍ନି-ଜାମାତା ପ୍ରଭୃତିଙ୍କ ସହ ରେତଯୋଗ କରିଥିଲେ ହେଁ ସାରଳା ଦାସ ଏମାନଙ୍କ ପାପକର୍ମକୁ ଅତି ସାଧାରଣ ଦୃଷ୍ଟିରେ ଦେଖିଛନ୍ତି । ସେମାନଙ୍କ ଦୋଷର ପ୍ରାୟଶ୍ଚିତ ପାଇଁ ସେ କୌଣସି ବ୍ୟବସ୍ଥା କରିନାହାନ୍ତି । ସନ୍ତାନ ଉତ୍ପତ୍ତି କରି ସେମାନେ ଯେଉଁ ଧର୍ମ ଅର୍ଜନ କଲେ, ସେଥିରେ ହିଁ ସେମାନଙ୍କ ପାପ ଧୋଇ ହୋଇଯାଇଛି । ଅଥଚ ଅସଦ ମାର୍ଗରେ ଜନ୍ମ କରିଥିବା କନ୍ୟାକୁ ଏସବୁ ପାପରୁ ମୁକ୍ତ କରିବା ପାଇଁ ଧର୍ମ-ନୌକାରେ, ଲୋକଙ୍କର ସେବା କରିବା ପାଇଁ ନିଯୁକ୍ତ କରାଯାଇଛି ।

ନୀଳା ଓ କମଳାଙ୍କ ପାଇଁ ସାରଳା ଦାସ ପ୍ରାୟଶ୍ଚିତ୍ତର କୌଣସି କଠୋର ବ୍ୟବସ୍ଥା କରି ନଥିଲେ ହେଁ, ରାଜବଧୂ ରତ୍ନାବତୀ ପ୍ରସଂଗରେ ସାରଳାଦାସଙ୍କୁ କୈଫିୟତ୍ ଦେବାକୁ ପଡ଼ିଛି । ତାଙ୍କ ମତରେ ରାଜବଧୂମାନେ ଏପରି କୁକର୍ମରେ ଲିପ୍ତ ହେବା ଅସ୍ୱାଭାବିକ । କିନ୍ତୁ ରତ୍ନାବତୀ ଅନୁରାଧା ନକ୍ଷତ୍ରରେ ଜନ୍ମ ହୋଇଥିବାରୁ ଜନ୍ମକାଳର ପ୍ରଭାବରୁ ଏପରି କାର୍ଯ୍ୟରେ ଲିପ୍ତ ହେଲେ । ତେବେ ବି ଏହା ଏକ ପାପକର୍ମ । ସେଥିପାଇଁ ସେ ତାଙ୍କ ସ୍ୱାମୀଙ୍କ ହାତରେ ନିହତ ହେଲେ । ସାଧାରଣତଃ ସ୍ତ୍ରୀ ହତ୍ୟା ଏକ ପାପ ରୂପେ ପରିଗଣିତ । ଅଥଚ ଧର୍ମରାଜାଙ୍କ ବିଚାରରେ ଅନଙ୍ଗସେନ ଦୋଷୀ ରୂପେ ସାବ୍ୟସ୍ତ ହେଲେ ନାହିଁ । ସାରଳାଦାସ ଏହାର ବିଚାର କରି ଲେଖିଛନ୍ତି-

ଯମ ଧର୍ମ ପୁରାଣେ ପୁଣ ବିଚାର ହୋଇଲା
ରାଜା ମହାରଷିଙ୍କି ହତ୍ୟା ଦୋଷ ନ ଲାଗିଲା
ଭାରିଜା ହୋଇ ଯେବେ ହେଲା ପରଦାରାୟେଣୀ
ସ୍ୱାମୀ ଦଣ୍ଡିବ ନାହିଂ କି ? ଦୋଷ ପରିମାଣି ।
ଯୁଗତେଣ ରାଜା ଆବର ସେ ତାହାର ପ୍ରିୟା
ଦୋଷକୁ ସେ ଶାସ୍ତି ଦିଲା ପାପ ନ ବୋଲିବା ତାହା । (ପୃଷ୍ଠା-୧୯୨)

ରତ୍ନାବତୀ ପ୍ରସଙ୍ଗ ଲେଖିବା ବେଳେ ସାରଳା ଦାସ ମନୁଷ୍ୟ ଜୀବନକୁ ସ୍ୱାଭାବିକ ରୀତିରେ ବିଶ୍ଳେଷଣ କରିଛନ୍ତି । କାମ ହେଉଛି । ମନୁଷ୍ୟ ମନର ଏକ ସହଜାତ ପ୍ରବୃତ୍ତି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ପ୍ରଭୃତି ଦେବତା ମଧ୍ୟ ଏହାର ପ୍ରଭାବରୁ ନିଜକୁ ମୁକ୍ତ କରି ପାରନ୍ତି ନାହିଁ ।

ଏହା ପ୍ରାୟ ଅଦମନୀୟ । ଏହାର ତୃପ୍ତି ନାହିଁ । ଶାସ୍ତ୍ର ଓ ନୀତି ବାକ୍ୟର ଉପଦେଶ ମଧ୍ୟ ଏହାକୁ ସଂଯତ କରିବାରେ ଅକ୍ଷମ । ସାରଳା ଦାସଙ୍କ ରତ୍ନାବତୀ ଚରିତ୍ର ଏକ ପକ୍ଷରେ ଶାସ୍ତ୍ର ଉପଦେଶ, ସାମାଜିକ ନିୟମ ଓ ଅନ୍ୟପକ୍ଷରେ ମଣିଷର ସହଜାତ ପ୍ରବୃତ୍ତି ମଧ୍ୟରେ ଅହରହ ଚାଲିଥିବା ସଂଗ୍ରାମର ଚିତ୍ର । ରତ୍ନାବତୀର ଦୁର୍ନିବାର କାମ-ବାସନାକୁ ସଂଯତ କରିବାପାଇଁ ରାଜା ଅନଙ୍ଗସେନଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଛି । ବାର ବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା ପରି ଦ୍ୱାଦଶ ବରଷ ଯାଏ ପୁରାଣ ପାଠ ହେଲା, ଭଟ୍ଟ ମିଶ୍ର ବସାଇ କେତେ ଉପଦେଶ ଦିଆଗଲା । ରାତି ନାହିଁ, ଦିନ ନାହିଁ, ସବୁବେଳେ ରାଜା ପରଦାରରେ ଥିବା ଦୋଷସବୁ କହି ରାଣୀଙ୍କୁ ପରଦାର ନ କରିବା ପାଇଁ ବୁଝାଇଲେ । ଏ ଦୋଷରେ ଗତି ମୁକ୍ତି ନ ମିଳିବା କଥା ମଧ୍ୟ କୁହାଗଲା । କିନ୍ତୁ ସବୁ ବ୍ୟର୍ଥ ।

ଶୁଣିମା ପରିଯନ୍ତେ ସେ ଘେନିଥାଇ ହୃଦେ
ରାଜା ଅନ୍ତର ହୋଇଲେ ସେ ଚଳଇ କାମ ଖେଦେ । (ପୃ-୧୯୩)

ସୁସ୍ଥ ସମାଜ ଗଠନରେ ପୁରୁଷ ଅପେକ୍ଷା ନାରୀର ଭୂମିକା ଅଧିକ, ଏହା ହିଁ ବୋଧହୁଏ ଥିଲା ସାରଳା ଦାସଙ୍କ ଆଦର୍ଶ । ସେଥିପାଇଁ ପ୍ରତ୍ୟେକ ପ୍ରସଙ୍ଗରେ ସେ ନାରୀର କର୍ମ ଓ ଅକର୍ମର ବିଚାର କରିଛନ୍ତି ଓ ସେମାନଙ୍କ ନିଷ୍ଠା ଓ ପବିତ୍ରତା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ପୁରୁଷଙ୍କ ପାଇଁ ତାଙ୍କର ଏକମାତ୍ର ଉପଦେଶ ହେଉଛି ଯେ ସେମାନେ ବେଳକାଳ ଦେଖି ସତସଙ୍ଗ କରିବା ଉଚିତ ।

ସଂସ୍କୃତ କଥାକୁ ଭାଙ୍ଗି ଓଡ଼ିଆ ରୂପ ଦେବାବେଳେ, ଓଡ଼ିଆ ସମାଜର ରୀତି, ନିତି ଓ ସାମାଜିକ ଆଦର୍ଶ ପରି ଓଡ଼ିଶାରେ ପ୍ରଚଳିତ ଲୋକକଥା ସବୁ କବିଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କରିଥିଲା । ଉଦାହରଣ ପାଇଁ 'ପ୍ରଥମ ଯୁଦ୍ଧରେ ଭୀମ ହାରେ,' 'ଧୃତରାଷ୍ଟ୍ର କଇ କନ୍ୟା ନାହିଁ କି ଗାନ୍ଧାରୀ କଇ ବରନାହିଁ', 'ସାହାଡ଼ା ବୃକ୍ଷର ମାହାତ୍ମ୍ୟ', 'ଗଙ୍ଗା ବୋଇଲେ ଥିବି ଗାଙ୍ଗୀ ବୋଇଲେ ଯିବି', ଋଷିମାନଙ୍କର ବର ଓ ଅଭିଶାପର ଫଳ, ମନୁଷ୍ୟ ଜୀବନରେ ଗ୍ରହ, ନକ୍ଷତ୍ରର ପ୍ରଭାବ ପ୍ରଭୃତିକୁ ଗ୍ରହଣ କରାଯାଇ ପାରେ । ମହାପରାକ୍ରମଶାଳୀ ଦୁର୍ଯୋଧନଙ୍କ ମୃତ୍ୟୁଭେଦ ବିଷୟରେ ସୂଚନା ଦେଇ ସାରଳା ଦାସ ଲେଖିଛନ୍ତି-

ଶରୀର ଆଉଂଶି ବୋଇଲେ ତୋହୋର ଶରୀର ବଜ୍ରହୋଉ
ଆମ୍ଭର ସର୍ଜନ ଯେହାର ତହିଂ କଥାଯେ ଥାଉ
ବାଲୁତ ବେନି ଜାନୁ ଯେକଠାରେ ଲାଗିଥିଲା
ତହିଂରେ ହସ୍ତ ନ ଲାଗିଲା ଛିଦ୍ର ଯେ ରହିଲା । (ପୃ-୨୨)

ସେହି ଛିଦ୍ରରେ ବ୍ୟାସଙ୍କ ହାତ ନ ଲାଗିବାରୁ ତାହା ବଜ୍ର ହୋଇ ପାରିଲା ନାହିଁ । ସେଇଠି ରହିଲା ଦୁର୍ଯୋଧନଙ୍କ ମୃତ୍ୟୁ-ଭେଦ । ସେତକ ଜାଣି ନ ପାରିଲେ ଦୁର୍ଯୋଧନଙ୍କୁ

ବଧ କରିବା ସମ୍ଭବ ନୁହେଁ । ଲୋକ କଥାରେ ଏହିପରି ମୃତ୍ୟୁ ରହସ୍ୟ ସମ୍ବନ୍ଧରେ ବହୁକଥା ମିଳିଥାଏ । କେତେବେଳେ ଏହା ଫରୁଆ ଭିତରେ ଥିବା ଲମ୍ବା ବାଳ ଭିତରେ ରୁହେ ତ କେତେବେଳେ ଏହା କଳା ବାଳ ଭିତରେ ଲୁଚିକରି ରହିଥିବା ଧଳାବାଳରେ ।

ମହାଭାରତ ଲେଖିବା ବେଳେ ସାରଳାଦାସ 'କଥା କହିବା'କୁ ନିଜ ପୁରାଣ ଲେଖାର ମୂଳଧର୍ମ ରୂପେ ସ୍ୱୀକାର କରିଥିଲେ । ସେଥିପାଇଁ କଥାକୁ ସରସ କରିବାପାଇଁ ସେ ତାଙ୍କ ସମୟରେ ପ୍ରଚଳିତ ପ୍ରାୟ ସବୁପ୍ରକାର ପଦ୍ଧତିକୁ ନିଜ ମହାଭାରତରେ ଗ୍ରହଣ କରିଛନ୍ତି ଓ ସେଥିପାଇଁ ତାଙ୍କ ମହାଭାରତ ଯୁଗ ଯୁଗ ବ୍ୟାପୀ ଓଡ଼ିଆ ସମାଜକୁ ଉଦ୍‌ବୁଦ୍ଧ କରି ଆସିଛି ।

## ସାରଳା ମହାଭାରତରେ ଧର୍ମ

ସାରଳା ଦାସଙ୍କ ସମୟ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର ଶେଷଭାଗକୁ ହିନ୍ଦୁଧର୍ମ ହିଁ ଥିଲା, ଓଡ଼ିଶାର ମୁଖ୍ୟ ଧର୍ମ । ବୌଦ୍ଧ ଓ ଜୈନ ପ୍ରଭୃତି ଧର୍ମ ଏକଦା ଓଡ଼ିଶାରେ ପ୍ରଭୂତ ପ୍ରଭାବ ବିସ୍ତାର କରିଥିଲେ ହେଁ, ସାରଳା ଦାସଙ୍କ ସମୟକୁ ସେ ସବୁର ପ୍ରଭାବ ହ୍ରାସ ପାଇ ସାରିଥିଲା ଓ ସେସବୁ ଧର୍ମର ଆଚାର ଓ ବିଚାର ହିନ୍ଦୁଧର୍ମର ଅଙ୍ଗ ରୂପେ ବିବେଚିତ ହେଉଥିଲା । ହିନ୍ଦୁଧର୍ମରେ ବହୁଳ ଭାବେ ବ୍ୟବହୃତ ହେଉଥିବା ପୂଜା ଓ ହୋମ ପ୍ରଭୃତି ବିଧି ଯେ ହିନ୍ଦୁଧର୍ମର ମୂଳକଥା ନହେଁ, ଏ କଥା ସାରଳା ଦାସଙ୍କ ସଦୃଶ ପୁରାଣକାରଙ୍କୁ ଅବିଦିତ ଥିଲା । ସମାଜରେ ଚଳୁଥିବା ବିଧି-ବିଧାନକୁ ସାରଳା ଦାସ ଧର୍ମ କହି ସେସବୁର ପ୍ରଚାର ପାଇଁ ମହାଭାରତ ଲେଖିଥିଲେ ।

ଧର୍ମପ୍ରଚାର ହିଁ ପୁରାଣର ମୂଳ ଲକ୍ଷ୍ୟ । କାବ୍ୟର ଆତ୍ମା ରୂପେ ଆଳଙ୍କାରିକମାନେ ରସ, ରୀତି, ଅଳଙ୍କାର, ଧ୍ୱନି ଓ ବକ୍ରୋକ୍ତିକୁ ଗ୍ରହଣ କଲାପରି ପୁରାଣକାରମାନେ ଧର୍ମକୁ ପୁରାଣର ଆତ୍ମା ରୂପେ ଗ୍ରହଣ କରିଥିଲେ । ପୁରାଣର କଥା ଓ ଚରିତ୍ରକୁ ରୂପଦାନ କଲାବେଳେ ସେମାନେ ଧର୍ମର ଆଦର୍ଶକୁ ହିଁ କଥା ଓ ଚରିତ୍ରର ଆଦର୍ଶ ରୂପେ ଗ୍ରହଣ କରୁଥିଲେ । ଲୋକମାନଙ୍କୁ ଧର୍ମପ୍ରତି ଆକୃଷ୍ଟ କରିବା, ନୀତିବାକ୍ୟ ଶୁଣାଇ ସମାଜକୁ ନିୟନ୍ତିତ କରିବା ସେମାନଙ୍କର ମୁଖ୍ୟ ଧ୍ୟେୟଥିଲା ।

ଧର୍ମର ପ୍ରଚାର ପାଇଁ ପୁରାଣକାରମାନେ ବହୁ ଦେବତାବାଦକୁ ହିଁ ମୁଖ୍ୟଭାବେ ଗ୍ରହଣ କରିଥିଲେ । ଶିବ, ବିଷ୍ଣୁ, ବ୍ରହ୍ମା ଓ ପରବର୍ତ୍ତୀ ଯୁଗରେ ଦୁର୍ଗା, ପୁରାଣର ମୁଖ୍ୟ ପ୍ରତିପାଦିତ ଦେବାଦେବୀ ରୂପେ ଗୃହୀତ ହୋଇଥିଲେ ହେଁ, ପ୍ରସଙ୍ଗ କ୍ରମେ ଅନ୍ୟ ଦେବତାମାନଙ୍କର ମହିମା ପ୍ରଚାର କରିବା ପୁରାଣର ଲକ୍ଷ୍ୟଥିଲା । ସାରଳାଦାସ ଏହି ପରମ୍ପରାରେ ପାଳିତ ହୋଇଥିଲେ ଓ ସେଥିପାଇଁ ତାଙ୍କ ରଚିତ ମହାଭାରତର ମୁଖ୍ୟ ଦେବତା ଶ୍ରୀକୃଷ୍ଣ ବା ବିଷ୍ଣୁ ହେଲେ ହେଁ, ଅନ୍ୟ ଦେବଦେବୀମାନଙ୍କୁ ଶ୍ରଦ୍ଧା, ଭକ୍ତି ଓ ବିନୟ ପ୍ରଦର୍ଶନ କରିବା ଓ ସେମାନଙ୍କର ମହିମା ପ୍ରଚାର କରିବାକୁ ସେ ନିଜର ଆଦର୍ଶ ରୂପେ ଗ୍ରହଣ କରିଥିଲେ ।

ମହାଭାରତର ମୁଖ୍ୟ ନାୟକ ଶ୍ରୀକୃଷ୍ଣ ବା ବିଷ୍ଣୁ । ତାଙ୍କରି ମହିମା ପ୍ରଚାର କରିବା ପାଇଁ ବ୍ୟାସଦେବ ମହାଭାରତ ରଚନା କରିଥିଲେ । ଅଥଚ ସାରଳା ଦାସ ଥିଲେ କନକପୁର ପାଟଣାର ଅଧିଷ୍ଠାତ୍ରୀ ଦେବୀ ସାରଳାଙ୍କର ଉପାସକ । ତାଙ୍କୁ ଶାକ୍ତ କହିବା ଠିକ୍ ନୁହେଁ । ସେ ଶକ୍ତି-ଉପାସକ ଥିଲେ ସତ, କିନ୍ତୁ ସାଂପ୍ରଦାୟିକ ଅର୍ଥରେ ଶାକ୍ତ କହିଲେ ଯାହା ବୁଝାଯାଏ, ସାରଳା ଦାସ ସେ ଦୃଷ୍ଟିରୁ ଶାକ୍ତ ନ ଥିଲେ । ତାଙ୍କୁ ଖୁବ୍ ବେଶୀରେ ସ୍ମାର୍ତ୍ତ-ଶାକ୍ତ କୁହାଯାଇପାରେ । ସେ ଯଦି ଶାକ୍ତ ହୋଇଥାନ୍ତେ, ତା'ହେଲେ ସେ କେବଳ **ଚଣ୍ଡୀପୁରାଣ** ଲେଖିଥାନ୍ତେ ଓ ଚଣ୍ଡୀଙ୍କୁ ସବୁ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ରୂପେ ପ୍ରତିପାଦିତ କରିବା ପରେ ପୁଣି **ମହାଭାରତ** ଲେଖିବାକୁ ଇଚ୍ଛାକରି ନଥାନ୍ତେ । ପୁଣି ଯଦିବା ମହାଭାରତ ଲେଖିଥାନ୍ତେ, ତାହେଲେ ସୂର୍ଯ୍ୟ, ଇନ୍ଦ୍ର, ପବନ, ଗଣେଶ, ଧର୍ମ ବା ନିରଞ୍ଜନ ଓ ଶିବ ପ୍ରଭୃତି ଦେବତାଙ୍କୁ ବନ୍ଦନା କରିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରି ନ ଥାନ୍ତେ । ସାରଳାଦାସଙ୍କ **ମହାଭାରତ**କୁ ଅନୁଶୀଳନ କରି ଏଥିରୁ ମିଳୁଥିବା ଉପାଦାନକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ସାରଳା ଦାସ କୌଣସି ସଂପ୍ରଦାୟଭୁକ୍ତ ନ ଥିଲେ । ଜଣେ ସାଧାରଣ ହିନ୍ଦୁ ପରି ହିନ୍ଦୁଧର୍ମର ସବୁ ଦେବତାଙ୍କୁ ଭକ୍ତି ପ୍ରଦର୍ଶନ କରିବା ଥିଲା ତାଙ୍କର ଧର୍ମ । ଏହାହିଁ ଥିଲା ହିନ୍ଦୁଧର୍ମର ମୂଳ ନୀତି । କେବଳ ହିନ୍ଦୁ-ଧର୍ମର ଦେବତା ନୁହଁନ୍ତି, ଅନ୍ୟ ଧର୍ମର ଦେବତାଙ୍କୁ ମଧ୍ୟ ହିନ୍ଦୁମାନେ ସମ୍ମାନ କରିଛନ୍ତି ଓ ସେମାନଙ୍କର ପ୍ରଚାର-ବିଚାରରୁ ବହୁକଥା ଗ୍ରହଣକରି ହିନ୍ଦୁ ଧର୍ମକୁ ପରିପୁଷ୍ଟ କରିଛନ୍ତି । ବୌଦ୍ଧଧର୍ମର ପୃଷ୍ଠପୋଷକ ଅଶୋକ ମଧ୍ୟ ତାଙ୍କ ଦ୍ୱାଦଶ ଶିଳାଲେଖରେ ଭାରତୀୟମାନଙ୍କ ଧର୍ମ -ଧାରଣାର ଆଦର୍ଶ ପ୍ରଚାର କରି ଲେଖିଛନ୍ତି :

"He who does reverence to his own sect, while disparaging the sects of orhers, wholly from attachment to his own, with intent to enhance the glory of his own sect in reality, by such conduct, inflicts the severest injury on his own sect. Concord, therefore, is meritorious, to wit,hearkening and hearkening willingly to the law of piety as accepted by other people."

(S.Radhakrishnan, **Religion and Culture**. P-19)

ସାରଳାଦାସ ତାଙ୍କ **ମହାଭାରତ**ରେ ଏହି ଉଦାର ଦୃଷ୍ଟିକୋଣକୁ ଗ୍ରହଣ କରିଥିଲେ । ସେ ଯଦି ନିଜକୁ ସାରଳା ଦେବୀଙ୍କ ସୁତ ଓ ତାଙ୍କ ଆଦେଶରେ **ମହାଭାରତ** ଲେଖୁଥିବା କଥା କହି ନ ଥାନ୍ତେ, ତା'ହେଲେ ଅନ୍ୟ ବର୍ଣ୍ଣନାରୁ ତାଙ୍କୁ ଦେବୀଙ୍କ ଉପାସକ କହିବା ସମ୍ଭବ ହୋଇ ନଥାନ୍ତା । ଏପରିକି ଗ୍ରନ୍ଥର ଆରମ୍ଭ କଲାବେଳେ ବିଦ୍ୟାର ଅଧିଷ୍ଠାତ୍ରୀ ଝଙ୍କଡ଼ବାସିନୀ

---

(୧)-ଭାରତୀୟ ଶାକ୍ତମାନଙ୍କୁ ବୈଦିକ ଓ ଅବୈଦିକ ଭେଦରେ ବିଭାଗ କରାଯାଇଥାଏ ।

ସାରଳାଙ୍କୁ ସ୍ତୁତି ନ କରି, ଜଣେ ସ୍ମାର୍ତ୍ତ ହିନ୍ଦୁ ପରି ସବୁ ଦେବତାଙ୍କର ପୂଜା ପୂର୍ବରୁ ଅର୍ଚ୍ଚିତ ହେଉଥିବା ଗଣେଶଙ୍କର ବନ୍ଦନା କରିଚନ୍ତି । **ସାରଳା ମହାଭାରତ**ରେ ଥିବା ବିଭିନ୍ନ ଦେବଦେବୀଙ୍କର ବନ୍ଦନା ଏବଂ ଏହି ବନ୍ଦନା ପାଇଁ ନିରୂପିତ ସ୍ଥାନ ଓ ପ୍ରସଙ୍ଗକୁ ଅନୁଶୀଳନ କଲେ ତାଙ୍କର ସାଂପ୍ରଦାୟିକ ମନୋଭାବ ଅପେକ୍ଷା ଉଦାର ଦୃଷ୍ଟିକୋଣ ହିଁ ବିଶେଷ ଭାବେ ପ୍ରମାଣିତ ହୋଇଥାଏ । ନିମ୍ନରେ ଆଦିକାଣ୍ଡର ଅଷ୍ଟମସଭା ମଧ୍ୟରୁ ବିଭିନ୍ନ ଦେବଦେବୀଙ୍କ ବନ୍ଦନାକୁ ଉଦାହରଣ ରୂପେ ଗ୍ରହଣକରି ଧର୍ମ ପ୍ରତି ସାରଳାଦାସଙ୍କ ଦୃଷ୍ଟିକୋଣର ବିବେଚନା କରାଯାଇଛି ।

ଗ୍ରନ୍ଥର ଆରମ୍ଭରେ କବି ଗଣେଶ ଓ ସାରଳା ଦେବୀଙ୍କର ବନ୍ଦନା କରିଛନ୍ତି । ଗଣେଶଙ୍କ ବନ୍ଦନାର ଦୁଇଟି କାରଣ ଦେଖିହୁଏ । ପ୍ରଥମ କାରଣ ହେଉଛି, 'ସକଳ ଭୁବନେ ଆଗେ ତୋତେ ପୂଜା' । ଦ୍ୱିତୀୟ କାରଣ ନିର୍ଦ୍ଦେଶ କରି ସାରଳା ଦାସ କହିଛନ୍ତି :

ସ୍ୱାମୀ ଯେବଣ ଶାହାସ୍ର ଲେଖନ କଲୁ ଯେବଣ ଯୋଗେ
ସେ ଅମୃତ ଦୃଷ୍ଟିରେ ପ୍ରସନ୍ନ ହୋଅ ଏବେ (ପୃ-୨)

ସାରଳା ଦେବୀଙ୍କର ବନ୍ଦନାର କାରଣ ହେଉଛି ଯେ ସେ କବିଙ୍କ ଆରାଧ୍ୟା ଦେବୀ । ସେ ଗ୍ରନ୍ଥ ଅର୍ଥ 'ପରମ କୁତୁହଳେ' ଶ୍ରବଣ କରିଥାନ୍ତି । କବି ତାଙ୍କର ସୁତ ଓ ତାଙ୍କରି ଆଦେଶରେ **ମହାଭାରତ** ରଚନା କରି କପିଳାସ ପ୍ରାପ୍ତିର କାମନା ପୋଷଣ କରିଛନ୍ତି । ସାରଳା ଦେବୀଙ୍କ କ୍ଷେତ୍ରର ପରିଚୟ ଦେବାକୁ ଯାଇ କବି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ସ୍ମରଣ ଓ ବନ୍ଦନା କରିଛନ୍ତି ।

ଏହି ଦୁଇଟି ବନ୍ଦନା ବ୍ୟତୀତ କବି ପ୍ରତ୍ୟେକ ସଭା ଶେଷରେ କୌଣସି ନା କୌଣସି ଦେବଦେବୀଙ୍କୁ ସ୍ତୁତି କରିଛନ୍ତି । ପ୍ରଥମ ସାତୋଟି ସଭା ମଧ୍ୟରେ ନିମ୍ନ କେତେକ ଦେବଦେବୀଙ୍କର ବନ୍ଦନା ଦେଖିବାକୁ ମିଳେ ।

ପ୍ରଥମ ସଭା- ଦୁର୍ଗା
ଦ୍ୱିତୀୟ ସଭା - କାମଦେବ
ତୃତୀୟ ସଭା - ଶିବ
ଚତୁର୍ଥ ସଭା - ବ୍ୟାସ
ପଞ୍ଚମ ସଭା - କରତାର ନାଥ
ଷଷ୍ଠ ସଭା - କାଶୀପତି
ସପ୍ତମ ସଭା - ଇନ୍ଦ୍ର

ଏହା ବ୍ୟତୀତ ପ୍ରସଙ୍ଗ କ୍ରମେ ସୂର୍ଯ୍ୟ, ପବନ, ନିରଞ୍ଜନ, ବ୍ରହ୍ମା, ବରୁଣ ଓ ଅଗ୍ନି ଦେବତାଙ୍କର ଉଲ୍ଲେଖ ଓ ବନ୍ଦନା କରାଯାଇଛି । ପ୍ରତ୍ୟେକ ବନ୍ଦନାରେ କବିଙ୍କ ଉଦାର ଦୃଷ୍ଟିକୋଣ ଅତି ସ୍ପଷ୍ଟ ।

ଗଣେଶଙ୍କର ବନ୍ଦନା କଲାବେଳେ କବି ତାଙ୍କପ୍ରତି 'ଦଧି ମଙ୍ଗଳ, ବିଘ୍ନ ବିନାଶନ, ମଙ୍ଗଳ ବରଦାୟକ, ସର୍ବ ଅପରାଧ ଦୁଃଖ ଖଣ୍ଡନକାରୀ, ପରମଗତି ଦ୍ୟନ୍ତା, କରୁଣାମୟେ ନାଥ, ଶରଣ ପଞ୍ଜର, ବରଦାତା, ଅଭୟେ କାଳ ବାଞ୍ଛା, ଦୁସ୍ତରୁ ତରାଅନାଥ, ପୁରୁଷଙ୍କ ସିଦ୍ଧଯୋଗୀଙ୍କ ଆଦ୍ୟ, ଆଦି ଅନ୍ତ ମଧ କଳଣା ନ ଯାଇ' ପ୍ରଭୃତି ସମ୍ମାନ ସୂଚକ ଶବ୍ଦାବଳୀ ପ୍ରୟୋଗ କରିଛନ୍ତି । ଏହା ବ୍ୟତୀତ ସେ ସମସ୍ତଙ୍କର ମନବାଞ୍ଛା ପୂରଣ କରୁଥିବା କୁହାଯାଇଛି । ତାଙ୍କର ଦର୍ଶନରେ ଯେପରି ଦୂରିତ ନାଶ ହୁଏ, ସେହିପରି ସେ ପ୍ରସନ୍ନ ହେଲେ କାର୍ଯ୍ୟ ସିଦ୍ଧ ହୁଏ ।

ସାରଳାଦେବୀଙ୍କର ବନ୍ଦନାରେ ମଧ୍ୟ କବି ସମସ୍ୱର ଓ ସମାନ ଶବ୍ଦାବଳୀ ପ୍ରୟୋଗ କରିଛନ୍ତି । ଗଣେଶ ଭକ୍ତଙ୍କର ମନବାଞ୍ଛା ପୂରଣ କରିବା ପରି ସାରଳାଦେବୀ 'ବାଞ୍ଛା ସାର୍ଥକ', ପୁଣି 'ପାଷାଣ ହୋଇକରି ବାଞ୍ଛା ତାହାର ଫୁଟଇ' । ଗଣେଶଙ୍କୁ 'ଦଧି ମଙ୍ଗଳ' ଓ 'ମଙ୍ଗଳ ବରଦାୟକ' କହିବା ପରି ସାରଳା ହେଉଛନ୍ତି, 'ସର୍ବ ମଙ୍ଗଳା' । ଗଣେଶଙ୍କୁ 'ଯୋଗୀଙ୍କ ଆଦ୍ୟ' କହିବା ପରି ଦୁର୍ଗା ବନ୍ଦନାରେ ଦୁର୍ଗାଙ୍କୁ 'ଯୋଗେଶ ଯୋଗେଶ୍ୱରୀ' କୁହାଯାଇଛି । ସେହିପରି ଗଣେଶ 'ଅଭୟେ କାଳବଞ୍ଛା' ଓ ଦୁର୍ଗା 'ଅଭୟ ପିଙ୍ଗଳାକ୍ଷ' । ଗଣେଶ ସର୍ବ ଅପରାଧ ଓ ଦୁଃଖ ଖଣ୍ଡନ କରିବା ପରି ଦୁର୍ଗା ମଧ 'ଆପାଦ ଖଣ୍ଡଣି ।' ଏହିପରି ଗତି, ମୁକ୍ତି ଦେବା ପ୍ରାୟ ସବୁ ଦେବତାଙ୍କର ସମାନ ଗୁଣ । ସମସ୍ତଙ୍କର ଦର୍ଶନରେ ଦୂରିତ କ୍ଷୟ ହୁଏ ଓ ସମସ୍ତେ ପ୍ରସନ୍ନ ହେଲେ କାର୍ଯ୍ୟ ମଧ ସିଦ୍ଧ ହୁଏ । ଏହିପରି ସବୁ ଦେବଦେବୀଙ୍କୁ କବି ସମାନ ଭାବେ ଶ୍ରଦ୍ଧା ଓ ଭକ୍ତି ନିବେଦନ କରିଛନ୍ତି । ସେ ସମସ୍ତଙ୍କର ଭକ୍ତ । ତାଙ୍କ ଦୃଷ୍ଟିରେ ସମସ୍ତେ ସମାନ । ସାରଳାଦେବୀ ଓ ଶିବଙ୍କ ବନ୍ଦନାରୁ କବିଙ୍କ ଦୃଷ୍ଟିକୋଣ ଆହୁରି ସ୍ପଷ୍ଟଭାବେ ପ୍ରକାଶିତ ହୁଏ ।

ସାରଳାଦେବୀଙ୍କୁ ବନ୍ଦନା କଲାବେଳେ କବି କହିଛନ୍ତି,

ସର୍ବମଙ୍ଗଳା ରୂପ ମାତାଙ୍ଗ ମଉଡୋଳି
ଗ୍ରନ୍ଥ ଅର୍ଥ ଶୁଣଇ ସେ ହରଷେ କୁତୋହଳୀ
ଶ୍ରୀ ସାରଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁହିଁ ସାରଳା ଦାସ କବି
ପ୍ରସନ୍ନେଣ ଆଜ୍ଞା ମୋତେ ଦେଲେ ଶାକାମ୍ବରୀ
ଲଭ ତୁ କପିଳାସ ଶ୍ରୀ ମହାଭାରଥ କରି । (ପୃ-୫)

ସେହିପରି ଶିବଙ୍କର ବନ୍ଦନା କଲାବେଳେ କବିଙ୍କର ଉକ୍ତି ହେଉଛି-

ପ୍ରଣମିତ ସୁରପତି ପାଦ ପଦ୍ମେ ନାଥ
ତବ ପଦ୍ମପାଦେ ଭୂଷଣ ହୋଉ ମୋର ମାଥ

ତ୍ରିପୁରାରି ପାଦ ପଙ୍କଜ ଅଙ୍କିତ ମୋର ଶିରେ
ଶୂଦ୍ରମୁନି ସାରଳାଦାସ ପ୍ରଣମିତ ବିଶ୍ୱେଶ୍ୱରେ । (ପୃ-୧୧୯)

କେବଳ ଶିବ ବା ଦୁର୍ଗା ନୁହଁନ୍ତି, କାମଦେବ, ଅଗ୍ନି ବା ଇନ୍ଦ୍ରଦେବ ପ୍ରଭୃତି ଗୌଣ ଦେବତାଙ୍କ ବର୍ଣ୍ଣନାରେ ମଧ୍ୟ କବିଙ୍କର ଭକ୍ତି ଭାବନା ସମାନ ଭାବେ ପ୍ରକାଶ ପାଇଛି । ସେ କୌଣସି ଦେବତାଙ୍କୁ ଛୋଟ କହି ଅନ୍ୟ ଦେବତାଙ୍କୁ ବଡ଼ କହି ନାହାନ୍ତି । କାମଦେବଙ୍କର ମହିମା ବର୍ଣ୍ଣନା କରି ସେ କହନ୍ତି :

ସେ କାମ ଯେତେବେଳେ କରଇ ଉନ୍ମତ୍ତ
କେ କାହାର ଗଉରୋବ, କେ କାହାର ମାନି ତ । (ପୃ-୨୦୪)

କେବଳ କାମଦେବ ବା ଅନ୍ୟାନ୍ୟ ଦେବତା ନୁହନ୍ତି ବ୍ୟାସଦେବଙ୍କୁ ବନ୍ଦନା କଲାବେଳେ ମଧ୍ୟ ତାଙ୍କୁ 'ସଂସାର ହିତକାରୀ', 'ତାରଣ-କାରଣ', 'କରୁଣା ନାରାୟଣ' ଓ 'ସକଳ ଜନବନ୍ଧୁ' ଭାବେ ବର୍ଣ୍ଣନା କରି ସେ ଧର୍ମ ପ୍ରତି ନିଜର ଉଦାର ଦୃଷ୍ଟି କୋଣର ପରିଚୟ ଦେଇଛନ୍ତି ।

ମନୁଷ୍ୟର ଅସମ୍ପୂର୍ଣ୍ଣ ଭାବବୋଧରୁ ଧର୍ମର ପରିକଳ୍ପନା । ମନୁଷ୍ୟ ମୃତ୍ୟୁ ମୁଖରୁ ପୁଣି ସଂସାରର ମାୟାମୋହରୁ ରକ୍ଷା ପାଇବା ପାଇଁ ଧର୍ମର ଆଶ୍ରୟ ଗ୍ରହଣ କରେ । ଏହି ଇଚ୍ଛାରୁ ମନୁଷ୍ୟ ବିଭିନ୍ନ ଦେବତାର ଆଶ୍ରୟ ନେବାପରି ନିଜକୁ ବିଭିନ୍ନ କର୍ମରେ ନିୟୋଜିତ କରେ ଓ ଆଚରଣକୁ ଶୁଦ୍ଧକରେ । ଧର୍ମର ସଂସ୍କୃତ ବ୍ୟାଖ୍ୟା ପରି ସାରଳାଦାସ ମଧ୍ୟ କହିଛନ୍ତି, ଧର୍ମ ଦ୍ୱାରା ହିଁ ସୃଷ୍ଟିରକ୍ଷା ହୁଏ । ଏଇକଥା କହିଲାବେଳେ ସାରଳା ଦାସଙ୍କ ମନ ମଧ୍ୟରେ ମନୁଷ୍ୟର ଅସଂପୂର୍ଣ୍ଣତା ପ୍ରକାଶ ପାଇଛି । ସେଥିପାଇଁ ସେ କହିଛନ୍ତି ଯେ, ଏ ସଂସାର ହେଉଛି ଅନିତ୍ୟ, ଏହା ହେଉଛି ମାୟା ଚିତ୍ରପଟ ସଦୃଶ । ସେ ମାୟା ଓ ମୋହକୁ ସବୁବେଳେ 'ଅଦଉଡ଼ି ବନ୍ଧନ' କହିଛନ୍ତି । ଏହି ଅଦଉଡ଼ି ବନ୍ଧନ ରୂପୀ ମୋହପାଶରୁ ମୁକ୍ତି ପାଇବାକୁ ହେଲେ ବା ଅନ୍ୟ ଭାଷାରେ ଜୈନ ତୀର୍ଥଙ୍କରଙ୍କ ପରି ସେ କୁହନ୍ତି ଯେ 'ସଂସାର ସାଗରରୁ ପାର ହେବାକୁ ହେଲେ ଧର୍ମ ହେଉଛି ଏକମାତ୍ର ନୌକା ।' ସାରଳା ଦାସ ତାଙ୍କ **ମହାଭାରତ**ରେ ଧର୍ମକୁ କୌଣସି ସାଂପ୍ରଦାୟିକ ମତଭେଦ ଦୃଷ୍ଟିରୁ ବ୍ୟବହାର ନ କରି ବୁଦ୍ଧଦେବଙ୍କ ପରି ମଣିଷର ବ୍ୟବହାର ବା ଆଚରଣକୁ ଧର୍ମ କହିଛନ୍ତି । ସେ ଧର୍ମ କହିଲେ ବ୍ରତ, ଉପବାସ ପାଳନ, ତୀର୍ଥ ଗମନ, ସମୁଦ୍ର ସ୍ନାନ, ଶାସ୍ତ୍ର ଧର୍ମ ବାକ୍ୟ ଶ୍ରବଣ, ପିତୃକାର୍ଯ୍ୟ କରଣ, ଗୁରୁ ଓ ମାତା ପିତାଙ୍କର ବଚନ ପାଳନ, ରାଗ, ମୋହ, ହିଂସା ପ୍ରଭୃତିର ତ୍ୟାଗ,ଦେବତା ଓ ବ୍ରାହ୍ମଣ ଭକ୍ତି ସତ୍ୟ କଥନ ପ୍ରଭୃତିକୁ ଗ୍ରହଣ କରିଛନ୍ତି । ସେହିପରି ଅଧର୍ମ କହିଲେ ସେ ଗୋହତ୍ୟା, ମାତୃହରଣ, ସୁରାପାନ, ବ୍ରହ୍ମହତ୍ୟା, ସତ୍ୟଭଗ୍ନ, ରାଗ-ମୋହ-ହିଂସା-ବଶ, ଗୁରୁଜନ ବଚନ ଲଂଘନ, କୂଳକୁ କଳଙ୍କ ଓ ଲଜ୍ୟା ପ୍ରଦାନ, ହିଂସା ଓ ଅପବାଦରେ ଭାଗି, ପରନିନ୍ଦା, ପରହିଂସା, ମନ୍ଦ ପ୍ରକୃତି, ଡ଼ିଙ୍ଗର ସ୍ୱଭାବ, ଅନ୍ୟର ଅକୁଶଳ ଚିନ୍ତା, ଅନ୍ୟର ଅନିଷ୍ଟ ପ୍ରଭୃତିର ଉଲ୍ଲେଖ କରିଛନ୍ତି । ସାଧାରଣ ଭାବେ ସେ ଧର୍ମ ଓ ଅଧର୍ମର ବିଭାଗୀକରଣ କରୁଥିଲେ ହେଁ ବ୍ୟକ୍ତି ଅନୁଯାୟୀ ଧର୍ମରେ ପାର୍ଥକ୍ୟ ସୃଷ୍ଟି ହେଉଥିବା ତାଙ୍କ ପ୍ରଦତ୍ତ ବର୍ଣ୍ଣନାରୁ ଜଣାପଡ଼େ । ଉଦାହରଣ ପାଇଁ

ସାରଳା ଦାସ କ୍ଷତ୍ରୀୟମାନଙ୍କର ଧର୍ମ ରୂପେ ଆତ୍ମନିର୍ଭରଶୀଳତା, ରାଜାଙ୍କର ଧର୍ମ ରୂପେ ସଂଗ୍ରାମରେ ନିର୍ଭୀକତା, ପ୍ରଜାପାଳନ, ଶତ୍ରୁ ଆକ୍ରମଣରୁ ଦେଶର ରକ୍ଷା, ଦୁଷ୍ଟଙ୍କ ଉପଦ୍ରବରୁ ତୀର୍ଥର ଉଦ୍ଧାର, ଦେବତାଙ୍କର ଧର୍ମ ରୂପେ ଦୟା, ତୀର୍ଥମାନଙ୍କର ଧର୍ମ ରୂପେ ମାୟାହୀନତା, ସୁନ୍ଦରୀ ସ୍ତ୍ରୀମାନଙ୍କର ଧର୍ମରୂପେ ସୌଭାଗ୍ୟବତୀ ହେବା, ସ୍ତ୍ରୀମାନଙ୍କର ମୁଖ୍ୟ ଧର୍ମ ଭାବେ ସନ୍ତାନ ଜାତ କରିବା, ଯୋଗୀମାନଙ୍କର ଧର୍ମ ରୂପେ ଇନ୍ଦ୍ରିୟ ସଂଯମତା ଓ ପଣ୍ଡିତମାନଙ୍କର ଧର୍ମରୂପେ ଉପାୟବନ୍ତ ହେବାକୁ ନିର୍ଦ୍ଦେଶ କରିଛନ୍ତି । ସାଧାରଣ ଲୋକମାନଙ୍କର ଧର୍ମ ସମ୍ବନ୍ଧରେ ସାରଳା ଦାସ ସ୍ପଷ୍ଟ ଭାବରେ ଉଲ୍ଲେଖ କରି ନଥିଲେ ହେଁ ଧର୍ମରକ୍ଷା କରିବାକୁ ବା ଧର୍ମରେ ଚଳିବାକୁ ସେ ସମସ୍ତଙ୍କୁ ଉପଦେଶ ଦେଇଛନ୍ତି । ସେଥିପାଇଁ କଲ୍ୟାଣ କଲାବେଳେ ମହାଭାରତରେ ଚରିତ୍ର ସବୁକୁ କୁହାଯାଇଛି ''ଧର୍ମ ବର୍ଦ୍ଧିତ ହୋଉ'' (ପୃ-୨୧୨) ''ଅନୁବ୍ରତେ ଧର୍ମ ବ୍ରତ କର'' (ପୃ-୨୧୨) ବା ''ପଣ୍ଡିତ ଧାର୍ମିକ ପଣେ ସଦା ଯାଉ ଦିନ'' (ପୃ-୧୩୨)

ଅକର୍ମରୁ ମନକୁ ମୁକ୍ତ କରି ସୁକର୍ମ କରିବା ଥିଲା ସାରଳା ଦାସଙ୍କ ଧାର୍ମିକ ଆଦର୍ଶ । ସେ ସାଧାରଣ ଭାବେ ସୁକର୍ମର ପାଳନ, ତୀର୍ଥ ଗମନ, ପୂଜା, ହୋମ, ବ୍ରତ, ଉପବାସ, ଅର୍ଚ୍ଚନା, ଭଗବାନଙ୍କ ନାମ ସ୍ମରଣ, ସେବା, ଭକ୍ତି, ପରୋପକାର, ବିନୟ ପ୍ରଭୃତିକୁ ଧର୍ମ କହିଥିଲେ ହେଁ ସଂସାରର ଚିରନ୍ତନ କୀର୍ତ୍ତିର ବର୍ଣ୍ଣନା କଲାବେଳେ ସେ ଦୁଇଟି ଆଦର୍ଶର ସୂଚନା ଦିଅନ୍ତି । ଯୁଧିଷ୍ଠିରଙ୍କ ପ୍ରସଙ୍ଗରେ ସେ ଚିରନ୍ତନ କୀର୍ତ୍ତି ରୂପ ଅନେକ ପୁଣ୍ୟ ଧର୍ମ କରିବାକୁ ଗ୍ରହଣ କରିଥିଲେହେଁ ଅଗ୍ନିକାର ମହର୍ଷି ସଙ୍ଗରେ ସେ ସ୍ପଷ୍ଟ ଭାବରେ ଯାଗ, ଯଜ୍ଞ ବା ହୋମ; ଦେବତା, ବ୍ରାହ୍ମଣ ଭକ୍ତି ବା ବ୍ରାହ୍ମଣୋଚିତ ନିତ୍ୟକର୍ମକୁ ଗୁରୁତ୍ୱ ଦେଇ ନାହାନ୍ତି । ଏ ସବୁ କାର୍ଯ୍ୟ ମନୁଷ୍ୟ ଚରିତ୍ରକୁ ନିୟନ୍ତ୍ରିତ କରିବାକୁ ସମର୍ଥ ହେଉଥିଲେ ହେଁ ଏ ସବୁ ଚିରନ୍ତନ କୀର୍ତ୍ତି ନୁହେଁ । ସେ ଏ ସ୍ଥଳରେ ବଂଶ ରକ୍ଷାକୁ ଚିରନ୍ତନ କୀର୍ତ୍ତି ରୂପେ ଗ୍ରହଣ କରିଛନ୍ତି ।

ସାରଳା ଦାସଙ୍କର ଧର୍ମ ଧାରଣା ଓ ଧର୍ମ ଦେବତାର ଆଦର୍ଶ ହେଉଛନ୍ତି ତାଙ୍କ ସୃଷ୍ଟି ଯୁଧିଷ୍ଠିର ଚରିତ୍ର । ସେ କେବଳ ଧର୍ମ ରକ୍ଷା କରିବା ପାଇଁ ଧର୍ମ ଦେବତାଙ୍କ ଔରସରୁ ଅବତୀର୍ଣ୍ଣ ହୋଇ ନଥିଲେ, କେବଳ ସବୁବେଳେ ଧର୍ମବ୍ରତ ପାଳନ କରୁ ନଥିଲେ, କେବଳ ଚିରନ୍ତନ କୀର୍ତ୍ତି ରଖିବା ପାଇଁ ପୁଣ୍ୟ ଧର୍ମ କରି ନଥିଲେ, ଜନ୍ମ ହେବା ସମୟରେ ହିଁ ଧର୍ମ ଧର୍ମ ଉଚ୍ଚାରଣ କରିଥିଲେ । ସେଥିପାଇଁ ସାରଳା ଦାସ ଯୁଧିଷ୍ଠିରଙ୍କ ମହିମା ଗାନ କରି କହିଛନ୍ତି -

ପୁତ୍ର କୋଳେ ଧରି ବଦୟନ୍ତି କରତା
ଯେ ମଧ୍ୟ ଭୁବନେ ହେବୁ ତୁହି ସେ ଧର୍ମ ଦେବତା ।
ଯେ ମର୍ତ୍ତ୍ୟ ସ୍ୱର୍ଗେଣ ଦେବତାୟେ ଯଦି ଉତପତି
ଏମନ୍ତେ ହେଂ ତୋହୋର ଦାସ ତୁ ସବୁଙ୍କରି ଅଧିପତି ।
ନାରାୟଣ ଉତପତି ହୋଇଲେ ମର୍ତ୍ତ୍ୟପୁରେ
ସେ ହରି ଆରାଧନା କରିବେ ତୋହୋର ପୟରେ ।

କୋଟି ତୀର୍ଥ ସ୍ନାନେଣ ବାବୁ ଯେତେ ଫଳ ଶ୍ରୁତି
ତବ ନାମ ସୁମରନ୍ତେ ସଂସାର ଜନେ ପାବନ୍ତୁ ସଦଗତି ।
ଦ୍ରଶନେ ଲଭନ୍ତୁ କୋଟିଯେ ଅଶ୍ୱମେଧ ଯଗ୍ୟଂ ଫଳ
ଯେ ମଧ ଭୁବନକୁ ବାବୁ ତୁହି ସେ ଧର୍ମ ଦିଗପାଳ ।
ଅନୁବ୍ରତେ ଧର୍ମବ୍ରତ ଯେ ତୋହର ଇଚ୍ଛା
ଯେବେ ଯେ ସୃଷ୍ଟି ବାବୁ ଧର୍ମେ କର ରକ୍ଷା ।

(ପୃଷ୍ଠା -୨୧୧-୨୧୨)

# ରଚନା ଶୈଳୀ

କଥା କହିବା ସାରଳା ଦାସଙ୍କର ମୁଖ୍ୟ ପ୍ରବୃତ୍ତି । ଅନେକ କଥା ପୁଣି ନୂଆ ନୂଆ କଥା କହିବାରେ ସେ ନିଜର ଦକ୍ଷତା ପ୍ରକାଶ କରିଥିଲେ ହେଁ, ତାଙ୍କ ମହାଭାରତର ଉତ୍କର୍ଷତା ତଥା ଲୋକପ୍ରିୟତା କେବଳ ଏହାରି ଉପରେ ନିର୍ଭର କରେ ନାହିଁ ।

**ବର୍ଣ୍ଣ୍ୟ :** ସାମଗ୍ରୀର ନୂତନତା ପୁଣି ବିଚାରର ପରିପକ୍ୱତା ସହ କାବ୍ୟ ସୌନ୍ଦର୍ଯ୍ୟର ସମାବେଶ ଦ୍ୱାରା ହିଁ କାବ୍ୟ ବା ଗ୍ରନ୍ଥର ସଫଳତା ନିର୍ଭର କରେ । ସାରଳା ଦାସଙ୍କ ମହାଭାରତ କାବ୍ୟ ନୁହେଁ, ପୁରାଣ । ଲୋକଙ୍କୁ କଥା ଶୁଣାଇବା ଓ ସେହି କଥା ସବୁ ମାଧମରେ ବିଭିନ୍ନ ପ୍ରକାର ସାମାଜିକ ଆଦର୍ଶ ପ୍ରତିଷ୍ଠା କରିବା ତାଙ୍କର ଲକ୍ଷ୍ୟ ଥିଲା । ସେ କାବ୍ୟୋଚିତ ବର୍ଣ୍ଣନା ଅପେକ୍ଷା ପ୍ରକଥନାତ୍ମକ (Narrative) ଶୈଳୀକୁ ବିଶେଷ ଭାବରେ ଗ୍ରହଣ କରିଥିଲେ । ସାରଳା ମହାଭାରତ ଶୈଳୀଗତ ପ୍ରସାଧାନର ବୈଶିଷ୍ଟ୍ୟ ନିମ୍ନାଙ୍କିତ କେତେକ ଶୀର୍ଷକ ମାଧ୍ୟମରେ ବିଚାର କରିବା ପାଇଁ ପ୍ରଚେଷ୍ଟା କରାଯାଇଛି ।

(କ) ବସ୍ତୁ-ବିନ୍ୟାସ
(ଖ) ବର୍ଣ୍ଣନା
(ଗ) ସମ୍ବାଦ
(ଘ) ଜ୍ୟୋତିଷ ବର୍ଣ୍ଣନା
(ଙ) ସ୍ତୋତ୍ର
(ଚ) ନୀତିବାକ୍ୟ ଓ ପାଣ୍ଡିତ୍ୟ ପ୍ରଦର୍ଶନ
(ଛ) ଅଳଙ୍କାର-ବିଧାନ
(ଜ) ଛନ୍ଦ-ଯୋଜନା
(ଝ) ଭାଷା

(କ) **ବସ୍ତୁ ବିନ୍ୟାସ** - ସାରଳା ମହାଭାରତ ହିଁ ଓଡ଼ିଆ ଭାଷାର ଆଦି ପୁରାଣ । ଏହା ପୂର୍ବରୁ ସଂସ୍କୃତରେ ବହୁ ପୁରାଣ ଓ ଉପପୁରାଣରଚିତ ହୋଇଥିଲେହେଁ ଏ ସବୁର ବିଭାଜନ କୌଣସି ନିଶ୍ଚିତ ରୀତିରେ ହୋଇ ନ ଥିଲା । ନାରଦ, ବାୟୁ, ମାର୍କଣ୍ଡେୟ, ଅଗ୍ନି, ବରାହ, ବାମନ, ମତ୍ସ୍ୟ ଓ ଗରୁଡ଼ ପୁରାଣ ଅଧ୍ୟାୟ କ୍ରମରେ ବିଭାଜିତ ହୋଇଥିଲେ ହେଁ ପଦ୍ମ, ବ୍ରହ୍ମବୈବର୍ତ୍ତ ଓ ସ୍କନ୍ଧ ପୁରାଣ ପ୍ରଭୃତିରେ ବିଭାଜନ-କ୍ରମ ଥିଲା ଖଣ୍ଡ । ଭାଗବତ, ଦେବୀ ଭାଗବତ ସ୍କନ୍ଧରେ ବିଭକ୍ତ ହୋଇଥିବା ବେଳେ ବ୍ରହ୍ମାଣ୍ଡ ପୁରାଣ ପାଦରେ, ଭବିଷ୍ୟ ଓ ହରିବଂଶ ପୁରାଣ ପର୍ବରେ, ବିଷ୍ଣୁ ପୁରାଣ ଅଂଶରେ ଓ ଶିବପୁରାଣ ସଂହିତାରେ ବିଭକ୍ତ । ସାରଳା ଦାସ ଏଥିରୁ ପର୍ବ ବିଭାଜନକୁ ଗ୍ରହଣକରି ସଂସ୍କୃତ ମହାଭାରତ ପରି ଏହାକୁ ଅଠରଟି ପର୍ବରେ ବିଭକ୍ତ କରିଛନ୍ତି । ପ୍ରତ୍ୟେକ ପର୍ବ ମଧ୍ୟରେ ସାରଳାଦାସ ଆଉ ଦୁଇଟି ବିଭାଜନ କ୍ରମ ରଖିଛନ୍ତି । ତାହାହେଲା ପଟଳ ଓ ସଭା । ପ୍ରଥମ ପଟଳର ଶେଷ କଲାବେଳେ କବି ଲେଖିଛନ୍ତି -

ସ୍ୱାମୀ ଯାବତ ଚନ୍ଦ୍ର ଦିବାକର ଯାଉ
ତୋହର ପାଦ ତଳେ ତଳେ ମୋହର ଚିତ୍ତ ଥାଉ
ମୁହିଁ ମହାଭାରଥ କହିବି ଆଦିପର୍ବ
ଦ୍ୱିତୀୟ ପଟଳେଯେ ଅପୂର୍ବ ରସ ଭାବ ।

ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ସମ୍ପାଦିତ ଗ୍ରନ୍ଥରେ 'ପଟଳ' ସ୍ଥାନରେ 'ଖଣ୍ଡ' ଶବ୍ଦ ପ୍ରଯୁକ୍ତ । ପଟଳ ବା ଖଣ୍ଡ ବିଭାଜନକୁ କବି ନିଜେ ଗ୍ରନ୍ଥ ମଧ୍ୟରେ ଉଲ୍ଲେଖ କରିଥିଲେ ହେ, ଅନ୍ୟ ବିଭାଜନ କ୍ରମରେ ଉଲ୍ଲେଖ କରିନାହାନ୍ତି । ତେବେ ବି କେତେକ ପ୍ରସଙ୍ଗ ଶେଷରେ ଭଣିତାଥିବା ପଦ ସଂଯୋଜିତ । କୌଣସି କୌଣସି ପ୍ରତିଲିପିରେ ଏହି ବିଭାଜନ-କ୍ରମର ନାମ ହେଲା 'ସଭା' । ପଞ୍ଚମ ସଭା ଶେଷରେ କବି ଲେଖିଛନ୍ତି-

ଯେହି ହସ୍ତରେ ଫଳ ଲଭନ୍ତି
ବିରଞ୍ଚି ନାରାୟଣ ପ୍ରସାଦେ
ଶୁଦ୍ରମୁନି ସାରଳା ଦାସ କରଣର
ପଦ୍ମ ପାଦେ ବନ୍ଦେ ।''

କବିଙ୍କ ଭଣିତା ଏବଂ କୌଣସି ନା କୌଣସି ଦେବତା ବା ଦେବୀଙ୍କର ବନ୍ଦନା ସନ୍ନିବେଶିତ କରି କବି ସଭା-ସମାପ୍ତିର ସ୍ପଷ୍ଟ ସଙ୍କେତ କରିଛନ୍ତି ।

ପୁରାଣ ସବୁରେ ଅଧ୍ୟାୟ, ଖଣ୍ଡ ବା ସ୍କନ୍ଧ ସବୁର କୌଣସି ନିର୍ଦ୍ଦିଷ୍ଟ ଅନୁପାତ ନାହିଁ । କୌଣସି କୌଣସି ପୁରାଣର ସ୍କନ୍ଧ ବା ଖଣ୍ଡ ବିଭାଜନ କୌଣସି କୌଣସି ପୁରାଣଠାରୁ ମଧ୍ୟ ବଡ଼ । ଭାଗବତ ପୁରାଣର ଦଶମସ୍କନ୍ଧ ଓ ପଦ୍ମପୁରାଣର ଉତ୍ତର ଖଣ୍ଡ ବାୟୁ, ଗରୁଡ଼ ଓ ବାମନ ପୁରାଣଠାରୁ ବହୁତ ବଡ଼ । ସାରଳା ଦାସ ମଧ୍ୟ ସଭା ବା ପଟଳ ବିଭାଜନର କୌଣସି ଅନୁପାତ ରଖିନାହାନ୍ତି । ପଞ୍ଚମ ସଭା ମୋଟେ ନଅ ପୃଷ୍ଠା ( ୧୩୭ ପୃଷ୍ଠାରୁ ୧୪୫ ) ହୋଇଥିବା ବେଳେ

ଷଷ୍ଠ ସଂଖ୍ୟା ହେଲା ୧୪୬ରୁ ୧୯୬ ଅର୍ଥାତ୍ ୫୧ ପୃଷ୍ଠା । ସାଧାରଣତଃ ସଭା ଶେଷରେ ବନ୍ଦନା ଓ ଭଣିତା ଥିଲେ ହେଁ ଅଗ୍ନି ବନ୍ଦନା ଏବଂ ସାରଳାଦାସଙ୍କ ଭଣିତା ଥିବା ସତ୍ତ୍ୱେ (ପୃ-୨୫୧) ଅନ୍ୟ ସଭାର ଆରମ୍ଭ ହୋଇ ନାହିଁ ।

ପୁରାଣର ପ୍ରତିପାଦ୍ୟ ବସ୍ତୁରେ ମଧ୍ୟ ସଙ୍ଗଠନ ଓ ସମ୍ବନ୍ଧର ଅଭାବ ପରିଲକ୍ଷିତ ହୁଏ । ସେଥିପାଇଁ ପୁରାଣରେ ଗୋଟିଏ କଥାର ବହୁରୂପ ଦେଖିବା ଏକ ସାଧାରଣ କଥା । ସାରଳା ମହାଭାରତରେ ଏହାର ବହୁ ଉଦାହରଣ ଦେଖିବାକୁ ମିଳେ । ସହଦେବଙ୍କ ଜନ୍ମକଥା ଏହାର ଏକ ଉଦାହରଣ । ସଂସ୍କୃତ ମହାଭାରତକୁ ଅନୁସରଣ କରି ଅଗସ୍ତିଙ୍କ ମୁଖରେ ନକୁଳ ଓ ସହଦେବଙ୍କ ପିତାରୂପେ ଅଶ୍ୱିନୀ କୁମାରଙ୍କର ସ୍ପଷ୍ଟ ଉଲ୍ଲେଖ କରାଯାଇଥିଲେ ହେଁ, ଅନ୍ୟସ୍ଥଳରେ ପଣ୍ଡୁଙ୍କଠାରୁ ସହଦେବ ଜନ୍ମ ହୋଇଥିବା କଥା କୁହାଯାଇଛି ।

ପୁରାଣ ସବୁରେ ବକ୍ତାରୂପେ କୌଣସି ଋଷି ଓ ଶ୍ରୋତାରୂପେ ଋଷି, ମୁନି ଓ ରାଜା ଆଦିଙ୍କୁ ଗ୍ରହଣ କରାଯାଇଥାଏ । ସାରଳା ମହାଭାରତର ବକ୍ତା ହେଉଛନ୍ତି ଅଗସ୍ତି ମୁନି ଓ ଶ୍ରୋତା ହେଉଛନ୍ତି ବଇବସ୍ୱତ ମନୁ । ପ୍ରସଙ୍ଗ ବଶତଃ ଅନ୍ୟ ବକ୍ତା ଓ ଶ୍ରୋତା ମଧ୍ୟ ରହିଛନ୍ତି । ଶ୍ରୋତାଙ୍କ ପ୍ରଶ୍ନ ଅନୁଯାୟୀ ମୂଳକଥା କ୍ରମ ମଧ୍ୟ ରକ୍ଷିତ ହୋଇପାରି ନାହିଁ । ନୂଆକଥା ଆରମ୍ଭ ହୋଇଯାଇଛି । ପୁଣି ସମୟ ସମୟରେ ପ୍ରଶ୍ନୋତ୍ତର ଛଳରେ ଅତୀତ କଥାର ଅବତାରଣ କରାଯାଇଛି । ଏହିପରି ବିଚାର କଲେ ମହାଭାରତର ବସ୍ତୁବିନ୍ୟାସରେ ସ୍ୱାଭାବିକତା, ନିୟମିତତା, ଓ କ୍ରମିକତା ଅପେକ୍ଷା ବିଶୃଙ୍ଖଳତା ହିଁ ବିଶେଷଭାବେ ଦେଖିବାକୁ ମିଳିଥାଏ ।

**(ଖ) ବର୍ଣ୍ଣନା :** କଥା କହିବା ପୁରାଣର ମୁଖ୍ୟ ବୈଶିଷ୍ଟ୍ୟ ହେଲେ ହେଁ କଥାର ମଝିରେ ମଝିରେ ଯୁଦ୍ଧ, ସ୍ୱରୂପ ବର୍ଣ୍ଣନା, ବିବାହ ବର୍ଣ୍ଣନା, ପ୍ରକୃତି ବର୍ଣ୍ଣନାକରି କବି ନିଜ ଗ୍ରନ୍ଥକୁ ସରସ କରିବାକୁ ପ୍ରୟାସ କରିଥାନ୍ତି । ନିମ୍ନରେ ଏହି ବର୍ଣ୍ଣନା ମଧ୍ୟରୁ ସାରଳାଦାସଙ୍କ ରଚନା ଶୈଳୀର ସ୍ୱକୀୟତା ପ୍ରତିପାଦନ କରାଯାଇଛି ।

**ଯୁଦ୍ଧ ବର୍ଣ୍ଣନା :** ମହାଭାରତର ମୁଖ୍ୟ ବିଷୟ ହେଉଛି, କୁରୁ ଓ ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ । ଏହି ଯୁଦ୍ଧ ସଂଘଟିତ ହେବା ପୂର୍ବରୁ ବହୁ ଯୁଦ୍ଧର ବର୍ଣ୍ଣନାରେ ସଂସ୍କୃତ ତଥା ସାରଳା ମହାଭାରତ ମୁଖର । ସାରଳା ଦାସଙ୍କ ବର୍ଣ୍ଣନା ତତ୍‌କାଳୀନ ସମାଜରେ ପ୍ରଚଳିତ ଯୁଦ୍ଧ କୌଶଳର ବିଭିନ୍ନ ସ୍ଥିତି ବିଷୟରେ ସ୍ପଷ୍ଟ ସୂଚନା ଦେଇଥାଏ । ବୀରମାନଙ୍କ ମନ୍ତ୍ରଣା, ପ୍ରତିଜ୍ଞା, ପ୍ରତିଶୋଧ ଭାବନା, ବୀରତା, ଯୁଦ୍ଧରେ ବ୍ୟବହୃତ ବିଭିନ୍ନ ପ୍ରକାର ବାଦ୍ୟ, ସେନାର ଏକତ୍ରୀକରଣ, ଦୁର୍ଗର ସ୍ଥିତି, ସେନାର ପ୍ରସ୍ଥାନ, ରଣସଜ୍ଜା, ଆକ୍ରମଣ, ଅସ୍ତ୍ର-ଶସ୍ତ୍ର ପ୍ରହାର, ବୀରମାନଙ୍କର ଉକ୍ତି-ପ୍ରତ୍ୟୁକ୍ତି, ଯୁଦ୍ଧ ଭୂମିର ଭୟାନକ ଓ ବୀଭତ୍ସ ଦୃଶ୍ୟ, ଶୃଗାଳ, ଶାଗୁଣା, ପିଶାଚ, ରକ୍ତ ରଞ୍ଜିତ ଶବ, ଫଟା ଖପୁରୀ, ଭଙ୍ଗାରଥ, ପ୍ରଭୃତିର ବିଶଦ ବର୍ଣ୍ଣନା କରି କବି ସାରଳା ଦାସ ବୀର, ଭୟାନକ, ବୀଭତ୍ସ ଓ ରୌଦ୍ର ରସର ସଫଳ ବର୍ଣ୍ଣନା କରିଅଛନ୍ତି । ପ୍ରତ୍ୟେକ ବର୍ଣ୍ଣନା ସେହି ସମୟରେ ପ୍ରଚଳିତ ଯୁଦ୍ଧପଦ୍ଧତି ଦ୍ୱାରା ଅନୁପ୍ରାଣିତ ହୋଇ ବିଶେଷ

ରୁଚିକର ହୋଇପାରିଛି । ବିଭିନ୍ନ ପ୍ରକାର ଯୁଦ୍ଧ ମଧ୍ୟରୁ କବି ମଲ୍ଲ ଯୁଦ୍ଧର ଅତ୍ୟନ୍ତ ସରସ ବର୍ଣ୍ଣନା ବହୁ ସ୍ଥଳରେ କରିଛନ୍ତି । ଉଦାହରଣ ରୂପେ ଭୀଷ୍ମ ଓ ପରଶୁରାମଙ୍କ ଯୁଦ୍ଧ ବର୍ଣ୍ଣନାକୁ ଗ୍ରହଣ କରାଯାଇ ପାରେ । ଏହା ମୁଖ୍ୟତଃ ଏକ ମଲ୍ଲଯୁଦ୍ଧ ହେଲେ ହେଁ ଏଥିରେ ସାଧାରଣ ସମରର କେତେକ ସଙ୍କେତ ନିହିତ । ସେ ଦୃଷ୍ଟିରୁ ଏହାକୁ ନିମ୍ନାଙ୍କିତ ଭାବେ  କରାଯାଇପାରେ ।

(କ) ଯୁଦ୍ଧର କାରଣ

(ଖ) ପ୍ରତିପକ୍ଷ ଯୋଦ୍ଧା ନିକଟକୁ ବା ଦୂତ ମାଧ୍ୟମରେ ସମ୍ବାଦ ପ୍ରେରଣ, ଯୁଦ୍ଧଯାତ୍ରା

(ଗ) ଯୋଦ୍ଧାମାନଙ୍କର ଉକ୍ତି-ପ୍ରତ୍ୟୁକ୍ତି

(ଘ) ବୀରତ୍ୱର ପ୍ରଶଂସା

(ଙ) ଯୁଦ୍ଧ

(ଚ) ସମାଧାନ

(କ)  ଭୀଷ୍ମ ଅମ୍ବା କନ୍ୟାକୁ ବରଣ କରି ବିବାହ ନ କରିବା ଫଳରେ ସେ ପ୍ରତିଶୋଧ ନେବା ଆଳରେ ପର୍ଶୁରାମଙ୍କ ଠାରେ ଶରଣ ପଶେ ।

ଅମ୍ବେକ ବୋଇଲା ଗୋସାଇଂ ମୁହିଂ ବଡ଼ ଦୁଃଖୀ
ମୁହିଂ ଶରଣ ମାଗଇ ମହତ ଜନ ଦେଖି । (ପୃ-୭୭)

ଶରଣାର୍ଥୀର କାମନା ପୂରଣ କରିବା ବୀରର ମହତ କାର୍ଯ୍ୟ । ସେଥିପାଇଁ ପର୍ଶୁରାମ ତ୍ରିବାର ସତ୍ୟ କରି କହିଲେ -

ଆମ୍ଭର ସତ୍ୟସତ୍ୟ ତିନିବାରରେ ସତୀ
ସେହିକ୍ଷଣି ଦେବୁଂ ବର ମାଗରେ ଯୁବତୀ । (ପୃ-୭୭)

(ଖ) ଅମ୍ବା ନିଜର ଇଚ୍ଛା ପ୍ରକାଶ କରିବା ପରେ ପରେ ପର୍ଶୁରାମ ନିଜର ଭ୍ରାତା ରଘୁରାମ ଓ ନୀଳରାମଙ୍କୁ ଭୀଷ୍ମଙ୍କ ନିକଟକୁ ପ୍ରେରଣ କଲେ । ସେମାନେ ଅମ୍ବାକନ୍ୟା ସହ ବାରୁଣାବନ୍ତ ପୁରରେ ଭୀଷ୍ମଙ୍କୁ ସାକ୍ଷାତ କଲେ । ଭୀଷ୍ମ ସେମାନଙ୍କଠାରୁ ପର୍ଶୁରାମଙ୍କ ସମ୍ବାଦ ଶୁଣି କ୍ରୋଧରେ ପ୍ରଜ୍ୱଳିତ ହୋଇ କହିଲେ ।

ମୋହର ଭୟକରେ ତୁମ୍ଭ ପର୍ଶୁରାମଙ୍କୁ
କିପାଇଁ ପ୍ରଦାନ ହେବି ଅମ୍ବେକା କନ୍ୟାକୁ । (ପୃ-୭୮)

(ଗ) ଭୀଷ୍ମ ପର୍ଶୁରାମଙ୍କ ପରାମର୍ଶକୁ ପ୍ରତ୍ୟାଖ୍ୟାନ କରିଦେବା ପରେ ସଂଘର୍ଷ ପୂର୍ବରୁ ବୀରମାନେ ପରସ୍ପରର ବୀରତ୍ୱ ପ୍ରକାଶ କରିଥାନ୍ତି । ଏହି ଯୁଦ୍ଧରେ ବିଭିନ୍ନ ପ୍ରକାର ଉକ୍ତି-ପ୍ରତ୍ୟୁକ୍ତିର ଉଦାହରଣ ସନ୍ନିବେଶିତ । ଭୀଷ୍ମଙ୍କଠାରୁ ପର୍ଶୁରାମଙ୍କ ଅବମାନନା କଥା ଶୁଣିବା ପରେ ନୀଳରାମ କ୍ରୋଧରେ ଜର୍ଜରିତ ହୋଇ ସଦମ୍ଭରେ କୁହନ୍ତି,

ନୀଳରାମେ ବୋଇଲେ ରେ ପର୍ଶୁରାମ ଆଗ୍ୟଂମେଣ୍ଟୁ
ଅବଶ୍ୟ ତୋହର ଯେ ହୋଇବ ଶିର ତୁଟୁ (ପୃ-୭୮)

ଭୀଷ୍ମ ଏଥିରେ ଦବି ନଯାଇ ପର୍ଶୁରାମଙ୍କ ଉଦ୍ଦେଶ୍ୟରେ କହିଲେ-

କୋପେ ଭୀଷ୍ମ ବୋଇଲେ ଶୁଣ ନୀଳରାମ
ପାରିଲେ ଆସୁ ତୋର ସ୍ୱାମୀ ପର୍ଶୁରାମ
ପର୍ଶୁରାମ ଆଗେ ତୋର କୁହ କିନା ଯାଇଁ।
ସଭିଏ ନାଶ ଯିବ ତୁମ୍ଭେ ଏ ଦ୍ରୋହୀର ପାଇଁ
(ପୃ-୭୯)

ସାଧାରଣତଃ ମଲ୍ଲ ଯୁଦ୍ଧରେ ଯୋଦ୍ଧାମାନେ ପରସ୍ପରର ସମ୍ମୁଖୀନ ହେବାପରେ ନିଜର ବୀରତ୍ୱ ପ୍ରକାଶ କରି ପ୍ରତିପକ୍ଷ ଯୋଦ୍ଧାକୁ ଯୁଦ୍ଧପାଇଁ ଆହ୍ୱାନ କରିଥାନ୍ତି। ସାରଳା ଦାସ ଏ ସ୍ଥଳରେ ଏ ପ୍ରକାର ଉକ୍ତି-ପ୍ରତ୍ୟୁକ୍ତିର ଯୋଜନା କରିନାହାନ୍ତି। ପର୍ଶୁରାମ ଭୀଷ୍ମଙ୍କ ଆଶ୍ରମରେ ପ୍ରବେଶ କଲାପରେ ଭୀଷ୍ମ ପର୍ଶୁରାମଙ୍କ ରାଗ ଦେଖି ତାଙ୍କଠାରୁ ଦୂରେଇ ରହିବା ପାଇଁ ଚେଷ୍ଟା କରିଛନ୍ତି। ସେଥିପାଇଁ ପର୍ଶୁରାମ ଭୀଷ୍ମଙ୍କ ଉଦ୍ଦେଶ୍ୟରେ ପରାଶରଙ୍କୁ କହିଛନ୍ତି-

କୋପେଣ ପର୍ଶୁରାମ ଯେ ବଦନ୍ତି ଉତ୍ତର
ଆରେ ମୋହର ଆଗ୍ୟାଂ ଭଷ୍ଟ କୁଳରେ
କେବଣ ଦର୍ପ ତୋହର। (ପୃ-୮୦)

କେବଣ କାରଣେ ବରିଲୁ ଯେହାଙ୍କୁ
ବରିଣ ବିଭା ନୋହିଲୁ ଅନେକ କନ୍ୟାକୁ। (ପୃ-୮୦)

ଭୀଷ୍ମଙ୍କ ଉଦ୍ଦେଶ୍ୟରେ ଉଚ୍ଚାରିତ କ୍ରୋଧାଗ୍ନିର କୌଣସି ଉତ୍ତର ଭୀଷ୍ମ ସେତେବେଳେ ପ୍ରଦାନ କରିନାହାନ୍ତି। ଗୁରୁଜନ ଭାବରେ ପରାଶର ଆସନ୍ନ ଯୁଦ୍ଧର ସମାଧାନ ପାଇଁ ଭୀଷ୍ମଙ୍କ ସମ୍ମୁଖରେ ପର୍ଶୁରାମଙ୍କ ବୀରତ୍ୱର ପ୍ରଶଂସା କରି ଯୁଦ୍ଧରୁ ନିବୃତ୍ତ ହେବାପାଇଁ ଭୀଷ୍ମଙ୍କୁ ପରାମର୍ଶ ଦେଇଛନ୍ତି। ଭୀଷ୍ମ ନିଜ ପ୍ରତିଜ୍ଞାରେ ଅଟଳ ଥିବା ହେତୁ ପରାଶରଙ୍କ ପରାମର୍ଶକୁ ଗ୍ରହଣ ନକରି ପର୍ଶୁରାମଙ୍କ ଉଦ୍ଦେଶ୍ୟରେ କହିଛନ୍ତି -

ପର୍ଶୁରାମଙ୍କୁ ବୋଇଲେ ଭୀଷ୍ମ ମହାରଥୀ
ଆହୋ, ପର୍ଶୁରାମ କିସ ତୋତେ ମୋହର ଭୀତି,
ପଳା ଯା'ମିଛେ ଯେଥେ ବଖାଣୁ ବଡ଼ପଣ
ସହୋଦ୍ରେ କଳଙ୍କ ନ କରାଅସି ଅକାରଣ।

ତୁ ମୋହର ସୋହୋଦ୍ର ଅଟୁ ଯଥାର୍ଥେ
ଯେ ଛାର ପାମେରୀ ପାଇଁ ମରିବ ତିନି ଭ୍ରାଥେ ।
କିଞ୍ଚିତ ଦୋଷେ ବଡ଼ପଣ ନ ନାଶି,
ଶ୍ରିକାଳ ଯୁଦ୍ଧେ ସିଂହ ହୋଇଲାଟି ଧ୍ୱଂସି ।                    (ପୃ-୮୨-୮୩)

(ଘ) ଭୀଷ୍ମଙ୍କ ଦ୍ୱାରା ଅପମାନିତ ହୋଇ ଫେରିଯିବା ପରେ ନୀଳରାମ ପର୍ଶୁରାମଙ୍କ ସମ୍ମୁଖରେ ସମସ୍ତ କଥା ନିବେଦନ କରେ । ଅମ୍ବା କନ୍ୟା ମଧ କାନ୍ଦି କାନ୍ଦି ନିଜ ଦୁଃଖ ଜଣାଏ । ପର୍ଶୁରାମ ଭୀଷ୍ମଙ୍କ ଅହମିକା ଓ ସ୍ପର୍ଦ୍ଧାକୁ ସହ୍ୟ କରି ନପାରି ଯୁଦ୍ଧ ଉଦ୍ଦେଶ୍ୟରେ ଯାତ୍ରା କରିଛନ୍ତି ।

ଧାମଇଂ କୋପେ ସେ ପର୍ଶୁଧର ନାଥ
ପଛେ ଗୋଡ଼ାବନ୍ତି ରଘୁରାମ ନୀଳରାମ ବେନି ଭ୍ରାଥ          (ପୃ-୭୯)

ପର୍ଶୁଧର ନାଥ ପୃଥିବୀକୁ ଯେକୋଇଶ ବାର ନିକ୍ଷତ୍ରୀ କରିଥିବା ଅପ୍ରତିଦ୍ୱନ୍ଦୀ ଯୋଦ୍ଧା । ସେ ଯେତେବେଳେ ସଦର୍ପରେ ଯୁଦ୍ଧପାଇଁ ଯାତ୍ରା ଆରମ୍ଭ କଲେ ସେତେବେଳେ ତାଙ୍କୁ ଅନୁସରଣ କରିବା ଅନ୍ୟ ଲୋକଙ୍କ ପକ୍ଷରେ ଅସମ୍ଭବ । ଏହି କଥାକୁ ସାରଳା ଦାସ ଅତି ସଂକ୍ଷେପରେ ପ୍ରକାଶ କରି କହିଛନ୍ତି-

ପଛେ ଗୋଡ଼ାବନ୍ତି ରଘୁରାମ ନୀଳରାମ ବେନି ଭ୍ରାଥ ।

ପର୍ଶୁରାମ, ରଘୁରାମ ଓ ନୀଳରାମ- ଏମାନେ ହେଲେ ପୁରୁଷ । ଏମାନଙ୍କ ସାଙ୍ଗରେ ପାଦ ମିଳାଇ ଚାଲିବା ସୁକୁମାରୀ ରାଜକୁମାରୀ ଅମ୍ବାଙ୍କ ପକ୍ଷରେ ଆଦୌ ସମ୍ଭବ ନୁହେଁ । କିନ୍ତୁ କାମ ତାଙ୍କ ନିଜର । ସେଥିପାଇଂ ସେ ପଡ଼ିଉଠି ଅନେକ ଅବସ୍ଥା ହୋଇ ତାଙ୍କ ପଛେ ପଛେ ଧାଇଁଛନ୍ତି ।

ଅନେକ ଅବସ୍ଥା ଯେ ହୋଇ ଅଯେକ ଯୁବତୀ
ସେହି ଗୋଡାଇ ଅଛନ୍ତି ଯେ ତାହାଙ୍କ ପଛକତି ।          (ପୃ-୭୯)

ଯୁଦ୍ଧ ଯାତ୍ରାର ଆଡ଼ମ୍ବର ଏଥିରେ ନାହିଁ । ହାତୀ ଘୋଡ଼ାଙ୍କ ଗର୍ଜନ ଓ ବୀରମାନଙ୍କ କୁହାଟ, ବିଭିନ୍ନ ପ୍ରକାର ବାଦ୍ୟ ସ୍ୱରରେ ଏହା ମୁଖରିତ ହୋଇ ନାହିଁ । ଧ୍ୱଜ, ଚିରାଳ, ଆଲମ୍ବ ଓ ବିଲମ୍ବରେ ଏହା ସୁଶୋଭିତ ନୁହେଁ । ବୀରମାନଙ୍କ ପାଦ-ଗତି ପୁଣି ବୀରବାଦ୍ୟ ସହ ତାଳ ମିଳାଇ ହାତୀ ଘୋଡ଼ାଙ୍କ ନୃତ୍ୟ ଏଥିରେ ନାହିଁ । ତେବେ ବି ଏହି ଯୁଦ୍ଧ ଯାତ୍ରାରେ ଯେଉଁ ଭାବ-ଗାମ୍ଭୀର୍ଯ୍ୟ ପ୍ରକାଶିତ ତାହା ହୃଦୟକୁ ବିଶେଷ ଭାବେ ଆକର୍ଷିତ କରିଥାଏ ।

(ଙ) ଯୁଦ୍ଧ ପୂର୍ବରୁ ବୀର ରସର ପ୍ରକାଶ କରିବା ପାଇଁ ବୀରମାନଙ୍କ ମୁଖରେ ବା ସେମାନଙ୍କ ସହାୟକ ଚରିତ୍ରମାନଙ୍କ ସହାୟତାରେ ବୀରମାନଙ୍କ ଯଶ, କୀର୍ତ୍ତି ଓ ଗାରିମା ପ୍ରକାଶିତ ହୋଇଥାଏ । ଏଠାରେ କେବଳ ପର୍ଶୁରାମଙ୍କ ମହିମା ପରାଶରଙ୍କ ମୁଖରେ ଘୋଷିତ ହୋଇଛି । ଭୀଷ୍ମଙ୍କ ବିଜୟ ତଥା ତାଙ୍କ ବୀରତ୍ୱ ବହୁଗୁଣିତ କରି ପ୍ରକାଶ କରିବା ପାଇଁ

ସାରଳାଦାସ ପର୍ଶୁରାମଙ୍କ ମହିମା ପ୍ରଥମେ ପ୍ରଖ୍ୟାପନ କରିଥିବା ପରି ମନେହୁଏ । ପର୍ଶୁରାମଙ୍କ ପରି ବୀରଙ୍କୁ ଦ୍ୱନ୍ଦ୍ୱ-ଯୁଦ୍ଧରେ ପରାସ୍ତ କରିବା ଫଳରେ ଭୀଷ୍ମଙ୍କ ବୀରତ୍ୱ ସ୍ୱତଃ ପ୍ରକାଶିତ ହୋଇଥାଏ । ତେଣୁ ଯୁଦ୍ଧର ଫଳାଫଳ ନିର୍ଣ୍ଣିତ ହେବା ପୂର୍ବରୁ ସାରଳାଦାସ ଭୀଷ୍ମଙ୍କ ବଡ଼ିମା ପ୍ରକାଶ କରିବାକୁ ଇଚ୍ଛା କରିନାହାନ୍ତି ।

ବୀରମାନେ ସମ୍ମୁଖା ସମ୍ମୁଖୀ ହୋଇ ଉପସ୍ଥିତ ହୋଇଯିବା ପରେ ଜଣେ ଅନ୍ୟକୁ ଆକ୍ରମଣ କରେ । ଏପରି ଆକ୍ରମଣ ଓ ଯୁଦ୍ଧର ସଜୀବ ବର୍ଣ୍ଣନା କରିବାରେ ସାରଳାଦାସ ନିପୁଣ । ପର୍ଶୁରାମ ଓ ଭୀଷ୍ମଙ୍କ ଦ୍ୱନ୍ଦ୍ୱଯୁଦ୍ଧ ବର୍ଣ୍ଣନା କରି ସାରଳାଦାସ ଲେଖିଛନ୍ତି -

ଭୀଷ୍ମଙ୍କର କଥା କଟୁବଚନ ଶୁଣି
କୋପେଣ ଧାଇଁଲା ଯେ ପର୍ଶୁଧର ପାଣି ।
କୋପ ମୂର୍ତ୍ତି ଧଇଲେ ଯମଦଗ୍ନିର ବଳା
ଧଇଲେ କୋପେଣ ଭୀଷ୍ମେ ଅନର୍ଗଳା ।
ଭୀଷ୍ମଙ୍କୁ ପ୍ରଶୁରାମ ଧଇଲେ ଆକ୍ରଷି
ଭୀଷ୍ମଙ୍କୁ ତଳେ ପାଡ଼ି ହୃଦେ ମାଡ଼ି ବସି ।
ମୁଣ୍ଡ ମୋଡ଼ି ଭୀଷ୍ମଙ୍କର ଲୋଡ଼ନ୍ତି ପ୍ରଶୁଧର,
ଧାତିକାରେ ଲେଉଟାଇଲେ ଗଙ୍ଗାର କୁମର ।
ପ୍ରଶୁରାମଙ୍କୁ ତଳେ ପାତି ବସିଲେ ହୃଦ୍ୟତ
ବାମକରେ ଚାପିଣ ପ୍ରହାରିଲେ ମୁଥ ।
ଭୀଷ୍ମଙ୍କର ମୁଥ ଯେ ସମାନ ବଜ୍ର ଗିରି
ପ୍ରଶୁରାମଙ୍କର ନାସିକା ବାଟେ ଫୁଟି ବହଇ ବାରି । (ପୃ-୮୩)

ଭୀଷ୍ମ ଓ ପର୍ଶୁରାମ ନାମ ସହ, ଧାଇଁଲା, ଧଇଲେ, ପର୍ଶୁଧର ତଳେ ପାଡ଼ି, ହୃଦେ ମାଡ଼ି, ମୁଣ୍ଡ ମୋଡ଼ି, ଲୋଡ଼ନ୍ତି, ପାଡ଼ି ବସିଲେ ପ୍ରଭୃତିର ପ୍ରୟୋଗ ଯୁଦ୍ଧ ବର୍ଣ୍ଣନାକୁ ସରସ ସଜୀବ କରିବା ସଙ୍ଗେ ସଙ୍ଗେ ବୀର-ରସର ସଞ୍ଚାର କରିଛି ।

(ଚ) ଯୁଦ୍ଧର ଫଳାଫଳ ହାରିବା ବା ଜିଣିବା ଉପରେ ନିର୍ଭର କରେ । ଯୁଦ୍ଧରେ ହାରିଥିବା ଯୋଦ୍ଧା ପଳାୟନ କରେ ବା ଯୁଦ୍ଧ କ୍ଷେତ୍ରରେ ନିହତ ହୁଏ । ଭୀଷ୍ମ ଓ ପର୍ଶୁରାମ ଘଟଣାକ୍ରମେ ସଂଘର୍ଷର ସମ୍ମୁଖୀନ ହୋଇଥିଲେ ହେଁ ସେମାନେ ସମ୍ପର୍କରେ ଥିଲେ ଗୁରୁ ଓ ଶିଷ୍ୟ । ପରଶୁରାମଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ଏତେ ବ୍ୟାପ୍ତ ହୋଇଥିଲା ଯେ ତାଙ୍କ ସହ ରଣକ୍ଷେତ୍ରରେ ଉପନୀତ ହେବାପାଇଁ କେହି ଭରସୁ ନଥିଲେ । ସେଥିପାଇଁ ପରାଶର ଭୀଷ୍ମଙ୍କୁ ଯୁଦ୍ଧ ନ କରିବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ । ଯୁଦ୍ଧରେ ପରଶୁରାମ ପରାସ୍ତ ହେବାକ୍ଷଣି ଶାନ୍ତନୁ ହସ୍ତକ୍ଷେପ କରି ଭୀଷ୍ମଙ୍କୁ ଯୁଦ୍ଧରୁ ଅପସାରିତ କରି ଦେଇଥିଲେ ।

**ସ୍ୱରୂପ ବର୍ଣ୍ଣନା :** ସାରଳା ମହାଭାରତରେ ପୁରୁଷ ଓ ନାରୀ ଚରିତ୍ରର ରୂପ ବର୍ଣ୍ଣନା ପ୍ରାୟ ଦେଖିବାକୁ ମିଳୁଥିଲେ ହେଁ, ରୀତିକାଳୀନ କବିତା ସହ ତୁଳନା କଲେ ଏଥିରେ ସ୍ପଷ୍ଟଭାବେ କେତେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ରୀତିକାଳୀନ କବିମାନେ ଏପରିକି ଜଗମୋହନ ରାମାୟଣର କବି ବଳରାମ ମଧ୍ୟ ନାରୀରୂପ ବର୍ଣ୍ଣନାକୁ ମୁଖ୍ୟ ବର୍ଣ୍ଣ୍ୟ-ବସ୍ତୁ ରୂପେ ଗ୍ରହଣ କରିଥିଲେ । କାବ୍ୟ ମଧ୍ୟରେ ମିଳୁଥିବା ପ୍ରାୟ ପ୍ରତ୍ୟେକ ନାରୀ ଚରିତ୍ରର ନଖ-ଶିଖ ବର୍ଣ୍ଣନା କରିବା ପାଇଁ କବିମାନେ ବିଶେଷ ତତ୍ପର ଥିଲେ । ସାରଳା ମହାଭାରତରେ ବହୁ ନାରୀ ଚରିତ୍ରର ଉଲ୍ଲେଖ ମିଳୁଥିଲେ ହେଁ, ନଖଶିଖ ବର୍ଣ୍ଣନା ପ୍ରବୃତ୍ତି ପ୍ରତି ଆଗ୍ରହ ନ ଥିବାର ଜଣାଯାଏ । ଉଦାହରଣ ପାଇଁ ତାପତୀ, ଗଙ୍ଗା, ଗାନ୍ଧାରୀ, କୁନ୍ତୀ, ସତ୍ୟବତୀ ଓ ମାଦ୍ରୀ, ଅମ୍ବା, ଅମ୍ବିକା, ଅମ୍ବାଳିକାଙ୍କୁ ଗ୍ରହଣ କରାଯାଇପାରେ । ତାପତୀର ରୂପ ବର୍ଣ୍ଣନା କଲାବେଳେ ସାରଳା ଦାସ କେବଳ ଗୋଟିଏ ଉପମାର ବାରମ୍ବାର ପ୍ରୟୋଗ କରିଛନ୍ତି-

(୧) ତାପତୀର ତେଜ ଜ୍ୱାଳା ଅନଳ ପରାୟେ (ପୃ-୧୪)

(୨) ପାଶକୁ ଆସନ୍ତେ ସେ ସଗ୍ୟାଂର ଦୁଲଳା
ତାପତୀର ତେଜ ଯେ ଲାଗିଲା ମହାଜ୍ୱାଳା (ପୃ-୧୪)

(୩) ତାପତୀର ତେଜ ଯେ ମହା ଅନଳ ପରାୟେ
ମରୁଳ ଆରୋହି ପିତା ହୋଇଲା ଅନ୍ତର୍ଦ୍ଧାୟେ (ପୃ-୧୪)

ତାପତୀଙ୍କୁ ମହା ଅନଳ ସହ ତୁଳନାକରି ତାଙ୍କ ରୂପ ସମ୍ବନ୍ଧରେ କବି କିଞ୍ଚିତ ସୂଚନା ଦେଇଥିଲେ ହେଁ ଗଙ୍ଗା, ଅମ୍ବିକା, ଅମ୍ବାଳିକାଙ୍କ ବିଷୟରେ କବି କୌଣସି ଉପମାନ ଯୋଜନା କରିନାହାନ୍ତି । ପୁଣି ଅମ୍ବା କନ୍ୟା ସମ୍ବନ୍ଧରେ କବି ବିଭିନ୍ନ ପ୍ରକାର ସମସ୍ୟାର ଅବତାରଣା କରିଥିଲେ ହେଁ ରୂପ ବର୍ଣ୍ଣନା କେବଳ ଗୋଟିଏ କଥାରେ ଶେଷ କରିଛନ୍ତ ।

ଯଉବନବତୀ ସେ ସୁସଞ୍ଚ କାମେନୀ
ଅମୂଲ୍ୟ ରୂପବନ୍ତୀ ଜଗତ ମୋହିନୀ । (ପୃ-୨୪)

ମାଦ୍ରୀଙ୍କ ରୂପ ବର୍ଣ୍ଣନାରୁ ମଧ୍ୟ ସାରଳା ଦାସଙ୍କ ଦୃଷ୍ଟିକୋଣ ଅତି ସ୍ପଷ୍ଟ ଭାବେ ପ୍ରତିଭାତ ହୁଏ ।

ତାହାର ରୂପ ଗୁଣ କହିତ କି ପାରି
ପୃଥିବୀ ଅଳଙ୍କାର ସେ ଅଟଇ ସୁନ୍ଦରୀ (ପୃ-୨୬୩)

ପୁଣି ସେହି କଥାକୁ ସେ ଆହୁରି ରୂପ ବର୍ଣ୍ଣନା ସମ୍ବନ୍ଧରେ ତାଙ୍କର ଆଗ୍ରହ ନଥିବା ସ୍ପଷ୍ଟ କରିଛନ୍ତି ।

ରାଜାର ନନ୍ଦନୀ ସେ ନବ ଯଉବନୀ (ପୃ-୭୫)

ସୁନ୍ଦରୀ, ରୂପବନ୍ତୀ, ନବ ଯଉବନୀ, ସୁସଞ୍ଚ କାମେନୀ ଓ ଜଗତମୋହିନୀ କହି ସେ ନାରୀ ରୂପ ବର୍ଣ୍ଣନା ସମାପ୍ତ କରୁଥିଲେ ।

ପରାଶରଙ୍କୁ ମୁଗ୍ଧ କରିବା ପାଇଁ ସତ୍ୟବତୀଙ୍କ ନିକଟରେ କେବଳ ଗୋଟିଏ ଜିନିଷ ଥିଲା, ତାହା ହେଉଛି ତାଙ୍କର ରୂପ । ସାରଳା ଦାସ ଚାହିଁଥିଲେ ଏହି ଅବସରରେ ସମ୍ପୂର୍ଣ୍ଣ ସୁଯୋଗ ନେଇ ପାରିଥାନ୍ତେ । ଅଥଚ ସାରଳା ଦାସ କେବଳ ଗୋଟିଏ କଥାରେ ସତ୍ୟବତୀଙ୍କର ସୁନ୍ଦର ସ୍ୱରୂପର ବର୍ଣ୍ଣନା କରିଛନ୍ତି :

ସ୍ତନ ଜଘନ ଆକୃତି ପୃଥୁଳ ସୁନ୍ଦର କା'ଯା
ରୂପ ଦେଖିଣ ମାହାତମା କଲେ ମୋତେ ମାୟା । (ପୃ-୧୭)

ପରାଶର ଋଷିଙ୍କୁ କାମ ବିହ୍ୱଳ କରାଇବା ପାଇଁ ସାରଳାଦାସ ସତ୍ୟବତୀଙ୍କୁ ଯେଉଁ ଭାବେ ବର୍ଣ୍ଣନା କରିଛନ୍ତି, ସେଥିରେ ଘଟଣାର ବର୍ଣ୍ଣନା ଥିଲେ ହେଁ କଳ୍ପନା ବିଳାସ ନାହିଁ ।

ଘର୍ମ ତ୍ରିପଣ୍ଡ ହୋଇଲାନି ମୋର କାୟେ
ଦେହ ବସନ ଉଡ଼ିଲା ମୋର ବାୟେ ।
ଋଷି ଆଗ ମଙ୍ଗେ ମୁହିଂ ପଛ ମଙ୍ଗେ
ନୟନ ପୂରାଇ ସେ ଦେଖନ୍ତି ମୋହୋର ଅଙ୍ଗେ । (ପୃ-୧୭)

ଉପରେ ଆଲୋଚିତ ନାରୀ ଚରିତ୍ରର ବିଶ୍ଳେଷଣରୁ ନାରୀରୂପ ବର୍ଣ୍ଣନା ପ୍ରତି ସାରଳାଦାସଙ୍କ ସାଧାରଣ ଦୃଷ୍ଟିକୋଣ ଜାଣି ହେଉଥିଲେ ହେଁ **ଚଣ୍ଡୀ ପୁରାଣର** ଚଣ୍ଡୀ ଓ **ମହାଭାରତର** ଦ୍ରୌପଦୀ ଓ ତ୍ରୈଲୋକ୍ୟ ମୋହିନୀ ଚରିତ୍ରରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଚଣ୍ଡୀଙ୍କ ରୂପ ବର୍ଣ୍ଣନା ପ୍ରସଙ୍ଗରେ କବି କହିଛନ୍ତି -

ଚାଲନ୍ତେଣ ଅବେଶ୍ୟ ପଦ୍ମ ଫୁଟଇ କାଞ୍ଚନ
ନୁହଇ ଅଙ୍ଗ ତା ଉଚ୍ଚ ନୀଚ ମଧ୍ୟ ମାନ ।
ସ୍ୱାମୀ ବଦନକୁ ଚନ୍ଦ୍ରମା ନୁହେଁ ପଟାନ୍ତର
ଉଦୟକାଳେ ପୁଣ ବପୁ ଛିନ୍ନ ଅଟଇ ଶଶଧର ।
ସ୍ୱାମୀ ପୂର୍ଣ୍ଣିମା ଚନ୍ଦ୍ରମାକୁ କରଇ ଅବା ସଙ୍ଗ
ଶରୀର କଳଙ୍କ ବହିଲା ଶଶଙ୍କ । (ଚ.ପୁ-ପୃ୧୪୨)

ଅନ୍ୟ ସ୍ଥଳରେ ଏହାର ପରିବର୍ତ୍ତିତ ରୂପ ଦେଖିବାକୁ ମିଳେ-

ଦିନ ନ ଅଣ୍ଟିବ ତାର ରୂପ ବର୍ଣ୍ଣିବାକୁ
ନ ଥିବ ଉପରେ ଏବେ ନ ଥିବ ତଳକୁ ।
ଏହାର ରୂପକୁ ଚନ୍ଦ୍ର ପଟାନ୍ତର ନୋହଇ
ଚନ୍ଦ୍ର ପୁଣି ମରଇ ତାହାକୁ ତନୁ ଛିନ୍ନ ହୋଇଂ
ରତ୍ନେ ପଟାନ୍ତର କରନ୍ତୁ ଅବା କାୟେ
ସେହି ମଳିଣ ଦିଶିବ ତେଜମୟେ । (**ଚଣ୍ଡୀ ପୁରାଣ**-ପୃ ୫୦)

ଦ୍ରୌପଦୀ ରୂପ-ବର୍ଣ୍ଣନାରେ ପାରମ୍ପରିକ ଉପମା ସବୁର ପ୍ରୟୋଗ ହୋଇଥିଲେ ହେଁ

କବିଙ୍କର ଏହି ବର୍ଣ୍ଣନା ଅତ୍ୟନ୍ତ ପ୍ରଶଂସନୀୟ । ତ୍ରୈଲୋକ୍ୟ ମୋହିନୀର ରୂପ ବର୍ଣ୍ଣନାରେ ପରବର୍ତ୍ତୀ ରୀତିକାଳୀନ ରୂପ-ବର୍ଣ୍ଣନାର ପୂର୍ବାଭାସ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ କେବଳ ମୁଖ ବର୍ଣ୍ଣନା ଦିଆଗଲା -

ସମ୍ପୂର୍ଣ୍ଣ ଚନ୍ଦ୍ରମା ବୋଲିବା ମୁଖକୁ
ବଦନ ନିନ୍ଦାକଲା ଚନ୍ଦ୍ର ଦେବତାଙ୍କୁ
ଯେକ ଦିବସେନ ଚନ୍ଦ୍ରଲା ସମ୍ପୂର୍ଣ୍ଣ
ପ୍ରଜାପତି ଶାପେ ବପୁ କ୍ଷୀଣ ।
ତେଣୁ କରି କଳଙ୍କ ବହିଲାକ ଶଶୀ
ତାହାର ବଦନ ଗୋଟି ଅଟଇ ନିର୍ଦ୍ଦୋଷୀ ।          (ବନପର୍ବ-ପୃ ୪୭୯)

**ଅଙ୍ଗସଜ୍ଜା :** ନାୟିକାର ରୂପ ବର୍ଣ୍ଣନା ପରି ଅଙ୍ଗସଜ୍ଜା ସେମାନଙ୍କର ବ୍ୟକ୍ତିତ୍ୱକୁ ପ୍ରକାଶ କରିବାରେ ସାହାଯ୍ୟ କରୁଥିଲେ ହେଁ, ସାରଳାଦାସ **ମହାଭାରତ**ର କେତେକ ବିଶିଷ୍ଟ ସ୍ଥାନ ବ୍ୟତୀତ ନାରୀମାନଙ୍କ ଅଙ୍ଗସଜ୍ଜା ପ୍ରତି ବିଶେଷ ଗୁରୁତ୍ୱ ଦେଇନାହାନ୍ତି । ଅମ୍ବିକା, ଅମ୍ବାଳିକା, କୁନ୍ତୀ ମାଦ୍ରୀଙ୍କ ପରି ନାୟିକା ପରପୁରୁଷ ସହ ମିଳିତା ହେବାକୁ ଗଲାବେଳେ ସାରଳା ଦାସ ଅତି ସାଧାରଣ ଭାବେ ସେମାନଙ୍କର ରୂପ-ସଜ୍ଜାର ବର୍ଣ୍ଣନା କରି କହିଛନ୍ତି -

(ଅମ୍ବିକା)    ଶୁତିଲେ ସୁନ୍ଦେରୀ ଯେ ଦିବ୍ୟ ପଲଙ୍କରେ
ରତ୍ନମୟ ମନ୍ଦିରେ ଯାଇ ପ୍ରବେଶ ଏକ ସରେ ।     (ପୃ-୧୦୫)

(ଅମ୍ବାଳିକା)    ଅନେକ ବେଶ ବେଶନ ହୋଇଣ ଅମ୍ବାଳିକା
ବ୍ୟାସ କଇ ଭେଟ କରାଇଲେ ସଉନିକା ।     (ପୃ-୧୧୪)
ଧର୍ମ ଦେବତାଙ୍କ ସହ ମିଳିତା ହେବାବେଳେ...

(କୁନ୍ତୀ)    ଶଉଚ ଭାବ ହୋଇଣ ଦେବୀ
ବେଶ ବେଶନ ହୋଇ
ପୁଷ୍ପ ପାକୁଡ଼ା ଗୁଡା ଉପରେଣ
କର୍ପୂର ଗୁଣ୍ଡିକି ଉଛାଇ     (ପୃ-୨୦୯)

ପବନ ଦେବତାଙ୍କୁ ଆମନ୍ତ୍ରଣ କଲାବେଳେ କୁନ୍ତୀ ସୁସଜ୍ଜ ଶଯ୍ୟା କରିଥିଲେ ହେଁ, ବେଶ ବେଶନର କୌଣସି ଉଲ୍ଲେଖ କରିନାହାନ୍ତି । ଇନ୍ଦ୍ରଙ୍କୁ ଆମନ୍ତ୍ରଣ କଲାବେଳେ ମଧ୍ୟ ସାରଳା ଦାସ କୁନ୍ତୀଙ୍କ ରୂପସଜ୍ଜା ପ୍ରତି ଆଦୌ ଦୃଷ୍ଟି ଦେଇନାହାନ୍ତି । କୁନ୍ତୀଙ୍କ ପରି ମାଦ୍ରୀ ମଧ୍ୟ ଶ୍ରୀକୃଷ୍ଣ ଓ ଅଶ୍ୱିନୀ କୁମାରଙ୍କୁ ରତି ପାଇଁ ଆହ୍ୱାନ କରିଛନ୍ତି । ସେତେବେଳେ ମଧ୍ୟ ସାରଳା ଦାସ ମାଦ୍ରୀଙ୍କ ରୂପ-ସଜ୍ଜା ପାଇଁ ସଚେତନ ନୁହନ୍ତି । ଶ୍ରୀକୃଷ୍ଣଙ୍କୁ ଆମନ୍ତ୍ରଣ କଲାବେଳେ ସାରଳାଦାସଙ୍କ ଉକ୍ତି ହେଉଛି -

ମାଦ୍ରୀ ବେଶନ ହୋଇଲା ଶେଯ୍ୟାର ଯୁଗତେ (ପୃ-୨୬୩)

**ଅଶ୍ୱିନୀ କୁମାର** ଓ ପାଣ୍ଡୁଙ୍କ ବେଳକୁ 'ବେଶନ' ଶବ୍ଦର ଉଲ୍ଲେଖ ପର୍ଯ୍ୟନ୍ତ ନାହିଁ । ଏସବୁ ସତ୍ତ୍ୱେ ଦ୍ରୌପଦୀ ଓ ତ୍ରୈଲୋକ୍ୟ ମୋହିନୀର ରୂପ-ସଜ୍ଜା କଲାବେଳେ ସାରଳାଦାସ ଏକ ନିପୁଣ ଚିତ୍ରକର ପରି ବେଶ ସଜାଇବାରେ ବ୍ୟସ୍ତ ।

ଦ୍ରୌପଦୀଙ୍କର ରୂପ ବର୍ଣ୍ଣନା :

କନ୍ୟାକୁ ସାହନ କରାନ୍ତି ସର୍ବେମିଳି
ନାନା ସୁଗନ୍ଧେଣ କବରୀଭାର ସମ୍ଭାଳି ।
କୁଙ୍କୁମ ଲେପନ କରିଣ ଶରୀରେ
ମୃଗନାଭି କସ୍ତୂରୀ ଲେପନ୍ତି ହୃଦୟରେ ।
ଆଇଗ ଚାମର ଢ଼ାଳି ଶୁଖାବନ୍ତି କେଶ
ଅଙ୍ଗେ ପରିଧାପନ କରାଇ ଝୀନବାସ ।
ଯାଇଯୂଇ ମଲ୍ଲୀ ମାଳତୀ ସେବତୀ ପାଖୁଡ଼ା
ସୁବାସ କୁସୁମରେ ସଜାଇଲେ କେଶ ଜୂଡ଼ା ।
ସୁସଞ୍ଚ ଖୋପାରୁ ମଲ୍ଲିକା ସୁବାସେ
ଲୁବ୍ଧେ ଅଳିବୃନ୍ଦ ବିହରନ୍ତି ପାଶେ ।
ତହିଂର ଉପରେ ଖଞ୍ଜିଲେ ମୁକୁତା ଜାଲି
ଲଲାଟ ପାଟୀରେ ଅଷ୍ଟରତ୍ନ ଖଞ୍ଜିଲେ ମୃଦୁସୁଲି ।

\+ \+ \+

ଉପରେ ପରିଧାପନ ଦାମି ନେତ ପାଟଗୋଟି
ଅନଳ ତେଜ ଜିଣି ବିକାଶଇ ଫୁଟି । (ଆଦି, ପୃ-୩୯୦)

ଆର୍ତ୍ତବଲ୍ଲଭ ମହାନ୍ତି ସଂପାଦିତ **ମହାଭାରତ**

ତ୍ରୈଲୋକ୍ୟ ମୋହିନୀ ରୂପ ବର୍ଣ୍ଣନା :

ଅଙ୍କୋଚିତ କବରୀ ଚିକୁର ଅଙ୍ଗଭାରି
ପ୍ରବନ୍ଧ ଖୋସା ଯେ ବିସ୍ତାର ଶାଳୀ କରି ।
କୁସୁମ ନ ଘେନଇଂ ଗରୁ ହୋଇଂ ବୋଲି
କେଶ ସୁଗନ୍ଧକୁ ମଧୁକର ଭୁଲି ।
ରସାଣ ପ୍ରତିମା ପ୍ରାୟେ ଲଲାଟରେ ପାଟୀ
କୁଞ୍ଚିତ ରୋମାବଳୀ ନୀଳଚରଣ ଗୋଟି ।

(ବନପର୍ବ ପୃ-୪୭୬, ସଂ. ଆ. ମହାନ୍ତି)

**ସମ୍ଭୋଗାବସ୍ଥା :** ସାରଳା **ମହାଭାରତ**ରେ ସମ୍ଭୋଗାବସ୍ଥାର ବିଭିନ୍ନ ପ୍ରକାର ଦୃଶ୍ୟ ଉପଲବ୍ଧ ହୁଏ । ସମ୍ଭୋଗକୁ ସ୍ୱାଭାବିକ ରୀତିରେ ବର୍ଣ୍ଣନା କରିବା ସାରଳାଦାସଙ୍କ ନିଜସ୍ୱ ରୀତି ହେଲେ ହେଁ ଏହା ସମୟ ସମୟରେ ଯୋଗ, ସମର ଓ ସ୍ୱପ୍ନ ମାଧ୍ୟମରେ ମନୋରମ ଭାବେ ପ୍ରକାଶ ପାଇଛି ।

**ସ୍ୱାଭାବିକ ବର୍ଣ୍ଣନା :**

ମଦନ ଶର ଘାୟେ ଭେଦିଲେ ମହାଋଷି
ଅମ୍ବାଳିକାକୁ କୋଳ କରି ଧଇଲେ ଆକ୍ରୋଶି
ଧର୍ମ ଧର୍ମ ସୁମରନ୍ତି ଯେ ପଦ୍ମନାଭର ବାଳୀ
ଭୁଜେ ଭୁଜ ଭିଡ଼ି ମହାତମା ମନର ହିଆଳୀ
ହୃଦରେ ହୃଦ ଭିଡ଼ି ମୁଖରେ ଚୁମ୍ବନ
କାମ ଆତୁରେଣ ମୁନି ହୋଇଲେ ବିବସନ
ବିବସନ କରିଣ କୋଳେ ଧରିଣ ମୁନ୍ୟେ
ହାସ୍ୟ ଲାସ୍ୟ ପ୍ରେମ କୁତୋହଳେ ଅଧର ପାନେ
ଚନ୍ଦ୍ରକଳା ଭେଦିଲା ସେ ରତି ଶାସ୍ତ୍ର ଯୋଗେ
ଧାତୁବାଦ ରସ ଢ଼ାଳିଲା ବାମ ଭାଗେ ।
ରସ ଖଳିତ ଯହୁଂ ହୋଇଲା ପ୍ରମଦା
ଭାବେଶ ଭାବିନୀ ଆକର୍ଷଇ ବ୍ରହ୍ମସିଦ୍ଧା ।
ମୁଖେ ଚୁମ୍ବନ ଦେଇ ସେ ଭିଡ଼ଇ ଭୁଜନ୍ତେ
ଅମ୍ବାଳିକା ବୋଇଲେ ମୋତେ ରଖ ତପୋବନ୍ତେ ।
ଶୃଙ୍ଗାର ମାଗଇ ଦେବୀ କାମ ଅସାଷ୍ଟମେ
ଯାମଳା ତରୁ ଯେହ୍ନେ ପଡ଼ଇ ଏକ ସନେ ।
ଅଭୟେ ବିଭଙ୍ଗିତ ମୁନି ରତି ରଙ୍ଗେ ଇଛା
ଛାଡ଼ିଲା ଲାଜ ଭୟ ରତିରଙ୍ଗେ ମନବାଞ୍ଛା ।
ଭାବେଣ ବୁଡ଼ିଲା ସେ ପଞ୍ଚିଶ ପ୍ରକୃତି
ହେଠ ମାଥ ଶୃଙ୍ଗାରେ ଅଶାନ୍ତି ଅତ୍ରିପୁତି । (ପୃ-୧୧୫)

ଏହି ବର୍ଣ୍ଣନାରେ ବ୍ୟାସ ମୁନି ଯେପରି ଅମ୍ବାଳିକାକୁ କୋଳକରି ଆକ୍ରୋଶି ଧରି ଭୁଜେ ଭୁଜ ପୁଣି ହୃଦେ ହୃଦ ଭିଡ଼ି ମୁଖରେ ବାରମ୍ବାର ଚୁମ୍ବନ ଦେଇ ଅଧର ପାନ କରିଛନ୍ତି ସେହିପରି ଅମ୍ବାଳିକାର ରସ ଖଳିତ ହେବା ପରେ ସେ ବ୍ରହ୍ମସିଦ୍ଧଙ୍କୁ ଆକର୍ଷଣ କରି, ମୁଖେ ଚୁମ୍ବନ ଦେଇ, ଭୁଜରେ ଭିଡ଼ି, କାମ ଅସାଷ୍ଟମ ହୋଇ ଶୃଙ୍ଗାର ମାଗିଛି । ରତି ବର୍ଣ୍ଣନାରେ ଏତେ ସ୍ୱାଭାବିକତା ଅନେକ ସମୟରେ ରୁଚିକର ବୋଧ ହୁଏନାହିଁ । ସାରଳା ଦାସ ସେଥିପାଇଁ କେବଳ

ସଂକ୍ଷେପରେ ରତିଶାସ୍ତ୍ରରୁ ପଦେ କହି ପରାଶର ଓ ସତ୍ୟବତୀଙ୍କ ସମ୍ଭୋଗ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି :

ବିଶେଷଣ ମହାତମା ଯେ ରତି ଶାସ୍ତ୍ରେ ଜିତା
ଅନେକ ବାଗେଣ ଶୃଙ୍ଗାର ସହିଲା ବନିତା । (ପୃ-୧୦୧)

କୁନ୍ତୀ ଓ ଧର୍ମ ଦେବତାଙ୍କ ମିଳନରେ ମଧ୍ୟ କବି ''ବଢ଼ାଇଲେ ଅନେକ ପୀରତି'' କହି ନିଜ ସଂଯମତାର ପରିଚୟ ଦେଇଛନ୍ତି । ପବନ ଓ କୁନ୍ତୀଙ୍କର ମିଳନରେ ମଧ୍ୟ ସେହି ଏକ ପ୍ରକାର ଶୈଳୀ 'ବଢ଼ିଲା ରତିରଙ୍ଗ'

ଚନ୍ଦ୍ରପବନ ଘେନି ପଚିଶି ପ୍ରକୃତି
ବଳବନ୍ତ ଦେବତାର ଶୃଙ୍ଗାର ସହିଲା ସେ ଅନାଦି ଶକତି ।
(ପୃ-୨୩୪)

ବହୁସ୍ଥଳରେ ସାରଳା ଦାସ 'ଅନେକ ପୀରତି' ବା 'ବଢ଼ିଲା ରତିରଙ୍ଗ' କହି ନାୟକ ନାୟିକାର ମିଳନ ବର୍ଣ୍ଣନା କରିଥିଲେ ହେଁ ଯୋଗକ୍ରିୟାର ପରିପ୍ରକାଶ ରୂପେ ଶୃଙ୍ଗାର ବର୍ଣ୍ଣନାରେ ତାଙ୍କର ବ୍ୟକ୍ତିଗତ ରୁଚି ପ୍ରକାଶିତ ହୁଏ ।

ଆଦି ମାହେଶ୍ୱରୀ ସେ ବ୍ୟାସ ତପୋଧନି
ନିର୍ଜନ ମନ୍ଦିରେ ଶୃଙ୍ଗାର କରନ୍ତି ବେନି ।
ଅକ୍ଷୟେ ମହାତମା ସେ ଅକ୍ଷୟେ ଅବୟେ
ନ ଚଳଇ ମହାରେତ ସେ ପାଷାଣର ପ୍ରାୟେ ।
ବତିଶ ଶୃଙ୍ଗାର ସେ ପ୍ରାର୍କମେ ବଳବନ୍ତା
ଚଳଇ ମହାରସ ସେ ପ୍ରତିଜ୍ଞା ଶକତ ।
ପ୍ରାଣ ଅପାନ ବ୍ୟାନ ଉଦାର ସମାନ ପଞ୍ଚଆତ୍ମା
ଯେହା ଦୃଢ଼ କରି ଇଚ୍ଛିଲାକ ମହାତମା । (ପୃ-୧୦୮)

ଭୀମ ଓ କାଳଞ୍ଜୁ ରାକ୍ଷସୀର ଶୃଙ୍ଗାର ବର୍ଣ୍ଣନାରେ ଯୌଗିକ ଭାବଧାରା ଆହୁରି ସ୍ପଷ୍ଟଭବେ ପ୍ରକାଶ ପାଇଛି :

ଶୃଙ୍ଗାର ଇଚ୍ଛିଲା ବୀର କାଳଞ୍ଜୁର ତୁଲେ
ସୂର୍ଯ୍ୟବେଳେ କାମ ନେଇଂ ଦୃଢ଼ କରି ଥକାଇଲେ ।
ପବନ ଉଜାଣିଲେ ପାଟଣା ଶ୍ରୀହଟେ
ଲୁଚାଇଲା ନେଇଂ ଶିଷୁମ୍ନାର ଉଲଟେ ।
ଆଙ୍ଗେରେ କୋଠି ବୁଡ଼ାଇଲା ଇନ୍ଦୁ
ବ୍ରହ୍ମ ଭେଦି ରହିଂ ନ ଚଳିଲା ବିନ୍ଦୁ ।

ଉଜାଣି ପବନ ଶୃଙ୍ଗାର ଅବିଶ୍ରାମ
ରତି ଶାସ୍ତ୍ରେ ଜିଣା ପାଣ୍ଡବ ବୀର ଭୀମ । (ବନ ପୃ-୪୪୫)

ସଫଳ ସମ୍ଭୋଗ ପାଇଁ କେବଳ 'ରତିଶାସ୍ତ୍ର ଜିଣା' ହେଲେ ହେବ ନାହିଁ, ଯୋଗଶାସ୍ତ୍ର ସାଧନାରେ ପାରଦର୍ଶିତା ଥିବା ଆବଶ୍ୟକ ।

ଯଦ୍ୟପି ପଞ୍ଚଇନ୍ଦ୍ରି ମାରିଥିବ ଯୋଗୀ
ମହାତମା ପୁରୁଷ ସେ ହୋଇବ କାମଭୋଗୀ । (ମଧ୍ୟପର୍ବ ପୃ-୨୨)

ରତି କ୍ରୀଡ଼ାକୁ ସଂଗ୍ରାମ ସହ ବର୍ଣ୍ଣନା କରିବା ଏକ ପାରମ୍ପରିକ ରୀତି । ସାରଳାଦାସ ଇନ୍ଦ୍ର ଓ କୁନ୍ତୀଙ୍କ ମିଳନ ବର୍ଣ୍ଣନା କଲାବେଳେ ଏହି ରୀତିକୁ ଅନୁସରଣ କରିଛନ୍ତି ।

ଅଗ୍ୟାନେ ହେଠାଇଲା ସେ ଟେକିଲା ଯେକ ବ୍ରହ୍ମେ
ବାସ୍ତରୀ କ୍ରୀଡ଼ା କଲେ ଭବ ଯେ ସଂଗ୍ରାମେ
ଖେପଇ ବାସବ ଯେ ନଖଦନ୍ତ ଶର
କୋଇନ୍ତାଯେ ବଞ୍ଚାଅନ୍ତି ନ ଫୁଟଇ ଶରୀର ।
ଓହୋବଳ ସଂଗ୍ରାମେ ବଢ଼ିଲା ରସ ଯୁଦ୍ଧ
ଭବ ଭଗ ଶାନ୍ତି ଯେ ନୋହିଲା କାମ ବନ୍ଧ ।
ଅଦୃଷ୍ଟି ନାରାଜ ବିନ୍ଧଇ ପଞ୍ଚବାଣ
ଭାବେ ଅନ୍ୟୋଅନି ପୀଡୁଛି ମୟାଣ । (ପୃ-୨୬୦)

ଉଷା ଓ ଅନିରୁଦ୍ଧ ଉପାଖ୍ୟାନ ବର୍ଣ୍ଣନା କଲାବେଳେ ସ୍ୱପ୍ନାବସ୍ଥାରେ ମିଳନର ଏକ ସୁନ୍ଦର ଚିତ୍ର ଅଙ୍କିତ ହୋଇଛି ।

ପଲଙ୍କେ ବସିଣ ଅଙ୍ଗ ମୃଦୁ ହସି
ହସ୍ତ ଉପରେ ନେଇ ଚାଟୁ ବଚନ ଭାଷି ।
କୋଳେ ବସାଇଣ ଚୁମ୍ବଇ ଅଧର
ଏମନ୍ତ ସମୟେ ନିଦ୍ରା ଭାଙ୍ଗିଲା ତାହାର । (ମଧ-ପୃ-୭୮୮)

ସାରଳା ଦାସ ସ୍ଥାନ ଓ ପାତ୍ର ଦେଖି ନାରୀ ରୂପ ବର୍ଣ୍ଣନା କରୁଥିଲେ ହେଁ ପୁରୁଷ ବେଳକୁ ସେପରି ବାଛ ବିଚାର କରୁଥିବା ଦେଖାଯାଏ ନାହିଁ । ପାଣ୍ଡୁ, ଧୃତରାଷ୍ଟ୍ର, ଯୁଧିଷ୍ଠିର ଭୀମ, ଅର୍ଜୁନ, ନକୁଳ, ସହଦେବ, ଦୁର୍ଯ୍ୟୋଧନ, ପ୍ରଭୃତି ପ୍ରତ୍ୟେକ ଚରିତ୍ର ରୂପ-ବର୍ଣ୍ଣନା ସାରଳା ମହାଭାରତରେ ଏକ ବିଶିଷ୍ଟ ଶୈଳୀ । ପାଣ୍ଡୁଙ୍କ ରୂପ ବର୍ଣ୍ଣନା କରି କବି ଲେଖିଛନ୍ତି -

ମର୍କତ ରସାଣିଲା ଦିଶଇ ଦେହ ବର୍ଣ୍ଣ
ଶ୍ରୀ ସିଦ୍ଧିକି କପାଳ ଘଟିତ ଲେଖନ

ଆରକ୍ତ ଶରୀର ଦିଶଇ ବେନି ଚକ୍ଷୁ
ଗଜରିପୁ ବକ୍ଷସ୍ଥଳ ମଝାକ୍ଷୀଣ ବପୁ
ଆକ୍ରଷଣ ବାହୁବିଜେ କେତନ ସରୂପ
ଚଉଷଠି ଗୁଣେ ଲକ୍ଷଣ ଅନଙ୍ଗ ସମ ଧାପ
ଅନେକ ଲକ୍ଷେଣେ ଉତପତ୍ତି ହୋଇଲାକ ସୂତ । (ପୃ-୧୧୭)

ଯୁଧିଷ୍ଠିରଙ୍କ ରୂପ ବର୍ଣ୍ଣନାରେ କବି ମଧ ନଖ, ଶିଖ ବର୍ଣ୍ଣନା ପଦ୍ଧତିକୁ ଗ୍ରହଣ କରିଛନ୍ତି ।

ସୁନ୍ଦର ନିର୍ମଳ ନିକଳଙ୍କ କାୟେ
ସୁକୁମାର ଶରୀର ଦିଶଇ ଶୁଦ୍ଧ ସଷ୍ଟିକର ପ୍ରାୟେ ।
ଶ୍ରୀଖଣ୍ଡ କପାଳ ଯେ ଅମୂଲ୍ୟ ରେଖ ପାଟି
ତିଳ କୁସୁମ ନାସିକାର ରକ୍ତ କୁମୁଦ.ଦୃଷ୍ଟି ।
ଲଳିତ ଶ୍ରବଣ ଯେ ପକ୍ବ ବିମ୍ବ ଓଷ୍ଠ
ବଳିଣ ବେନି ବାହୁ ଗଣ୍ଡସ୍ଥଳ ମୋଟ ।
କନକ ମୃଣାଳ ବେନି ଯେ ବାହୁଟି
ସମ୍ପୂର୍ଣ୍ଣ ଚନ୍ଦ୍ର ବଦନ କମଳ ମୁଖ ଗୋଟି ।
ଅଭୟେ ଆକର୍ଷଣ ବକ୍ଷସ୍ଥଳ ଯେ ବିରାଜି
କନକ କଚ୍ଛ ବୃକ୍ଷ ଗଜରିପୁ ମଝା ବୁଝି ।
ପ୍ରଲମ୍ବ ବାହୁ ଜାନୁ କମଳ ସୁସଙ୍ଗ
ନୋହଇ ସଂକୀର୍ଣ୍ଣ ସେ ନୋହଇ ପ୍ରଲମ୍ବ ଉଚ୍ଚ ।
ଆରକ୍ତ କୁସୁମ ଜାଣି ବେନି କରସ୍ଥଳୀ
ନିକଣ୍ଟେକ ଫୁଟେକ ଚମ୍ପେକ ଜାଣି ଶୋଭିତ ଅଙ୍ଗୁଳି ।
ବିଘସିତ ଦଶନହ କୁନ୍ଦ ପାଖୁଡ଼ା ପ୍ରାୟେ ଜାଣି
ପୃଥିକି ଅଳଙ୍କାର ପ୍ରାୟେ ଦିଶଇ ଆଜାନୁ ବେନି ପାଣି ।
ବିକ୍ରମ ସିଂହ ଶୋଭା ଦିଶଇ ବେନି ଜାନୁ ଠାଣି
ବେନି ପାଦ କାନ୍ତି ରଜତ କୁମୁଦ ଜାଣି ।
ପୋୟେ ରେଖା ଯେହ୍ନେ ପାଦ ଦଶ ଅଙ୍ଗୁଷ୍ଟି
ସେବତୀ ପାଖୁଡ଼ା ଜାଣି ଦଶନହ ଫୁଟି ।
ବେନି ପାଦ ସ୍ଥାନେ ବିରାଜନ୍ତି ପଦ୍ମ ଚିହ୍ନ
ଶଙ୍ଖ ମଚ୍ଛ ଚିହ୍ନ ବେନି କରସ୍ଥଳେ ଗୋପ୍ୟାନ ।

ଶରଦ ଆଦିତ୍ୟ ପ୍ରାୟେ ଘଟଣ ଯାହାର ତନୁ
ଯେ ସେ ମହାତ୍ମା ଭେଦିଲା ଶୂନ୍ୟ ଆସନ୍ନୁ । (ପୃ-୨୧୦-୧୧)

ପୁରୁଷ ରୂପ **ବର୍ଣ୍ଣନା** ପରି ବେଶ ବର୍ଣ୍ଣନାରେ ମଧ୍ୟ ସାରଳାଦାସଙ୍କ ତତ୍ପରତା ପ୍ରକାଶ ପାଏ । ଶାନ୍ତନୁ, ବ୍ୟାସ ଓ ଭୀଷ୍ମଙ୍କ ବେଶ ବର୍ଣ୍ଣନା ଏହାର ଉଦାହରଣ । ଶାନ୍ତନୁଙ୍କ ରୁଦ୍ର ବେଶ ବର୍ଣ୍ଣନା କରି କବି ଲେଖିଛନ୍ତି -

ବୈଲେକ ଆରୋହି ସେ ମଥାରେ ଜଟାଧାରୀ
ଧବଳ ବର୍ଣ୍ଣ ଶରୀର ସେ ଦିଶଇ ଯେହ୍ନେ ତ୍ରିପୁରାରି ।

x x x

କରେଣ ପିନାକୀ ସମାନେ ଧନୁୟେ
ଆରକରେ ଶୋହେ ତ୍ରିଶୂଳ ଗୋଟାୟେ ।
ଭସ୍ମ ବିଲେପନ ଯେ ରୁଦ୍ରାକ୍ଷ ମାଳ ହୃଦେ
ଧବଳ ଶରୀର କି ଦିଶେ ପ୍ରତ୍ୟକ୍ଷ ସଦାନନ୍ଦେ । (ପୃ-୨୧)

ଅମ୍ବାଳିକା ପୁରକୁ ଗମନ କଲାବେଳେ ବ୍ୟାସ ଋଷି ରୂପ ତ୍ୟାଗ କରି ରାଜବେଶ ଧାରଣ କରିଥିଲେ । ସାରଳା ଦାସ ତାଙ୍କର ସେହି ରମଣୀୟ ରୂପର ବର୍ଣ୍ଣନା କରି ଲେଖିଛନ୍ତି -

ପାରେଶ୍ୱର ନନ୍ଦନ ପ୍ରବେଶ ହୋଇଲେ ଅନ୍ୟ ବେଶେ
ପାଣ୍ଡୁର ବର୍ଣ୍ଣ ହୋଇଲେ ପଉର୍ଣ୍ଣମୀ ଶରୀର ସାଦୃଶେ ।
ଚନ୍ଦନ, ଚନ୍ଦ୍ରସମ କର୍ପୁର ଅଗର କସ୍ତୁରୀ
ନାନା ସୁଗନ୍ଧ ସେ ଶରୀରେ ଲେପନ କରି ।
ଅନେକ ଅଳଙ୍କାର ଆଭରଣ କାୟେ
ଋଷି ରୂପ ଛାଡ଼ି ଦିଶିଲେ ରାଜ୍ୟଧର ପ୍ରାୟେ ।
ଜଗବନ୍ଦନ ପୁରୁଷ ଅଟନ୍ତି ମୁନିବର
ଅନଙ୍ଗ ପଟାନ୍ତର ପୁରୁଷ ସୁନ୍ଦର । (ପୃ-୧୧୫)

**ବିବାହ ବର୍ଣ୍ଣନା :** ସାରଳା ମହାଭାରତର ବିରାଟ କଳେବର ମଧ୍ୟରେ ବହୁ ପ୍ରକାର ବିବାହର ରମଣୀୟ ବର୍ଣ୍ଣନା ସନ୍ନିବେଶିତ । ବିବାହ-ବର୍ଣ୍ଣନାରୁ ସେ ସମୟରେ ସମାଜରେ ପ୍ରଚଳିତ ବିବାହ ସମ୍ବନ୍ଧୀୟ ରୀତି, ନୀତି, ଆଚାର, ବିଚାର ସାମାଜିକ ସଂସ୍କାରର ସୂଚନା ମିଳିଥାଏ । ଏହି ସଂସ୍କାର ଜୀବନର ବହୁ ଲଳିତ ଓ କୋମଳ ଭାବନା ସହ ସମ୍ପୃକ୍ତ । ସାରଳା ଦାସ ବିବାହ ସଂସ୍କାରର ବର୍ଣ୍ଣନା କଲାବେଳେ ମୁଖ୍ୟତଃ ନିମ୍ନ କେତେକ ସଂସ୍କାର ପ୍ରତି ଗୁରୁତ୍ୱ ଆରୋପ କରିଛନ୍ତି ।

(କ) ବର କନ୍ୟାଙ୍କର ବୟସ ।

(ଖ) ବର ବା କନ୍ୟା ନିର୍ବାଚନ ।

(ଗ) କାଳ-ବେଳ-ଗଣନା ।

(ଘ) ବିବାହ କାଳର ବିଭିନ୍ନ ଚଳଣି ।

(କ) ବର କନ୍ୟାଙ୍କ ବୟସ ସମ୍ବନ୍ଧରେ ସାରଳା ଦାସଙ୍କ ବିଚାର ହେଉଛି-

ତିରିଶ ବରଷ ଯେବେ ହୋଇବ ପୁରୁଷଙ୍କୁ
ପଞ୍ଚଦଶ ବରଷ ହୋଇବ ସ୍ତିରୀମାନଙ୍କୁ
ଏସନକ ଯୋଗ ଅନୁକୂଳ ଗୋଟି
ସ୍ତିରୀ ପୁରୁଷ ହୋଇବେ ଭେଟାଭେଟି । (ମଧ୍ୟପର୍ବ-ପୃ-୨୧)

(ଖ) ଉପଯୁକ୍ତ ବର ଦେଖି କନ୍ୟା ସମର୍ପଣ କରିବା ଭାରତୀୟ ସମାଜର ସାଧାରଣ ନିୟମ । ମଧ୍ୟସ୍ଥିମାନଙ୍କ ଦ୍ୱାରା ପ୍ରାୟ ଏହି କାର୍ଯ୍ୟ ସମ୍ପାଦିତ ହେଉଥିଲେ ହେଁ ସମୟ ସମୟରେ କନ୍ୟା ବା ବରକୁ ଦେଖି ବିବାହ ପ୍ରସ୍ତାବ ଆସେ । କୁନ୍ତୀ ଓ ପାଣ୍ଡୁଙ୍କ ବିବାହରେ ସତ୍ୟବତୀ ଓ ପରାଶର ହିଁ ବିବାହ ସ୍ଥିର କରିଛନ୍ତି । ଧୃତରାଷ୍ଟ୍ର ଓ ଗାନ୍ଧାରୀ ବିବାହରେ ମଧ୍ୟସ୍ଥତା କରିଛନ୍ତି ବ୍ୟାସ । ଅମ୍ୱା କନ୍ୟାକୁ ବିବାହ କରିବା ପାଇଁ ନିଜେ ଭୀଷ୍ମ ପ୍ରସ୍ତାବ ଦେଇଛନ୍ତି ।

(ଗ) କାଳ-ବେଳ ଗଣନା କରି ବିବାହର ମୁହୂର୍ତ୍ତ ସ୍ଥିର କରିବା ପରମ୍ପରା ଓଡ଼ିଶାରେ ଆଜି ବି ପ୍ରଚଳିତ । ସାରଳାଦାସ ବାରମ୍ବାର ଏ ସବୁର ଉଲ୍ଲେଖ କରି ଜ୍ୟୋତିଷ ଶାସ୍ତ୍ର ପ୍ରତି ନିଜର ଅତୁଟ ବିଶ୍ୱାସ ଥିବା ପ୍ରତିପାଦିତ କରିଛନ୍ତି ।

(ଘ) ବିବାହ କାଳର ବିଭିନ୍ନ ପ୍ରଥା ବା ଚଳନର ପରିଚୟ, ଅତି ସଂକ୍ଷେପରେ ହେଲେ ବି, ଶାନ୍ତନୁ ଓ ଗଙ୍ଗାଙ୍କ ବିବାହ ଦୃଶ୍ୟରୁ ପ୍ରାପ୍ତ ହୁଏ । ଏହି ବିବାହର ବର୍ଣ୍ଣନା କରି ସାରଳାଦାସ ଲେଖିଛନ୍ତି -

ଜଳ ଘେନି ରାୟେ ସତ୍ୟ କଲା
ଦୋହିତା ତୋତେ ଦେବି ବୋଲି ସତ୍ୟ ମନାସିଲା ।

\+ +

ଯେସନେକ ସମୟେ ସ୍ୱୀକାର ସାରି
ଉଭୟ କୁଳର ଗୋତ୍ରନ୍ତ ଯେ ଉଚାରି । (ପୃ-୨୨)

\+ +

ସତ୍ୟେଣ ପ୍ରଦାନ କଲେକ ନିର୍ଯାତ
ଅନେକ ସମ୍ପର୍ବେ ଦେଲେଟି ଦୋହିତ ।

ହୋମ ଘୃତ ପାରଣା କରନ୍ତି ବରକନ୍ୟା
ଯେସନେକ ବିଧାନ ବିଭାର ପ୍ରଦାନା । (ପୃ-୨୫)

ବିବାହ ବର୍ଣ୍ଣନା ପରି ବରବେଶ, ବରଯାତ୍ରୀଙ୍କ ଗମନ ଓ ବରଯାତ୍ରୀଙ୍କୁ ପାଛୋଟି ନେବାର ଦୃଶ୍ୟ କବିମାନେ ତଲ୍ଲୀନତାର ସହିତ ବର୍ଣ୍ଣନା କରିଥାନ୍ତି । ସାରଳା ଦାସ ଭୀଷ୍ମଙ୍କ ବରବେଶର କୌଣସି ବର୍ଣ୍ଣନା ନ କରି କେବଳ ଉଲ୍ଲେଖ କରିଛନ୍ତି -

ବରବେଶ ହୁଅନ୍ତି ଯେ ଭୀଷ୍ମ ମହାରଥୀ । ( ପୃ-୫୮ )

ବିବାହ ପାଇଁ ଭୀଷ୍ମଙ୍କ ଯାତ୍ରା ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ । ରଥ, ଗଜ, ଅଶ୍ୱ, ଦଣ୍ଡ, ଚକ୍ର, ଆଲଟ, ଥାଟ ସଇନି, ଅପସରି ଓ ଚଣ୍ଡପୁତ୍ର ପ୍ରଭୃତି ହେଲେ ତାଙ୍କର ବରଯାତ୍ରୀ । ଯାତ୍ରା ଆରମ୍ଭ କଲାବେଳେ ଶିବ, ନାରାୟଣ ଓ ପାର୍ବତୀଙ୍କ ପୂଜା ହୁଏ । ବୀର ତୂରୀ ବାଜେ । ଚଣ୍ଡପୁତ୍ରମାନେ ମଙ୍ଗଳ ଗାନ କରନ୍ତି । ଚାରି ଦ୍ୱାରରେ ଅନ୍ନଛତ୍ର ପ୍ରଦତ୍ତ ହୁଏ । ଏହିପରି ଏକ ଶୁଭ ମୁହୂର୍ତ୍ତରେ ବରଯାତ୍ରୀମାନେ ଶୁଭ ଯାତ୍ରା ଆରମ୍ଭ କରିଥାନ୍ତି ।

କନ୍ୟା-ପୁରରେ ପହଞ୍ଚିବାବେଳେ କନ୍ୟାପକ୍ଷର ଲୋକେ ବରଯାତ୍ରୀଙ୍କୁ ପାଛୋଟି ନେବାପାଇଁ ଆସନ୍ତି ।

ଅନେକ ଉଚ୍ଛବ ଯେ ଆନନ୍ଦେ ରାୟେ କରି
ଭୋଜନ ଯୋଗାଡ଼ ଯଉତୁକ ସମସ୍ତ ସଜ କରି
ରଥ ଗଜ ଅଶ୍ୱ ପାଦାନ୍ତି କୋଟି କୋଟି
ସମ୍ଭର୍ବେ ପଦ୍ମନାଭ ଆସଇ ପାଛୋଟି । (ପୃ-୬୬)

ବିବାହ ପରେ ବର କନ୍ୟାଙ୍କୁ ବିଦାୟ ଦେବାବେଳେ ବହୁ ପ୍ରକାର ଧନରତ୍ନ ବିଶେଷ କରି ଗୃହର ଉପକରଣମାନ ଯଉତୁକ ରୂପେ ପ୍ରଦାନ କରାଯାଏ । ସାରଳା ଦାସ ପ୍ରାୟ ପ୍ରତ୍ୟେକ ବିବାହ ଶେଷରେ ଯଉତୁକର ଉଲ୍ଲେଖ କରିଥିଲେ ହେଁ, କୁନ୍ତୀ ବିବାହରେ ଏହାର ସବିଶେଷ ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

ଶୁଭେଣ ପ୍ରଦାନ ଯେ ହୋଇଲା କୁମାରୀ
ପଦ୍ମେକ ରଥ ଯଉତୁକ ଦିଲେ କ ଦଣ୍ଡଧାରୀ ।
ବେନି ପଦ୍ମ ଗଜ ଯେ ଚାରି ପଦ୍ମ ହୟେ
ଦ୍ୱାଦଶ ଯୋଜନ ପୃଥ୍ୱୀ ରାଜା ଯଉତୁକ ଦିୟେ ।
ପାଞ୍ଚଲକ୍ଷ ପାଟଛତ୍ର ଆଲଟ ଯେକ ଲକ୍ଷ ଅନେକ ବାଦ
ଯଉତୁକ ଦିଲା ରାଜା ପରମ ସାନନ୍ଦ ।
ଶତେ ପଦ୍ମ ଗୋଧନ ଦିଲାକ ନୃପମଣି
ଚଉବିଂସ ଧନ ଭଣ୍ଡାର ଦାନ ଦିଲାକ ଆଣି । ( ପୃ-୧୬୫)

ସୁରେଖା ବିବାହ (ମଧ୍ୟପର୍ବ) ପ୍ରସଙ୍ଗରେ ଥାଳି, ପଥୁରି, ନାଳିଆ, ଗଡୁ ଓ ଗରିଆ ପ୍ରଭୃତି ଯଉତୁକ ଭାବେ ପ୍ରଦାନ କରାଯାଇଛି ।

ଏହିସବୁ ବିଶେଷ ପରିସ୍ଥିତି ବ୍ୟତୀତ କବି ଅନେକ ସ୍ଥଳରେ ଦାନ, ଉପହାର ଓ ଖାଦ୍ୟ ପଦାର୍ଥର ବର୍ଣ୍ଣନା ପ୍ରତି ଅଧିକ ରୁଚି ପ୍ରଦର୍ଶନ କରିଛନ୍ତି ।

**ପ୍ରକୃତି ବର୍ଣ୍ଣନା :** ପ୍ରକୃତି ଓ ମାନବର ସମ୍ପର୍କ ଅତି ଘନିଷ୍ଠ । ମାନବୀୟ କାର୍ଯ୍ୟ-କଳାପରେ ଆଲମ୍ବନ, ଉଦ୍ଦୀପନ, ଭାବ ପ୍ରକାଶନ ରୂପେ ପ୍ରକୃତିର ବର୍ଣ୍ଣନା କରିବା କବିମାନଙ୍କର ଏକ ପାରମ୍ପରିକ ରୀତି । ସାରଳା ଦାସ ରୀତିକାଳୀନ କବିମାନଙ୍କ ପରି ଏହାକୁ ଗ୍ରନ୍ଥର ଏକ ମୁଖ୍ୟ ପ୍ରବୃତ୍ତି ରୂପେ ଗ୍ରହଣ କରି ନ ଥିଲେ ହେଁ, ଅନେକ ସ୍ଥଳରେ ଏହାକୁ ଅତ୍ୟନ୍ତ ରୁଚିକର ଭାବେ ଉପସ୍ଥାପିତ କରିଛନ୍ତି । କୁନ୍ତୀ ଓ ଇନ୍ଦ୍ରଙ୍କ ମିଳନ କାଳର ନିର୍ଜନତା ଓ ରମଣୀୟତାକୁ ପ୍ରତିପାଦନ କରିବା ଉଦ୍ଦେଶ୍ୟରେ କବି ପ୍ରକୃତିର ଉଦ୍ଦୀପନ ତତ୍ତ୍ୱ ସମ୍ବନ୍ଧରେ ସଚେତନ ହୋଇ ଲେଖିଛନ୍ତି -

ବିଶେଷ ବନ ଗହନ ନିଗମ ସ୍ଥାନ ଭୂମି
ଆକାଶେ ଦୃଶ୍ୟ ଭାବ ରୋହିଣୀ ବଲ୍ଲଭ ଦେବ ସ୍ୱାମୀ
ବସନ୍ତ ଚନ୍ଦ୍ରମାୟେ ମହାନିରିମଳ
ସମସ୍ତ ଦିଶଇ ସେ ଦିବସହୁଁ ନିରିମଳ । ପୃ - ୨୬୦

ଅନ୍ୟ ସ୍ଥଳରେ ମଧ୍ୟ କବି ବସନ୍ତ ଋତୁର ରମଣୀୟ ବର୍ଣ୍ଣନା ପ୍ରଦାନ କରିଛନ୍ତି -

ମଳୟ ବସନ୍ତ ଘେନି ଯହୁଁ ବହଇ ମୟାଣ
ଶୁଷ୍କ ତରୁମାନେ ତହିଁ ହୋଇଲେ ପଲ୍ଲବନ ।

\+ \+ \+

ବସନ୍ତେ ପିକ ଯହୁଁ ହେଲେ ଅସାଷ୍ଟମ
ଅକାଳେ ଚୂତ ତାଙ୍କୁ ଦେଲେ ଫଳ ଅନ୍ୟ
ବନ ଜୀବମାନେ ହରିଣ ହରିଣୀ
ମତ୍ତ ଘେନି ପିକେ ହୋଇଲେ ବିରହିଣୀ ।'' (ଗଦା, ୧୫୧ - ୧୫୨)

**(ଗ) ସମ୍ବାଦ :** ପୁରାଣର ଅନ୍ୟତମ ପ୍ରଧାନ ତତ୍ତ୍ୱ ହେଉଛି ସମ୍ବାଦ । ଏହି ଶୈଳୀ ଯୋଗୁ ଏହା କାବ୍ୟଠାରୁ ସ୍ୱତନ୍ତ୍ର । ପ୍ରତ୍ୟେକ ପୁରାଣ ବକ୍ତା ଓ ଶ୍ରୋତା ମାଧ୍ୟମରେ କଥିତ ହୋଇଥିଲେ ହେଁ ଅନେକ ସମୟରେ ମୁଖ୍ୟ ବକ୍ତା ଓ ଶ୍ରୋତାଙ୍କ ବ୍ୟତୀତ ଅନ୍ୟାନ୍ୟ ବହୁ ସମ୍ବାଦ ସଂଯୋଜିତ ହୋଇଥାଏ । ସଂସ୍କୃତ ବିଷ୍ଣୁ ପୁରାଣର ପ୍ରଥମ ଅଂଶରେ ଯଥାକ୍ରମେ ପୁରାଣର ସୁନୀତି, ଧ୍ରୁବ, ଋଷିଗଣ, ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ, ପୁଲହ, କ୍ରତୁ, ବଶିଷ୍ଠ ଆଦି ଋଷିମାନଙ୍କର ସୁନ୍ଦର ସମ୍ବାଦ ସଂଯୋଜିତ ହୋଇଛି । ପ୍ରାୟ ପ୍ରତ୍ୟେକ ପୁରାଣର ଏହା ହିଁ ରୀତି । ପୁରାଣର ବକ୍ତା ଓ

ଶ୍ରୋତା ରୂପେ ଧାର୍ମିକ ପୁରୁଷମାନେ ମୁଖ୍ୟ ସ୍ଥାନ ଅଧିକାର କରିଥିବାରୁ ଏଥିରେ ନାଟକୀୟତା, ସଂକ୍ଷିପ୍ତତା ଓ ବ୍ୟଙ୍ଗ-ଶୈଳୀ ବିଶେଷ ଦେଖାଯାଏ ନାହିଁ। କିନ୍ତୁ ଏହା ପୁରାଣର ଏକ-ସ୍ୱରତାକୁ ଦୂର କରିବାରେ ସାହାଯ୍ୟ କରେ।

ସାରଳା ଦାସଙ୍କ **ମହାଭାରତ**ରେ ସମ୍ବାଦକୁ ପ୍ରାଧାନ୍ୟ ପ୍ରଦାନ କରାଯାଇଛି ଏବଂ ସଂସ୍କୃତ ପୁରାଣରେ ପ୍ରଚଳିତ ଶୈଳୀକୁ ଏହା ବହୁ ସ୍ଥଳରେ ଅତିକ୍ରମ କରିବାରେ ସକ୍ଷମ ହୋଇଛି। ବଇବସ୍ୱତ ମନୁଙ୍କର ପ୍ରଶ୍ନରୁ ମହାଭାରତର କଥାବସ୍ତୁ ଆରମ୍ଭ ହୋଇଥିଲେ ହେଁ ପ୍ରସଙ୍ଗକ୍ରମେ ଏଥିରେ ଆଦିତ୍ୟ, ତାପତ୍ୟ, ନିର୍ଘାତ-ଗଙ୍ଗା, ଶାନ୍ତନୁ-ଗଙ୍ଗା, ପରାଶର-ଶାନ୍ତନୁ, ଶାନ୍ତନୁ-ଭୀଷ୍ମ, ସତ୍ୟବତୀ-ଅମ୍ବିକା ଓ ଅମ୍ବାଳିକା, ସତ୍ୟବତୀ-ଭୀଷ୍ମ, ସତ୍ୟବତୀ-ବ୍ୟାସ, ଅମ୍ବା-ଭୀଷ୍ମ, ଅମ୍ବା-ପରଶୁରାମ, ନୀଳରାମ-ଭୀଷ୍ମ, ବ୍ୟାସ-ଗାନ୍ଧାରସେନ, ଶିବ-ବୃଷଭ, କୁନ୍ତୀ-ସୂର୍ଯ୍ୟ, ସତ୍ୟବତୀ-କୁନ୍ତଭୋଜ, ଧୃତରାଷ୍ଟ୍ର-ଗାନ୍ଧାରୀ, ଅଗ୍ନିକାର-ଯମ, ଅଗ୍ନିକାର-ପାଣ୍ଡୁ, ଅଗ୍ନିକାର-ରତ୍ନାବତୀ, ପାଣ୍ଡୁ-କୁନ୍ତୀ, ଅଗସ୍ତି-ପାଣ୍ଡୁ, ପାଣ୍ଡୁ-ଧୃତରାଷ୍ଟ୍ର ପ୍ରଭୃତି ବହୁ ଉପ-ସମ୍ବାଦ ଦ୍ୱାରା ସୁଶୋଭିତ ହୋଇଛି।

ସମ୍ବାଦରେ ନାଟକୀୟତାର ଏକ ବିଶିଷ୍ଟ ଉଦାହରଣ ହେଉଛି ସତ୍ୟବତୀ ଏବଂ ଅମ୍ବିକା ଓ ଅମ୍ବାଳିକା ମଧ୍ୟରେ ହୋଇଥିବା ଆଲୋଚନା। ସତ୍ୟବତୀ କହିଛନ୍ତି-

ସତ୍ୟବତୀ ବୋଇଲେ ତୁମ୍ଭେ ଦୋହେଂ ମୋହର ଦେହ ଛୁଅଂ
ପାପ ବୋଲଇଂ କି ପୁଣ୍ୟ ବୋଲାଇଂ ଦୋହେୟେକ ମନ ହୁଅ। (ପୃ -୩୯)

ସତ୍ୟବତୀ ' ପାପ ବୋଲଇଂ' କି ' ପୁଣ୍ୟ ବୋଲଇଂ ' ଉକ୍ତି ଅତ୍ୟନ୍ତ ରହସ୍ୟ ବିଜଡ଼ିତ। ଏଥିରେ ତାଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ନୁହେଁ। ତେବେ ବି ବଧୂମାନେ ଶାଶୁଙ୍କୁ ସମ୍ମାନ ପ୍ରଦର୍ଶନ କରି କହିଛନ୍ତି -

ଅମ୍ବିକା ବୋଇଲେ ତୁ ପରମ ମାହେଶ୍ୱରୀ
ୟେତେକାଳ ପରିଯନ୍ତେ ଗୋ ଅଗମ୍ୟାଂ ଗଲା ସତ୍ୟ ତୋହରି। (ପୃ-୯୩)
ୟେବେ ସରିଲା ବେଳେ କିମ୍ପା ମେଣ୍ଟିବୁ ଗୁରୁ ବାକ୍ୟ
ବିଚାରିଣ କହ ଗୋ ଆମ୍ଭଙ୍କୁ ସ୍ୱରୂପ। (ପୃ-୯୪)

ଅମ୍ବିକାଙ୍କ 'ବିଚାରିଣ କହ' ଉକ୍ତି ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ। ଏଥିରେ ଗୁରୁଜନମାନେ ଅନ୍ୟାୟ ଓ ଅନୁଚିତ ପରାମର୍ଶ ନ ଦେଉଥିବା ହିଁ ସୂଚିତ। ଅଥଚ ସତ୍ୟବତୀଙ୍କ ପରାମର୍ଶରେ ଉଭୟ ଅମ୍ବିକା ଓ ଅମ୍ବାଳିକା ମୂର୍ଚ୍ଛା ହୋଇଗଲେ।

ସମ୍ବାଦରେ ନାଟକୀୟତା ପରି ବ୍ୟଙ୍ଗ ଶୈଳୀ ସାରଳା ଦାସଙ୍କର ଅନ୍ୟ ଏକ ଉପାଦାନ। ଗାନ୍ଧାରୀ ଧୃତରାଷ୍ଟ୍ରଙ୍କ ଅସହିଷ୍ଣୁ ଚରିତ୍ରର ଯେଉଁ ବିଶ୍ଳେଷଣ କରିଛନ୍ତି, ସେଥିରେ ସାଧାରଣ ଭାବେ ମାନବ ସମାଜ ହିଁ ଚିତ୍ରିତ। ଅନ୍ୟ ପ୍ରତି ଈର୍ଷାନ୍ୱିତ ହେବା ସବୁ ମାନବ

ଜାତିର ଏକ ସାଧାରଣ ଗୁଣ ହେଲେହେଁ ଏଥିରେ ଧୃତରାଷ୍ଟ୍ରଙ୍କ ଚକ୍ଷୁ-ହୀନତାକୁ ଏହାର କାରଣ ରୂପେ ନିର୍ଦ୍ଦେଶ କରାଯାଇଛି । ରତ୍ନାବତୀ ଚରିତ୍ର ଉପସ୍ଥାପନା କଲାବେଳେ ପୁରାଣ ପାଠ, ନୀତି ବଚନ, ଭଟ୍ଟ ମିଶ୍ରଙ୍କ ଉପଦେଶକୁ ମଧ୍ୟ ବ୍ୟଙ୍ଗ କରାଯାଇଛି । ସମାଜରେ ଏ ସବୁ ମନୁଷ୍ୟ ଚରିତ୍ରକୁ ଶୃଙ୍ଖଳିତ କରିବା ପାଇଁ ଉଦ୍ଦିଷ୍ଟ ହେଲେ ହେଁ, ରତ୍ନାବତୀର କାମ ବାସନା, ଏସବୁ ନୀତି-ନିୟମକୁ ମାନି ନାହିଁ । ଗଙ୍ଗା ଓ ଶାନ୍ତନୁ ଉପାଖ୍ୟାନରେ ଶାନ୍ତନୁଙ୍କର ଜପ, ତପ ଏବଂ କାମ ବାସନା ମଧ୍ୟରେ ନିରନ୍ତର ଚାଲିଥିବା ସଂଗ୍ରାମ ଏହାର ଅନ୍ୟ ଏକ ଦୃଷ୍ଟାନ୍ତ ।

ଏହିସବୁ ଲକ୍ଷଣ ବ୍ୟତୀତ ସାରଳା ଦାସଙ୍କ ସମ୍ବାଦ ଶୈଳୀରେ ସ୍ୱାଭାବିକତା, ଚରିତ୍ର ସବୁର ଅନ୍ତର୍ବୃତ୍ତିର ବିଶ୍ଳେଷଣ, ସଂକ୍ଷିପ୍ତତା ଓ ରୋଚକତା ପ୍ରଭୃତି ବୈଶିଷ୍ଟ୍ୟ ମଧ୍ୟ ପରିଲକ୍ଷିତ ହୁଏ । ସାରଳା ଦାସଙ୍କ ନୀରସ, ଶୁଷ୍କ ଦାର୍ଶନିକ ସମ୍ବାଦ ଅପେକ୍ଷା ଚରିତ୍ର ଉପଯୋଗୀ ଉକ୍ତି-ପ୍ରତ୍ୟୁକ୍ତି ହିଁ ଲକ୍ଷଣୀୟ । ସତ୍ୟବତୀଙ୍କ ଉପଦେଶର ପୃଷ୍ଠଭୂମିରେ ଅଛି ତାଙ୍କ ଅତୀତ ଜୀବନର ତଥା ବଂଶର ଇତିହାସ । ରତ୍ନାବତୀଙ୍କ ସଂଳାପରେ ଅଛି ପ୍ରଚଳିତ ସାମାଜିକ ପରମ୍ପରା ପ୍ରତି ବିଦ୍ୱେଷ । ଧୃତରାଷ୍ଟ୍ରଙ୍କ ପ୍ରତିହିଂସାରେ ଅଛି ତାଙ୍କ ବିକଳାଙ୍ଗ ଅଙ୍ଗର ପ୍ରକୃତି । ଏହିପରି ପ୍ରତ୍ୟେକ ଚରିତ୍ରର ସଂଳାପରୁ ସେମାନଙ୍କ ଚରିତ୍ରର ବିଶ୍ଳେଷଣ କରିହୁଏ । ସାରଳା ଦାସ ସମ୍ବାଦ ଶୈଳୀର ଯେଉଁ ସାର୍ଥକ ପ୍ରୟୋଗ କରିଛନ୍ତି, ତାହା ହିଁ ପରବର୍ତ୍ତୀ ଯୁଗରେ ବହୁ କବିଙ୍କୁ ପ୍ରଭାବିତ କରିପାରିଛି ।

**(ଘ) ଜ୍ୟୋତିଷ ବର୍ଣ୍ଣନା :** ଜ୍ୟୋତିଷ ଶାସ୍ତ୍ର ଭାରତୀୟ ଜୀବନକୁ ନିୟନ୍ତ୍ରଣ କରିବାରେ ଏକ ବିଶେଷ ଉପାଦାନ । କାଳ, ବେଳ ଉପରେ ହିଁ କାର୍ଯ୍ୟର ସଫଳତା ନିର୍ଭର କରେ । ଏହା ହିଁ ଭାରତୀୟମାନଙ୍କର ଦୃଢ଼ ବିଶ୍ୱାସ । ସାରଳା **ମହାଭାରତ**ରେ ଜ୍ୟୋତିଷ-ଶାସ୍ତ୍ରର ବାରମ୍ବାର ଉଲ୍ଲେଖ ଏହାର ପ୍ରମାଣ । ପ୍ରାୟ ପ୍ରତ୍ୟେକ ବିଶିଷ୍ଟ କାର୍ଯ୍ୟ ପୂର୍ବରୁ ସାରଳା ଦାସ କାଳ, ବେଳର ସୂଚନା ଦେଇଛନ୍ତି । ଏହି ପ୍ରବୃତ୍ତି ତାଙ୍କ **ମହାଭାରତ**ର ଏକ ବିଶିଷ୍ଟ ପ୍ରବୃତ୍ତି ରୂପେ ପ୍ରକାଶ ପାଇଛି । ଧୃତରାଷ୍ଟ୍ରଙ୍କର ରାକ୍ଷସ ପ୍ରବୃତ୍ତି ଅଶୁଭ ବେଳର ପରିଣତି । ଏ କଥାକୁ ସାରଳା ଦାସ ଅତି ଗୁରୁତ୍ୱ ଦେଇ ବର୍ଣ୍ଣନା କଲା ପରି ଭୀଷ୍ମ, ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ ପ୍ରଭୃତି ଚରିତ୍ରର ସଦ୍‌ଗୁଣାବଳୀ ତାଙ୍କ ଜନ୍ମକାଳର ଶୁଭ ମୁହୂର୍ତ୍ତ ଉପରେ ହିଁ ନିର୍ଭର କରିଛି । ରତ୍ନାବତୀ ଚରିତ୍ରକୁ ପର୍ଯ୍ୟାଲୋଚନା କଲାବେଳେ ସାରଳା ଦାସ ଅନୁରାଧା ଓ ଅନ୍ୟାନ୍ୟ ନକ୍ଷତ୍ର ବେଳର ଯେଉଁ ବିବରଣୀ ପ୍ରଦାନ କରିଛନ୍ତି ସେଥିରୁ ଜ୍ୟୋତିଷ ଶାସ୍ତ୍ର ସମ୍ବନ୍ଧରେ ସାରଳା ଦାସଙ୍କର ବିଶେଷ ଜ୍ଞାନ ଥିବା ପ୍ରତିପାଦିତ ହୁଏ ।

**(ଙ) ସ୍ତୋତ୍ର :** ସାରଳା ମହାଭାରତରେ ଆତ୍ମା ହେଉଛି ଧର୍ମ ଏବଂ ଭାରତୀୟ ଧର୍ମ ପରମ୍ପରାର ଏକ ବିଶିଷ୍ଟ ପ୍ରବୃତ୍ତି ହେଉଛି, କାବ୍ୟ ପୁରାଣାଦିରେ ସ୍ତୋତ୍ରର ଯୋଜନା । ସାରଳା ଦାସ ଗ୍ରନ୍ଥର ଆରମ୍ଭରେ, ପ୍ରତ୍ୟେକ ସଭା ଶେଷରେ ଏବଂ ପ୍ରସଙ୍ଗାନୁକ୍ରମେ ସ୍ତୋତ୍ର ସବୁର ସମାବେଶ କରି ଦେବାଦେବୀମାନଙ୍କୁ ନିଜର ଭକ୍ତି ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ପାଠକମାନଙ୍କୁ

ସେମାନଙ୍କ ମହିମା ସମ୍ବନ୍ଧରେ ସଚେତନ କରିଛନ୍ତି । ସ୍ତୋତ୍ର ସବୁର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଦେବାଦେବୀଙ୍କ ମହିମା, ଐଶ୍ୱର୍ଯ୍ୟ, ତଥା ସେମାନଙ୍କ ଦୈବୀ-ଶକ୍ତି ଓ ପରାକ୍ରମର ପ୍ରଖ୍ୟାପନ । କୌଣସି କୌଣସି ସ୍ଥାନରେ କବିର ଆତ୍ମ-ନିବେଦନ, ପ୍ରାର୍ଥନା ତଥା ଯାଚନା ସ୍ତୋତ୍ର ସବୁର କଳେବର ମଣ୍ଡିତ କରିଛି । ସାହିତ୍ୟ ଦୃଷ୍ଟିରୁ ଏହା ନିମ୍ନକୋଟିର ରଚନା ହେଲେହେଁ ଏଥିରେ ଦେବାଦେବୀଙ୍କ ସମ୍ପର୍କିତ ବହୁ ତଥ୍ୟର ସମାବେଶ ହୋଇଥାଏ । ଭୀଷ୍ମଙ୍କ ଦୁର୍ଗା ସ୍ତୁତିରୁ ତାଙ୍କର ବିଭିନ୍ନ ନାମ, ଅସ୍ତ୍ର, ଶସ୍ତ୍ର, ଆଭରଣ, ଭୟଙ୍କର ରୂପର ସନ୍ଧାନ ମିଳେ । ପ୍ରତ୍ୟେକ ଦେବୀ ବା ଦେବତାର ସ୍ୱତନ୍ତ୍ର ନାମ, ଅସ୍ତ୍ରଶସ୍ତ୍ର, ଆଭରଣ ଓ ରୂପ ଥିଲେହେଁ, ସେମାନଙ୍କର ସାଧାରଣ ବିଶେଷତା ହେଉଛି-

| | | | |
|---|---|---|---|
| (୧) | ସ୍ରଷ୍ଟା | (୪) | ଲୀଳା ପ୍ରକାଶକ |
| (୨) | ମହାନ୍ ପୌରୁଷ | (୫) | ଶରଣ ରକ୍ଷକ |
| (୩) | ଅଭୟ ପ୍ରଦାୟକ | (୬) | କାଳଜୟୀ ଇତ୍ୟାଦି । |

ଏହି ସବୁ ଗୁଣରେ ମହିମାନ୍ୱିତ ହୋଇ ସେମାନେ ଭକ୍ତମଣ୍ଡଳୀକୁ ଅଭୟ ପ୍ରଦାନ କରିଥାନ୍ତି ।

**(ଚ) ନୀତିବାକ୍ୟ :** ନୀତିବାକ୍ୟର ପ୍ରଚାର ଥିଲା ପୁରାଣର ଅନ୍ୟ ଏକ ଉଦ୍ଦେଶ୍ୟ । ପ୍ରାୟ ପ୍ରତ୍ୟେକ ପୁରାଣରୁ ଏହାର ବହୁ ଦୃଷ୍ଟାନ୍ତ ଉପଲବ୍ଧ ହୁଏ । ଏହା ଭାଷାକୁ ସବଳ ଓ ଭାବକୁ ତୀବ୍ର କରେ । ଏଥିରେ ସମାଜର ସମ୍ମିଳିତ ଅନୁଭବ ପ୍ରକାଶିତ ହୁଏ । ଏସବୁ ସତ୍ତ୍ୱେ ସାରଳା **ମହାଭାରତ**ରେ ଏହାର ସ୍ୱତନ୍ତ୍ର ରୂପ ପ୍ରାୟ ଦେଖିହୁଏ ନାହିଁ । ଏହା ବର୍ଣ୍ଣନା ସହ ପ୍ରାୟ ମିଶି କରି ପ୍ରକାଶ ପାଇଛି । ନିମ୍ନରେ ପ୍ରଦତ୍ତ କେତେକ ଉଦାହରଣରୁ କବିଙ୍କ ଦୃଷ୍ଟିକୋଣର ପରିଚୟ ମିଳେ :

ଶରୀର ଥିବ ମୋର ଯେତେ କାଳ ପରିଯନ୍ତେ
ସତ୍ୟ ସତ୍ୟ ତିନିବାର ଅଲଘିତ ନିୟମ ମୋତେ । (ପୃ-୬୫)
ସନ୍ତାନ ନଥିଲେ ତୁଟଇ ଅନେକ କାଳର ଧର୍ମମାନ (ପୃ-୬୮)
ସତ୍ୟେଣ ସଂସାର ଯେ ଅଛଇ ପ୍ରବର୍ତ୍ତି
ସତ୍ୟକୁ ମେଣ୍ଟି ଲଂଘିଲେ ପ୍ରାଣୀ ହୁଅନ୍ତି ନର୍କଗତି । (ପୃ-୭୪)
କିଞ୍ଚିତ ଦୋଷେ ବଡ଼ପଣ ନାଶି
ଶ୍ରିକାଳ ଯୁଦ୍ଧେ ସିଂହ ହୋଇଲାଟି ଧ୍ୱଂସି । (ପୃ-[illegible])
ମାତା ପିତାର ବଚନ ଯେ ପୁତ୍ରକୁ ନିରାଧାର
ସମସ୍ତ କାର୍ଯ୍ୟ ତେଜି ବାବୁ ପିତୃକାର୍ଯ୍ୟ କର

ଯଦ୍ୟପି ବିପ୍ର ତୁ ଅଟୁସି ଯୁଗତେ
ସୁଲଭ ଭୋଜନ ଦେଖିଲେ ପଳାଉ କେମନ୍ତେ । (ପୃ-୯୧)
ଦୟାଳୁ ଘାଟକୁ ଧର୍ମ କେମନ୍ତ ଛାଡ଼ିବ । (ପୃ-୨୦୩)
କର୍ମେ ଯାହା ଫଳିତ ତାହା କେହୁ ଆନ କରି । (ପୃ-୨୨୬)
ଭାଗ୍ୟେ ଯେ ପ୍ରାପତ ତାହା ମୃଚ୍ଛିବା କେମନ୍ତେ । (ପୃ-୨୨୬)
ପ୍ରିୟଲୋକେ ପରତେ ମିଥ୍ୟା କହିତ ନ ପାରି । (ପୃ-୨୮୦)

ଏହିସବୁ ଉଦାହରଣରୁ ସମାଜ ପ୍ରତି ସାରଳା ଦାସଙ୍କ ଦୃଷ୍ଟିକୋଣର ପରିଚୟ ମିଳେ । ସେ କର୍ମ ଓ ଭାଗ୍ୟବାଦୀ ଥିଲେ । ଦେବ, ଦୟା ଓ ଗୁରୁଜନଙ୍କ ପ୍ରତି ତାଙ୍କର ସମ୍ମାନ ଅତୁଟ ଥିଲା । ମିଥ୍ୟା କହିବାକୁ ସେ ଏକ ଅପରାଧ ଭାବେ ଗ୍ରହଣ କରୁଥିଲେ ।

**ପାଣ୍ଡିତ୍ୟ ପ୍ରଦର୍ଶନ :** ସାରଳା ଦାସଙ୍କ ରଚନାଶୈଳୀର ଅନ୍ୟ ଗୋଟିଏ ବିଶିଷ୍ଟ ପ୍ରବୃତ୍ତି ହେଉଛି ପାଣ୍ଡିତ୍ୟ ପ୍ରଦର୍ଶନ । ସାଧାରଣ ଶ୍ରୋତାମାନଙ୍କୁ ଚମତ୍କୃତ କରିବା ଉଦ୍ଦେଶ୍ୟରେ ସେ ପ୍ରାୟ ଏହି ପ୍ରକାର ଶୈଳୀର ବ୍ୟବହାର କରୁଥିଲେ । କୁରୁବଂଶର ଉତ୍ପତ୍ତି, ଗୁରୁ ଲୋକେଶ୍ୱର ଓ ପାଠରଷିଙ୍କ ବଂଶାବଳୀ, ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ପ୍ରସଙ୍ଗରେ ବିଭିନ୍ନ ଦେଶର ଉଲ୍ଲେଖ, ବିଭିନ୍ନ ଯୁଗରେ କୃଷ୍ଣ ଓ ଅର୍ଜୁନଙ୍କ ବନ୍ଧୁତ୍ୱର ପରିଚୟ, ବିଭିନ୍ନ ବନ୍ଦନାରେ ଦେବାଦେବୀଙ୍କ ଗୁଣାବଳୀ ତଥା ପୁରାଣ ଜ୍ଞାନର ପ୍ରକାଶ, ବିଭିନ୍ନ ବିଦ୍ୟାର ଉଲ୍ଲେଖ, ଯୋଗସାଧନାର ବିଭିନ୍ନ ମାର୍ଗ, ବିଭିନ୍ନ ନଦୀ, ଜ୍ୟୋତିଷଶାସ୍ତ୍ର ବର୍ଣ୍ଣନାରେ ଋତୁ, ମାସ, ପକ୍ଷ, ଦିନ, ତିଥି, ବାର, ନକ୍ଷତ୍ର, କରଣ, ଯୋଗ ଦଣ୍ଡ ଓ ଗ୍ରହସ୍ଥିତିର ପରିଚୟ, ଦୁର୍ଯ୍ୟୋଧନଙ୍କ ଶତଭ୍ରାତାର ନାମକରଣରେ ନୂଆ ନୂଆ ଶବ୍ଦ ଯୋଜନା, ଅନ୍ଧ ଧୃତରାଷ୍ଟ୍ରଙ୍କ ପ୍ରକୃତି ବିଶ୍ଲେଷଣ କଲାବେଳେ କରତାର ପୁରୁଷଙ୍କ ରୂପ ଓ ମହିମାର ବର୍ଣ୍ଣନା ପ୍ରଭୃତିରୁ ସାରଳାଦାସଙ୍କ ଏହି ଦୃଷ୍ଟିକୋଣ ସ୍ପଷ୍ଟ । ତାଙ୍କର ଅନେକ କଥା କହିବାର ପ୍ରବୃତ୍ତିକୁ ଏହା ବିଶେଷ ଭାବେ ସାହାଯ୍ୟ କରିଥିଲା ।

**(ଛ) ଅଳଙ୍କାର :** ବିଧାନ ଭାଷାର ସୌଷ୍ଠବ ବୃଦ୍ଧି କରିବା ପାଇଁ ସାରଳା ଦାସ ପ୍ରାୟ ସାନୁପ୍ରାସିକ ପଦାବଳୀର ବ୍ୟବହାର କରିଛନ୍ତି । ଗ୍ରନ୍ଥର ଅଧିକାଂଶ ପଦରୁ ଏହି ଶୈଳୀର ପରିଚୟ ମିଳେ ।

ବ - ଭର୍ତ୍ସନ କରଣ ବଚନ ନା ବୋଲିବୁ (ପୃ-୨୫)
ବୋଲି - ଗଙ୍ଗା ବୋଲିଣ ତୁ ବୋଲୁଥିବୁ ଅନୁବ୍ରତେ । (ପୃ-୨୫)
ହ - ଅନେକ ଦୋଷ କଲେ ସହିବି ହୋଇବି ଭଗତ (ପୃ-୨୫)
ତ - ଯେହେଣ୍ଟେ ବହୁତ ସତ୍ୟବ୍ରତ କଲେଟି ସତ୍ୟବାଦୀ । (ପୃ-୨୫)
ଧ - ପ୍ରଦାନ ହୋଇଲେ ସିଦ୍ଧ ସାଧବୀ ଧବଳାଙ୍ଗୀ । (ପୃ-୨୫)

ରଣ - ତାରଣ କାରଣ ଉଦ୍ଧାରଣ ଦଇବତ । (ପୃ-୧୦)

ଜ - ସ୍ୱେଦ୍ଵଜ ଅଣ୍ଡଜ ଉଦ୍ଭିଜ ଜରାୟୁଜ ଚାରିଖାନି । (ପୃ-୧୦୭)

ଣ-ଳ - ଚଣ୍ଡ, ପ୍ରଚଣ୍ଡ, ହୃଦଣ୍ଡ, ମହାକାଳ ଅନଳ । (ପୃ-୨୪୮)

ମାର - ଅତି ସୁକୁମାର ସେ କୁମାର ନକୁଳ । (ପୃ-୨୭୫)

ସାନୁପ୍ରାସିକ ପ୍ରୟୋଗ ପରି ବୀପ୍‌ସା ମଧ୍ୟ ଭାଷା ପ୍ରସାଧନର ଏକ ବିଶିଷ୍ଟ ଉପାଦାନ । ସାରଳା ଦାସ ଭାଷାର ବୃଦ୍ଧି କରିବା ପାଇଁ ଏହାର ବହୁଳ ପ୍ରୟୋଗ କରିଛନ୍ତି ।

ପାଟଛତ୍ର ହିଁ ଲକ୍ଷେ ଚାମର ହିଁ ଲକ୍ଷେ

ଉଦଣ୍ଡ ଅଲମ୍ବ ମୟୂର ଝାଲି ଲକ୍ଷେ ।

ଶଙ୍ଖ ତୂର ଲକ୍ଷେ ଟମକ ଲକ୍ଷେ

ନିଶାଣ ଲକ୍ଷେ, ଭେରୀ ଦାଉଣ୍ଡି ଲକ୍ଷେ ଲକ୍ଷେ ।

ଟମକ ନିଶାଣ ଯେ ଯେମାନ ଲକ୍ଷେ ଲକ୍ଷେ

ହସ୍ତୀ ଘୋଡ଼ା ପାଇକ ପଲସି ଅଛନ୍ତି କାଛେ କାଛେ । (ପୃ-୧୯୪)

ଏହିପରି କତି କତି (ପୃ-୩୦), ରହ ରହ ( ପୃ-୪୧-୮୪.୧୮୩), ଶିବ, ଶିବ (ପୃ-୪୧ ), ଦେଖୁ ଦେଖୁ (ପୃ-୫୬), ସତ୍ୟ ସତ୍ୟ (ପୃ-୫୭ ପୃ୬୫-୭୭-୧୬୫) ଧନ୍ୟ ଧନ୍ୟ (ପୃ-୬) । ଥାଉଂ ଥାଉଂ (ପୃ-୭୨ ) ଜଣେ ଜଣେ (ପୃ-୭୪) କେତେ କେତେ (ପୃ-୭୯ ) ସହୋଦ୍ର, ସହୋଦ୍ର, ଜନ୍ମେ ଜନ୍ମେ (ପୃ-୮୪) ଛାଡ଼ ଛାଡ଼ (ପୃ ୯୮), କୋଟି କୋଟି (ପୃ-୧୦୬) ପୁଣ ପୁଣ (ପୃ-୧୦୯ ) ପ୍ରଭୃତି ପ୍ରୟୋଗକୁ ମଧ୍ୟ ଦେଖାଯାଇପାରେ ।

ବୀପ୍‌ସାପରି ଧ୍ୱନ୍ୟାନୁକରଣ ଶବ୍ଦ ସବୁର ପ୍ରୟୋଗରେ ଭାଷାର ସୌନ୍ଦର୍ଯ୍ୟ ବୃଦ୍ଧିପାଏ । ପ୍ରସଙ୍ଗ କ୍ରମେ ଏ ପ୍ରକାର ଶବ୍ଦାବଳୀର ବ୍ୟବହାରରେ ସାରଳା ଦାସ ନିପୁଣଥିବା ନିମ୍ନ କେତେକ ଉଦାହରଣରୁ ସ୍ପଷ୍ଟ ହୁଏ ।

ଅଘୋର ମୂଖ ଗୋ ଚହ ଚହ ହସ ମୁଖୀ ପୃ-୬୦

ଡ଼ିବି ଡ଼ିବି ବାଦ୍ୟ ଗୋ ଭୁଜେଣ ଡ଼ମ୍ବରୁ ପୃ-୬୦

ନୟନର କୋଣୁଂ ବହଇ ଝର ଝର ପାଣି ପୃ-୬୩

ପୁରାଣ ସବୁର ମୂଳ ଉଦ୍ଦେଶ୍ୟ ଥିଲା କଥା କହିବା । ସେଥିପାଇଁ ପୁରାଣକାରମାନେ ଅଳଙ୍କୃତ ଶୈଳୀ ଅପେକ୍ଷା ସହଜ ସ୍ୱାଭାବିକ ଶୈଳୀକୁ ବିଶେଷ ପ୍ରାଧାନ୍ୟ ଦେଇଥିଲେ । ପୁରାଣ ସବୁ ମଧ୍ୟରୁ କେବଳ **ଶ୍ରୀମଦ୍ ଭାଗବତ**ରେ ଅଳଙ୍କୃତ ଶୈଳୀର ପ୍ରାଚୂର୍ଯ୍ୟ ଦେଖିବାକୁ ମିଳିଥାଏ ।

ପଞ୍ଚଦଶ ଶତାବ୍ଦୀ ବେଳକୁ ଶ୍ରୀମଦ୍‌ଭାଗବତ ଏକ ଲୋକପ୍ରିୟ ଗ୍ରନ୍ଥ ଭାବେ ପ୍ରସିଦ୍ଧି

ଲାଭ କରିଥିଲେ ହେଁ, ସାରଳା ଦାସ ଏହାର ଅଳଙ୍କୃତ ଶୈଳୀକୁ ଗ୍ରହଣ କଲେନାହିଁ, ଫଳରେ ତାଙ୍କ **ମହାଭାରତ**ର ସ୍ୱାଭାବିକ ରୀତି ମଧ୍ୟରେ ସମୟ ସମୟରେ ଉପମା, ରୂପକ, ଉତ୍ପ୍ରେକ୍ଷା ଆଦି ଅଳଙ୍କାରର ପ୍ରୟୋଗ ଦେଖିବାକୁ ମିଳିଥାଏ ।

ସାରଳା ଦାସ ଅପ୍ରସ୍ତୁତ ଯୋଜନା ପ୍ରତି ବିଶେଷ ଗୁରୁତ୍ୱ ଦେଉ ନଥିବାରୁ ଅନେକ ସମୟରେ କେବଳ ଗୋଟିଏ ଗୋଟିଏ ଉପମା ବାରମ୍ବାର ପ୍ରଯୁକ୍ତ ହେଉଥିଲା । ତାପତୀଙ୍କ ରୂପ ବର୍ଣ୍ଣନାରେ ସାରଳା ଦାସ ସେଥିପାଇଁ କେବଳ - 'ତାପତୀର ତେଜ ମହା ଅନଳ ପରାୟେ'କୁ ବାରମ୍ବାର (୩ ଥର) ବ୍ୟବହାର କରିଛନ୍ତି ।

ଅନ୍ୟ ସ୍ଥଳରେ ସେ ଯେଉଁସବୁ ଉପମାର ବ୍ୟବହାର କରିଛନ୍ତି, ସେଥିପାଇଁ ନୂଆ ଉପମା ଖୋଜିବା ପାଇଁ ଚେଷ୍ଟା ନକରି ପରଂପରାରେ ପ୍ରସିଦ୍ଧ ଉପମା ସବୁର ବ୍ୟବହାର କରିଛନ୍ତି । ଯୁଧିଷ୍ଠିର ଓ ଅନ୍ୟାନ୍ୟ ଭାଇଙ୍କ ରୂପ ବର୍ଣ୍ଣନା କଲାବେଳେ ସାରଳା ଦାସଙ୍କ ଏହି ଦୃଷ୍ଟିକୋଣ ସୁସ୍ପଷ୍ଟ ।

ସଂସାରକୁ 'ଅଦଉଡ଼ି ବନ୍ଧନ' ଏବଂ ପୁରୁଷ ନାରୀର ନିବିଡ଼ି ଆଲିଙ୍ଗନକୁ ସାରଳା ବୃକ୍ଷ ସହ ତୁଳନା କଲାବେଳେ ସାରଳାଦାସଙ୍କ ନିଜସ୍ୱ ଦୃଷ୍ଟିକୋଣ ପ୍ରକାଶିତ ହୋଇଥାଏ । ସାରଳା **ମହାଭାରତ**ର ବିରାଟ କଳେବର ଦୃଷ୍ଟିରୁ ଏହି କେତେକ ଉପମାନର ଗୁରୁତ୍ୱ ଉପଲବ୍ଧ କରିହୁଏ ନାହିଁ । ପରଂପରାରେ ପ୍ରସିଦ୍ଧ ଉପମା ସବୁକୁ ସାରଳା ଦାସ ନିମ୍ନ ଭାବରେ ବ୍ୟବହାର କରିଛନ୍ତି ।

**ଉପମା**

ଶରଦ ଆଦିତ୍ୟ ପ୍ରାୟେ ତନୁ - ପୃ-୨୧୧
ଉଦୟେ ଚନ୍ଦ୍ର ଯେହ୍ନେ ନିକଳଙ୍କ ସୂର୍ଯ୍ୟମଣି ? ପୃ-୨୧୧
ଅନ୍ଧାର ଭେଦି ପର୍ବତ ଦିଶୁଅଛି ଦିବସର ପ୍ରାୟେ -
ସ୍ୱର୍ଗ ତେଜି ଚନ୍ଦ୍ର ଦେବ । କି ପର୍ବତେ ଉଦୟେ
ରାତ୍ର କାଳେ ପର୍ବତ ଦିଶଇ ଶୁକ୍ଳାମ୍ବର ପ୍ରାୟେ - ପୃ-୨୧୨
ପ୍ରତ୍ୟକ୍ଷେ ନାରାୟଣ, ଅତ୍ୟନ୍ତ ସୁନ୍ଦର ସେ ମକର ଧ୍ୱଜ ପ୍ରାୟ - ପୃ-୨୨୩
ବିକ୍ରମ ସିଂହ ଶୋଭା, ଦିଶଇ ବେନି ଜାନୁ ଠାଣି ପୃ-୨୧୦
ବେନି ପାଦ କାନ୍ତି ରଜତ କୁମୁଦ ଜାଣି ପୃ-୨୧୦
ପକ୍ୱ ବିମ୍ବ ଓଷ୍ଠ ପୃ-୨୧୦
ଉଲଟ କଦଳୀ ଜାନୁ ପୃ-୧୫୯
ପ୍ରତ୍ୟେକ୍ଷେ ବାଳ ଆଦିତ୍ୟ ପ୍ରାୟେ ତେଜ ପୃ-୧୬୦

କର୍ଦ୍ଦମ ହୋଇଲା ସୁବର୍ଣ୍ଣ ମଣ୍ଡୁତାର ପ୍ରାୟେ -୧୬୦
ଶରୀର କମ୍ପାଇ ତାର କଦଳୀ ପତ୍ର ପ୍ରାୟ - ୧୦୫
ନୀଳେନ୍ଦ୍ରି ଦଳ ପରାୟେ ତନୁ
ବିଚିତ୍ର ବେଶନ ରୂପ ସୁନ୍ଦର କି କୋଟି ସୂର୍ଯ୍ୟ ଭାନୁ - ପୃ-୨୬୧
ଦିବସ ପ୍ରାୟେ ଦିଶିଲା କୁମାର ଉଦ୍‌ବେଗ ଗତ - ପୃ-୨୭୪
କ୍ଷେପନ୍ତି ବଳାହକେ ଯେହ୍ନେ ବିଜୁଳି କନକ ରେହେ - ପୃ-୨୩୫
ତେଜ ଢାଳା ଆଦିତ୍ୟର ପ୍ରାୟେ - ପୃ-୨୮୧

ରୂପକ

ପଦ୍ମପାଦ - ପୃ-୮
ଦୟାସାଗର - ଶୃଙ୍ଗାର ବାରାନିଧି - ପୃ-୧୯୫
ପଦ୍ମପାଦ, ପାଦ ପଙ୍କଜ - ପୃ୧୧୯
ଧର୍ମ ନୌକା - ପୃ-୨୭
କାଳାନଳ ରୂପ ହୋଇଣ ପର୍ଶୁରାମ - ପୃ-୮୦

ଉତ୍‌ପ୍ରେକ୍ଷା

ପୁତ୍ରେକ ଉପୁଜିଲା ମଦନ ମୂରତି - ପୃ-୪୧
ବାହୁ ବିଜେ କେତନ ସ୍ୱରୂପ
ଲକ୍ଷଣ ଅନଙ୍ଗ ସମ ଧାପ ପୃ-୧୧୭

ଅର୍ଥାନ୍ତର ନ୍ୟାସ :

ସୁରା ଅଇଲେ ଯେହ୍ନେ ହେଠେ ନାଥ ଅସମ୍ଭାଳ
ପର ପୁରୁଷ ଆମ୍ଭେ ଦେଖିଲେ ହୋଇ ମତ ଭଳି । - ପୃ-୧୦୪
'ମାତା ପିତାର ବଚନ ଯେ ପୁତ୍ରକୁ ନିରାଧାର
ସମସ୍ତ କାର୍ଯ୍ୟ ତେଜି ବାବୁ କର ପିତୃ କାର୍ଯ୍ୟ - ପୃ-୯୧

**(ଢ) ଛନ୍ଦଯୋଜନା :**

ମାନବ ଜାତି ନିଜର ପ୍ରୟୋଜନ ପୂର୍ଣ୍ଣ କରିବା ପାଇଁ ଯେଉଁ ବାକ୍ୟ ସବୁ ବ୍ୟବହାର କରେ, ତାହା ହେଉଛି ଗଦ୍ୟ । ଯେତେବେଳେ ଏହି ବାକ୍ୟ ସବୁ ଛନ୍ଦାଶ୍ରିତ ହୋଇ ପ୍ରକାଶ ପାଏ, ସେତେବେଳେ ବାକ୍ୟ ପ୍ରୟୋଜନୀୟ ଗୁରୁତ୍ୱରୁ ମୁକ୍ତ ପାଇ ଭାବାଲୋକରେ ପ୍ରବେଶ କରେ। ଏହାକୁ ମନୁଷ୍ୟର ସାଧାରଣ ଗତି ଓ ଛନ୍ଦୋମୟ ଗତି ସହ ତୁଳନା କରାଯାଇପାରେ ।

ମନୁଷ୍ୟ ଯେତେବେଳେ ଯିବା ଆସିବା କରେ, ସେଥିରେ ଛନ୍ଦ ନ ଥାଏ । ସେ ନିଜର ପ୍ରୟୋଜନ ପାଇଁ ଚାଲେ । କିନ୍ତୁ ଯେତେବେଳେ ଏହି ଗତି ଛନ୍ଦଯୁକ୍ତ ହୁଏ, ସେତେବେଳେ ଏହା ନୃତ୍ୟ ଓ ଏହା ମନୁଷ୍ୟକୁ ଅଲୌକିକ ଆନନ୍ଦ ପ୍ରଦାନ କରେ । ସେହିପରି ବାକ୍ୟରେ ଛନ୍ଦ ପ୍ରୟୋଗ ହେବାପରେ ଏହା ମନୁଷ୍ୟକୁ ସାଧାରଣ ଦୁନିଆର ହସ, କାନ୍ଦରୁ ମୁକ୍ତ କରି ଧର୍ମ ବା ଆଧ୍ୟାତ୍ମ ଜଗତକୁ ନେଇଯାଏ ।

ଛନ୍ଦର ଏହି ମହିମା ଉପଲବ୍ଧି କରିବା ପରେ କବିମାନେ ନିଜ ରଚିତ କାବ୍ୟରେ ଏହାର ପ୍ରୟୋଗ ବିଭିନ୍ନ ଭାବେ କରି ଆସିଛନ୍ତି । ଏହା ସତ୍ତ୍ୱେ ସମସ୍ତ କାବ୍ୟରୁ ଛନ୍ଦର ସନ୍ଧାନ କରିବା ନିରର୍ଥକ । ଏପରି ଅନେକ କାବ୍ୟ ଅଛି, ଯେଉଁଥିରେ କେବଳ ପଦ ମିଳାଇବା ପ୍ରଚେଷ୍ଟା ହିଁ ସାର ହୋଇଛି । ଛନ୍ଦର ନୈସର୍ଗିକ ସୌନ୍ଦର୍ଯ୍ୟ ପ୍ରକାଶ ପାଇନାହିଁ । ସାର୍ଥକ କବି ହିଁ ଛନ୍ଦର ଉପଯୁକ୍ତ ପ୍ରୟୋଗ କରିପାରେ । କେବଳ ଅଙ୍ଗଚାଳନା କରିବା ଯେପରି ନୃତ୍ୟ ନୁହେଁ, ସେହିପରି କେବଳ ରାଗ, ରାଗିଣୀର ପ୍ରୟୋଗ ଦ୍ୱାରା କାବ୍ୟ ଛନ୍ଦୋମୟ ହୁଏ ନାହିଁ । ଛନ୍ଦ ପ୍ରୟୋଗର ବୈଶିଷ୍ଟ୍ୟ ହେଉଛି ଯେ, ଏହା ଭାଷାକୁ ଗତିମୟ କରିବା ସଙ୍ଗେ ସଙ୍ଗେ ଭାବକୁ ଉଦ୍ଦୀପ୍ତ ଓ ପ୍ରାଣବନ୍ତ କରେ । ସାଧାରଣ ଜଡ଼ତା ଦୂର କରି ଏହା ପାଠକ ବା ଶ୍ରୋତାର ହୃଦୟରେ ସୃଷ୍ଟିକରେ ଆବେଗ କଂପନ ।

ଛନ୍ଦ ପ୍ରୟୋଗର ଏହି ମହତ୍ତ୍ୱ ସହ ସାରଳା ଦାସ ପରିଚିତ ଥିବା ତାଙ୍କ ନିର୍ବାଚିତ ଛନ୍ଦରୁ ହିଁ ଜଣାଯାଏ । ସାରଳା ଦାସଙ୍କ **ମହାଭାରତ**ରେ ମାଳବ, ଲଳିତ, ବସନ୍ତ, ଭୈରବୀ ପ୍ରଭୃତି ୩୬ଟି ରାଗ ରାଗିଣୀର ଉଲ୍ଲେଖ ଅଛି । କବି ଚାହିଁଥିଲେ ଏହିସବୁ ରାଗ ରାଗିଣୀରୁ କୌଣସି ଗୋଟିଏ ରାଗକୁ ନିଜ **ମହାଭାରତ**ର ଛନ୍ଦରୂପେ ବ୍ୟବହାର କରି ପାରିଥାନ୍ତେ । ସେ ତାହା କରିନାହାନ୍ତି । କାରଣ ସେ ଜାଣିଥିଲେ ଏସବୁ ହେଉଛି ସଂଗୀତର ରାଗ । କଥା କହିବା ପାଇଁ ଏ ସବୁ ଉପଯୁକ୍ତ ନୁହେଁ । ସେଥିପାଇଁ ଯେଉଁ ଛନ୍ଦ ବର୍ଣ୍ଣନାତ୍ମକ (Descriptive) ଓ ବିବୃତ୍ତି ମୂଳକ (Narrative) ଏବଂ ଗଦ୍ୟ ସହ ମିଶି ବ୍ୟବହାର କରାଯାଇ ପାରେ, ସେହି ଦଣ୍ଡକ ବା ଦାଣ୍ଡବୃତ୍ତିକୁ ସେ ନିଜ **ମହାଭାରତ**ର ମାଧ୍ୟମ କଲେ । ସାରଳାଦାସଙ୍କ ଏହି ଛନ୍ଦ ନିର୍ବାଚନ ପରବର୍ତ୍ତୀ ଯୁଗର ବଳରାମ ଦାସ ଓ ବାରାନିଧି ଦାସଙ୍କୁ ମଧ୍ୟ ଆକୃଷ୍ଟ କରିଥିଲା । କେବଳ ଓଡ଼ିଆ ସାହିତ୍ୟ ନୁହେଁ, କଥାକୁ କାବ୍ୟର ମୂଳଧର୍ମ ରୂପେ ଗ୍ରହଣ କରିଥିବା ବଂଗ-ସାହିତ୍ୟର ଚଣ୍ଡୀଦାସ ଓ **'ଧର୍ମମଙ୍ଗଳ'** ପ୍ରଣେତା ମାଣିକ ଦତ୍ତ ପ୍ରଭୃତି କବି ମଧ୍ୟ ଏହି ବୃତ୍ତିକୁ ଗ୍ରହଣ କରିଥିଲେ । ବଂଗଳାରେ 'ଦାଣ୍ଡୀ' ସୁସଂବଦ୍ଧ ଆଖ୍ୟାୟିକା ଅର୍ଥରେ ବ୍ୟବହୃତ, 'ମାଣିକ ଦତ୍ତେର ଦଣ୍ଡୀ' ଓ 'ଲାଉସେନି ଦାଣ୍ଡା'ରେ ବ୍ୟବହୃତ 'ଦାଣ୍ଡୋ' ଶବ୍ଦ 'ଆଖ୍ୟାୟିକା କବି' ଅର୍ଥରେ ପ୍ରଚଳିତ । ଚଣ୍ଡୀଦାସ **'ଶ୍ରୀକୃଷ୍ଣ କୀର୍ତ୍ତନ'** ଗ୍ରନ୍ଥରେ 'ଦଣ୍ଡକ, ଦଣ୍ଡକ ଲଗନୀ, ବିଚିତ୍ର ଲଗନୀ ଦଣ୍ଡକ, ପ୍ରକୀର୍ଣକ ଚିତ୍ରକ ଲଗନୀ ଦଣ୍ଡକ' ପ୍ରଭୃତି ଛନ୍ଦ ଗୀତ, ଆଖ୍ୟାୟିକା, ନୃତ୍ୟ ଓ ଅଭିନୟ ପାଇଁ ବ୍ୟବହାର କରିଛନ୍ତି । ସାରଳା ଦାସ ସେ ସମୟରେ ପ୍ରଚଳିତ ଓ ଅଖ୍ୟାୟିକା ପାଇଁ

ପ୍ରଯୁକ୍ତ ଛନ୍ଦକୁ ହିଁ ସେଥିପାଇଁ ଗ୍ରହଣ କରି ଛନ୍ଦପ୍ରୟୋଗ ସମ୍ବନ୍ଧରେ ନିଜ ନିପୁଣତାର ପରିଚୟ ଦେଇଛନ୍ତି । ଭାଷାକୁ ଅନାବଶ୍ୟକ ଶୃଙ୍ଖଳରେ ନ ବାନ୍ଧି ବର୍ଣ୍ଣନା ବିବୃତ୍ତି ଓ ଆଖ୍ୟାୟିକାକୁ ଅପେକ୍ଷାକୃତ ମୁକ୍ତକରି ପ୍ରକାଶ କରିବାରେ ଏହା ଥିଲା କବିଙ୍କର ସହାୟକ ।

**(୯) ଭାଷା:** ଭାବର ମାଧ୍ୟମ ହେଉଛି ଭାଷା । ଏହା ଯେ କେବଳ ବର୍ଣ୍ଣନାକୁ ପ୍ରବାହଶୀଳ କରେ ତାହା ନୁହେଁ, ଏଥିରେ କବିର ବ୍ୟକ୍ତିତ୍ୱ ପ୍ରକାଶ ପାଇଥାଏ । କବି ଯେଉଁ ଶବ୍ଦାବଳୀ ପ୍ରକାଶ କରେ ସେଥିରୁ ତା'ର ବ୍ୟକ୍ତିତ୍ୱର ଝଲକ ପ୍ରକାଶିତ ହୁଏ । ସଂସ୍କୃତ ପୁରାଣ ସବୁ ସାଧାରଣ ଲୋକଙ୍କ ପାଇଁ ରଚିତ ହେଉଥିବାରୁ ପୁରାଣକାରମାନେ ସହଜ ସଂସ୍କୃତକୁ ଏହାର ମାଧ୍ୟମ ରୂପେ ବ୍ୟବହାର କରୁଥିଲେ । ଫଳରେ ସଂସ୍କୃତ କାବ୍ୟାବଳିର ସୌଷ୍ଠବ ଓ ଲାଳିତ୍ୟ ଏଥିରେ ପରିଲକ୍ଷିତ ହେଉ ନ ଥିଲା । ସାରଳା ଦାସ ଓଡ଼ିଆ ଭାଷାକୁ ନିଜ ପୁରାଣର ମାଧ୍ୟମ ରୂପେ ଗ୍ରହଣକଲା ବେଳକୁ ଓଡ଼ିଆ ଭଷା ସମୃଦ୍ଧ ହୋଇ ସାରି ଥିବାରୁ ସେ ସଂସ୍କୃତ ପରିହାର କରି ଓଡ଼ିଆ ଭାଷା ବ୍ୟବହାର କଲେ । ଫଳରେ ତାଙ୍କ ଗ୍ରନ୍ଥରେ ସୌଷ୍ଠବ ଓ ସୁନ୍ଦରତା ଏହି ଭଷାର ସମୃଦ୍ଧି ଉପରେ ହିଁ ନିର୍ଭର କରେ । **ମହାଭାରତର** ଭଷାକୁ ବିଶ୍ଳେଷଣ କଲେ ଏଥିରେ ତତ୍ସମ, ତଦ୍‌ଭବ ଶବ୍ଦାବଳୀର ପ୍ରୟୋଗ ଦେଖିବାକୁ ମିଳେ ।

**ତତ୍ସମ :** ଓଡ଼ିଆ ଭାଷାର ସମୃଦ୍ଧି ସଂସ୍କୃତ ଉପରେ ହିଁ ଆଧାରିତ । ସସ୍କୃତ ମହାଭାରତର ପ୍ରତ୍ୟେକ ନାମ ପ୍ରାୟ ଏହାର ମୂଳ ରୂପରେ ହିଁ ଗୃହୀତ । ଉଦାହରଣ ସ୍ୱରୂପ ଯୁଧିଷ୍ଠିର, ଭୀମ ଅର୍ଜ୍ଜୁନ, ନକୁଳ ସହଦେବ ପ୍ରଭୃତି ନାମକୁ ଗ୍ରହଣ କରାଯାଇପାରେ । ସେହିପରି ଅନେକ ସ୍ଥାନର ନାମ ମଧ୍ୟ ସଂସ୍କୃତରୁ ଗ୍ରହଣ କରାଯାଇଛି । ଏହା ବ୍ୟତିତ ସ୍ତୋତ୍ରଯୋଜନା କଲାବେଳେ କବି ସଂସ୍କୃତ ପ୍ରଭାବରୁ ମୁକ୍ତ ହୋଇ ପାରି ନାହାନ୍ତି । ସ୍ତୋତ୍ର ସବୁର ଅବିଚ୍ଛିନ୍ନ ପ୍ରବାହ ଯୋଗୁ ସାରଳା ଦାସ ପ୍ରଭୃତି କବି ଶବ୍ଦ ରୂପରେ ପରିବର୍ତ୍ତନ ଆଣିପାରି ନାହାନ୍ତି । ପ୍ରତ୍ୟେକ ବନ୍ଦନାରେ ପ୍ରାୟ ଏକ ପ୍ରକାର ଶୈଳୀ ବ୍ୟବହୃତ ହୋଇଥିଲେ ହେଁ ଗଣେଶ ବନ୍ଦନାକୁ ଏହାର ଉଦାହରଣ ରୂପେ ଦେଖାଯାଇ ପାରେ ।

ସକଳ ବିଘ୍ନ ବିନାଶନ ଜୟ ତୁ ଗଜାନନ
ମଙ୍ଗଳ ଯୋଗେଶ୍ୱର ପରମାନନ୍ଦ ପାର୍ବତୀ-ନନ୍ଦନ ।
ମଙ୍ଗଳ ଶଙ୍ଖଚକ୍ର ସରୋଜ ଦଧି ମୁଖ
ମଙ୍ଗଳ ବରଦାୟକ ନାଥ ସର୍ବଜ୍ଞ ପ୍ରତକ୍ଷ ।

ଏହି ଉଦ୍ଧାରଣର ପ୍ରାୟ ପ୍ରତ୍ୟେକ ଶବ୍ଦ ସଂସ୍କୃତରୁ ଗୃହୀତ । ଏଥିରେ ସଂସ୍କୃ ଭାଷା-ବ୍ୟାକରଣର ( ) ପାଳିତ ହୋଇ ନ ଥିଲେ ହେଁ ଏଥିରେ ସଂସ୍କୃତମୟତା ହିଁ ସ୍ପଷ୍ଟ ।

ସ୍ତୋତ୍ର ବା ବନ୍ଦନା ପରି ଅପ୍ରସ୍ତୁତ ଯୋଜନା କଲାବେଳେ ତତ୍ସମ ଶବ୍ଦାବଳୀର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ । ନାୟକ ବା ନାୟିକାର ରୂପ ବର୍ଣ୍ଣନା କଲାବେଳେ ସାରଳା ଦାସ

ପରମ୍ପରାଗତ ଉପମାରେ ପ୍ରୟୋଗ କରିଛନ୍ତି । ସେତେବେଳେ ତାଙ୍କର ଶବ୍ଦ ଯୋଜନା ସଂସ୍କୃତମୟ ହୋଇପାରିଛି । ଯୁଧିଷ୍ଠିରଙ୍କ ରୂପ ଚିତ୍ରଣରେ ପ୍ରଯୁକ୍ତ, ସୁକୁମାର ଶରୀର, ତିଳ କୁସୁମ ନାସିକା, ରକ୍ତ କୁମୁଦ ଦୃଷ୍ଟି , ଲଳିତ ଶ୍ରବଣ, ବିମ୍ବ ଓଷ୍ଠ, କନକ ମୃଣାଳ, ସମ୍ପୂର୍ଣ୍ଣ ଚନ୍ଦ୍ର ବଦନ, କମଳ ମୁଖ, କନକ କଣ୍ଠ-ବୃକ୍ଷ, ଗଜରିପୁ, ପ୍ରଲମ୍ବ ବାହୁ, ଜାନୁ କମଳ ସୁସଙ୍ଘ, ଆରକ୍ତ କୁସୁମ ପ୍ରଭୃତି ଉପମାରେ ପ୍ରଯୁକ୍ତ ଶବ୍ଦାବଳୀ ଏହା ଦ୍ୟୋତକ ।

**ତଦ୍‌ଭବ :** ବୌଦ୍ଧ ଧର୍ମର ପ୍ରଚାର ଫଳରେ ଦେଶରେ ଲୋକ ଭାଷାର ମହତ୍ତ୍ୱ ବୃଦ୍ଧି ପାଇଥିଲା । ଧର୍ମ ପ୍ରଚାରକମାନେ ସଂସ୍କୃତ ଭାଷାକୁ ତ୍ୟାଗ କରି ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାକୁ ଗୁରୁତ୍ୱ ଦେଲେ । ବୌଦ୍ଧମାନେ ପାଲି, ଜୈନମାନେ ପ୍ରାକୃତ ଓ ସିଦ୍ଧ, ସନ୍ଥ ଓ ନାଥ ସଂପ୍ରଦାୟର ଲୋକେ ଅପଭ୍ରଂଶ ଭାଷାକୁ ଧର୍ମ ପ୍ରଚାରର ମାଧ୍ୟମ ରୂପେ ଗ୍ରହଣ କଲେ । ଆଧୁନିକ ଭାରତୀୟ ଭାଷାର ବିକାଶ ହେଲାବେଳକୁ ଦେଶରେ ଭାଷା ବ୍ୟବହାରର ଅନ୍ୟ ଗୋଟିଏ ଧାରା ଦେଖିବାକୁ ମିଳେ । କବି, ଲେଖକ ଓ ଧର୍ମ ପ୍ରଚାରକମାନେ ସଂସ୍କୃତ ଭାଷାକୁ ପ୍ରାୟ ପରିତ୍ୟାଗ କରିଥିଲେ ହେଁ ତତ୍ସମ ଶବ୍ଦାବଳୀର ମୋହ ଛାଡ଼ି ପାରିଲେ ନାହିଁ । ଏପରିକି କେତେକ ବିକୃତ ସଂସ୍କୃତରେ ଗ୍ରନ୍ଥ ରଚନା କଲେ । ଫଳରେ ପାଲି, ପ୍ରାକୃତ ଓ ଅପଭ୍ରଂଶ ପରି ଏହି ଭାଷାରେ ତଦ୍‌ଭବ ଶବ୍ଦାବଳୀ ବ୍ୟବହାର ହୋଇପାରିଥିଲା ।

ସଂସ୍କୃତ ସମାସ ବହୁଳ ଭାଷା ହୋଇଥିବା ବେଳେ ଅନ୍ୟାନ୍ୟ ଭାରତୀୟ ଭାଷା ପରି ଓଡିଆ ବ୍ୟାସ-ପ୍ରଧାନ ଭାଷା ଥିଲା । ସେଥିପାଇଁ ସଂସ୍କୃତ ପ୍ରୟୋଗ ପରମ୍ପରା ଓଡିଆ ଭାଷାର ପକୃତି ଅନୁକୂଳ ହେଲା ନାହିଁ । ସଂସ୍କୃତର ଯେଉଁ ସବୁ ଶବ୍ଦ ଓଡିଆରେ ବ୍ୟବହୃତ ହେଲା ସେ ସବୁରେ ସଂସ୍କୃତ ବ୍ୟାକରଣର ନୀତି, ନିୟମ ଓ ଶୃଙ୍ଖଳାରେ ଏକ ପ୍ରକାର ଶିଥିଳତା ପରିଲକ୍ଷିତ ହେଲା ।

ସ୍ତୋତ୍ର ବା ବନ୍ଦନା ଓ ରୂପ ବର୍ଣ୍ଣନରେ ତତ୍ସମ ଶବ୍ଦରାଜି ବହୁଳ ଭାବେ ବ୍ୟବହୃତ ହେଉଥିଲେ ହେଁ, ଅନ୍ୟାନ୍ୟ ବର୍ଣ୍ଣନାରେ ଉଭୟ ତତ୍ସମ ଓ ତଦ୍‌ଭବ ଶବ୍ଦାବଳୀ ପ୍ରଯୁକ୍ତ ହେଲା । ସେଥିପାଇଁ କବିମାନେ ସଂସ୍କୃତର ଅପେକ୍ଷାକୃତ ସହଜ ଓ ଶ୍ରୁତିସୁଖକର ଶବ୍ଦାବଳୀ ସହିତ ସାଧାରଣରେ ପ୍ରଚଳିତ ତଦ୍‌ଭବ ଶବ୍ଦ ସମୂହକୁ ବ୍ୟବହାର କଲେ । ଆବଶ୍ୟକ ସ୍ଥଳେ ତତ୍ସମ ଶବ୍ଦ ରାଜିର ତଦ୍‌ଭବ ରୂପ ମଧ୍ୟ ପ୍ରଚଳିତ ହେଲା । ଉଦାହରଣ ସ୍ୱରୂପ ନିମ୍ନାଙ୍କିତ ଶବ୍ଦକୁ ନିରୀକ୍ଷଣ କରାଯାଇ ପାରେ । ଦ୍ରଶନ (ଦର୍ଶନ), ଶାହାସ୍ର (ଶାସ୍ତ୍ର), ପାରୁଶେ (ପାର୍ଶ୍ୱେ), ସ୍ରାହାନ (ସ୍ନାନ), ମାଧେବ (ମାଧବ), ଦରଶନ (ଦର୍ଶନ), ପରସନ(ପ୍ରସନ୍ନ), ଚଇତନ (ଚୈତନ୍ୟ), ଅର୍ହନିଶ (ଅହର୍ନିଶି), ସାହେର (ସାଗର), ମହାତମା (ମହାତ୍ମା), ପୁରୁଷଉତ୍ତମା (ପୁରୁଷୋତ୍ତମ), ବ୍ରତମାନ (ବର୍ତ୍ତମାନ), ନଗ୍ରି (ନଗ୍ର), ଗୁପତ (ଗୁପ୍ତ), ମଉଦଧି (ମହୋଦଧି), ସଉଭଦ୍ରା (ସୁଭଦ୍ରା), ବରଷ (ବର୍ଷ), ମହାଭାରଥ (ମହାଭାରତ), ପ୍ରଣାମ (ପ୍ରଣାମ), ସପତ (ସପ୍ତ), ଗାୟତିରୀ (ଗାୟତ୍ରୀ), ଶକତି (ଶକ୍ତି), ସମୁଦର

(ସମୁଦ୍ର) ଭାରିଯା (ଭାର୍ଯ୍ୟା), ସୟଂବର (ସ୍ୱୟଂବର), କୋବେର (କୁବେର), ଓଡ଼ (ଉଡ୍ର), ଜାଳା (ଜ୍ୱାଳା), ହିମବନ୍ତ, ହେମବନ୍ତ (ହେମବନ୍ତଃ), କୋଳ (କ୍ରୋଡ଼), ଭଗତି (ଭକ୍ତି), ଅତିଅନ୍ତ (ଅତ୍ୟନ୍ତ), ଅମନାତ୍ୟ (ଅମାତ୍ୟ), କଉପୁନୀ (କୌପୁନୀ), କଷା (କଷାୟ), ମାଥ (ମସ୍ତକ), ମଞ୍ଚ (ମର୍ତ୍ତ୍ୟ), ଦୀପ (ଦ୍ୱୀପ), ସୁଦ୍ରସେଣ (ସୁଦର୍ଶନ), ଦୁବଳ (ଦୁର୍ବଳ), କୁତୁହୋଳୀ (କୁତୁହଳୀ), ବଇଲ (ବଳୀବର୍ଦ୍ଦ), ଅୟେଂଳା (ଅମଳକ), ପ୍ରୋହିତ (ପୁରୋହିତ), ପିଅର (ପିତରଃ) ।

ସାରଳା ମହାଭାରତର ଅଧ୍ୟୟନ ଓ ଅନୁଶୀଳନ କଲାବେଳେ କବିଙ୍କ ପ୍ରଯୁକ୍ତ କେତେକ ପ୍ରାଚୀନ ପ୍ରୟୋଗ ସ୍ୱତଃ ପାଠକମାନଙ୍କୁ ଆକୃଷ୍ଟ କରିଥାଏ । ଏହିସବୁ ପ୍ରୟୋଗ ଦ୍ୱାରା କବିଙ୍କ ପ୍ରାଚୀନତା ପ୍ରମାଣିତ ହେବା ସଙ୍ଗେ ସଙ୍ଗେ ରଚନା ଶୈଳୀର ଏକ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଏହିପରି କେତେକ ପ୍ରୟୋଗକୁ ବ୍ୟାକରଣର ନିୟମାନୁଯାୟୀ ନମ୍ନୋକ୍ତ ଭାବେ ବିଭକ୍ତ କରାଯାଇ ପାରେ ।

(୧) ଯୁଗ୍ମ ପଦରେ ବ୍ୟକ୍ତ :-

ଏ ଦୁଷ୍ୟନ୍ତର ମହିମା ଯେନ ଯାଇଂ କହତା । ପୃ-୧୧

(୨) ଦ୍ୱିତୀୟାର ଅନ୍ତ ପଦରେ 'ଏଣ' :-

ଗଙ୍ଗାଏଣ ବିନୋପତି ଶାୟେଂତନୁ ଦେବେ (-ପୃ-୩୩)

(୩) ତୃତୀୟାର ଅନ୍ତ ପଦରେ 'ଏଣ'

କରେଣ ଘେନିଲା ଗଙ୍ଗା କର୍ଣ୍ଣକଟାରି ।

କାମେଣ ସଂଘରଣ ହୋଇଲେକ ଯତି । (ପୃ-୩୭)

କୋପେଣ ଖଡ଼ଗେକ ଯେ ଧରିଣ ଗୋସାମଣି । (ପୃ-୪୧)

ଯତନେଣ ବରିଣ ମୁଁ ଆଣିଲି ସ୍ୱୟଂବର ନିମନ୍ତେ (ପୃ-୫୪)

(୪) ସପ୍ତମୀର ଅନ୍ତ ପଦରେ 'ଣ' କାର ପ୍ରୟୋଗ :-

ଅନେକ ଭାବେଣ ଯେ ବୋଲଇ ମହାସତୀ (ପୃ-୨୮)

କହଇ ଅନେକ ମତେଣ ଚାଟୁ ଯେ ପଟଳ (ପୃ-୨୯)

ଦିବା ରାତ୍ରେଣ ଯେ ରମଣେ ଅଶାନ୍ତି (ପୃ-୨୯)

ରମଣୀ ମନ୍ଦିରେଣ ଲେଖନି ପିତୁଳି (ପୃ-୨୯)

(୫) କ୍ରିୟାବାଚକ ବିଶେଷଣ :-

କ୍ରୋଧ ଶାନ୍ତି କରିଣ କହନ୍ତି ଦାସ ରାଜାର କୁମାରୀ ପୃ-୮୯

ଆମ୍ବର ଥାଉଂ ଥାଉଂ ମାଳା ଦେଇଣ ବରି (ପୃ-୭୨)

ଯେମନ୍ତେଣ ଶାୟେଂତନୁ ଚିରକାଳ ରହୁ (ପୃ-୬୬)

(୬) ଅତୀତକାଳ ତୃତୀୟ ପୁରୁଷ କ୍ରିୟା :-

ଅନେକ ଦେଶକୁ ରାଜା କଲାକ ନିମନ୍ତ୍ରଣ

ଉପେଖିଲେ କାମ ମୋହ ସଂଘରଣ କଲୋ ଦାରା । (ପୃ-୬୬)

(୭) ସର୍ବନାମରୁ ଗଠିତ ବଶେଷଣ :

କେବଣ

ଯେବଣ

(୮) ସ୍ତ୍ରୀ ବାଚକ ଶବ୍ଦ ଗଠନରେ 'ଣୀ' 'ଆଣୀ' 'ଏଣୀ'-

ପିଚାସୁଣୀ, ଓଡ଼ଣୀ, ଠାକୁରାଣୀ, ପର ଦାରାୟେଣୀ,

(୯) ବହୁବଚନରେ 'ଣ' ବା 'ଗଣ' - ବୋଲନ୍ତି ଚାରଗଣେ ।

ସାରଳା ଦାସଙ୍କ ପ୍ରତ୍ୟେକ 'ଣ' ବା 'ଏଣ' ପ୍ରୟୋଗକୁ ବ୍ୟାକରଣ ଅନୁଯାୟୀ ବିଭାଗ କରିଦେଲେ ଏହି ପ୍ରୟୋଗର ଯଥାର୍ଥତା ପ୍ରତିପାଦିତ ହୁଏ ସତ ; କିନ୍ତୁ ଏହି ସବୁ ପ୍ରୟୋଗ ଦ୍ୱାରା ଭାଷାରେ ଯେଉଁ ଅନୁପମ ନାଦ-ସୌନ୍ଦର୍ଯ୍ୟ ସୃଷ୍ଟି ହୁଏ ତାହା ଜାଣି ହୁଏନାହିଁ । ବ୍ୟାକରଣର ନିୟମ ବା ଶୃଙ୍ଖଳା ଠାରୁ ଏହା ସ୍ୱତନ୍ତ୍ର । କବିଙ୍କର ଅଜ୍ଞାତସାରରେ ଏହା ବର୍ଣ୍ଣନା ମଧ୍ୟରେ ବାରମ୍ବାର ପ୍ରବେଶ କରି କାବ୍ୟକୁ 'ଣ' ମୟ କରିଦିଏ । ନିମ୍ନରେ ପ୍ରଦତ୍ତ କେତେକ ଉଦାହରଣରୁ ଏହା ସ୍ପଷ୍ଟ ।

ଥରେ 'ଣ' -

କରେଣ ଘେନିଲା ଗଙ୍ଗା କର୍ଣ୍ଣ କଟାରି ।

ଦୁଇଥର 'ଣ'-

ପେଷିଲେଣ ପୋଷୁ ନାଶିଲେଣ ନାଶୁ ତୋତେ । (୭୫)

କାମେଣ ସଂଘରଣ ହୋ ଇଲେକ ଯତି । (୩୭)

ତିନିଥର 'ଣ'-

କୋପେଣ ଖଡ଼ଗେକ ଯେ ଧରିଣ ଗୋସାମଣି । (୪୧)

ଯତନେଣ ବରିଣ ମୁଁ ଆଣିଲି ସ୍ୱୟଂବର ନିମନ୍ତେ । (୬୪)

ତାରଣ କାରଣ ଉଦ୍ଧାରଣ ଦଇନତ । (୧୦୭)

କବି ତାଙ୍କ ଇଷ୍ଟଦେବୀ ଦୁର୍ଗାଙ୍କ ବନ୍ଦନା କଲାବେଳେ (ପୃ ୬୧) 'ଡାକେଣୀ', କ୍ଷେପଣୀ', 'ରଣରଙ୍ଗେଣ ଭୋଳା', 'ଯୋଗେଣ ଯୋଗେଶ୍ୱରୀ', 'ଗୋସାବଣୀ', 'ଆପଦଖଣ୍ଡଣୀ', 'ସୁରଲୋକ ରକ୍ଷଣୀ', 'କାଳିକା କାମସେଣୀ, 'ମୋହନା ଦୁଲଣା', 'ବାହୁଟି କଙ୍କଣା ଓ ଘଷଣୀ' ଶବ୍ଦ ପ୍ରୟୋଗ କରି 'ଣ' ପ୍ରତି ନିଜର ଅନୁରାଗ ସ୍ପଷ୍ଟ କରିଛନ୍ତି ।

'ଣ' ପରି 'କ' ଅନ୍ତଧ୍ୱନି ମଧ୍ୟ ସାରଳା ମହାଭାରତର ଏକ ବୈଶିଷ୍ଟ୍ୟ । କବି ଏକ ବଚନ ପାଇଁ 'କି', 'କୁ' ଓ ବହୁ ବଚନ ଓ ସମ୍ମାନସୂଚକ ଏକବଚନ ପାଇଁ 'ଙ୍କି' ଓ 'ଙ୍କୁ'; କର୍ମକାରକ ଦ୍ୱିତୀୟା ବିଭକ୍ତି ପାଇଁ 'କଇ', 'ଙ୍କଇଂ', 'କୁଇ', 'କୁଇଂ', 'କୁ', 'କି'; ଚତୁର୍ଥୀ ପାଇଁ 'କଇ', 'କଇଂ', 'କୁଇଂ', 'କୁ', 'କି' ; ସର୍ବନାମ ବିଶେଷଣ ପାଇଁ 'ଏସନକ', 'ଯେସନକ', 'କେସନକ', 'ଯେହେନେକ, 'ଯେହେର୍ଣ୍ଣେକ', 'ଯେତେକ', 'ଯେତେକ', 'ତେତେକ'; ପୁଣି ସର୍ବନାମଙ୍କ କ୍ରିୟା ବିଶେଷଣ ପାଇଁ 'ଏସନେକେ', 'ଯେସନେକେ'; କ୍ରିୟା-ବାଚକ ବିଶେଷଣ ରୂପେ 'ଫିଟିବାକ', 'କରିବାକ', 'ଦେବାକ', 'କଲାକ', 'କଲେକ', 'ହେଲେକ','ହୋଇଲାକ', 'ହୋଇଲେକ' ; ଅବ୍ୟୟ ପାଇଁ 'କି'; ଏକବଚନର ପ୍ରତ୍ୟୟ ଭାବେ 'କ', 'କେ', 'ଏକ' ର ପ୍ରୟୋଗ କରି 'କ' ଧ୍ୱନି ପ୍ରତି ନିଜର ଆଗ୍ରହ ସ୍ପଷ୍ଟ କରିଛନ୍ତି । ଏହି ଆଗ୍ରହ 'କ' ଧ୍ୱନିଯୁକ୍ତ ବିଭିନ୍ନ ଶବ୍ଦର ସମାହାରରେ ମଧ୍ୟ ପ୍ରକାଶ ପାଇଛି ।

ଯେକା ଗ୍ରାସକେ ଢୋକଇ ତ୍ରିପୁଟି କରି ପିଣ୍ଡ । (୨୪୧)

ରାନ୍ଧଣଶାଳେ ପଶି ପାକନ୍ତ କରଇ ଅଇଂଠି । (୨୪୨)

ଧାଡିକାରେ କବାଟ ଫେଡ଼ିଣ ପଶିଲେ ଗୃହଗତେ । (୨୦୨)

ଅନେକ ପୁଣ୍ୟ କରି ଯେବେ ଅପୁତ୍ରିକ ହୋଇ ମରଇ । (୨୪୫)

ବରଷକ ଦିନୁ ଯେହାର ଯେହେନେକ ପ୍ରକୃତି । (୨୪୪)

ଆରକ୍ତ କୁସୁମେ ଜାଣି ବେନି କରସ୍ଥଳୀ

ନିକଣ୍ଟେକ ଫୁଟେକ ଚମ୍ପେକ ଜାଣି ଶୋଭିତ ଅଙ୍ଗୁଳି । (୨୧୦)

'ଣ' ଓ 'କ' ପରି 'ନ୍ତ', 'ନ୍ତି' 'ନ୍ତା' ସାରଳା ଦାସଙ୍କ ଶୈଳୀକୁ ପ୍ରଭାବିତ କରିଛି ।

ରଖନ୍ତା, ଦ୍ୟନ୍ତ ।(୧)
ଦିଗପାଳମାନନ୍ତ ସବୁନ୍ତି (୧୨)
ବ୍ରହ୍ମଋଷିମାନନ୍ତ (୧୩)
ଦାନବଗଣନ୍ତ (୧୩)
କାଳଗଣନ୍ତ (୧୨)
ଦେବତାନ୍ତ (୧୩)

ସେହିପରି 'ସି' ଓ 'ୟ' ପ୍ରଭୃତିର ପ୍ରୟୋଗ ମଧ୍ୟ ପ୍ରାଚୀନତାର ନିଦର୍ଶନ ।

ସାରଳା ଦାସଙ୍କ ଭାଷା ସୌନ୍ଦର୍ଯ୍ୟ ବିଭିନ୍ନ ଭାବେ ପ୍ରକାଶ ପାଇଛି । ଯେଉଁ ଶବ୍ଦ ଯେଉଁ ସ୍ଥାନ ପାଇଁ ଉପଯୁକ୍ତ କବି ତାହା ବାଛି ବ୍ୟବହାର କରିଛନ୍ତି । ଶବ୍ଦ ସବୁରେ ଅନୁପ୍ରାସ

ଯୋଜନା କରାଯାଇ ଶେଷ ପଦରେ ପୁଣି ପାଦ ମଝିରେ ଯତିପାତ ରଖି ସେ ଏହାର ମାଧୁର୍ଯ୍ୟକୁ ଆହୁରି ବୃଦ୍ଧି କରିଛନ୍ତି । ଉଦାହରଣ ପାଇଁ ନିମ୍ନରେ ଗୋଟିଏ ମାତ୍ର ପଦ ପ୍ରଦତ୍ତ ହେଲା ।

ମନରେଣ ପୁଣି ବିଚାରନ୍ତି ତପୋଧନି
ଶାପ ବଞ୍ଚାଇବାକୁ ବୁଦ୍ଧି କରନ୍ତି ମହାମୁନି । (ପୃ-୫୧)

ଏହି ଉଦାହରଣରେ 'ତପୋଧନି' ଓ ମହାମୁନି' ପରି ପଦ ମଧରେ 'ବିଚାରନ୍ତି' 'କରନ୍ତି'ର ଯତିପାତ ଲକ୍ଷଣୀୟ । ଏହି ପଦର ନିକଟବର୍ତ୍ତୀ ଅନେକ ପଦରେ ଏହି ପ୍ରକାର ପ୍ରୟୋଗ ଦେଖିବାକୁ ମିଳିଥାଏ ।

ବିଚାରନ୍ତି ମହାତ୍ମା ସୋମବଂଶ ଅଧିପତି
ଭୀଷ୍ମଙ୍କୁ ଚାହିଁଣ ମହାରଷି ପଚାରନ୍ତି । (ପୃ-୫୨)

ସାରଳାଙ୍କ ଭଷା ଶୈଳୀର ସବୁଠାରୁ ବଡ଼କଥା ହେଉଛି ତାଙ୍କ କହିବା ଭଙ୍ଗୀର ପ୍ରବାହ । ପ୍ରଶ୍ନ ପଚାରି, ଉତ୍ତର ଦେଇ, କଥାର ସମାଧାନ କରି, କଥାକୁ ଗୋପ୍ୟ କରିବାକୁ ପରାମର୍ଶ ଦେଇ, ଦୁଃଖ ପ୍ରକାଶ କରି, ସୁଖରେ ବିହ୍ୱଳ ହୋଇ, ନିଜ ନିଜ ମଧ୍ୟରେ ବିଚାର କରି, ଉପଦେଶ ଦେବା ଛଳରେ ନୂଆ ନୂଆ କଥାର ଅବତାରଣା କରି ସେ ତାଙ୍କର ଗ୍ରନ୍ଥକୁ ଏପରି ଗତିଶୀଳ କରିପାରିଛନ୍ତି ଯେ ଶ୍ରୋତା ସବୁବେଳେ ଉତ୍କଣ୍ଠିତ ଓ ଉଦ୍‌ଗ୍ରୀବ ହୋଇ ସାରଳା ଦାସଙ୍କୁ ଚାହିଁ ରହିଛି ଓ ଆହୁରି କହିବା ପାଇଁ ଦାବୀ କରୁଛି । ସେ କବିଙ୍କଠାରୁ ଅଲଗା ନୁହେଁ, କେତେବେଳେ ଯେ ସେ ଆଉ କବି ଏକାର ହୋଇଗଲେଣି ସେ ଜାଣି ପାରିନାହିଁ । କଥାର ଲହରରେ ସେ ଭାସି ଯାଇଛି । ଫେରି ପାରୁନାହିଁ । ଫେରିବାକୁ ଇଚ୍ଛା ବି ନାହିଁ । ଆକଣ୍ଠ କଥା ପାନ କରି ସେ ତୃପ୍ତ ହେବାକୁ ଚାହେଁ ।

ବିଭିନ୍ନ ପ୍ରକାର ବ୍ୟାକରଣର ନିୟମ, ଶୃଙ୍ଖଳା, ଶାସ୍ତ୍ରଜ୍ଞାନ, ପାଣ୍ଡିତ୍ୟ, ଅନୁପ୍ରାସ, ଉପମାନ, ଛନ୍ଦ ଓ ଶବ୍ଦ ପ୍ରୟୋଗ ମଧ୍ୟରେ ଏହା ହିଁ ଥିଲା ସାରଳା ଦାସଙ୍କ ପ୍ରକୃତ ଆବେଦନ ଓ ତାଙ୍କ ରଚନା ଶୈଳୀର ଅବଦାନ ।

## ଚରିତ୍ର ଚିତ୍ରଣ

ସାରଳା ଦାସ କଥା କହିବାରେ ଯେତେ ପାରଙ୍ଗମ, ଚରିତ୍ର ଚିତ୍ରଣରେ ମଧ୍ୟ ସେତିକି ଦକ୍ଷ । ସଂସ୍କୃତରେ କଥା ସବୁକୁ ଭାଙ୍ଗି ନୂଆ ଭାବେ ଗଢିବା ପରି ଚରିତ୍ର ସବୁକୁ ନୂଆ ରୂପ ନୂଆ ଗୁଣ ଓ ନୂଆ ପ୍ରକୃତି ଦେଇଛନ୍ତି । ସଂସ୍କୃତ **ମହାଭାରତ**ରୁ ମୂଳସୂତ୍ର ଗ୍ରହଣ କରି ସାରଳା ଦାସ ଯେଉଁ ଚରିତ୍ର ସବୁର ସୃଷ୍ଟି କରିଛନ୍ତି, ସେଥିରେ ବ୍ୟାସଙ୍କ ସମୟର ଆଦର୍ଶ ଚରିତ୍ରବତ୍ତା ତଥା ସାମାଜିକ ବ୍ୟବସ୍ଥା ନାହିଁ । ଯୁଗ ଯୁଗର ଧକ୍କା ଖାଇ ସେ ସବୁ ବହୁ ଭାବରେ ବଦଳି ଯାଇଛି । ସେଥିପାଇଁ ସାରଳା **ମହାଭାରତ**ର ଚରିତ୍ର ସବୁକୁ ସାରଳା ଦାସଙ୍କ ଦୃଷ୍ଟିରୁ ବିଚାର କରିବା ଉଚିତ । ସଂସ୍କୃତ ମହାଭାରତର ଛାଞ୍ଚରେ ପକାଇ ସେ ସବୁର ରୂପ ନିରେଖିଲେ,

ସେ ସବୁ ନିଶ୍ଚିତ ଭାବେ ବେଢ଼ଙ୍ଗ, ଅଖାଡୁଆ ଓ ଖାପଛଡା ହୋଇଯିବେ । ନିମ୍ନରେ କେତୋଟି ବିଶିଷ୍ଟ ଚରିତ୍ରର ବିଶ୍ଳେଷଣ କରାଯାଇ ସାରଳା ଦାସଙ୍କ ନିଜସ୍ୱ ଦୃଷ୍ଟିକୋଣର ପରୀକ୍ଷା କରାଯାଇଛି ।

**୧ । ଶାନ୍ତନୁ ବା ଶାୟେଂତନୁ :**

ସାରଳା **ମହାଭାରତ**ରେ ଶାନ୍ତନୁ ଏକ ଅପୂର୍ବ ଚରିତ୍ର । ରଜାଘରେ ଜନ୍ମ ହୋଇ ରାଜନୀତି ପାଳନ ନ କରି ହେଲେ ଋଷି । ଶିବଙ୍କ ସଦୃଶ ଆଦର୍ଶ ଋଷି ହେବାକୁ ଇଚ୍ଛାକରି ହେଲେ ଗୃହବାସୀ । ଆଦର୍ଶ ଗୃହସ୍ଥ ହେବାକୁ ଯାଇ ହେଲେ ଅସଂଯମୀ । ସତ୍ୟରକ୍ଷା କରିବାକୁ ଯାଇ ହେଲେ ଅସତ୍ୟ ପୁରୁଷ । ଧାର୍ମିକ ହେବାକୁ ଇଚ୍ଛା କରି ହେଲେ ଅଧାର୍ମିକ । ନିଷ୍ଠାପର ବ୍ରତଚାରୀରୁ ହେଲେ ଭ୍ରଷ୍ଟ ତଥା ନୀତିହୀନ ବ୍ୟକ୍ତି ।

ଶାନ୍ତନୁ ଚରିତ୍ର ସାରଳା **ମହାଭାରତ**ର ଏକ ଅପୂର୍ବ ସୃଷ୍ଟି । ଜୀବନ ସଂଗ୍ରାମରେ ବାରବାର କ୍ଷତ ବିକ୍ଷତ ହୋଇ ମଣିଷ କିପରି ନିଜ ଆଦର୍ଶ ଓ ଲକ୍ଷ୍ୟ ରକ୍ଷା କରିପାରେ ନାହିଁ, ଶାନ୍ତନୁ ତାହାରି ପ୍ରତୀକ । ମଣିଷକୁ ସଂସାରରେ ଘର କରିବାକୁ ହେଲେ ସବୁ ଜାଣି ନ ଜାଣିଲା ପରି, ସବୁ ଶୁଣି ନ ଶୁଣିଲା ପରି ଓ ସବୁ ଦେଖି ନ ଦେଖିଲା ପରି ଛଳନା କରିବାକୁ ହୁଏ । ସାରଳା ଦାସଙ୍କ ଶାନ୍ତନୁ ଜୀବନର ବହୁ ଆଦର୍ଶ ସ୍ଥିର କରି ସେଥିରେ ଅଟଳ ହୋଇ ରହିପାରି ନାହାନ୍ତି । ଗୋଟି ଗୋଟି ହୋଇ ସବୁ ଆଦର୍ଶ ଭାଙ୍ଗି ଯାଇଛି । ଗଙ୍ଗାଙ୍କର ସବୁ ଅର୍ଦ୍ଦୋଳି ସହି ମଧ ଘରେ ଶାନ୍ତି ଆଣି ପାରି ନାହାନ୍ତି । ଗୁରୁଜନମାନେ ଆଲୋଚନା କରିଛନ୍ତି, ଲୋକେ ହସିଛନ୍ତି, ସେ ନିରୁପାୟ । ଗୋଟିଏ ପରେ ଗୋଟିଏ ପୁଅ ମା ହାତରେ ବଳି ପଡିଛନ୍ତି । କହିବାର ଚାରା ନାହିଁ । ଶେଷକୁ ଯେଉଁ ପୁଅଟି ରହିଗଲା; ତାହାର ପୁଅ ହେଲା ଶାନ୍ତନୁଙ୍କ ମୃତ୍ୟୁର କାରଣ । କି ମାରାତ୍ମକ ! ସଂସାରରେ ଘର କରି ରହିବାକୁ ହେଲେ ଏହିପରି ଧକ୍କା ସବୁ ଆସେ । ତାକୁ ହିଁ ସହିବା ମାନବର ଧର୍ମ । ସାରଳା ଦାସ କହିଛନ୍ତି -

ଶାୟେଂତନୁ ବୋଇଲେ ତୁ ବଡଇ ଜଞ୍ଜାଳୀ
ଭ୍ରୁଥା ହିଂ ସହି ସେ ଭାର୍ଯ୍ୟାର ଅର୍ଦ୍ଦୋଳି ।
ଭ୍ରୁଥାର ଆର୍ଦ୍ଦୋଳି ଯେବେ ଭାରିଯା ନ ସହିବ,
ପତି ପତ୍ନୀର କେମନ୍ତେ ଗୃହବାସ ହୋଇବ । (ପୃଷ୍ଠା -୨୫)

**ରାଜାରୁ ଋଷି :** ଶାନ୍ତନୁ ହେଉଛନ୍ତି, ସୋମବଂଶର ଯେକାଙ୍ଗ ଚକ୍ରବର୍ତ୍ତୀ ରାଜା । ସପ୍ତଦ୍ୱୀପରେ ତାଙ୍କର ପ୍ରସିଦ୍ଧି । ଇନ୍ଦ୍ରଦେବତା ସହ ବନ୍ଧୁପଣ । ସାତୋଟି ନାରାଜରେ ସପ୍ତଦ୍ୱୀପ ସାଧି କରିଛନ୍ତି । ସନ୍ତାନର ଚିନ୍ତା ନାହିଁ । ପ୍ରଜା ପାଳନ ଏକମାତ୍ର ବ୍ରତ ।

ରାଜ୍ୟଭାର ନେଲେ, ରାଜପଦ ଗ୍ରହଣ କଲେ ବା କ୍ଷତ୍ରିବୃତ୍ତି ଆଚରଣ କଲେ ରାଜାମାନଙ୍କୁ କେତେକ ନିର୍ଦ୍ଦିଷ୍ଟ ରାଜନୀତି ପାଳନ କରିବାକୁ ହୋଇଥାଏ । ଦଣ୍ଡସାଜି ଦିଗ୍‌ବିଜେ କରିବା, ପରରାଷ୍ଟ୍ର ଜିଣିବା, ଦୁଷ୍ଟ ଦମନ କରି ସନ୍ଥଜନ ପାଳନ କରିବା ଓ ତପୋଧନମାନଙ୍କର

ଉପକାର କରିବା ହେଲା ପ୍ରକୃତ ରାଜଧର୍ମ । ଏହାହିଁ ହେଉଛି ରାଜାର ଆଦର୍ଶ । ଏ ସବୁକୁ ପରିତ୍ୟାଗ କଲେ ରାଜଧର୍ମରେ ବିଚ୍ୟୁତି ଘଟେ । ଅଥଚ ଶାନ୍ତନୁ ଏସବୁ ଅପେକ୍ଷା ଶିବ ସେବାକୁ ଜୀବନର ଶ୍ରେଷ୍ଠ ବ୍ରତରୂପେ ଗ୍ରହଣକରି ପାତାଳସ୍ଥିତ ହାଟକେଶ୍ୱରଙ୍କ ସେବା କଲେ । ଶିବଙ୍କ ସେବାରୁ ସେ ହେଲେ ରାଜର୍ଷି, ଦୁତୀ ଈଶ୍ୱର ବା ରୁଦ୍ର ଅବତାର ।

**ଋଷିରୁ ଗୃହବାସ :** ସାଧନାରେ ସିଦ୍ଧିଲାଭ କରି ବହୁ ଅଲୌକିକ କର୍ମ ସମ୍ପାଦନ କରିପାରୁ ଥିଲେହେଁ ତାଙ୍କ ଜୀବନର ଗତି ଏହିଠାରେ ସମାପ୍ତ ହୋଇ ନଥିଲା । ଶିବ ବର ଦେଲେ ସତ, କିନ୍ତୁ ସ୍ୱର୍ଗ ମର୍ତ୍ତ୍ୟ ବୁଲି କେଉଁଠାରେ କେଉଁ ଦେବୀ କେଉଁ ରୂପରେ ଅଛନ୍ତି, ତାହା ଦେଖିବା ପାଇଁ ଆଦେଶ ଦେଲେ । ଶାନ୍ତନୁ ଶିବଙ୍କ ପରି ବେଶଭୂଷଣ ହୋଇ ଆକାଶରେ ଗମନ କରୁଥିବାବେଳେ ନିର୍ଘାତଙ୍କ ସହ ସାକ୍ଷାତ ହୁଏ । ନିର୍ଘାତଙ୍କ କନ୍ୟା ଗଙ୍ଗା ଶିବଙ୍କୁ ବର ରୂପେ ପାଇବା ପାଇଁ ବହୁଦିନୁ ଅପେକ୍ଷା କରିଥିଲେ । ଶାନ୍ତନୁଙ୍କ ବେଶ ଦେଖି ସେ ତାଙ୍କୁ ଶିବ ବୋଲି ଭାବି ଗଙ୍ଗାଙ୍କୁ ପ୍ରଦାନ କରିବା ପାଇଁ ସତ୍ୟ କଲେ । ଗଙ୍ଗା ମଧ୍ୟ ଶାନ୍ତନୁଙ୍କୁ ଶିବ ବୋଲି ଭାବି ବିଭା ହେବାପାଇଁ ରାଜି ହେଲେ । ବିବାହ ସମୟରେ କୁଳ ଗୋତ୍ର ଉଚ୍ଚାରଣ ବେଳେ ଶାନ୍ତନୁଙ୍କ ପ୍ରକୃତ ପରିଚୟ ଜଣା ପଡିଲା । ସେତେବେଳକୁ ବିବାହର ସବୁ ବିଧିବିଧାନ ପ୍ରାୟ ସମାପ୍ତ ହୋଇ ଯାଇଥିଲା । ତେଣୁ ରାଜର୍ଷି ଶାନ୍ତନୁ ଗୃହବାସ କରିବା ପାଇଂ ବାଧ୍ୟ ହେଲେ ।

**ଗୃହବାସର ସଙ୍କଟ :** ରାଜଚକ୍ରବର୍ତ୍ତୀ ବା ରାଜର୍ଷି ହେବାରେ ଶାନ୍ତନୁଙ୍କର ଜୀବନରେ ସଂଘର୍ଷ ନଥିଲା । ଏସବୁ ଜୀବନରେ କଷ୍ଟ ଥିଲା ସତ, କିନ୍ତୁ ସେତେବେଳେ ସେ ନିଜ କଥା ନିଜେ ବୁଝୁଥିଲେ . ଜୀବନର ମାର୍ଗ ନିର୍ଦ୍ଧାରଣ କରିବାରେ ସେ ଥିଲେ ସ୍ୱତନ୍ତ୍ର । କେବଳ ଅବସ୍ଥା ଚକ୍ରରେ ବା ଦୈବ ନିର୍ଦ୍ଦେଶ କ୍ରମେ ସେ ରାଜଚକ୍ରବର୍ତ୍ତୀରୁ ରାଜର୍ଷି ଓ ରାଜର୍ଷି ପଥରୁ ଗୃହବାସୀ ହେଲେ ।

ଗୃହସ୍ଥ ଜୀବନ ଯାପନ କରିବାରେ ହିଁ ତାଙ୍କର ଜୀବନ ପରୀକ୍ଷାର ସମ୍ମୁଖୀନ ହୁଏ । ଗଙ୍ଗାଙ୍କୁ ଗାଳି ନ କହିବା ପାଇଁ ସତ୍ୟ କରି ସେ ବିବାହ କଲେ । ବିବାହିତ ଜୀବନରେ କଷ୍ଟ ଯେ ସହିବାକୁ ହେବ, ସେଥିପାଇଁ ସେ ପ୍ରସ୍ତୁତ ମଧ୍ୟ ଥିଲେ । କିନ୍ତୁ କେବଳ ମାନସିକ ପ୍ରସ୍ତୁତି ଜୀବନ ସଂଗ୍ରାମର ସମ୍ମୁଖୀନ ହେବାପାଇଁ ଯଥେଷ୍ଟ ନୁହେଁ । ପଦେ ପଦେ ବାଧା । ଗଙ୍ଗା ଶାନ୍ତନୁଙ୍କୁ ବାଧ୍ୟ ହୋଇ ବିବାହ କଲେ ସତ୍ୟ, କିନ୍ତୁ ସବୁବେଳେ ସେ ଶାନ୍ତନୁଙ୍କ ଠାରୁ ଅଲଗା ହୋଇଯିବା ପାଇଁ ଚେଷ୍ଟା କଲେ । ଫଳରେ ଶାନ୍ତନୁଙ୍କର ଗଙ୍ଗାଙ୍କୁ ଗାଳି ନ କହିବା ପାଇଁ ଶପଥ ଓ ଅନ୍ୟ ପକ୍ଷରେ ଗଙ୍ଗାଙ୍କର ଶାନ୍ତନୁଙ୍କ ଠାରୁ ମୁକ୍ତି ପାଇବାର ପ୍ରୟାସ ମଧ୍ୟରେ ସଂଘର୍ଷ ଆରମ୍ଭ ହେଲା ।

ରାଜର୍ଷି ଜୀବନ ଯାପନ କରିବା ପାଇଁ ଶାନ୍ତନୁ ବାର ବ୍ରତ ଓ ବାଆସ୍ତରୀ ଉପବାସ କରୁଥିଲେ । ଗଙ୍ଗା ଜାଣିଶୁଣି ସେହିଦିନ ମାନଙ୍କରେ ଶାନ୍ତନୁଙ୍କୁ କାମରେ ମୋହିତ କଲେ । ଗୋଟି ଗୋଟି ହୋଇ ସବୁ ବ୍ରତ ଗଲା । ଶେଷକୁ ଥିଲା କେବଳ ଶ୍ରୀ ଯେକାଦଶୀ ବ୍ରତ ।

ଶାନ୍ତନୁ ଗଙ୍ଗାଙ୍କ ଆଗରେ ଏହାର ମହିମା ବଖାଣ କଲେ । ଏପରିକି ଏ ବ୍ରତ ପାଳନ କଲେ ବଇକୁଣ୍ଠବାସୀ ହେବାର ଲୋଭ ଦେଖାଇଲେ । କିନ୍ତୁ ସବୁ ଉପଦେଶ ନିଷ୍ଫଳ ଗଲା । ଶାନ୍ତନୁଙ୍କୁ 'ଧର୍ମ ଦୂଷିତ' କରିବାପାଇଁ ଗଙ୍ଗାଙ୍କର ଇଚ୍ଛା । ସେଥିପାଇଁ ସେ ବିଭିନ୍ନ ଭାବେ ତାଙ୍କୁ ଭୋଳ କଲେ । ଶେଷରେ ଶାନ୍ତନୁ ସବୁ ଧର୍ମ କର୍ମ ଛାଡି କେବଳ ଶୃଙ୍ଗାର ଇଚ୍ଛା କଲେ -

ଯେମନ୍ତେ ଅନେକ ଯେ ବଢ଼ିଲା ପୀରତି
ଦିବା ରାତ୍ରେଣ ଯେ ରମଣେ ଅଶାନ୍ତି । (ପୃଷ୍ଠା-୨୯)

ଶାନ୍ତନୁ ଯେତେବେଳେ ଗଙ୍ଗାଙ୍କ ପ୍ରୀତିବଶ ହୋଇ, ପ୍ରୀତିକୁ ଜୀବନର ଶ୍ରେଷ୍ଠ ସମ୍ପଦ ରୂପେ ଗ୍ରହଣ କଲେ ସେତେବେଳେ ଗଙ୍ଗା ତାଙ୍କୁ ପ୍ରୀତି ଦେବା ପରିବର୍ତ୍ତେ ଦୁଃଖ ଦେବାକୁ ଆରମ୍ଭ କଲେ । ମାନିନୀ ହୋଇ କଥା କହିଲେ ନାହିଁ । ଶାନ୍ତନୁ ଥିବା ସ୍ଥାନକୁ ଗଲେ ନାହିଁ । ଋଷିଙ୍କର ଦଣ୍ଡ, କମଣ୍ଡଳୁ, ଶ୍ରୁବ, ଶ୍ରୁଚ, ପ୍ରୋକ୍ଷଣୀ ପ୍ରଭୃତିକୁ ଜଳନ୍ତା ନିଆଁରେ ଜାଳି ଭସ୍ମ କଲେ । ଶାନ୍ତନୁ ଯେତେବେଳେ ସଂଯତ ଜୀବନ ଯାପନ କରିବାକୁ ଚାହୁଁଥିଲେ ସେତେବେଳେ ଗଙ୍ଗା ତାଙ୍କୁ ରତିରସ ପାଇଁ ବାଧ କଲେ । ପୁଣି ଯେତେବେଳେ ଶାନ୍ତନୁ ରତିରସ ପାଇଁ ବ୍ୟ ହେଲେ ସେତେବେଳେ ସେ ତାଙ୍କୁ ସେହି ସୁଖରୁ ବଞ୍ଚିତ କଲେ । ସାରଳାଦାସ କହିଛନ୍ତି -

ଭୋଖର ବେଳେ ସେ ନ ଦିଅଇ ଅନ୍ନ ଯାଚି
ଅକ୍ଷୁଧା ବେଳେ ସେ ବହୁତ କରି ଯାଚି । (ପୃଷ୍ଠା - ୩୦)

ଗୃହବାସ ପାଇଁ ଶାନ୍ତନୁ ଏ ସବୁକୁ ସହ୍ୟ କଲେ ମଧ୍ୟ ଦୁଃଖ ଶେଷ ହେଲା ନାହିଁ । ଗଙ୍ଗା ଗୋଟିକ ପରେ ଗୋଟିଏ ସନ୍ତାନ ର ମାତା ହେଲେ ଏବଂ ପ୍ରତ୍ୟେକ ସନ୍ତାନକୁ ଜନ୍ମକରି ଶାନ୍ତନୁଙ୍କ ସମ୍ମୁଖରେ ବଧ କଲେ । ଶାନ୍ତନୁ ଏ ସବୁ ଦାରୁଣ ଦୃଶ୍ୟ ଆଖି ଆଗରେ ଦେଖି ମଧ ଗଙ୍ଗାଙ୍କୁ ପାପୀ ବୋଲି କହିଲେ ନାହିଁ । ନିଜ ମନକୁ ବୁଝାଇବାକୁ ଚେଷ୍ଟା କରି ବରଂ କହିଲେ-

ଦିଶମାସ ଗର୍ଭରେ ଧଇଲାକ ଯେ ମାତା
ସେ ଯେବେ ମୂର୍ଛି ପାରିଲା ଗର୍ଭର ବ୍ୟଥା ।
ଆମ୍ଭର କିସ ଦୋଷ ହୁଅଇ ବିଚାରିଲେ
ଏତେକ ବିଚାରି ସେ କିଛି ହିଁ ନ ବୋଇଲେ ।
ଆମ୍ଭର କୋପ କଲେ ବାହାର ହୋଇଯିବ
ଘର ଖଣ୍ଡେ କରିବାର ସେହି ତ ନୋହିବ । (ପୃଷ୍ଠା - ୩୬)

ଶାନ୍ତନୁ ଯେତିକି ସହିଲେ, ଗଙ୍ଗାଙ୍କ ଅର୍ଦ୍ଦୋଳି ଦିନକୁ ଦିନ ସେତିକି ବଢ଼ିବାକୁ ଆରମ୍ଭେ କଲା । ଏପରି ଦିନ ଆସିଲା, ଶାନ୍ତନୁ ରତି ପ୍ରାର୍ଥନା କଲାବେଳକୁ ରତି ବଦଳରେ ପାଇଲେ ମାଡ ଗାଳି ଆଉ ଗୋଇଠା । ଏସବୁ ମଧ ଶାନ୍ତନୁ ସହିଗଲେ । ତେବେ ବି ଦୁଃଖ ସରିଲା ନାହିଁ । ଗଙ୍ଗା ଶାନ୍ତନୁଙ୍କ ଦୁଇ ପୁତ୍ରଙ୍କୁ ଅପୁତ୍ରିକ ହେବାର ଅଭିଶାପ ଦେଲେ । ଗଙ୍ଗା

ଯେତେବେଳେ ଦେଖିଲେ, ଶାନ୍ତନୁ ଏ ସବୁକୁ ବି ସହିଯାଉଛନ୍ତି ସେତେବେଳେ ଗଙ୍ଗା ଆହୁରି ଏକ କୌଶଳ ରଚନା କଲେ ।

ଯେ ଘାନ୍ତି ଯେ ପୁତ୍ର ଗୋଟିକି ମାରିବି
ଭୁଞ୍ଜନା ବୋଇଲେ ତୋଟି ମେଲାଇବି । (ପୃଷ୍ଠା-୪୨)

ମନେ ମନେ ଏ କଥା ସ୍ଥିର କରି ଶାନ୍ତନୁଙ୍କୁ ପ୍ରଲୁବ୍ଧ କରିବା ପାଇଁ କହିଲେ -

ବୋଲନ୍ତି ମାହେଶ୍ୱରୀ ଶୁଣିମା ମୁନି ହେ,
ବଡ ବଳବନ୍ତା ପୁତ୍ର ଗୋଟିଏ ଗର୍ଭ ରହେ । (ପୃଷ୍ଠା-୪୨)

ଗଙ୍ଗାଙ୍କ କଥା ଶୁଣି ଅତି ଦୁଃଖରେ ଶାନ୍ତନୁ କହୁଛନ୍ତି -

ଋଷି ବୋଇଲେ ବଳବନ୍ତା ହୋଉ କି ସୁନ୍ଦର ହିଂ ହୋଉ
ପ୍ରାପତ ଯେବେ ନୋହିବ ସେ କି ହୋଇବ ବା ଆଉ ।
(ପୃଷ୍ଠା-୪୨)

ଶାନ୍ତନୁଙ୍କୁ ପୁତ୍ର ପ୍ରତି ଆଶକ୍ତ କରିବା ପାଇଁ ଗଙ୍ଗା ପୁଣି କହିଲେ, ପୁଅର ମୁଖ ଦେଖିଲେ ମାତା ଓ ପିତା ଉଭୟଙ୍କର ଜୀବନ ସଫଳ ହୁଏ ଧର୍ମ ପ୍ରାପ୍ତ ହୁଏ ଓ ଅପୁତ୍ରିକ ଦୋଷରୁ ମଣିଷ ମୁକ୍ତି ପାଏ । ଏଥର ଆଉ ଶାନ୍ତନୁ ସମ୍ଭାଳି ପାରିଲେ ନାହିଁ । ଜୀଉଂ ଅବା ମରୁ ଦେଖିବା ପାଇଁ ସ୍ଥିର କଲେ । ଅର୍ଘ୍ୟ ଘେନି ପୁଅ ଦେଖିବା ବେଳକୁ ଗଙ୍ଗା ପୂର୍ବପରି କଟାରି ଧରି ପୁତ୍ରକୁ ହାଣିବା ପାଇଁ ମନ କଲେ ।

ସହିବାର ସୀମା ଅଛି । ଅତି ଲୋଭ ଦେଖାଇଣ ନିରାଶ କଲେ ମଣିଷ ଧୈର୍ଯ୍ୟ ଧରିପାରେ ନାହିଁ । ଶାନ୍ତନୁଙ୍କର ସେହି ଦଶା ହେଲା । ଆଉ ସହିପାରିଲେ ନାହିଁ । ଗଙ୍ଗାକୁ ଘାଙ୍କୀ, ମନ୍ଦ, ନଷ୍ଟି ପ୍ରଭୃତି କହି ଗାଳିଦେଲେ ଏବଂ ପୁଅକୁ ତାଙ୍କଠାରୁ ଛଡାଇ ଆଣିଲେ । ଫଳରେ ବହୁ କଷ୍ଟ, ବହୁ ଅପମାନ ଓ ବହୁ ଉପହାସ ବହୁଦିନ ଧରି ସହି ଘର କରିବାରେ ଯେଉଁ ମୋହ ତାଙ୍କ ମନରେ ଜାଗ୍ରତ ହୋଇଥିଲା, ତାହା ଭାଙ୍ଗି ନଷ୍ଟ ହୋଇଗଲା ।

ଶାନ୍ତନୁଙ୍କ ଚରିତ୍ର ପରି ଗଙ୍ଗା ଚରିତ୍ର ମଧ୍ୟ ସାରଳା ଦାସଙ୍କ ଅସାଧାରଣ ପ୍ରତିଭାର ପରିଚାୟକ । ଗଙ୍ଗାଙ୍କୁ ସୁଗୃହିଣୀ ରୂପେ ବିଚାର କରି ବସିଲେ ବା ସଂସ୍କୃତ ମହାଭାରତକୁ ତୁଳନାରେ ରଖି ପରୀକ୍ଷା କଲେ ତାଙ୍କର ପ୍ରକୃତ ବୈଶିଷ୍ଟ୍ୟ ଜାଣିହୁଏ ନାହିଁ । ସେଥିପାଇଁ ଗୋପୀନାଥ ନନ୍ଦ ଗଙ୍ଗା ଚରିତ୍ରକୁ ବିଶ୍ଳେଷଣ କରି କବି କଳତ୍ର ଭାବକୁ ଅତ୍ୟନ୍ତ କଳୁଷିତ, କୁତ୍ସିତ ଭାବେ ବର୍ଣ୍ଣନା କରିଛନ୍ତି । ସେ ନୀଚ ପରିବାରରେ ଏପରି ଚରିତ୍ରର ସନ୍ଧାନ ମଧ୍ୟ କରିପାରିନାହାନ୍ତି । ପୁଣି ଗଙ୍ଗାଙ୍କ ଚରିତ୍ର ପ୍ରତି କବି ମନରେ ଏପରି ବିଭତ୍ସଭାବ ଜନ୍ମିବାର କୌଣସି ଗୂଢ କାରଣ ଥିବା ଅନୁମାନ କରିଛନ୍ତି । ଡକ୍ଟର ବଂଶୀଧର ମହାନ୍ତି ମଧ୍ୟ କହିଛନ୍ତି - "ଗଙ୍ଗାଙ୍କର ଚରିତ୍ର ଗୋଟାଏ ନିତାନ୍ତ ରୁଷ୍ଟା ଉଗ୍ରଭାବ ସମ୍ପନ୍ନା, ହିଂସୁକୀ ଗାଉଁଲି ନାରୀର

ଚରିତ୍ର ପରି ହୋଇଛି । ଶାନ୍ତନୁଙ୍କ ପ୍ରତି ଗଙ୍ଗାଙ୍କର ବ୍ୟବହାର ଅତି କଦର୍ଯ୍ୟ, ଜଘନ୍ୟ । ଯେଉଁ କାରଣରୁ ହେଉ, ତାଙ୍କର ଆଦୌ ବାତ୍ସଲ୍ୟ ସ୍ନେହ ନାହିଁ । ଅନ୍ୟ ଦିଗରେ କ୍ରୋଧାନ୍ୱିତା ଗଙ୍ଗା ଚରିତ୍ର ଜୀବନ୍ତ ହୋଇ ଉଠିଛି ଏକ କ୍ରୋଧାବିଷ୍ଟ କଳହ ପ୍ରିୟ ନାରୀର ସମସ୍ତ ବୈଶିଷ୍ଟ୍ୟ ନେଇ ।

ପଣ୍ଡିତ ନନ୍ଦ ଓ ଡକ୍ଟର ମହାନ୍ତି ଗଙ୍ଗା ଚରିତ୍ରର ବିକାଶକ୍ରମ ପ୍ରତି ଲକ୍ଷ୍ୟ ନ ରଖି କେବଳ ଗୋଟିଏ ଦିଗରୁ ଆଲୋଚନା କରିଛନ୍ତି । ତାଙ୍କ ବିବାହର ପୃଷ୍ଠଭୂମି ପ୍ରତି ଦୃଷ୍ଟି ନ ରଖି, ତାଙ୍କ ମାନସିକ ଅବ୍ୟବସ୍ଥା ପ୍ରତି ଭ୍ରୂକ୍ଷେପ ନ କରି, ତାଙ୍କ ଜୀବନର ଅସୀମ ଦୁଃଖ ପ୍ରତି ସହାନୁଭୂତି ପ୍ରକାଶ ନକରି କେବଳ ଦୋଷ ଦେଖାଇବାରେ ଲାଗିଛନ୍ତି । ସାରଳାଦାସ ଅନିଚ୍ଛାକୃତ ବିବାହର ବିଷମୟ ପରିଣତି ବିଷୟରେ ଜଣେ ମନସ୍ତାତ୍ତ୍ୱିକ ଭାବେ ଗଙ୍ଗା ଚରିତ୍ରର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି ତାହା ଅନନ୍ୟ ସାଧାରଣ । ଶାନ୍ତନୁ ଗଙ୍ଗାଙ୍କୁ ବରଣ କରିଥିଲେ ଧର୍ମପତ୍ନୀ ରୂପେ । ସେ ତାଙ୍କ ପ୍ରତି ଏତେ ଆକୃଷ୍ଟ ଥିଲେ ଯେ ତାଙ୍କର ଦୋଷ ସବୁ ତାଙ୍କ ଆଖିରେ ଦେଖାଯାଉ ନଥିଲା । ପିତା ମାତା ଯେତେବେଳେ ଗଙ୍ଗାଙ୍କର ଦୋଷ ପ୍ରତି ନିର୍ଦ୍ଦେଶ କରି ତାଙ୍କୁ ପରିତ୍ୟାଗ କରିବାକୁ ଉପଦେଶ ଦେଲେ, ସେତେବେଳେ ଶାନ୍ତନୁ ଅତି ବିନମ୍ର ଭାବେ ମାତା, ପିତାଙ୍କୁ ଯେଉଁ ଉତ୍ତର ଦେଇଥିଲେ ତାହା ପ୍ରଣିଧାନ ଯୋଗ୍ୟ -

ମାତାର ବଚନେ ଶାୟେଂତନୁ ବୋଇଲେ
ଦିବସ ନ ସରଇ ମୋହର ଗଙ୍ଗାକୁ ନ ଦେଖିଲେ ।
ତୁମ୍ଭେ ଆମ୍ଭର ଗୁରୁଜନ ଯେ ତାତ ମାତେ
ତୁମ୍ଭଙ୍କୁ ଉପେକ୍ଷା କରିବି ଗଙ୍ଗାର ନିମନ୍ତେ (ପୃ ୩୩)

ଶାନ୍ତନୁ ଯାହାଙ୍କୁ ମଳୟ ପବନ ଭାବି ନିଜର ବାତାୟନ ଖୋଲି ଦେଇଥିଲେ, ସେ ପ୍ରବେଶ କଲେ ଏକ ଅଶାନ୍ତ ଅବାଞ୍ଛିତ ଝଡ ରୂପେ । ଶାନ୍ତନୁ ରୂପବତୀ ଗଙ୍ଗାଙ୍କୁ ଧର୍ମପତ୍ନୀ ରୂପେ ଗ୍ରହଣ କଲେ ସତ, କିନ୍ତୁ ସେ ଥିଲେ ତାଙ୍କର ଗୁରୁପତ୍ନୀ । ଶାନ୍ତନୁ ଏକଥା ଜାଣିକରି ମଧ ଆଖି ବୁଜି ଦେଲେ । ଏହି ଗୁରୁପତ୍ନୀ ହରଣ ରୂପୀ ଗୁରୁ ଅପରାଧ ଫଳରେ ଗଙ୍ଗାଙ୍କ ସହ ଗୃହବାସ ତାଙ୍କ ବଂଶନାଶର କାରଣ ହେଲା । ଶାନ୍ତନୁ ହିଁ ପ୍ରଥମେ ଋଷି ସାଜି ଧର୍ମ ନାଆଁରେ ଅଧର୍ମକୁ ବରଣ କଲେ ।

ସାରଳା ଦାସଙ୍କ ବର୍ଣ୍ଣନାନୁଯାୟୀ ସେ ଶିବଙ୍କର ଭାର୍ଯ୍ୟା, ମର୍ତ୍ତ୍ୟପୁରରେ ଜନ୍ମଲାଭ କଲାପରେ ମଧ ସେ ଶିବଙ୍କ ପାଇଁ ବହୁଦିନ ଅପେକ୍ଷା କରି ରହିଥିଲେ । ସେଥିପାଇଁ ସେ ନିଜର ଅଲୌକିକ ଶକ୍ତି ବଳରେ ନିଜକୁ ଅଶେଷ ଯୁଗ ପର୍ଯ୍ୟନ୍ତ କୁମାରୀ ରଖି ପାରିଲେ । ଶିବଙ୍କ ପତ୍ନୀ ଶିବଙ୍କୁ ଅପେକ୍ଷା କରିଥିବା ବେଳେ ଦୁର୍ଯ୍ୟୋଗରୁ ଶିବ ରୂପୀ ଶାନ୍ତନୁଙ୍କ ସହ ତାଙ୍କର ବିବାହ ତାଙ୍କ ଇଚ୍ଛା ବିରୁଦ୍ଧରେ ହିଁ ସମ୍ପନ୍ନ ହୁଏ ।

ସାମାଜିକ ବ୍ୟବସ୍ଥାକୁ ମାନିନେଇ ସେ ଶାନ୍ତନୁଙ୍କୁ ନିଜର ସ୍ୱାମୀ ରୂପେ ଗ୍ରହଣ

କରିନେଲେ ହେଁ ତାଙ୍କଠାରୁ ମୁକ୍ତି ପାଇବା ପାଇଁ ସବୁବେଳେ ଚେଷ୍ଟା କରିବାକୁ ଲାଗିଲେ । ତାଙ୍କର ଏକମାତ୍ର ଲକ୍ଷ୍ୟ ହେଲା, ଶାନ୍ତନୁଙ୍କୁ ବିରକ୍ତ କରିବା । ତେଣୁ ଶାନ୍ତନୁଙ୍କ ଯେଉଁ ରୂପ ତାଙ୍କୁ ବିଭ୍ରାନ୍ତ କରିଥିଲା, ସେ ପ୍ରଥମେ ସେହି ଋଷିତ୍ୱ ଉପରେ ହିଁ ଆଘାତ କଲେ । ଜଟା, କଉପୁନୀ, ମାଳି, ପୋଥି, ବେଦ, କରାଣ୍ଡି, କୁଶବିଡା, କଷାବାସ କର୍ପଟୀ, ଦଣ୍ଡ କମଣ୍ଡଳୁ, ଶ୍ରୁବ, ଶ୍ରୁତ ପ୍ରୋକ୍ଷଣୀ ପ୍ରଭୃତିକୁ ସେ ଜଳନ୍ତା ଅନଳରେ ଢାଳି ପାଉଁଶ କରିଦେଲେ । ବେଶ ପରେ ଋଷିମାନଙ୍କ ଦ୍ୱିତୀୟ ଧର୍ମ ହେଲା ନିୟମ, ବ୍ରତ ବା ଉପବାସ । ଶାନ୍ତନୁ ମଧ ବାରବ୍ରତ, ବାଆସ୍ତରୀ ଉପବାସ କରୁଥିଲେ । ଗଙ୍ଗା ଏ ସବୁକୁ ଗୋଟି ଗୋଟି କରି ଭାଙ୍ଗି ଦେଲେ । ସେତେବେଳେ ତାଙ୍କର ଶକ୍ତି ଥିଲା ମୋହିନୀଶକ୍ତି ଓ ଶାନ୍ତନୁଙ୍କର ଲୁକ୍‌କାୟିତ ସ୍ତୈଣ ଭାବ । ଶାନ୍ତନୁଙ୍କର ଋଷିତ୍ୱ ଲୋପ ପାଇଯିବା ପରେ ସେ ହେଲେ କେବଳ ଜଣେ କାମାଶକ୍ତ ପୁରୁଷ ।

ଛାଡିଲେ ବ୍ରତରାଜ ଜଞ୍ଜାଳୀର ଭାବେ .
ଇଛିଲେ ଶୃଙ୍ଗାର ଯେ ଶାୟେଂତନୁ ଦେବେ ।
ୟେମନ୍ତେ ଅନେକ ଯେ ବଢିଲା ପୀରତି
ଦିବାରାତ୍ରେଣ ଯେ ରମନ୍ତେ ଅଶାନ୍ତି । (ପୃ-୨୯)

ଯେତେବେଳେ ଶାନ୍ତନୁ ଗଙ୍ଗାଙ୍କର ସମ୍ପୂର୍ଣ୍ଣ କରଗତ ଏବଂ ଗଙ୍ଗାଙ୍କ ବ୍ୟତୀତ ଆଉ କିଛି ଭାବିପାରୁ ନଥିଲେ, ସେତେବେଳେ ଗଙ୍ଗା ତାଙ୍କୁ ଦୁଃଖ ଦେବା ପାଇଁ ଅନ୍ୟ ପନ୍ଥା ଗ୍ରହଣ କଲେ । କାମ ମୋହିତ ପୁରୁଷକୁ ବିକ୍ଷୁବ୍ଧ କରାଇବା ଉଦ୍ଦେଶ୍ୟରେ ସେ ତାଙ୍କଠାରୁ ଦୂରେଇ ଗଲେ । ଦେହ ଦେଲେ ନାହିଁ ।

ଧର୍ମ ଛାଡି ଶାୟେଂତନୁ ପଶିଲେ ଶୃଙ୍ଗାରେ
କାଳେଣ ନ ଦେଲା ଦେହ ଡେରାଇଲା ଦୂରେ । (ପୃ-୨୯)

ସେଥିପାଇଁ ଗଙ୍ଗା କେତେବେଳେ ମାନିନୀ ହେଲେ ତ, କେତେବେଳେ ମାଡଗାଳି ଦେଲେ । ଶାନ୍ତନୁ ଅନ୍ତେଶ୍ୱର ପୁରୀରେ ଥିବାବେଳେ ସେ ସେଠାକୁ ଗଲେ ନାହିଁ । ଶାନ୍ତନୁ ତାଙ୍କୁ କୋଳ କରିବାକୁ ଗଲାବେଳେ, ସେ ତାଙ୍କୁ ଠେଲି ଦେଇ ବହୁ ସ୍ତିରିଙ୍କ ମେଳରେ ପଶିଗଲେ । କାମାଶକ୍ତ ପୁରୁଷ ପାଇଁ ଏହାଠାରୁ ବଳି ଦଣ୍ଡ ଆଉ କ'ଣ ହୋଇ ପାରେ ? ସାରଳା ଦାସ ଏହାକୁ ଆହୁରି ସ୍ପଷ୍ଟ କରି କହିଛନ୍ତି -

କାମ ବୋଲିଣ ସେ ଯେବଣ ପୁରୁଷେ
ମାୟା ଘୋର ସଂସାରେ ସେ ଅବସ୍ଥା ଦିଅଇ ଅଶେଷେ
ପୁରୁଷ ହୋଇ ବା ସ୍ତିରୀ ଜନ୍ମ ହୋଇ
ଅନଙ୍ଗ ସୁନ୍ଦର ନାଥ ଅନେକ ଦୁଃଖ ଦେଇ । (ପୃ-୩୧)

ଶାନ୍ତନୁ ଏ ସବୁ ନିର୍ଯ୍ୟାତନାକୁ ନୀରବରେ ସହିଗଲେ କେବଳ ଗୋଟିଏ ସୁଖ ପାଇଁ

ତାହା ହେଉଛି ଗୃହବାସର ସୁଖ । ମଣିଷ ଗୃହବାସ କରେ କେବଳ କାମବାସନାର ପରିତୃପ୍ତି ପାଇଁ ନୁହେଁ ସନ୍ତାନ ଉତ୍ପତ୍ତି କରି ବଂଶ ରକ୍ଷା କରିବା ପାଇଁ । ସେଥିପାଇଁ ଗଙ୍ଗା ଯେତେବେଳେ ଗର୍ଭବତୀ ହେଲେ, ସେତେବେଳେ ଶାନ୍ତନୁଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଭାବିନେଲେ, ହୁଏତ ଏଣିକି ଗଙ୍ଗାର ପ୍ରକୃତି ଶାନ୍ତ ହୋଇଯିବ । ''ଯେ ଘାନ୍ତି ସହିବ ଯେ ଆଶାବତୀର ତନୁ ।'' ଆଶା ଓ କାମନା ହେଉଛି ସଂସାରରେ ସବୁ ଦୁଃଖର ମୂଳ । ଶାନ୍ତନୁଙ୍କ ସବୁ ଉତ୍ସବ ବ୍ୟର୍ଥ ହୋଇଗଲା । ପୁତ୍ର ଜନ୍ମ ହେବାକ୍ଷଣି ଗଙ୍ଗା ଗୋଟି ଗୋଟି କରି ଛ'ଟି ପୁତ୍ରକୁ ଅନ୍ତୁଡି ଶାଳରେ ହିଁ ବଧ କଲେ । ଏ ସବୁ କରିବା ପରେ ମଧ୍ୟ ଗଙ୍ଗାଙ୍କର ଇଚ୍ଛା ପୂର୍ଣ୍ଣ ହେଲା ନାହିଁ । ବରଂ ଶାନ୍ତନୁ ସହନଶୀଳତାର ଶେଷ ସୀମାକୁ ସ୍ପର୍ଶ କଲେ । ଏଥର ଗଙ୍ଗା ଆଉ ସହ୍ୟ କରି ନ ପାରି ସଂକଳ୍ପ କଲେ -

ଯେ ଘାନ୍ତି ଯେ ପୁତ୍ର ଗୋଟିକି ମାରିବି
ଭୁଞ୍ଜନା ବୋଇଲେ ତୋଟି ମେଲାଇବି ।  (ପୃ-୪୨)

ପୁତ୍ର ଜନ୍ମହେଲା । ଏଥିରେ ଶାନ୍ତନୁଙ୍କର କୌଣସି ଆଗ୍ରହ ନ ଦେଖି ଗଙ୍ଗା ସନ୍ତାନ ଧର୍ମର ମହାତ୍ମ୍ୟ ଗୋଟି ଗୋଟି କରି ବର୍ଣ୍ଣନା କଲେ । ଗଙ୍ଗାଙ୍କର ଲକ୍ଷ୍ୟ ଥିଲା ଶାନ୍ତନୁଙ୍କୁ ଜାତ ଶିଶୁ ନିକଟକୁ ଆଣିବା ଓ ତାଙ୍କରି ଆଖି ଆଗରେ ଶିଶୁକୁ ହତ୍ୟା କରିବା । ଶାନ୍ତନୁ ଗଙ୍ଗାଙ୍କ ମାୟା ବୁଝି ପାରିଲେ ନାହିଁ । ତାଙ୍କ ମିଠା କଥାରେ ଭୁଲି ପୁଅକୁ ଦେଖିବା ପାଇଁ ଅନ୍ତୁଡି ଘରେ ପ୍ରବେଶ କଲେ । ଶାନ୍ତନୁଙ୍କୁ ଦେଖିବା କ୍ଷଣି ଗଙ୍ଗା କଟାରି ଧରି ପୁତ୍ରକୁ ମାରିବାକୁ ଉଦ୍ୟମ କଲେ । ଗଙ୍ଗାଙ୍କର ଏହି କାର୍ଯ୍ୟ ଶାନ୍ତନୁଙ୍କ ଶାନ୍ତ ହୃଦୟକୁ ବିଚଳିତ କରିଦେଲା । ସେ ନିଜର ପୂର୍ବ ସତ୍ୟବ୍ରତ ଭୁଲି କ୍ରୋଧବଶ ହୋଇ ଗଙ୍ଗାଙ୍କୁ ଗାଙ୍ଗୀ କହି ଗାଳି ଦେଲେ ।

ଗଙ୍ଗାଙ୍କର ବହୁ ଦିନର ତପସ୍ୟା ସଫଳ ହେଲା । ସେ ଅତି ଆନନ୍ଦରେ ଶାନ୍ତନୁଙ୍କୁ କହିଲେ-

ଗଙ୍ଗା ଉଷତ ହୋଇଲେ ଶାୟେଂତନୁଙ୍କର ଉତ୍ତରେ
ବ୍ରତ ପୂରିଲା ମୁନିଯେ ଯାଉଛି ନିର୍ଭରେ ।
ଯେତେକ ବୋଲିବାକୁ ମୁଁ ବାଟ ଚାହିଁଥିଲି
ଗାଙ୍ଗୀ ବୋଲିବା ପାଇଁ ତୁମ୍ଭେ ମୁଁ ଛ'ପୁତ୍ର ମାଇଲି । (ପୃଷ୍ଠା-୪୫)

X X X

ଯେବେ ମୁଁ ତୋ ଗୁରୁ ତୁ ମୋର ଶିଷି
ଗୁରୁପତ୍ନୀ କି କିମ୍ପା ତୁ ଛୁଉଁ ମହାଋଷି ।'' (ପୃଷ୍ଠ-୪୬)

ସଂସ୍କୃତରେ ଗଙ୍ଗା ଚରିତ୍ରର କେତୋଟି ମୂଳତତ୍ତ୍ୱ ବିଦ୍ୟମାନ । ଅଷ୍ଟବସୁଙ୍କୁ ଅଭିଶାପରୁ ମୁକ୍ତ କରିବା ପାଇଁ ଗଙ୍ଗା ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିଥିଲେ ଓ ସେଥିପାଇଁ ଗୋଟିଏ ଗୋଟିଏ ଶିଶୁକୁ ବଧ କରିଥିଲେ । 'ଗାଙ୍ଗୀ କହିଲେ ସେ ଶାନ୍ତନୁଙ୍କୁ ପରିତ୍ୟାଗ କରିବେ' ପ୍ରସଙ୍ଗର

ସୂଚନା ମଧ୍ୟ ସଂସ୍କୃତରେ ଦେଖିବାକୁ ମିଳିଥାଏ । ସାରଳା ଦାସ ଅଷ୍ଟବସୁ ଉପାଖ୍ୟାନରୁ ଗଙ୍ଗାଙ୍କୁ ମୁକ୍ତ କରିଥିଲେ ହେଁ ଗାଙ୍ଗୀ ପ୍ରସଙ୍ଗ ରଖିଛନ୍ତି ଓ ଏହାକୁ ଏକ ବ୍ରତ ପାଳନର ରୂପ ପ୍ରଦାନ କରିଛନ୍ତି । ଏହି ପରିବର୍ତ୍ତନ ସଂଶୋଧିତ କରିବା ଦ୍ୱାରା ଗଙ୍ଗାଙ୍କ ଚରିତ୍ରଗତ ବୈଶିଷ୍ଟ୍ୟ ପରିବର୍ତ୍ତିତ ହୋଇଯାଇଛି । ଗଙ୍ଗା ତାଙ୍କର ଅଭିଳଷିତ ସ୍ୱାମୀଙ୍କୁ ମର୍ତ୍ତ୍ୟ ଜଗତରେ ନ ପାଇଏ ଶାନ୍ତନୁଙ୍କ କପଟ ବେଶରେ ଭୁଲିଯିବା ଦ୍ୱାରା ବା ନିଜ ଲକ୍ଷ୍ୟ ପଥରୁ ବିଚ୍ୟୁତ ହେବା ଫଳରେ ତାଙ୍କ ମନ ଉପରେ ଯେଉଁ ଦାରୁଣ ଆଘାତ ଆସିଲା, ତାଙ୍କର ପରବର୍ତ୍ତୀ ଜୀବନ ଏହାରି ପରିପ୍ରକାଶ । ତାଙ୍କ ମନ ଉପରେ ଏହି ବାଧା ଆସିବା ଫଳରେ ତାଙ୍କ ମନ୍‌ରେ ସ୍ଥିରତା ରହିପାରି ନାହିଁ । ତାଙ୍କ ମନରେ ବହୁ ଅସ୍ୱାଭାବିକତା ଦେଖା ଦେଇଛି । ଶାନ୍ତନୁଙ୍କ ପ୍ରବଞ୍ଚନା ତାଙ୍କୁ ଏପରି ଏକ ଅବସ୍ଥାର ସମ୍ମୁଖୀନ କରାଇଛି ଯେ ସେ ଶାନ୍ତନୁଙ୍କ ସହ ଗୃହବାସ କରିବାକୁ ବାଧ୍ୟ ହୋଇଛନ୍ତି ସତ, ଅଥଚ ପ୍ରତି ମୁହୂର୍ତ୍ତରେ ତାଙ୍କ ଚିର ଅଭିଳଷିତ ସ୍ୱାମୀ ତାଙ୍କ ମନକୁ ବିବ୍ରତ କରୁଛନ୍ତି । ଏହି ମାନସିକ ଦ୍ୱନ୍ଦ ମଧ୍ୟରେ ଗତି କରୁଥିବା ବେଳେ ସେ ନିଜର କର୍ତ୍ତବ୍ୟ ସ୍ଥିର କରିପାରି ନାହାନ୍ତି । ଫଳରେ ସେ କେତେବେଳେ ଶାନ୍ତନୁଙ୍କର ଅତିପ୍ରିୟ ହୋଇଛନ୍ତି ତ ପୁଣି କେତେବେଳେ ଶାନ୍ତନୁଙ୍କ ଠାରୁ ଦୂରେଇ ଯାଇଛନ୍ତି । ଗର୍ଭବତୀ ହେବାପରେ ଗୃହବାସରୁ ତାଙ୍କର ମୁକ୍ତିର ଆଶା ଆହୁରି କ୍ଷୀଣ ହୋଇଯାଇଛି । ସେତେବେଳେ ସେ ପ୍ରାୟ ପାଗଳ ହୋଇଯାଇ ଗୋଟିଏ ପରେ ଗୋଟିଏ ସନ୍ତାନଙ୍କୁ ବଧ କରିଛନ୍ତି । ଗଙ୍ଗା ଚରିତ୍ର ଚିତ୍ରଣରେ ସାରଳା ଦାସ ଅଶାନ୍ତ ମାନସିକ ପ୍ରକ୍ରିୟାର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି, ତାହା ମନୁଷ୍ୟ ଚରିତ୍ର ନିରୀକ୍ଷଣରେ କବିଙ୍କ ପାରଦର୍ଶିତାକୁ ପ୍ରଦର୍ଶିତ କରିବାରେ ସାହାଯ୍ୟ କରେ ।

ଗଙ୍ଗା ଯେ ତାଙ୍କର ଛ' ପୁତ୍ରଙ୍କୁ ମାରିଥିଲେ, ତାହା ନୁହେଁ - କାମୁକ ଶାନ୍ତନୁଙ୍କ ଚିତ୍ର ଦର୍ଶନରୁ ଜାତ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କୁ ଅପୁତ୍ରିକ ହେବାପାଇଁ ଅଭିଶାପ ଦେଲେ । ତାଙ୍କର ଅଭିଶାପ ଫଳରେ ଭୀଷ୍ମଙ୍କ ସନ୍ତାନ ଶାନ୍ତନୁ ମରିବାର କାରଣ ହେଲା । ଫଳ ହେଲା । ଶାନ୍ତନୁଙ୍କ ତିନିପୁତ୍ର ଯାକ ସନ୍ତାନ ଉତ୍ପତ୍ତି କରିପାରିଲେ ନାହିଁ ଓ ପ୍ରଖ୍ୟାତ ସୋମବଂଶ ନାହିଁ ନ ଥିବା ଏକ ବିପଦର ସମ୍ମୁଖୀନ ହେଲା ।

**୨. କୁନ୍ତୀ :**

ଗଙ୍ଗା ଚରିତ୍ର ଅସମ ବିବାହର ବିଷମୟ ପରିଣତି । ଅମ୍ବିକା ଓ ଅମ୍ବାଳିକା ବିଧବା ହେବାପରେ କେବଳ ବଂଶ ରକ୍ଷାପାଇଁ ଗୁରୁଜନମାନଙ୍କର ଅନୁମତି କ୍ରମେ ବ୍ରାହ୍ମଣ ବ୍ୟାସଙ୍କ ସହ ମିଳିତ ହୋଇଥିଲେ । ସଂସ୍କୃତରେ ଏ ସବୁ କଥା ଅଛି । ଏ ସବୁକୁ ବାଦ୍ ଦେବା ସମ୍ଭବ ମଧ୍ୟ ନୁହେଁ । ସେଥିପାଇଁ ସାରଳା ଦାସ ନିଜ ସମାଜ ଦୃଷ୍ଟିରୁ ଆବଶ୍ୟକୀୟ ପରିବର୍ତ୍ତନ କରି ଚରିତ୍ର ସବୁକୁ ଗ୍ରହଣ କରିଛନ୍ତି । କୁନ୍ତୀ ମଧ୍ୟ ସେହିପରି ମହାଭାରତର ଏକ ମୁଖ୍ୟ ଚରିତ୍ର । ସଂସ୍କୃତରେ ଅଭିଶପ୍ତ ସ୍ୱାମୀଙ୍କ ଉପସ୍ଥିତିରେ ସେ ଅନ୍ୟ ପୁରୁଷମାନଙ୍କ ସହ ମିଳିତ ହୋଇ ବଂଶରକ୍ଷା କରିଥିଲେ । ସଂସ୍କୃତ ମହାଭାରତକାରଙ୍କ ପରି ସାରଳା ଦାସଙ୍କ ସମାଜରେ ଏହି

ପ୍ରଥା ସାଧାରଣରେ ଅନୁମୋଦିତ ନ ଥିଲା । ସେଥିପାଇଁ ଉଭୟ ମହାଭାରତକାର ବିଭିନ୍ନ ଉପାଖ୍ୟାନ ଓ ଶାସ୍ତ୍ର ସବୁରୁ ଦୃଷ୍ଟାନ୍ତ ଗ୍ରହଣ କରି କୁନ୍ତୀଙ୍କ କାର୍ଯ୍ୟର ଯଥାର୍ଥତା ପ୍ରତିପାଦନ କରିବାକୁ ଚାହିଁଛନ୍ତି । କୁନ୍ତୀ ଯେ ଅସତୀ ନୁହନ୍ତି ଏକଥା ପ୍ରମାଣ କରିବାକୁ ଯାଇ ସଂସ୍କୃତ ମହାଭାରତକାର କହିଛନ୍ତି -

ନାତଶ୍ଚତୁର୍ଥଂ ପ୍ରସବମାତାତ ସ୍ୱପି ବଦନ୍ତ୍ୟତ

ଅତଃ ପରଂ ସ୍ୱୈରିଣୀ ସଂତ୍ ପଞ୍ଚତମ କୀ କନ୍ଧକୀ ଭବେତ୍ ।

ଅର୍ଥାତ୍ ଏହାପରେ ଆପତ କାଳରେ ଚତୁର୍ଥ ପୁତ୍ର ଉତ୍ପାଦନ କରିବା ମୁନି ମାନଙ୍କ ମତରେ ସଙ୍ଗତ ନୁହେଁ । କାରଣ ତୃତୀୟ ପରେ ଚତୁର୍ଥ ପରପୁରୁଷ ସଂସର୍ଗ କରୁଥିବା ସ୍ତ୍ରୀ ସ୍ୱୈରିଣୀ ଏବଂ ପଞ୍ଚମ ପୁରୁଷ ସହ ସଂସର୍ଗ କରୁଥିବା ସ୍ତ୍ରୀକୁ ବନ୍ଧକୀ କୁହାଯାଏ ।

ସାରଳା ଦାସ ସଂସ୍କୃତ ମହାଭାରତର ଯୁକ୍ତିକୁ ଗ୍ରହଣ କରି ନ ପାରି ଏକ ଅଭିନବ ତର୍କର ଅବତାରଣା କରି ଅଛନ୍ତି । ତାଙ୍କ ମତରେ ମନୁଷ୍ୟ ଜାତିରୁ ପରପୁରୁଷ ଗ୍ରହଣ କଲେ ଅସତୀ ହୁଏ । ଦେବତାଙ୍କଠାରୁ ପୁତ୍ର ଉତ୍ପାଦନ କଲେ ଦୋଷ ନାହିଁ । ସାରଳାଦାସ ଅଗସ୍ତିଙ୍କ ମୁଖରେ କୁହାଇଛନ୍ତି -

ମାନବ ଇଚ୍ଛିଲେ ଗୋ ହୋଇବ ଦୋଚାରୀ,<br>
ଦେବତାନ୍ତ ଇଚ୍ଛା କର ଗୋ ହୁଅ ରତିକାରୀ ।<br>
ଦେବକଳା ଘେନି ଗୋ ଦେବେ ହୁଅନ୍ତି ଜନମ,<br>
ଛଡ଼ିବ ଦୁପାତକ ଉଦିତ ହେବ ଧର୍ମ । (ପୃଷ୍ଠା-୨୦୫)

କୁନ୍ତୀର ଦୋଷକ୍ଷାଳନ ପାଇଁ ଅଗସ୍ତି ପୁଣି କହିଛନ୍ତି-

ଆଗୋ ତ୍ରିରୀଙ୍କର ଧର୍ମ ଗୋ ଅଟଇ ଯୁଗତି<br>
ସ୍ୱାମୀର ବୀର୍ଯ୍ୟେ ଯେବେ ନ ଉପୁଜଇ ସନ୍ତତି ।<br>
ଆଗୋ ପରଦାର କରାଇ ଗୋ ଉପୁଜାଇ ବଂଶ<br>
ସ୍ୱାମୀର ଅଭିଶାପ ତୁମର କିସ ଦୋଷ । (ପୃଷ୍ଠା-୨୦୬)

ସାରଳା ଦାସଙ୍କର ତୃତୀୟ ସବଳ ଯୁକ୍ତି ହେଉଛି, ସନ୍ତାନ ଉତ୍ପାଦନ ଠାରୁ ଧର୍ମ ନାହିଁ । ଏହା ଆଗରେ ଯାଗ, ଯଜ୍ଞ, ନିତ୍ୟକର୍ମ, ଦାନ ଓ ହୋମ ମୂଲ୍ୟହୀନ । ଅଗ୍ନିକାର ମହର୍ଷିଙ୍କର ସେହି ଏକମାତ୍ର ଦୋଷ ଥିଲା । ସେ ସବୁପ୍ରକାର ଧର୍ମ-କର୍ମ କରିଥିଲେ ହେଁ ମର୍ତ୍ତ୍ୟ ଜଗତରେ ସନ୍ତାନ ଜାତ କରିପାରି ନଥିଲେ । ସେଥିପାଇଁ ଯମଙ୍କ ଦରବାରରେ ସେ ପଣ୍ଡିତ ହେଲେ । କେବଳ ଧର୍ମଲୋକଙ୍କ ଅନୁରୋଧରେ ତାଙ୍କୁ ପୁଣିଥରେ ସନ୍ତାନ ଉତ୍ପତ୍ତି କରିବା ପାଇଁ ମର୍ତ୍ତ୍ୟ ଜଗତକୁ ପଠେଇ ଦିଆଗଲା । ସାରଳାଦାସ ସନ୍ତାନ ଧର୍ମର ମହିମା **ମହାଭାରତ**ର ବହୁ ସ୍ଥାନରେ ପ୍ରଚାର କରିଛନ୍ତି । ଅଗ୍ନିକାର ଋଷି ପ୍ରସଙ୍ଗରେ ଏହି ପ୍ରସଙ୍ଗ ଉତ୍‌ଥାପନ କରି କବି କହିଛନ୍ତି -

ଯେତେ ଭିଗ୍ୟଂ ମହାତମା ହୋଇ କିଂ ଯେ କଲୁ ଯେତେ କୃତ୍ୟ
ସନ୍ତାନ ନ ଥିଲେ ସକଳ ଧର୍ମ ଅଟଇ ବିଅର୍ଥ ।
ସନ୍ତାନ ଉପୁଜାଇ ସେ ନାନା ଧର୍ମ -କର୍ମ କରି
ତୃତୀୟ ବୟସେ ସେ ଯେ ହୋଇ ତପଚାରୀ ।
ସନ୍ତାନ ବିହୁନେ ସକଳ ଧର୍ମ ଦୂର କରି
ପରମ ପଣ୍ଡିତ ପୁରୁଷ ହୋଇ ତୁ ଯେହା କିଂ ଯେ ନ ବିଚାରି ।

(ପୃଷ୍ଠା-୧୪୭)

ସନ୍ତାନ ଉତ୍ପତ୍ତି ପାଇଁ ପରପୁରୁଷ ବା ପରନାରୀ ଗ୍ରହଣ କରିବା, ପୁଣି କାମାତୁର ହୋଇ ଅନ୍ୟ ପୁତ୍ର ଆସକ୍ତି ହେବା ମଧ୍ୟରେ ପାର୍ଥକ୍ୟ ଅଛି । ସେଥିପାଇଁ ଅନଙ୍ଗ ସେନ ନୃପତିଙ୍କ ରାଣୀ ରତ୍ନାବତୀ କଥା କୁହାଯାଇଛି । ସାରଳାଦାସ କାମାସକ୍ତ ନାରୀ ବା ପୁରୁଷ ଉଭୟଙ୍କର ନିନ୍ଦା କରିଛନ୍ତି । ସଂଯତ ଜୀବନ ଯାପନ ହେଉଛି ତାଙ୍କର ଏକମାତ୍ର ଆଦର୍ଶ । କୁନ୍ତୀ ଯେ କାମାତୁରା ହୋଇ ପରପୁରୁଷ ସହ ମିଳିତ ହୋଇଥିଲେ ତା' ନୁହେଁ, ପଣ୍ଡୁ ଅଭିଶପ୍ତ ହେବା ପରେ ସେ ଯୁବତୀ ହୋଇ ମଧ କାମଦେବର ଦୁର୍ଦ୍ଦଣ୍ଡ ପ୍ରଭାବକୁ ଅତି ସଂଯମତାର ସହ ସହ୍ୟ କରିଥିଲେ । ଦିନକର ଘଟଣାରୁ ଏହା ପ୍ରତିପାଦିତ ହୁଏ । ଦିନେ କୁନ୍ତୀ ପାକା ସ୍ବର୍ଣର ପଞ୍ଚମ ଦିବସ ରାତ୍ରିରେ ସ୍ୱାମୀଙ୍କ ନିକଟରେ ପ୍ରବେଶ କଲେ । ସ୍ୱାମୀ ସ୍ତ୍ରୀ ଏକଯୋଗ ହେବାରୁ ପଣ୍ଡୁ ଶୃଙ୍ଗାର ଇଚ୍ଛା କଲେ । ସ୍ୱାମୀର ଇଚ୍ଛାକୁ ପୂର୍ଣ୍ଣ ନ କରିବା ଭଳି ଦୋଷ ଆଉ ନାହିଁ ; ଅଥଚ ପଣ୍ଡୁ ରାଜାଙ୍କର ଅଭିଶାପ ହେଉଛି, ଯେ ଶୃଙ୍ଗାର କାଳରେ ମୃତ୍ୟୁଲାଭ କରିବେ । ଏପରି ଅବସ୍ଥାରେ କୁନ୍ତୀ ପିତୃଲୋକଙ୍କ ଠାରୁ କ୍ଷମା ମାଗି ନିଜକୁ ସଂଯତ କରିନେଲେ-

ବଇଲେ ଶୃଙ୍ଗାର ଛାଡ଼ିଲେ ଗତି ଆଶା
ସଂକଳ୍ପ କରିଣ ଯେ ଛାଡିଲେ ମନୀଷା ।
ରତି ଇଚ୍ଛା ନ କଲେ ସେ ମହତ ସାଧବୀ
ସ୍ୱାମୀର ନିମନ୍ତେ କରି ଶୃଙ୍ଗାର ମନେଣ ନ ଭାବି । (ପୃଷ୍ଠା-୨୦୧)

ଏହିପରି କର୍ମକୁ ଆଦରି ତିନିବର୍ଷ କଟିଗଲା । ଦିନେ ଅଗସ୍ତି ମହାମୁନି ଆସି ରଷ୍ୟଶୃଙ୍ଗରେ ବିଜେ କଲେ । ତାଙ୍କରି ଉପଦେଶରେ କୁନ୍ତୀ, ଧର୍ମ, ପବନ ଓ ଇନ୍ଦ୍ରଙ୍କ ଠାରୁ ପୁତ୍ର ଉତ୍ପାଦନ କଲେ ।

କୁନ୍ତୀଙ୍କୁ ସାଧବୀ ରୂପେ ପ୍ରତିପାଦନ କରିବା ପାଇଁ ସାରଳା ଦାସ ଯେତେ ସଫେଇ ଦେଲେ ବି କୁନ୍ତୀଙ୍କ ମନ ସବୁବେଳେ ନିଜର ପାପକର୍ମ ପାଇଁ ଆନ୍ଦୋଳିତ ହେଉଥିଲା । ମନ୍ତ୍ର ପରୀକ୍ଷା ପାଇଁ ସୂର୍ଯ୍ୟଙ୍କୁ ଆହ୍ୱାନ କରି ସହ-ସମାଗମ ବେଳେ କୁନ୍ତୀ ଅନୁରୋଧ କରି କହିଛନ୍ତି-

କୋଇନ୍ତା ବୋଇଲେ ଭୋ ଦେବ ଭବ ଦ୍ୱାରୁ ଜାତ ନ ହୋଉ ସନ୍ତତି
ଭବ ଗଲନ୍ତେ ମୁଁ ଯେ ହୋଇବି ଅସତୀ । (ପୃଷ୍ଠା-୧୫୮)

କୁନ୍ତୀଙ୍କର ଅନୁରୋଧ ରକ୍ଷା କରି ସୂର୍ଯ୍ୟ ତାଙ୍କୁ ସେଥର ଅସତୀ ହେବାରୁ ରକ୍ଷା କରିଦେଲେ ।

ଯୁଧିଷ୍ଠିରଙ୍କ ଅତି ଧର୍ମପଣ ମାତା କୁନ୍ତୀଙ୍କୁ ବ୍ୟଥିତ କଲା । ଗାନ୍ଧାରୀ ସଦୃଶ ହିଂସିକା ନାରୀ ସହ ଘର କରିବାକୁ ହେଲେ ଯୁଧିଷ୍ଠିରଙ୍କ ପରି ଧର୍ମାତ୍ମା କାମକୁ ଆସିବେ ନାହିଁ । ସେଥିପାଇଁ ଆବଶ୍ୟକ ଭୀମ ଓ ଅର୍ଜୁନଙ୍କ ପରି ଭାରୋଇ ମଲ୍ଲ । ମନ ମଧ୍ୟରେ ଏକଥା ଭାବି ସ୍ଥିର କଲାବେଳକୁ ସେ ନିଜ ଭାଗ୍ୟକୁ ଦୋଷ ନ ଦେଇ ରହି ପାରିଲେ ନାହିଁ । ସେ ଧର୍ମ ପୁରୁଷଙ୍କୁ ସମ୍ବୋଧନ କରି କହିଛନ୍ତି-

ଭୋ ଧର୍ମ ପୁରୁଷ ଯେହେଣ୍ଡକ ମୋର କର୍ମ
କେବଣ ପାପକ୍ଷଣେ ହୋଇଲି ମୁଂହି ଜନ୍ମ
ସ୍ତିରୀ ଜନ୍ମରେ ମୁଁ ହୋଇଲି ଅସତୀ
କେତେ ଭ୍ରଥାରେ ଦିନ ଯିବ କର୍ମର ଅଗତି ।
ପ୍ରଥମେ ଆଦିତ୍ୟ ଦୁଇଜଣ ପଣ୍ଡୁରାୟେ
ତୃତୀୟେ ଧର୍ମ ଦେବତା ବୀର୍ଯ୍ୟ ପ୍ରଦାନ କୟେ ।
ଯେତେକେହେଂ ଭୋ ଧର୍ମ ଦେବତା ନୋହିଲା ମୋର କାର୍ଯ୍ୟ
ଯେତେ ବଡ ରାଜକୁଳେ ଉପୁଜି ଲେଛିଲି ସର୍ବ ଲାଜ ।
ସଂସାରେ ଉପୁଜି ଦେବ ନ କଲି କିଛି ଧର୍ମ
କେମନ୍ତ କରି ମୁକତ କରିବଟି ଯମ ।
ରାଗ ମୋହ ଅହଙ୍କାର ଥିଲେ ଉପୁଜିଟି ଅନେକ ପାପ
ରାଜ ପଦେ ବସିଲେ ବଡାଇ ପରତାପ । (ପୃଷ୍ଠା-୨୩୩)

ଗାନ୍ଧାରୀ ଓ ମାଦ୍ରୀଙ୍କ ସମ୍ପର୍କରୁ କୁନ୍ତୀଙ୍କ ଚରିତ୍ରକୁ ବିଶ୍ଳେଷଣ କରାଯାଇପାରେ ।

ମାଦ୍ରୀ ସମ୍ପର୍କରେ ସଉତୁଣୀ । ସାଧାରଣତଃ ସଉତୁଣୀମାନଙ୍କ ମଧ୍ୟରେ ଈର୍ଷା, ଦ୍ୱେଷ ଥାଏ । ସଂସ୍କୃତ ମହାଭାରତରେ କୁନ୍ତୀ ଓ ମାଦ୍ରୀ କୌଣସି ସ୍ଥାନରେ କଳହ କରୁଥିବା ଦେଖାଯାଇନାହିଁ । କିନ୍ତୁ ଦୁର୍ବାସାଙ୍କ ମନ୍ତ୍ର ମାଦ୍ରୀଙ୍କୁ ଦେଲାବେଳେ କୁନ୍ତୀ କୁଣ୍ଠିତା । ଥରକରୁ ଦ୍ୱିତୀୟ ଥର ଦେଇ ନାହାନ୍ତି । ମାଦ୍ରୀ ମଧ୍ୟ ନିଜେ ମାଗିବାକୁ ସାହସ ନ କରି ପଣ୍ଡୁଙ୍କ ମାଧ୍ୟମରେ ମନ୍ତ୍ର ପାଇଛନ୍ତି । ସାରଳା ଦାସ ମାଦ୍ରୀଙ୍କ ଚରିତ୍ରକୁ ପ୍ରାୟ ଅପରିବର୍ତ୍ତିତ ରଖିଥିଲେ ହେଁ କୁନ୍ତୀଙ୍କୁ ଉଦାର ହୃଦୟା ନାରୀ ରୂପେ ଚିତ୍ରଣ କରିଛନ୍ତି । ସେଥିପାଇଁ ତିନୋଟି ସନ୍ତାନ ଜାତ କଲାପରେ ମାଦ୍ରୀ ପ୍ରତି ସଦୟ ହୋଇ ସ୍ୱେଚ୍ଛାକ୍ରମେ ଦୁର୍ବାସାଙ୍କ ଜପାମାଳି ପ୍ରଦାନ କରିଛନ୍ତି-

ତୁ ମାଦ୍ରୀ ମୋହର ସପତଣୀ ହୋଇଲୁ ଅବା

ଭୃତ୍ୟର ଭୃତ୍ୟ ହୋଇଣ ତୁ ମୋତେ ବହୁତ କଲୁ ସେବା ।
ତୁ ମୋହର ଅଭିନ୍ନ ପ୍ରାଣର ସଂଘାତୁଣୀ
ମୋତେ ସେବା କରି ହୋଇବୁ କି ଅପୁତ୍ରିକ ଅଲକ୍ଷଣୀ ।

(ପୃଷ୍ଠା-୨୬୩)

କୁନ୍ତୀ ଓ ଗାନ୍ଧାରୀଙ୍କ ସମ୍ପର୍କ ବିଚାର କଲାବେଳେ ସେମାନଙ୍କ ପୃଷ୍ଠଭୂମିକୁ ପ୍ରଥମେ ବିଚାର କରିବା ଆବଶ୍ୟକ । କାରଣ ପରବର୍ତ୍ତୀ ଜୀବନରେ ସେମାନଙ୍କ ମଧ୍ୟରେ ଯେଉଁ ଭାବ ସୃଷ୍ଟି ହେଲା, ସେଥିପାଇଁ ସେମାନଙ୍କ ପାରିବାରିକ ଜୀବନର ପୃଷ୍ଠଭୂମି ବିଶେଷ ଭାବେ ଦାୟୀ । କୁନ୍ତୀ ଓ ଗାନ୍ଧାରୀ ଉଭୟ ରାଜକୁଳରୁ ରାଜବଧୂ ହୋଇ ଆସିଥିଲେ । ଧୃତରାଷ୍ଟ୍ର ଅନ୍ଧ ଥିବାରୁ ସମସ୍ତଙ୍କ ବିଚାରରେ ପାଣ୍ଡୁ ରାଜ୍ୟ ଅଧିକାର କଲେ । ପାଣ୍ଡୁଙ୍କ ଐଶ୍ୱର୍ଯ୍ୟ, ସମ୍ମାନ ଓ ପ୍ରତିପତ୍ତି ଧୃତରାଷ୍ଟ୍ରଙ୍କ ପକ୍ଷରେ ଅସହ୍ୟ ହେଲା । ପାଣ୍ଡୁ ଏ କଥା ଜାଣିପାରି ସ୍ୱେଚ୍ଛାକ୍ରମେ ବନବାସୀ ଜୀବନ ଯାପନ କଲେ ଏବଂ ବନରେ ରହି ମଧ୍ୟ ରାଜ୍ୟର ଶତ୍ରୁ ସବୁଙ୍କୁ ଦମନ କରି ଧୃତରାଷ୍ଟ୍ରଙ୍କୁ ନିରଙ୍କୁଶ ଭାବେ ରାଜତ୍ୱ କରିବାକୁ ସୁବିଧା ଦେଲେ । ପାଣ୍ଡୁଙ୍କର ବନବାସ ଜୀବନଯାପନ ଗାନ୍ଧାରୀଙ୍କର ଅଭିପ୍ରେତ ନଥିଲା । ସେ ନିଜର ସ୍ୱାମୀଙ୍କୁ ବହୁଭାବେ ପାଣ୍ଡୁଙ୍କ ପ୍ରତି ହିଂସାଭାବ ପୋଷଣ ନ କରିବାକୁ ଚେଷ୍ଟା କରି ବିଫଳ ହେଲେ । ଜୀବନର ଏହି ପରିବର୍ତ୍ତିତ ମୁହୂର୍ତ୍ତରେ କୁନ୍ତୀଙ୍କ ଚରିତ୍ରରେ କୌଣସି ଭାବାନ୍ତର ଲକ୍ଷ୍ୟ କରିହୁଏ ନାହିଁ ।

ଦୈବକ୍ରମେ କୁନ୍ତୀ ହେଲେ କୁରୁବଂଶର ପ୍ରଥମ ସନ୍ତାନର ମାତା । ଏଇ ସମ୍ବାଦ ମଧ୍ୟ ସଂସ୍କୃତ ମହାଭାରତ ପରି ଗାନ୍ଧାରୀଙ୍କୁ ବ୍ୟଥିତ କରିନାହିଁ । ବରଂ ଗାନ୍ଧାରୀ ଆନନ୍ଦରେ ସୁବର୍ଣ୍ଣ ରଥ ଆରୋହଣ କରି ଧୃତରାଷ୍ଟ୍ରଙ୍କ ସହ ଶତଶୃଙ୍ଗ ପର୍ବତକୁ ଯାଇଥିଲେ । ଏହାପରେ ଗାନ୍ଧାରୀଙ୍କର ପୁତ୍ର କନ୍ୟା ଜାତ ହେବା ପରେ ଅବସ୍ଥା ବଦଳି ଗଲା । ବ୍ୟାସ ଯାଇ ଶତଶୃଙ୍ଗ ପର୍ବତରେ ପହଞ୍ଚି ପରାକ୍ରମଶାଳୀ ପୁତ୍ର ଜାତ କରାଇବାକୁ ପରାମର୍ଶ ଦେଇ କହିଲେ -

ମହା ଆରମ୍ଭେ କୁମରେ ବଡାଇ ବଳବନ୍ତା
ଦୁଷ୍ଟ ପ୍ରକୃତି ସେ ହୋଇବ ଜଗଜ୍ଜିତା ।
ତିଆରସି ପଣ୍ଡୁ ହୋ ତୋହର ଭାରିଯାକୁ
ଗାନ୍ଧାରୀ ପୋଏ ସେ ରାଜା ରାଜ୍ୟ ନୋହିବଟି ତୁକୁ । (ପୃଷ୍ଠା-୨୩୧)

ବ୍ୟାସଙ୍କ ଉକ୍ତି ପରେହିଁ କୁନ୍ତୀଙ୍କ ମୁଖରେ ଗାନ୍ଧାରୀ 'ଆଦ୍ୟ ହୁଁ ହିଂସାକାରୀ' ବୋଲି ଜଣାଯାଏ ।

ଆଦ୍ୟ ହୁଂ ଗାନ୍ଧାରୀ ଯେ ଅଟଇ ହିଂସାକାରୀ
ଯେ ପୁତ୍ରକୁ ଘେନି କି କାର୍ଯ୍ୟ କରିପାରି । (ପୃଷ୍ଠା-୨୩୨)

ସେହି ବ୍ୟାସଙ୍କ ପରାମର୍ଶରେ ସେ ବଳବନ୍ତ ପୁତ୍ର ଜାତ କରିବା ପାଇଁ ପବନ ଓ ଇନ୍ଦ୍ର ଦେବତାଙ୍କୁ ସ୍ମରଣ କଲେ ।

ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ଜାତ ହେବାପରେ ଗାନ୍ଧାରୀ ମଧ୍ଯ ନିଜ ଗର୍ଭଜାତ ଶତପୁତ୍ରରେ ସନ୍ତୁଷ୍ଟ ହୋଇ ରହିପାରିଲେ ନାହିଁ । ସେ ଦୁର୍ବାସାଙ୍କୁ ଯେଉଁ ଅନୁରୋଧ କଲେ ସେଥିରେ କୁନ୍ତୀଙ୍କ ପ୍ରତି ପ୍ରଚ୍ଛନ୍ନ ହିଂସା ପ୍ରକଟିତ ।

ଗାନ୍ଧାରୀ ବୋଇଲେ ତୁମ୍ଭେ ପ୍ରତକ୍ଷେ ବ୍ରହ୍ମବେତ୍ତା
କେଉଂତା ଲକ୍ଷ ତୋ ତୁମ୍ଭକୁ ଭଗତି ହୋଇଲେ କୋଇନ୍ତା ।
ଦୁର୍ଭାସାୟେ ବୋଇଲେ ଆଉ ଇଚ୍ଛା ଯେବେ ତୋହୋର
ହୋଇବ ପ୍ରାପତ ତୋତେ ମାଗୁ କିନା ବର । (ପୃଷ୍ଠା-୭୫-୭୬)

ସନ୍ତାନ ଜାତ କରି ସେମାନଙ୍କ ଗୁଣଗ୍ରାମ ଶୁଣିଲା ପରେ ମାତାମାନଙ୍କ ହୃଦୟରେ ଯେଉଁ ହିଂସାଭାବ ଅଙ୍କୁରିତ ହୁଏ, ତାହା ପରବର୍ତ୍ତୀ ଜୀବନରେ ବିଭିନ୍ନ ଭାବେ ପଲ୍ଲବିତ ହୋଇ ସମସ୍ତ ମହାଭାରତ କଥାକୁ ଗ୍ରାସ କରେ । ମାତାମାନଙ୍କ ହୃଦୟରେ ହିଂସାଭାବ ସୃଷ୍ଟିର କାରଣ ରୂପେ କେବଳ ଯେ ଅପତ୍ୟ ସ୍ନେହ ଦାୟୀ ତା' ନୁହେଁ , ବ୍ୟାସ ଓ ଦୁର୍ବାସାଙ୍କ ପରି ଋଷି କେତେବେଳେ କୁନ୍ତୀ ପାଖରେ ଓ କେତେବେଳେ ଗାନ୍ଧାରୀ ପାଖରେ ପହଞ୍ଚି, ଅପ୍ରୀୟ ସତକଥା କହି ଏହି ଭାବକୁ ବୃଦ୍ଧି କରିବାରେ ସାହାଯ୍ୟ କରିଥିଲେ । ସାରଳା ଦାସଙ୍କ ମତରେ ଋଷିମାନେ ହିଁ ସବୁ ଅନର୍ଥର ମୂଳ । ସେମାନେ ମନ୍ତଦାନ କରି ସନ୍ତାନ ଜାତ କରାନ୍ତି, ପରାକ୍ରମଶାଳୀ ହେବା ପାଇଁ ବର ଦିଅନ୍ତି, ପୁଣି ବିନାଶ କରିବା ପାଇଁ ଅଭିଶାପ ମଧ୍ୟ ଦେଇଥାନ୍ତି ।

ଏହିଜାତ କଲେ ଏହି ବର ଦେଲେ
ରାଗ ସମ୍ଭରି ନ ପାରି ପୁଣ ଶାପ ହିଂ ବିହିଲେ । (ପୃଷ୍ଠା-୨୨୮)

### ୩. ଯୁଧିଷ୍ଠିର :

''ତୁଳସୀ ଦୁଇ ପତ୍ରରୁ ବାସେ'' ଓ ''ବିଛୁଆତି ଦୁଇ ପତ୍ରରୁ କୁଣ୍ଡାଇ ହୁଏ '' - ଯୁଧିଷ୍ଠିର ଭୀମ ଅର୍ଜୁନ, ଦୁର୍ଯ୍ୟୋଧନ ଓ ଦୁଃଶାସନ ପ୍ରଭୃତି ଚରିତ୍ର ସୃଷ୍ଟି କଲାବେଳେ ସାରଳା ଦାସଙ୍କ ମନକୁ ଏହି ପ୍ରବଚନ ବହୁଭାବେ ପ୍ରଭାବିତ କରିଥିଲା । ପ୍ରତ୍ୟେକ ଚରିତ୍ର ବିଶ୍ଳେଷଣ କଲେ ଏହା ହିଁ ପ୍ରତିପାଦିତ ହୁଏ ।

ଭାରତୀୟ ସଂସ୍କୃତି ଉପରେ ଜ୍ୟୋତିଷ ଶାସ୍ତ୍ରର ଅତୁଟ ପ୍ରଭାବ ପରିଲକ୍ଷିତ ହୁଏ । ପ୍ରାୟ ପ୍ରତ୍ୟେକ ପ୍ରାଚୀନ ଶାସ୍ତ୍ରକାର ସେଥିପାଇଁ ଜନ୍ମକାଳରେ ଗ୍ରହ, ନକ୍ଷତ୍ରର ଉଲ୍ଲେଖ, କାଳବେଳର ନିର୍ଦ୍ଦେଶ କରିଥାନ୍ତି । ସଂସ୍କୃତ ମହାଭାରତ ପରି ସାରଳାଦାସ ମଧ୍ଯ ଜନ୍ମ କାଳର ମୁହୂର୍ତ୍ତ ଗଣନା କରିବାପାଇଁ କୁଣ୍ଠାବୋଧ କରି ନାହାନ୍ତି । ପ୍ରତ୍ୟେକ ସନ୍ତାନର ଭବିଷ୍ୟତ ଏହି କାଳବେଳ ଗଣନାରୁ ଜାଣିହୁଏ । ଯୁଧିଷ୍ଠିରଙ୍କ ଜନ୍ମ ପରେ ନିଜେ ବୃହସ୍ପତି ବ୍ରାହ୍ମଣ ବେଶରେ ହାତରେ ଯପତାଙ୍କ ପୋଥି ଧରି ଶତଶୃଙ୍ଗ ପର୍ବତରେ ଉପସ୍ଥିତ ହେଲେ । ସେ ଶିଶୁକୁ ଦେଖି କହିଲେ, ''ମାହେନ୍ଦ୍ର ଯୋଗ ଘେନିଣ ସେ ଉପୁଜି ନନ୍ଦନ'' ।

ଧୃତରାଷ୍ଟ୍ରଙ୍କ ସହ ଆସିଥିବା ଋଷିମାନେ ଯୁଧିଷ୍ଠିରଙ୍କୁ କଲ୍ୟାଣ କରି କହିଲେ-

ଧର୍ମ ବର୍ଦ୍ଧିତ ହୋଉରେ ତୋହୋର ଯୁଝେଷ୍ଠି
ସ୍ୱର୍ଗରେ ବସୁ ଦିଗପାଳ ମେଳେ ଯେହି ଦେହ ଗୋଟି ।

(ପୃଷ୍ଠା-୨୧୬)

ଯୁଧିଷ୍ଠିରଙ୍କ ବାଲ୍ୟକାଳରେ ବ୍ୟବହାରରେ ମଧ ତାଙ୍କ ଭବିଷ୍ୟତ ଜୀବନର ସ୍ପଷ୍ଟ ସୂଚନା ମିଳେ । ସାତବର୍ଷ ବେଳର ଘଟଣା ସବୁ ବର୍ଣ୍ଣନାକରି ସାରଳାଦାସ ଲେଖିଛନ୍ତି-

ସାତ ବରଷ ଯେ ହୋଇଲେ ଧର୍ମସୁତ
ଚାଲନ୍ତେଣ ଚରଣ ନ ବାଜଇ ଭୂମ୍ୟିତ ।

କେବଳ ସେତିକି ନୁହେଁ, ସେ କାମୁଡୁଥିବା ମଶାକୁ ନ ମାରି ଉଡାଇ ଦେଉଥିଲେ । ଲିମ୍ବ ଗଛରୁ ତଳେ ପଡି ଅଚେତ ହୋଇଯାଇଥିବା ଝିଟିପିଟିକୁ କାନ ଫୁଙ୍କି ବଞ୍ଚାଇବାକୁ ଚେଷ୍ଟା କରୁଥିଲେ । ଏ ସବୁ ଦେଖି କ୍ଷତ୍ରୀୟ କନ୍ୟା କୁନ୍ତୀଙ୍କ ମନରେ ଦୁଃଖ ହେବା ସ୍ୱାଭାବିକ । ସେଥିପାଇଁ ସେ କହିଛନ୍ତି -

ଅତିହିଂ ଧର୍ମ ପଣେ କି ରହଇ ଛତ୍ରୀପଣ
ଦୁଃଖ ପଡି ଉପୁଜାଇଲି ନୋହିଲା କାରଣ । (ପୃଷ୍ଠା-୨୩୨)

ଯୁଧିଷ୍ଠିରଙ୍କ ବାଲ୍ୟଜୀବନ ବର୍ଣ୍ଣନା କଲାବେଳେ ସାରଳା ଦାସଙ୍କ ଉପରେ ସଂସ୍କୃତ ମହାଭାରତର ପ୍ରଭାବ ଅତି ସ୍ପଷ୍ଟ । ସଂସ୍କୃତ ମହାଭାରତ ଉଦ୍ୟୋଗ ପର୍ବ (୧୬୧) ରେ ଯୁଧିଷ୍ଠିର ଦୁର୍ଯ୍ୟୋଧନ ଦୂତ ଉଲୁକକୁ କହିଥିଲେ, ଗୋଟିଏ ପିମ୍ପୁଡିକୁ ମଧ ଆଘାତ କରିବାକୁ ସେ ଚାହାନ୍ତି ନାହିଁ ।

ବାଲ୍ୟକାଳର ଏହି ପ୍ରକୃତି ପରବର୍ତ୍ତୀ ଜୀବନରେ ପରିବର୍ତ୍ତିତ ହେବା ସ୍ୱାଭାବିକ । ଏହା ହେଉଛି ମଣିଷର ସ୍ୱାଭାବିକ ଧର୍ମ । ସଂଘର୍ଷମୟ ଜୀବନରେ ମନୁଷ୍ୟ ବେଳେ ବେଳେ ନିଜର ଆଦର୍ଶ ପଥରୁ ବିଚ୍ୟୁତ ହୋଇଯାଏ । ଯୁଧିଷ୍ଠିରଙ୍କ ଜୀବନରେ ବହୁ ଘଟଣା ଏହାର ପ୍ରମାଣ । ଦୁର୍ଯୋଧନଙ୍କ ଦ୍ୱାରା ବାରମ୍ବାର ଅପମାନିତ ହୋଇ ସେ ସମୟେ ସମୟେ କ୍ରୋଧ ପରବଶ ହୋଇଛନ୍ତି । କୂଟକ୍ରୀ କୃଷ୍ଣଙ୍କ କୁମନ୍ତ୍ରଣାରେ ମିଛ କହିଛନ୍ତି । ଶପଥ ପାଳନ ପାଇଁ ଅଜ୍ଞାତ ବାସ କାଳରେ କପଟ ରୂପ ଧାରଣ କରିଛନ୍ତି । ସଂସାରରେ ମଣିଷ ହୋଇ ବଞ୍ଚିବାକୁ ହେଲେ ଏ ସବୁ ସ୍ୱାଭାବିକ । ଏଥିରେ ବିସ୍ମିତ ହେବାର କାରଣ ନାହିଁ । ଏହାଦ୍ୱାରା ଯୁଧିଷ୍ଠିରଙ୍କ ମୂଳ ପ୍ରକୃତି ପରିବର୍ତ୍ତନ ହୋଇନାହିଁ । ସେ ଧର୍ମରକ୍ଷାକୁ ଜୀବନର ଶ୍ରେଷ୍ଠ ବ୍ରତ ରୂପେ ଗ୍ରହଣ କରିଛନ୍ତି ।

**୪. ଭୀମ :**

ଭୀମ ଚରିତ୍ର ସାରଳାଦାସଙ୍କ ଅପୂର୍ବ ସୃଷ୍ଟି । ନିଜ ପରିକଳ୍ପନାକୁ ଅନେକ ଭାବେ ମୂର୍ତ୍ତିବନ୍ତ କରି ପ୍ରକାଶ କରିବା ପାଇଁ ସେ ଏଥିରେ ବହୁତତ୍ତ୍ୱ ଦେଖିଛନ୍ତି । ଭୀମଙ୍କ ଚରିତ୍ରର ବୈଶିଷ୍ଟ୍ୟ ହେଉଛି ତାଙ୍କର ପରାକ୍ରମ । ତାଙ୍କ ଜନ୍ମ କାଳରୁ ହିଁ ଏହା ପ୍ରକାଶ ପାଇଥିଲା । ସଂସ୍କୃତ ମହାଭାରତରେ ଏହାର ସୂଚନା ଦେଇ ଲେଖିଛନ୍ତି-

ପତତା ତେନ ଶତଧା ଶିଳା ଗାତ୍ରୈର୍ବିଚୂର୍ଣ୍ଣିତା
ତାଂଶିଳାଂ ଚୂର୍ଣ୍ଣିଣଂ ଦୃଷ୍ଟ୍ୱା ପାଣ୍ଡୁର୍ବିସ୍ମୟ ମାଗତଃ । ୨୦ ।

କୁନ୍ତୀ ଯେତେବେଳେ ବ୍ୟାଘ୍ରର ଗର୍ଜନ ଶୁଣି ଭୟଭୀତା ହୋଇ ଠିଆ ହୋଇଗଲେ, ତାଙ୍କ କୋଳର ସୁପ୍ତ ଶିଶୁ ତଳେ ଗୋଟିଏ ପଥର ଉପରେ ପଡିଯାଇ ଏହାକୁ ଶତଖଣ୍ଡରେ ଚୂର୍ଣ୍ଣ କରିଥିଲା ।

ସାରଳାଦାସ ସଂସ୍କୃତର ଏହି ସୂଚନାକୁ ନିଜ କଳ୍ପନା ବଳରେ ବହୁ ରୂପେ ଚିତ୍ରିତ କଲେ । କେବଳ ସେ ପଥର ଖଣ୍ଡକୁ ଶତ ଭାଗରେ ଚୂର୍ଣ୍ଣ କରିଥିଲେ ତାହା ନୁହେଁ, ଚାରିଗୁଣ ପରିମିତ ବିଶିଷ୍ଟ ଶତଶୃଙ୍ଗ ପର୍ବତ ଥରହର ହୋଇ କମ୍ପିବାକୁ ଲାଗିଲା । ସେତିକି ନୁହେଁ ସମସ୍ତ ବିଶ୍ୱ ତାଙ୍କ ଜନ୍ମରେ ଥରିବାକୁ ଆରମ୍ଭ କଲେ । ଭୀମ ବଡ ହେବା କ୍ଷଣି ତାଙ୍କର ଦୌରାତ୍ମ୍ୟ ବିଭିନ୍ନ ଦିଗରେ ପ୍ରକାଶ ପାଇଥିଲା । କୁନ୍ତୀ, ମାଦ୍ରୀ ଓ ପାଣ୍ଡୁଙ୍କ ପାଇଁ ରନ୍ଧା ଯାଉଥିବା ସମସ୍ତ ଖାଦ୍ୟକୁ ସେ ଲୁକ୍କାୟିତ ଭାବେ ଭକ୍ଷଣ କରୁଥିଲେ । ପାଣ୍ଡୁ ଏ କଥା ଜାଣି ତାଙ୍କୁ ଦଣ୍ଡ ଦେବାପାଇଁ ଯିବାବେଳେ ସେ ଏପରି ଭାବେ ପଳାୟନ କଲେ ଯେ ତାଙ୍କ ପଦାଘାତରେ ପଥ ମଧ୍ୟରେ ଥିବା ବହୁ ଅରଣ୍ୟ ଓ ପର୍ବତ ଧୂଳିସାତ୍ ହୋଇଯାଇଥିଲା । ଶେଷରେ ଭୀମଙ୍କୁ ରକ୍ଷା କରିବା ପାଇଁ ନିଜେ ଅଗ୍ନି ଦେବତା ବ୍ରାହ୍ମଣ ରୂପେ ଆବିର୍ଭୂତ ହୋଇ ପାଣ୍ଡୁଙ୍କୁ ସାନ୍ତ୍ୱନା ଦେବା ସଙ୍ଗେ ସଙ୍ଗେ ଭୀମଙ୍କୁ ତିନୋଟି ବର ପ୍ରଦାନ କଲେ ।

ଭୋଜନେ ଅତ୍ରିପୂତି ହୋଉ ତୋହର ବଳା
ସଂଗ୍ରାମେ ଯୁଝି ଯମ ତେଜ ଅନର୍ଗଳା ।
ଶୃଙ୍ଗାରେ ଅତ୍ରିପୂତି ହୁଅସିରେ ଭୀମ
ବ୍ରିକୋଦର ମୁରତିକି ତୋର କେହି ନୋହିବେ ସମ । (ପୃଷ୍ଠା-୨୫୨)

ଅଗ୍ନିଙ୍କ ପ୍ରସନ୍ନତାରୁ ଭୀମଙ୍କ ଚରିତ୍ରରେ ଯେଉଁ ତିନୋଟି ଗୁଣ ସନ୍ନିବେଶିତ ହେଲା, ସାରଳାଦାସ ଏହାକୁ ତାଙ୍କ ପରବର୍ତ୍ତୀ ଜୀବନରେ ବାରମ୍ବାର ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି ।

ଭୀମଙ୍କ ଚରିତ୍ରରେ ଥିବା ତିନୋଟି ଗୁଣ କେବଳ ଭୀମଙ୍କ ଚରିତ୍ରର ବୈଶିଷ୍ଟ୍ୟ ନୁହେଁ; ଏହା ମାନବ ଜାତିର ସ୍ୱାଭାବିକ ଗୁଣ । ଶୃଙ୍ଗାର ଓ ଭୋଜନ ଏହି ଦୁଇଟି ଗୁଣ ବିଷୟରେ ଯେତେ କମ୍ କୁହାଯାଏ , ସେତେ ଭଲ । ଏହା ଯେ କେବେ ତୃପ୍ତ ହୁଏ ନାହିଁ, ଏହା ସମସ୍ତେ

ସ୍ୱୀକାର କରିବେ । ଭୀମ ଅଲୌକିକ ଶକ୍ତି ସମ୍ପନ୍ନ ପୁରୁଷ ରୂପେ ଅବତୀର୍ଣ୍ଣ ହୋଇଥିବାରୁ ଏହା ତାଙ୍କ ଜୀବନରେ ବହୁଗୁଣିତ ହୋଇ ପ୍ରକାଶ ଲାଭ କରିଥିଲା । ବାକି ରହିଲା ସଂଗ୍ରାମ କଥା । ଭୀମଙ୍କ ପରି ମଲ୍ଲଯୁଦ୍ଧରେ ସମସ୍ତେ ଯେ ପାରଦର୍ଶୀ ହେବେ ଏବଂ ଏଥିରେ ତୃପ୍ତ ହେବେ ନାହିଁ, ଏହା କହିବା କଷ୍ଟ । କିନ୍ତୁ ଜୀବନ ସଂଗ୍ରାମ ଯେ ମନୁଷ୍ୟର ଚିର ସହଚର ଏହା ମନା କରି ହୁଏ ନାହିଁ । ସଂଗ୍ରାମ ବିନା ମନୁଷ୍ୟ ଜୀବନ ଧାରଣ କଷ୍ଟକର । ସାରଳା ଦାସ ସେଥିପାଇଁ ତାଙ୍କ ମହାଭାରତ କଥାର ଆଦର୍ଶ ଓ ଶ୍ରେଷ୍ଠ ଚରିତ୍ର ଭୀମଙ୍କ ଠାରେ ଏହି ତିନି ଗୁଣରେ ସମାବେଶ କରିଛନ୍ତି । ମନୁଷ୍ୟ ଜୀବନକୁ ବିଶ୍ଳେଷଣ କରିବାରେ ସାରଳା ଦାସଙ୍କ କୃତିତ୍ୱର ଭୀମ ଚରିତ୍ର ଜୀବନ୍ତ ଦୃଷ୍ଟାନ୍ତ ।

**୫. ଅର୍ଜୁନ :**

ଭୀମଙ୍କ ପରି ଦେବରାଜ ଇନ୍ଦ୍ରଙ୍କ ଔରସରୁ ଜାତ ଅର୍ଜୁନ ମହାଭାରତର ଅନ୍ୟତମ ପରାକ୍ରମଶାଳୀ ଯୋଦ୍ଧା । ସାରଳାଦାସଙ୍କ ଭାଷାରେ ସେ ଦ୍ୱାପର ଯୁଗର ଭାରୋଇ ମଲ୍ଲ । ଭୀମ ଗଦା ଯୁଦ୍ଧରେ ନିପୁଣତା ଲାଭ କରିବା ପରି ଅର୍ଜୁନ ଧନୁର୍ବିଦ୍ୟାରେ ଅଜେୟ ଥିଲେ । ହାତରେ ଗାଣ୍ଡୀବ ଧନୁ ଥିବା ପର୍ଯ୍ୟନ୍ତ  ସେ ଇନ୍ଦ୍ର ରୁଦ୍ର ପ୍ରଭୃତି ଦେବତାଙ୍କୁ ମଧ୍ୟ ଅକ୍ଳେଶରେ ପରାସ୍ତ କରି ପାରୁଥିଲେ । ସାରଳା ଦାସ ବା ଅର୍ଜୁନଙ୍କ ବୀରତ୍ୱକୁ **ମହାଭାରତ**ରେ ବହୁଭାବେ ପ୍ରକାଶ କରିଥିଲେ ହେଁ ତାଙ୍କ ମତରେ ଅର୍ଜୁନଙ୍କର ପ୍ରକୃତ ମହତ୍ୱ ହେଉଛି ଯେ ସେ କୃଷ୍ଣଙ୍କ ସଖା । ସେଥିପାଇଁ ତାଙ୍କ ବାଲ୍ୟଜୀବନ ବର୍ଣ୍ଣନା କଲାବେଳେ ସେ କୃଷ୍ଣ ସଖା ଅର୍ଜୁନକୁ ହିଁ ମହତ୍ୱ ପ୍ରଦାନ କରିଛନ୍ତି ।

ସଂସ୍କୃତ ମହାଭାରତରେ ଶ୍ରୀକୃଷ୍ଣଙ୍କର ପ୍ରଥମ ଆବିର୍ଭାବ ହୁଏ ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରେ । ଲକ୍ଷ୍ୟଭେଦ ପୂର୍ବରୁ ଅର୍ଜୁନ କାହିଁକି ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ ତାହାର କୌଣସି ଯୁକ୍ତି ସଙ୍ଗତ କାରଣ ଅନ୍ତତଃ କଥା ଦୃଷ୍ଟିରୁ ମହାଭାରତରେ ଦେଖିବାକୁ ମିଳେନାହିଁ । ଶ୍ରୀକୃଷ୍ଣଙ୍କର ଭୂମିକା ଏଠାରେ ଅତି ସାମାନ୍ୟ । ସେ ଆସିବା ମାତ୍ରେ ପାଣ୍ଡବ ମାନଙ୍କୁ ଚିହ୍ନି ପାରିଥିଲେ । ମଧ୍ୟସ୍ଥ ହୋଇ ଭୀମ, ଅର୍ଜୁନ ଓ ଅନ୍ୟାନ୍ୟ ରାଜାମାନଙ୍କ ମଧ୍ୟରେ ଲାଗିଥିବା ଯୁଦ୍ଧର ମୀମାଂସା କରିବା ପରେ କୁନ୍ତୀ ଓ ଯୁଧିଷ୍ଠିରଙ୍କୁ ଅଭିବାଦନ କରି ବଳରାମଙ୍କ ସହ ଫେରିଗଲେ । ଏହାପରେ ଅର୍ଜୁନ ଓ ତାଙ୍କର ସାକ୍ଷାତ ହୁଏ ପ୍ରଭାସ କ୍ଷେତ୍ରରେ । ଏହିଠାରେ ହିଁ ସଂସ୍କୃତ ମହାଭାରତକାର ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର ପ୍ରିୟ ସଖାଭାବେ ବର୍ଣ୍ଣନା କରିଛନ୍ତି । ଅର୍ଜୁନ କିପରି, କେଉଁଭାବେ ଓ କେଉଁଠାରେ ଅର୍ଜୁନଙ୍କ ସହ ବନ୍ଧୁତା ପ୍ରତିଷ୍ଠା କଲେ ଏହାର କୌଣସି ଉତ୍ତର ମହାଭାରତରେ ମିଳେ ନାହିଁ । ସମାଲୋଚକ ବୁଦ୍ଧଦେବ ବସୁଙ୍କ ପରି କବି ସାରଳା ଦାସଙ୍କ ମନରେ ଏହି ପ୍ରଶ୍ନ ଉଦୟ ହୋଇଥିବା ସ୍ୱାଭାବିକ । ସେଥିପାଇଁ ଅର୍ଜୁନ-ଜନ୍ମର ଅବ୍ୟବହିତ ପରେ ଶ୍ରୀକୃଷ୍ଣଙ୍କୁ ଶତଶୃଙ୍ଗ ପର୍ବତରେ  ଉପସ୍ଥିତ କରାଇବା ପାଇଁ ସଂସ୍କୃତ ମହାଭାରତରେ ନଥିବା ଏକ ନୂଆ ଗଳ୍ପର ସୃଷ୍ଟି କଲେ । ଶ୍ରୀକୃଷ୍ଣ ଏଠାରେ ପହଞ୍ଚି କୁନ୍ତୀଙ୍କୁ ଜନନୀ ଓ ଯୁଧିଷ୍ଠିରଙ୍କୁ ଜ୍ୟେଷ୍ଠଭ୍ରାତାର

ସମ୍ମାନ ପ୍ରଦାନ କଲେ । ଭୀମଙ୍କ ବିଷୟରେ ସମ୍ପୂର୍ଣ୍ଣ ନୀରବ ରହି ଅର୍ଜୁନଙ୍କୁ ସଖା ଭାବେ ଗ୍ରହଣ କରି କହିଲେ -

ଅନେକ ସାନନ୍ଦ ସେ ହୋଇଲେ ଦେଖିଣ ଅର୍ଜୁନଙ୍କୁ
ହୃଦରେ ଲଗାଇ ବୋଇଲେ ମୋହର ଯେହି ସେ କଳା ବୁକୁ ।

(ପୃଷ୍ଠା-୨୬୭)

ବହୁ ଅଳଙ୍କାର ଓ ଆଭରଣ ସେ ମଣ୍ଡିତ କରି ଅର୍ଜୁନଙ୍କୁ ଦ୍ୱିତୀକୃଷ୍ଣ ଭାବେ ସମ୍ବୋଧନ କଲେ । ଯେତେବେଳେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୋଳାଗ୍ରତ କଲେ ସେତେବେଳେ ସ୍ୱରୂପ ବାରଣ ନୋହିଲା 'ଦୁହିଁଙ୍କର ଯେକ ମୂର୍ତ୍ତି' ଦୁହେଁ ଶତଶୃଙ୍ଗ ପର୍ବତର ମହା ଅରଣ୍ୟରେ ପ୍ରବେଶ କରି ବିଭିନ୍ନ ଭାବେ କ୍ରୀଡା କରିବାକୁ ଲାଗିଲେ । ଏହିପରି ହସ ରସ, ଖେଳ ଓ ରଙ୍ଗରସେ କ୍ରୀଡା କରୁଥିବା ବେଳେ ବ୍ୟାସ ଆସି ପହଞ୍ଚିଲେ । କୃଷ୍ଣ ଅର୍ଜୁନଙ୍କ ପ୍ରୀତି ଦେଖି ତାଙ୍କ ମନରେ ସ୍ୱତଃ ଏକ ପ୍ରଶ୍ନ ଉତ୍‌ଥିତ ହୋଇଥିଲା । ସେ ସେଥିପାଇଁ ପ୍ରଶ୍ନ କଲେ,

ଯେତେଦୂରେ ଥାଇଂ ତୁମ୍ଭର କେମନ୍ତ ଯେତେକ ପୀରତି
ମନୁଷ୍ୟ ଦେଖିଣ ନାରାୟଣ କେମନ୍ତେ ଧୀର ମତି (ପୃଷ୍ଠା-୨୬୮)

ଏହି ପ୍ରଶ୍ନର ଉତ୍ତରରେ ନାରାୟଣ ଓରଫ କୃଷ୍ଣ ଯାହା କହିଲେ ତାହାର ସାରମର୍ମ ହେଲା - ଅର୍ଜୁନଙ୍କ ସହ ମୋର ପ୍ରୀତି ଭାବ ଓ ସଖାତ୍ୱ କେବଳ ଏ ଯୁଗର ନୁହେଁ ପ୍ରତି ଯୁଗରେ ହିଁ ହୋଇଥାଏ । ସାରଳା ଦାସଙ୍କ ବର୍ଣ୍ଣନା କ୍ରମକୁ ଅନୁସରଣ କରି, ନିମ୍ନରେ ଯୁଗ ଅବତାରର ଏକ ତାଲିକା ପ୍ରଦାନ କରାଯାଇଛି ।

| ଯୁଗ | ନାରାୟଣ | ଅର୍ଜୁନ |
|---|---|---|
| ଦୀପିତ ସତ୍ୟଯୁଗ | ନାରାୟଣ | ବ୍ରାହ୍ମଣ ଦାମୋଦର |
| ଶୁକ୍ଳାମ୍ବର ସତ୍ୟଯୁଗ | ଅଣାକାର ବିଷ୍ଣୁ | ଜୟବିଜୟ |
| ଭବାନୀ ସତ୍ୟଯୁଗ | ନୀଳାମ୍ବର | ରୁଦ୍ର |
| ବିଶ୍ବନାଥ | ସନକ | ନାମେ ବ୍ରହ୍ମା |
| ବିଧୁତ ସତ୍ୟଯୁଗ | ଅନନ୍ତ | ଇନ୍ଦ୍ର |
| ଅଭିନ୍ନ ସତ୍ୟଯୁଗ | ଅନନ୍ତ | ଇନ୍ଦ୍ର |
| ହରିମେଖଳା ସତ୍ୟଯୁଗ | ଗରୁଡ ନରାୟଣ | ଶ୍ରୀବତ୍ସ ବ୍ରାହ୍ମଣ |
| ହିରଣ୍ୟ ସତ୍ୟଯୁଗ | ନରସିଂହ | ପ୍ରହ୍ଲାଦ |
| - | ଶସ୍ତ | ପ୍ରଶସ୍ତ |

| | | |
|---|---|---|
| - | କେତୁ | ମଙ୍ଗଳା |
| ସତ୍ୟଯୁଗ | ପର୍ଶୁରାମ | ବଳରାମ |
| - | ରାମ | ଭ୍ରଥ |
| ଦ୍ୱାପର ଯୁଗ | କୃଷ୍ଣ | ପାର୍ଥ |

ଏହାପରେ କଥାର ଉପସଂହାର ଦେଇ କୃଷ୍ଣ କହିଛନ୍ତି ;

ଅନେକ ଅବତାର ଆମ୍ଭେ ହୋଇଅଛୁଂ ଯେହିମତେ
ତୁମ୍ଭେ ବ୍ୟାସେ ଆମ୍ଭନ୍ତ ଅନ୍ତର କର ଯେ କେମନ୍ତେ ।'' (ପୃଷ୍ଠା-୨୭୧)

ଏହି ଦୀର୍ଘ ଅବତାର ବର୍ଣ୍ଣନାରେ ମଧ୍ୟ ବ୍ୟାସଙ୍କ ପ୍ରଶ୍ନ ସମାଧିତ ହେଲାନାହିଁ । ସେ ଏହାର ପ୍ରକୃତ ପ୍ରମାଣ ଦେଖିବାକୁ ଚାହିଲେ ଓ ତାଙ୍କର ବିଶ୍ୱରୂପ ଅର୍ଜୁନକୁ ଦେଖାଇବାକୁ ଅନୁରୋଧ କଲେ । ବ୍ୟାସଙ୍କ ଅନୁରୋଧ ରକ୍ଷା କରି ଶ୍ରୀକୃଷ୍ଣ ଅର୍ଜୁନଙ୍କ ସମ୍ମୁଖରେ ବିଶ୍ୱରୂପ ଧାରଣ କଲେ । ଶ୍ରୀମଦ୍ ଭାଗବତର ବିଶ୍ୱରୂପ ପରି ଏଥିରେ ଶ୍ରୀକୃଷ୍ଣଙ୍କ ମୁଧୁନି ଗଗନ ମଣ୍ଡଳକୁ ସ୍ପର୍ଶ କଲା ଓ ଶରୀର ସମସ୍ତ ଆକାଶରେ ପରିବ୍ରାପ୍ତ ହେଲା । ଶ୍ରୀକୃଷ୍ଣଙ୍କର ଏହିରୂପ ଦେଖି ଅର୍ଜୁନ ଭୟଭୀତ ହୋଇଥିଲେ ହେଁ ଭାବ ଭକ୍ତିରେ କହିଲେ-

ଅର୍ଜୁନ ହସିଲା ବାଳୁତ ମତି ବୃଦ୍ଧ ପ୍ରାୟେ
ବୋଇଲା ଆବର ବଢ଼ିବୁନା ଯେତିକି ତୋର କାୟେ । (ପୃ-୨୭୨)

ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ପ୍ରୀତିପୂର୍ଣ୍ଣ ସମ୍ପର୍କ ଦେଖି ବ୍ୟାସ କେବଳ ଯେ ବିସ୍ମିତ ହେଲେ ତାହା ନୁହେଁ, ତାଙ୍କଠାରୁ ବଳି ଭକ୍ତଥିବା ଅନୁଭବ କଲେ

ବ୍ୟାସେ ବୋଇଲେ ମୋହର ତୋ ତହୁଂ ବାନ୍ଧବ ନାହିଂ ବୋଲି ଜାଣିଥିଲି
ଆଉ ଯେତେ ଜଣେ ଅଛି ବୋଲି ଯେବେ ସେ ପ୍ରତେ ଗଲି (ପୃଷ୍ଠା-୨୭୩)

ବାଲ୍ୟକାଳର ଏହି ପ୍ରସଙ୍ଗରେ ସାରଳା ଦାସ ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର ଏକ ସ୍ୱରୂପ, କଳା ବୁଢୁ, ଦୁତୀକୃଷ୍ଣ, ରଙ୍ଗରସକ୍ରୀଡାର ସାଥୀ, ସଖା, ପଞ୍ଚଭୂତ, ପ୍ରାଣହିତ, ମିତ୍ର ବଲ୍ଲଭ, ପ୍ରାଣବନ୍ଧୁ ଓ ଅଭିନାସା (ଛଡାଛଡି ନୋହୁଂ) ରୂପେ ଯେଉଁ ବର୍ଣ୍ଣନା କଲେ ତାହା ହିଁ ତାଙ୍କ ପରବର୍ତ୍ତୀ ଜୀବନରେ ବିକାଶ ଲାଭ କଲା  ଅର୍ଜୁନଙ୍କର ସମସ୍ତ କାର୍ଯ୍ୟକଳାପକୁ ଶ୍ରୀକୃଷ୍ଣ ହିଁ ନିୟନ୍ତିତ କରୁଥିଲେ ଏବଂ ଶେଷରେ ମହାଭାରତ ଯୁଦ୍ଧ କାଳରେ ଶ୍ରୀକୃଷ୍ଣ ହେଲେ ଅର୍ଜୁନଙ୍କର ସାରଥି ଅର୍ଥାତ୍ ତାଙ୍କ ଜୀବନ ରଥର ଚାଳକ ।

ପାଣ୍ଡୁଙ୍କ ମୃତ୍ୟୁପରେ କୁନ୍ତୀଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ବ୍ୟାସ ପଞ୍ଚଭ୍ରାତାଙ୍କ ବୈଶିଷ୍ଟ୍ୟ ସମ୍ବନ୍ଧରେ ସୂଚନା ଦେଇ କହିଛନ୍ତି -

ଯୁଝେଷ୍ଟି ବୋଡଲିଣ ତୋର ଯେବଣ ପୁତ୍ରଗୋଟି
ପ୍ରତକ୍ଷେ ଦେଖୁ ସିନା ନିରଞ୍ଜନ ଦେବତା ଅଟେ ସେଟି ।
ଭୀମ ଚରିତ୍ର ଗୋ ଅସଂଖ୍ୟ ଅଟଇ ମୋତେ
ଅର୍ଜୁନ ବୋଲି ସେ ନାରାୟଣଙ୍କ ପଞ୍ଚଭୂତେ ।
ନକୁଳ ବୋଲି ସେ ଯେବଣ ପୁତ୍ର ଅଟଇ ।
କୁମାର ମୁଖେ ତାକୁ ଆକାଶେ ପାଟ ଅଛଇ ।
ଯେ ବାଳୁତ ପୁଅ ଗୋଟିଏ ଯେହେନେକ ଲକ୍ଷଣ
ସ୍ତିରୀ ପ୍ରମଦାଗୋ ତୁମ୍ଭେ ତଥ୍ୟହିଂ ନ ଜାଣ ।

**୬. ଦୁର୍ଯ୍ୟୋଧନ ;**

ସଂସ୍କୃତ ମହାଭାରତରେ ଦୁର୍ଯ୍ୟୋଧନଙ୍କୁ କଳି ଅଂଶରେ ଜନ୍ମ, କ୍ଷୁଦ୍ରବୁଦ୍ଧି ସମ୍ପନ୍ନ ଏବଂ କୁରୁକୁଳକୁ କଳଙ୍କିତ କରିବା ପାଇଁ ଜନ୍ମ ଲାଭ କରିଥିବା ଏକ ମନ୍ୟୁମୟ ମହାଦ୍ରୁମ ରୂ... ବର୍ଣ୍ଣନା କରାଯାଇଛି । ସେ ଜନ୍ମ ଲାଭ କରିବା କ୍ଷଣି ସମସ୍ତ ବିଶ୍ୱରେ ଅମାଙ୍ଗଳିକ ଅପଶକୁନ ଦେଖାଯାଇଥିଲା ଆଦି (୧୧୪-୨୭-୨୭) ସେଥିପାଇଁ ବିଦୁର ତାଙ୍କୁ କୁଳ ସଂହାରକ ଆଖ୍ୟା ଦେଇ ପରିତ୍ୟାଗ କରିବା ପାଇଁ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଇଥିଲେ । ପାଣ୍ଡବମାନଙ୍କ ପ୍ରତି ଈର୍ଷା କରି ସେ ନିଜ କୁଳକୁ ଧ୍ୱଂସ କରିଥିଲେ ହେଁ ଯୁଦ୍ଧ କ୍ଷେତ୍ରରେ ସେ କୌଣସି କୁଟିଳତା ଅବଲମ୍ବନ କରି ନ ଥିଲେ । ଯୁଦ୍ଧରେ ମୃତ୍ୟୁଲାଭ କରି ସେ ଶେଷକୁ ସ୍ୱର୍ଗ ଲାଭ କଲେ ।

ସାରଳା ଦାସ ଦୁର୍ଯ୍ୟୋଧନଙ୍କ ଚରିତ୍ର ବର୍ଣ୍ଣନା କଲାବେଳେ ପ୍ରାୟ ସଂସ୍କୃତକୁ ଅନୁସରଣ କରି ତାଙ୍କୁ କଳି ଅଂଶେ ଜାତ ହୋଇଲା ଯେ ତୋହର ଜ୍ୟେଷ୍ଠପୁତ୍ରେ, ଦୁଷ୍ଟ ପ୍ରକୃତି ଅସଂଖ୍ୟ କଳହପ୍ରିୟ, କୁଳକ୍ଷୟାନ୍ତ, ମହାମାନୀ ଓ ମଧୁପିଙ୍ଗଳ ରୂପେ ବର୍ଣ୍ଣନା କରିଥିଲେ ହେଁ ତାଙ୍କ ସଦ୍‌ଗୁଣାବଳୀର ମଧ ଉଲ୍ଲେଖ କରିଛନ୍ତି । ସାରଳାଦାସଙ୍କ ମତରେ ଦୁର୍ଯ୍ୟୋଧନ ଚଉରାଶି ଲକ୍ଷଣ ଚଉଷଠି ଗୁଣବନ୍ତ ଥିଲେ । ତାଙ୍କର ବେନି କରତଳରେ ଶଙ୍ଖପଦ୍ମ ନିଧି, ଡାହାଣ କରରେ ଯବମତ୍ସ୍ୟ ଓ ପ୍ରତ୍ୟେକ ଆଙ୍ଗୁଳିରେ ଉଭୟ ପଦ୍ମ ଶୁଭ ଶକୁନ ରୂପେ ଶୋଭା ପାଉଥିଲା । ଦୁର୍ଯ୍ୟୋଧନଙ୍କ ଶୁଭ ଲକ୍ଷଣ ସବୁର ପ୍ରଶଂସା କରି ସାରଳାଦାସ ତାଙ୍କୁ ଜଗଜ୍ଜନ ମୋହନ, ପନ୍ନଗା ନାରାୟଣ, ପୃଥ୍ୱୀକିଧାରଣ (୧୯୭୮) । ଜମ୍ବୁ ଦ୍ୱୀପରେ ଏକଛତ୍ର ରାଜା ଓ ମାନଗୋବିନ୍ଦ କହିଛନ୍ତି ।

ଦୁର୍ଯ୍ୟୋଧନ ଦୈତ ଗୁଣ ବିଶିଷ୍ଟ ବ୍ୟକ୍ତି । ସେ ଶୁଭ ଲକ୍ଷଣ ଘେନି ଜାତ ହୋଇଥିଲେ ହେଁ ନିଜର ପ୍ରକୃତି ଦତ୍ତ ଗୁଣ ସବୁ ଅର୍ଥାତ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ପ୍ରଭୃତି ମନୁଷ୍ୟ... ଷଡରିପୁକୁ ଦମନ କରି ନ ପାରିବା ଫଳରେ ବଂଶ ନାଶର କାରଣ ହୋଇଥିଲେ ।



# ଦ୍ୱିତୀୟ ପରିଚ୍ଛେଦ

## ମୁଖବନ୍ଧ ୨

ସାରଳା ଦାସ ଚଣ୍ଡୀ ପୁରାଣରେ କହିଛନ୍ତି-

ସେ ଦେବୀ ପ୍ରସନ୍ନ ହୋଇଂ କହିଲେ ଆଦି ଗ୍ରନ୍ଥ

ପ୍ରଥମେ ରାମାୟଣ ଦୁତୀଏ ଭାରଥ । ପଦ-୧୦୧୩

ତୃତୀଏ ଲେଖନ ଶ୍ରୀ ଭାଗବତ

ମୂର୍ଖ ଅଗ୍ୟାଂନ ଯେ ମୁଁ ଅଟଇ ଅପଣ୍ଡିତ ପଦ-୧୦୧୪

କବିଙ୍କର ଏହି ଉକ୍ତି ବହୁ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ଏଥିରୁ କବିଙ୍କ ରଚନାବଳୀର ସମୟକ୍ରମ ସମ୍ବନ୍ଧରେ ଏକ ନିର୍ଦ୍ଦିଷ୍ଟ ସୂଚନା ମିଳିଥାଏ । ସଂସ୍କୃତ ଭାଷାରେ ମଧ୍ୟ ରାମାୟଣ, ମହାଭାରତ ଓ ଭାଗବତ ରଚନାକାଳର ଏହା ହିଁ କ୍ରମ ଥିଲା । ପୁଣି ସାରଳାଦାସ ବୋଧହୁଏ ଏହି କ୍ରମକୁ ମନରେ ରଖି ରାମାୟଣ, ମହାଭାରତ ଓ ଭାଗବତ  ରଚନା କରିଥିଲେ । ଫଳରେ ଏ ସବୁ ଓଡ଼ିଆ ଭାଷାର ଆଦିଗ୍ରନ୍ଥ ଭାବେ ପ୍ରସିଦ୍ଧି ଲାଭ କଲା ।

ସାରଳା ଦାସଙ୍କ ରାମାୟଣ କହିଲେ ଆଲୋଚକମାନେ ବହୁଦିନ ଧରି **ବିଲଙ୍କା ରାମାୟଣ** କୁ ହିଁ ଗ୍ରହଣ କରୁଥିଲେ । ଏ ଧାରଣା ଏବେ ବି ବଦଳି ନାହିଁ । ତେବେ ଭାଷା ଓ ପ୍ରସଙ୍ଗ ଦୃଷ୍ଟିରୁ ବିଚାର କଲେ **ବିଚିତ୍ର ରାମାୟଣ** ହିଁ **ମହାଭାରତ** ଓ **ଚଣ୍ଡୀ ପୁରାଣ**ର ଅତି ନିକଟବର୍ତ୍ତୀ । **ବିଲଙ୍କା ରାମାୟଣ**ରୁ କବିଙ୍କ ଅପୂର୍ବ ଭାଷା ଶୈଳୀର କୌଣସି ସଂକେତ ମିଳେ ନାହିଁ ।  କବିଙ୍କ ଉକ୍ତ ଭାରଥ ହେଉଛି, ଅଠର ଖଣ୍ଡର ସମ୍ପୂର୍ଣ୍ଣ 'ମହାଭାରତ' । କବିଙ୍କ ଭଣିତା ଥିବା 'ଭାଗବତ' ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । **ଚଣ୍ଡୀ ପୁରାଣ**କୁ ଦେବୀ ଭାଗବତ ଅର୍ଥାତ କବିଙ୍କ କଥିତ ଭାଗବତ ରୂପେ ଗ୍ରହଣ କରାଯାଇପାରେ ।

**ଚଣ୍ଡୀ ପୁରାଣ ହିଁ ଭାଗବତ - ବିଷ୍ଣୁଙ୍କ ପୁରାଣ**

କବିଙ୍କ ମତରେ ସ୍ୱୟଂ ଚଣ୍ଡୀ ହେଉଛନ୍ତି, ବିଷ୍ଣୁଙ୍କର ଅବତାର । ଗ୍ରନ୍ଥର ପ୍ରାରମ୍ଭ ଅଂଶରେ ହିଁ କବି ଦୁର୍ଗାଙ୍କର ଏହି ସ୍ୱରୂପ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ମୁନିହେ ଅନନ୍ତ କୋଟି ଅବତାର ହୋଇଲେ ନିଜେ ନାରାୟଣ
ଅନେକ ଦାନବ ସେ ଧ୍ୱଂସନ କରିଣ
ବଡ ଅପୂର୍ବ  କଥାଏ ମୁଂ ମନେ ସୁମରିଲି
ଅଦଭୁତ ଅବତାର ମୁଁ ଯେ ଦୁର୍ଗାରୂପ ବୋଇଲି ।

କବି ଏହାକୁ ଆହୁରି ସ୍ପଷ୍ଟ କରି କହିଛନ୍ତି -

ବିଷ୍ଣୁ ହୋଇଲା ସେ ସ୍ତିରୀ ଲିଙ୍ଗ ଅବତାର । -୩୪୬୯

ମହିଷାସୁରର ସନ୍ଦେହ ମୋଚନ କରିବା ପାଇଁ ଅନ୍ଧକ ମନ୍ତ୍ରୀ ମଧ କହିଛି -

ତୁ ଯେ ବୋଇଲୁ ହେ ଏ ନୁହେଂ ବିଷ୍ଣୁନାଥେ
ପ୍ରତକ୍ଷେ ଦେଖସି ହାଦେ ଶଙ୍ଖ ଚକ୍ର ଗଦା ଗାଣ୍ଡିମ ଧନୁ ହସ୍ତେ ।
-୩୮୨୯

ଚଣ୍ଡୀ ଓ ବିଷ୍ଣୁଙ୍କ ମଧରେ ଅଭେଦତ୍ୱ ପ୍ରତିଷ୍ଠା କଲାପରେ, ଚଣ୍ଡୀ କଥା ହୁଏ ବିଷ୍ଣୁ ଚରିତ ଭାଗବତ । ସେଥିପାଇଁ କବି **ଚଣ୍ଡୀ ପୁରାଣ**କୁ ବାରମ୍ବାର ଭାଗବତ, ବିଷ୍ଣୁ ପୁରାଣ ଓ ହରିବଂଶ ଆଖ୍ୟା ପ୍ରଦାନ କରିଛନ୍ତି ।

ଏଥୁ ଅନନ୍ତରେ ଶୁଣ ପରୀକ୍ଷ ରାଏ
ଶ୍ରୀ ଭାଗବତ ଶୁଣି ପାପ କର କ୍ଷଏ । -୧୦୧୬

ଭାଗବତ ହିଁ ବିଷ୍ଣୁ ପୁରାଣ ।

ଯେବଣ ଭାଗବତ ବିଷ୍ଣୁ ପୁରାଣ ପୋଥି
ବେଦ ଯାହା ଲିହିଲା ଯେ ନିର୍ଯାପି ।
ଅଷ୍ଟାଦଶ ପୁରାଣ ଯାହା ହାଦେ ବାଛି
ମୁହିଂ ତାହା ମନୁଷ୍ୟ ମାତ୍ରକେ ଲେଖନ କରୁଅଛି । -୫୮୭-୫୮୮
ଶ୍ରୀ ଭାଗବତ ସାର ଏ ଯେ ବିଷ୍ଣୁ ପୁରାଣେ
ସଂସାର ଜନଙ୍କୁ ମୁକତି ବାଟ ଯେଣେ । - ୨୦୯୮

ସେଥିପାଇଁ କବି ଏହାକୁ କେବଳ ବିଷ୍ଣୁପୁରାଣ ମଧ୍ୟ କହିଛନ୍ତି-

ଶୁକମୁନି କହିଲେ ସତ୍ୟ ଯୁଗର ଆଦି କଥା
ଶୁଣ ପରୀକ୍ଷ ବିଷ୍ଣୁ ପୁରାଣ ଆଦି ଯଥା । -୨୬୧୭
ଶୁଣ ହୋଇ ମହାରାଜା ବଦନ୍ତି ବ୍ରହ୍ମବେତ୍ତା
ତୁ ଯାହା ପୁଚ୍ଛା କଲୁ ବିଷ୍ଣୁ ପୁରାଣ କଥା । - ୨୨୮୦

ଅଗାଦ ସାଗର ବିଷ୍ଣୁ ପୁରାଣ ଯାହା ବୋଲି । -୧୨୮୦

ଏହା ପୁଣି ହରିବଂଶ -

ଏହା ମୋତେ ସଞ୍ଚପି କହିବା ବ୍ୟାସ ଦେବଙ୍କର ଶିଷ
ମନ ଭ୍ରାନ୍ତି ଫିଟୁ ଶୁଣିଣ ହରିବଂଶ । - ୨୬୧୪

ଅନ୍ୟ ସ୍ଥଳରେ ପୁଣି ସେହି କଥା ।

ହେ ପଣ୍ଡିତ ଜନେ ନ ଘେନିବା ମୋର ଦୋଷ
ଅଶ୍ୱମେଧ ଯାଗ୍ୟଂ ଏ ଶୁଣନ୍ତେ ହରିବଂଶ
ଇତି ହରିବଂଶ ଏ ଚଣ୍ଡୀ ପୁରାଣର କଥା
ସଂସାର ଜନ ହିତ କାରଣେ ମୁଂ ଅବଏ ବକତା ।        -୨୨୮୫-୮୬

କବି **ଚଣ୍ଡୀ ପୁରାଣ**କୁ 'ଶ୍ରୀ ଭାଗବତ' ରୂପ ପ୍ରଦାନ କରିବା ପାଇଁ ଚଣ୍ଡୀଙ୍କୁ ବିଷ୍ଣୁଙ୍କ ଅବତାର ପୁଣି **ଚଣ୍ଡୀ ପୁରାଣ**କୁ, 'ଭାଗବତ', 'ବିଷ୍ଣୁପୁରାଣ' ଓ 'ହରିବଂଶ' କହି ନିବୃତ୍ତ ହୋଇ ନାହାନ୍ତି, ସେ ଏଥିରେ ସଂସ୍କୃତ ଭାଗବତର ଷଡ଼ ସମ୍ବାଦ ମଧ୍ୟରୁ ମୁଖ୍ୟ ସମ୍ବାଦକୁ ଅର୍ଥାତ 'ଶୁକ ପରୀକ୍ଷ ସମ୍ବାଦକୁ' ବିଷୟବସ୍ତୁର ସଂଯୋଜନା ପାଇଁ ଗ୍ରହଣ କରିଛନ୍ତି । ଶୁକ ଓ ପରୀକ୍ଷ ଉଭୟେ ବିଷ୍ଣୁଭକ୍ତ ଭାବେ ଭାରତୀୟ ପରଂପରାରେ ପ୍ରସିଦ୍ଧ। **ଚଣ୍ଡୀ ପୁରାଣ**ର ବକ୍ତା ଓ ଶ୍ରୋତା ଭାବେ ସେମାନଙ୍କୁ ଗ୍ରହଣ କରିବା ମୂଳରେ **ଚଣ୍ଡୀ ପୁରାଣ**କୁ ଭାଗବତରେ ରୂପାନ୍ତରିତ କରିବା ହେଲା, ବୋଧହୁଏ କବିଙ୍କ ଉଦ୍ଦେଶ୍ୟ ।

କବି ଗ୍ରନ୍ଥର ଶ୍ରୋତା ପରୀକ୍ଷିତଙ୍କର ପରିଚୟ ଦେଇ ଲେଖିଛନ୍ତି-

ବିଷ ଘାତେ ଶରୀର ମହାଜାଳା
ନାରାୟଣ ଚିନ୍ତନ୍ତି ସେ ଅଭିମନ୍ୟୁ ବଳା ।
ନାରାୟଣ ସୁମରି ସେ କହିଲା ବିଷ୍ଣୁ ବାତ
ଶୁକମୁନି ଭେଟିଲେ ପରୀକ୍ଷ ଅଗ୍ରତ ।        -୩୨-୩୩

ବକ୍ତା ଶୁକମୁନି ମଧ୍ୟ 'ବେଦ ଶାହାସ୍ତ୍ରେ ନିର୍ଜିତ', ପୁଣି 'ମହାତ୍ମା' ଶ୍ରୋତାଙ୍କର ମଙ୍ଗଳ ପାଇଁ, ଶାସ୍ତ୍ର ଶ୍ରବଣର ମହିମା ଗାନ କରି ସେଥିପାଇଁ ସେ କହିଲେ -

ଶୁକମୁନି ବୋଇଲେ ହୋଇବ ତୋତେ କାରଣ
ଏକ ଲୟେ କରି ତୁ ବିଷ୍ଣୁ ପୁରାଣ ଶୁଣ
ପୁରାଣୁ ଜାତ ତୋ କରିବୁ ସନ୍ତତି
ବିଷ୍ଣୁ ଲୋକେ ବସିବୁ ଲଭିବୁ ସଦଗତି ।        -୩୮-୩୯

ଅନ୍ୟ ସ୍ଥଳରେ ମଧ୍ୟ **ଚଣ୍ଡୀ ପୁରାଣ** ଶ୍ରବଣ କଲେ ବିଷ୍ଣୁଲୋକ ପ୍ରାପ୍ତି ହେଉଥିବା ବିଶ୍ୱାସ ଉପରେ କବି ଗୁରୁତ୍ୱ ପ୍ରଦାନ କରି କହିଛନ୍ତି -

ପରୀକ୍ଷ ପୁଛାକଲେ ସେ ଶୁକ ମୁନିଙ୍କର ପାଶେ
ଲଭିବି ବିଷ୍ଣୁ ଭୁବନ ତୁମ୍ଭ ପାଦ ରଜ ଆଦେଶେ ।        - ୬୪

**ଚଣ୍ଡୀ ପୁରାଣ**କୁ ଶ୍ରୀ ଭାଗବତ କହିବା ଓ ଚଣ୍ଡୀଙ୍କୁ ବିଷ୍ଣୁ ବା ନାରାୟଣଙ୍କ ଅବତାର କହିବା ମୂଳରେ କବିଙ୍କ ଉଦାର ଦୃଷ୍ଟି କୋଣ ହିଁ ପ୍ରତିଭାତ ହୋଇଥାଏ । ନିଜକୁ 'ସାରଳା ଦେବୀଙ୍କ

ସୁତ' କହୁଥିବା କବି ନିଜ ଆରାଧ୍ୟ ଦେବୀଙ୍କୁ ବିଷ୍ଣୁଙ୍କ ଅବତାର କହିବାରେ ଆପାତତଃ ଅସଙ୍ଗତି ଥିବା ଜଣାପଡୁଥିଲେ ହେଁ, ଏହା ଥିଲା ଭାରତୀୟ ସଂସ୍କୃତିର ମୂଳ ସ୍ୱରୂପ । କବି ସଂକୀର୍ଣ୍ଣମନା ସାଧାରଣ ବୈଷ୍ଣବମାନଙ୍କ ପରି କେବଳ ନିଜ ଆରାଧ୍ୟ ଦେବତାଙ୍କୁ ଆରାଧନା କରିବାରେ ପକ୍ଷପାତୀ ନ ଥିଲେ । ସେଥିପାଇଁ ସେ କେବେହେଲେ,

ବାସୁଦେବଂ ପରିତ୍ୟଜ୍ୟ ଯୋଽନ୍ୟଦେବ ମୁପାସତେ ।
ତୃଷିତୋ ଜାହ୍ନବୀ ତୀରେ କୂପଂ ଖନତି ଦୁର୍ମତିଃ ।

ପରି ଉକ୍ତି ପ୍ରକାଶ କରୁ ନ ଥିଲେ । ବରଂ ଅର୍ଜୁନ, ଗୋପୀ, ଗୋପାଳ, ଯାଦବ, ରୁକ୍ମିଣୀ, ସୀତାଙ୍କ ସଦୃଶ ପରମ ବୈଷ୍ଣବମାନେ ଯେପରି କେବଳ ବିଷ୍ଣୁଙ୍କୁ ପୂଜା ନକରି ଦୁର୍ଗାଙ୍କର ପୂଜା କରିଥିଲେ, ସେହିପରି କବି କେବଳ ଦୁର୍ଗାଙ୍କ ପୂଜା ନକରି ବିଷ୍ଣୁଙ୍କର ସାର୍ବଭୌମତ୍ୱକୁ ମଧ୍ୟ ଗ୍ରହଣ କରିଥିଲେ ।

ପ୍ରତ୍ୟେକ ଭକ୍ତର ପ୍ରଥମ ଓ ପ୍ରଧାନ କାର୍ଯ୍ୟ ହେଲା, ନିଜ ଆରାଧ୍ୟ ଦେବତାଙ୍କଠାରେ ଅନନ୍ୟ ଭକ୍ତି । ଭକ୍ତ ଦୃଷ୍ଟିରେ ଆରାଧ୍ୟ ଦେବତା ହିଁ ଏକମାତ୍ର ରକ୍ଷକ, ଏକମାତ୍ର ମାତା, ଏକମାତ୍ର ପିତା ଏକମାତ୍ର ବନ୍ଧୁ ଓ ଏକମାତ୍ର ସଖା ।ଏହାସତ୍ତ୍ୱେ ଅନ୍ୟ ଦେବତାଙ୍କର ନିନ୍ଦା ବା ବିରୋଧ ତାର ଅନନ୍ୟତାର ପରିଚାୟକ ନୁହେଁ । ଘଣ୍ଟାକର୍ଣ୍ଣଙ୍କ ପରି ଅନ୍ୟ ଦେବତାଙ୍କ ନାମ ନ ଶୁଣିବା ପାଇଁ କାନରେ ଘଣ୍ଟା ବାନ୍ଧିବା ମଧ୍ୟ ଠିକ୍ ନୁହେଁ । ସଂସାରରେ ଘର କରି ରହିବାକୁ ହେଲେ, ସବୁ ଲୋକଙ୍କ ସହ ମିଳିମିଶି ରହିବା ପରି, ସବୁ ଦେବତାଙ୍କୁ ସମ୍ମାନ କରିବା ଥିଲା ସାରଳା ଦାସଙ୍କ ଆଦର୍ଶ । ସେଥିପାଇଁ ସେ କେବଳ ଦୁର୍ଗା ବା ବିଷ୍ଣୁଙ୍କର ବନ୍ଦନା ନ କରି, ଗଣେଶ, ବ୍ରହ୍ମା, ଅଗ୍ନି ଓ ଶିବଙ୍କର ବନ୍ଦନା କରିଥିଲେ ।

ବୈଷ୍ଣବମାନେ ଦୁର୍ଗା ପୂଜା କରୁଥିବାର ବହୁ ଦୃଷ୍ଟାନ୍ତ ପୁରାଣ ସବୁରେ ଉପଲବ୍ଧ ହୋଇଥାଏ । 'ଗୀତା' (୧୦।୨।୧୦-୧୧)ରେ ପ୍ରଥମେ ଦୁର୍ଗା ନାମକୁ ସ୍ମରଣ କରାଯାଇଛି - 'ଦୁର୍ଗେତି ଭଦ୍ରକାଳୀ ତି ବିଜୟା ବୈଷ୍ଣତି ଚଂ' । ଶ୍ରୀମଦ ଭାଗବତରେ ଏକାଦଶ ସ୍କନ୍ଧରେ ଭଗବାନ ଶ୍ରୀକୃଷ୍ଣ ନିଜ ପୂଜାବିଧି ବିଷୟରେ କହିବାବେଳେ ପ୍ରଥମେ ଦୁର୍ଗା ନାମର ଉଚ୍ଚାରଣ କରିଥିଲେ - 'ଦୁର୍ଗା ବିନାୟଙ୍କ ବ୍ୟାୟାମ୍' । ପ୍ରସିଦ୍ଧ ବୈଷ୍ଣବ ତନ୍ତ୍ର 'ନାରଦ ପାଞ୍ଚ ରାତ୍ର'ରେ ମଧ୍ୟ ଦୁର୍ଗାଙ୍କ ମହିମା ପ୍ରଚାର କରିବା ପାଇଁ କୁହାଯାଇଛି । କେବଳ ପରାଶକ୍ତି ହିଁ କାନ୍ତ ଶ୍ରୀକୃଷ୍ଣଙ୍କୁ ଜାଣେ, କାରଣ ସେ ତାଙ୍କରି ରୂପା ସେହି ଦୁର୍ଗା ହି ପରମଶକ୍ତି, ମହାବିଷ୍ଣୁ ରୂପିଣୀ ଏବଂ ଯାହାଙ୍କୁ ଜାଣିପାରିଲେ ପରମାତ୍ମାଙ୍କର ପ୍ରାପ୍ତି ହୁଏ । ସେ ଏକମାତ୍ର ପ୍ରେମ ସର୍ବସ୍ୱ ସ୍ୱଭାବଯୁକ୍ତ କୁଳେଶ୍ୱରୀ । ତାଙ୍କ ଦ୍ୱାରା ଅଖିଳେଶ୍ୱର ଆଦିଦେବ ସୁଲଭ ହୋଇଥାନ୍ତି । ଅଖିଳେଶ୍ୱରୀ ମହାମାୟା ବି ତାଙ୍କରି ଶକ୍ତି । ସେ ପୁଣି ସମସ୍ତ ଜଗତ ଓ ଜୀବ ଲୋକଙ୍କୁ ମାୟା ପାଶରେ ବନ୍ଧନ କରିଥାନ୍ତି । 'ଗୌତମୀ ତନ୍ତ୍ର'ରେ ମଧ୍ୟ କୁହାଯାଇଛି, ''ଯଃ କୃଷ୍ଣଃ ସୈବ ଦୁର୍ଗାସ୍ୟାୟା ଦୁର୍ଗା କୃଷ୍ଣ ଏବ ସଃ'' । ତନ୍ତ୍ରର ଏହି ଉକ୍ତିରେ କୃଷ୍ଣ ଓ ଦୁର୍ଗାଙ୍କ ଅଭେଦତ୍ୱ

ପ୍ରତିପାଦିତ ହେବା ପରି ସାରଳା ଦାସ ବିଷ୍ଣୁ ଓ ଦୁର୍ଗାଙ୍କ ଅଭିନ୍ନତାରେ ବିଶ୍ୱାସ ରଖିଥିଲେ । ହିନ୍ଦୁଧର୍ମର ମହାନ ଗ୍ରନ୍ଥ ଶ୍ରୀମଦ୍ ଭାଗବଦ୍ ଗୀତାରେ ଉପାସନାର ଏହି ଉଦାରବାଦୀ ଦୃଷ୍ଟିକୋଣ ପ୍ରଚାରିତ ହୋଇଥିଲା । ସେଥିରେ କୁହାଯାଇଛି -

ପିତାହମସ୍ୟ ଜଗତୋ ମାତା ଧାତା ପିତାମହଃ ।
ବେଦ୍ୟଂ ପବିତ୍ରମୋଂକାର ଋକ୍‌ସାମ ଯଜୁରେବ ଚ ।

ଅର୍ଥାତ ମୁଁ ହେଉଛି, ଏହି ଜଗତର ଧାତା, ଧାରଣ ପୋଷଣ କର୍ତ୍ତା ଏବଂ କର୍ମ ଫଳ ଦାତା ତଥା ପିତା, ମାତା ଓ ପିତାମହ । ମୁଁ ହେଉଛି ପବିତ୍ର ଓଁକାର, ଋଗ୍‌ବେଦ ଓ ଯଜୁର୍ବେଦ । ସର୍ବବ୍ୟାପୀ ଭଗବାନ ନିଜକୁ ପିତା, ମାତା ଏବଂ ସ୍ୱାମୀ ରୂପରେ ଆସୀନ କରିଥିବା ହେତୁ, ସାଧକ ଭଗବାନଙ୍କ ଯେ କୌଣସି ରୂପରେ ଉପାସନା କରିବାରେ ବାଧା ନାହିଁ, କିନ୍ତୁ ଉପାସନା ଭାବ ପୂର୍ଣ୍ଣ ହେବା ବିଧେୟ ।

**ସମ୍ବାଦ :**

ପୁରାଣରେ ସମ୍ବାଦ ଏକ ମହତ୍ତ୍ୱପୂର୍ଣ୍ଣ ଅଂଶ । ବକ୍ତା ଓ ଶ୍ରୋତାଙ୍କ କଥୋପକଥନ ମାଧ୍ୟମରେ ପୁରାଣର କାହାଣୀ ସବୁକୁ ଜନ-ସମୁଦାୟଙ୍କ ସମ୍ମୁଖରେ ପ୍ରଚାର କରିବା ହେଉଛି, ଏହାର ଲକ୍ଷ୍ୟ । ଶ୍ରୋତାମାନଙ୍କର ଇହଲୋକରେ ମଙ୍ଗଳ ବିଧାନ, ପରଲୋକରେ ମୁକ୍ତି, ଜୀବନ ତଥା ଗ୍ରନ୍ଥସ୍ଥିତ ବିଭିନ୍ନ କାହାଣୀ ସଂପର୍କିତ ସଂଶୟର ନିରାକରଣ ଏବଂ କାହାଣୀ ଶୁଣିବାର ଆଗ୍ରହ ପ୍ରଭୃତି ପ୍ରବୃତ୍ତିକୁ ଦୃଷ୍ଟିରେ ରଖି ବକ୍ତା ଲୋକ ଶିକ୍ଷା ମୂଳକ ବହୁ କାହାଣୀର ଅବତାରଣା କରିଛନ୍ତି । କିନ୍ତୁ ସବୁଥିରେ କୌଣସି ଦେବୀ ବା ଦେବତା କଥା ମୂଳ ସ୍ରୋତ ଭାବେ ଗୃହୀତ ।

ସାରଳା ଦାସଙ୍କ **ଚଣ୍ଡୀ ପୁରାଣ**ରେ ମୁଖ୍ୟ ଦେବୀ ହେଲେ, ଦୁର୍ଗତି ତାରିଣୀ ଦୁର୍ଗା । ମହିଷାସୁର ବଧ ପାଇଁ ତାଙ୍କର ଆବିର୍ଭାବ । ସଂସ୍କୃତ 'ଦୁର୍ଗା ସପ୍ତଶତୀ' ଗ୍ରନ୍ଥରୁ ଏହାର ବିଷୟ ବସ୍ତୁ ଗୃହୀତ ହୋଇଥିଲେ ହେଁ, କବି ଏହାକୁ ଅଭିନବ ରୂପ ପ୍ରଦାନ କଲେ । କବି ସାରଳାଦାସଙ୍କ ମତରେ ଚଣ୍ଡୀ ବା ଦୁର୍ଗା ହେଉଛନ୍ତି, ବିଷ୍ଣୁଙ୍କ ଅନନ୍ତ କୋଟି ଅବତାର ମଧ୍ୟରୁ ଅନ୍ୟତମ । ସେ ଏକ ଅପୂର୍ବ ଅବତାର । ତେଣୁ ସାଧାରଣରେ ମହିଷାସୁର ବଧ କଥାକୁ 'ଚଣ୍ଡୀ ପୁରାଣ' କୁହାଯାଉଥିଲେ ହେଁ କବିଙ୍କ ମତରେ ଏହା ହେଲା, 'ବିଷ୍ଣୁ ପୁରାଣ' ।

ଚଣ୍ଡୀ ପୁରାଣକୁ ବିଷ୍ଣୁ ପୁରାଣ ନାମ ଦେବା ପରେ ଗ୍ରନ୍ଥର ବକ୍ତା ଓ ଶ୍ରୋତା ପରିବର୍ତ୍ତିତ ହୋଇଗଲେ ।ସଂସ୍କୃତ 'ଦୁର୍ଗା ସପ୍ତସତୀ'ର ବକ୍ତା ହେଲେ, ମେଧା ଋଷି ଏବଂ ଶ୍ରୋତା ହେଲେ ସୁରଥ ରାଜା ଓ ସମାଧି ବୈଶ୍ୟ । ଜୀବନର ଏକ ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ, ସେମାନେ ମେଧା ଋଷିଙ୍କ ପାଖରେ ପହଞ୍ଚି, ତାଙ୍କଠାରୁ ଦେବୀଙ୍କର ମହାତ୍ମ୍ୟ ଶ୍ରବଣ କରି ସାନ୍ତ୍ୱନା ଲାଭ କରିଥିଲେ ।

କବି ସାରଳା ଦାସଙ୍କ ଉଦ୍ଦେଶ୍ୟ ଥିଲା ଅଲଗା । ସେ ଚଣ୍ଡୀ କଥା ମାଧ୍ୟମରେ ବିଷ୍ଣୁଙ୍କ

ମାହାତ୍ମ୍ୟ ପ୍ରଚାର କରିବାକୁ ଚାହିଁଥିଲେ । ଚଣ୍ଡୀ ପୁରାଣ ଯେ ବିଷ୍ଣୁ ପୁରାଣ, ହରିବଂଶ ଓ ଭାଗବତ ଏ କଥା ଆଗରୁ କୁହାସରିଛି । ସେଥିପାଇଁ କବି ନିଜ ଗ୍ରନ୍ଥର ବକ୍ତା ଓ ଶ୍ରୋତାଭାବେ ଭାଗବତ ପ୍ରସିଦ୍ଧ ବକ୍ତା ଓ ଶ୍ରୋତା ଅର୍ଥାତ ଶୁକମୁନି ଓ ପରୀକ୍ଷିତଙ୍କୁ ଗ୍ରହଣ କଲେ । ଚଣ୍ଡୀ ପୁରାଣ କୁହାଗଲା ଶୁକ ପରୀକ୍ଷିତ ସମ୍ବାଦରେ । ମଙ୍ଗଳ ବିଧାୟକ, ପୁରାଣ-ସାହିତ୍ୟର ଆଦି ପ୍ରଚାରକ ଏବଂ ଦେବତାମାନଙ୍କ ମଧ୍ୟରେ ଅଗ୍ରପୂଜ୍ୟ ଗଣେଶ, ପୁଣି ବିଦ୍ୟାର ଅଧିଷ୍ଠାତ୍ରୀ ଝଙ୍କଡ ବାସିନୀ, କବିଙ୍କର ଇଷ୍ଟଦେବୀ ସାରଳାଙ୍କର ସ୍ମରଣ କଲା ପରେ କବି ଚଣ୍ଡୀ ପୁରାଣର ଶୁଭାରମ୍ଭ କଲେ । ଗ୍ରନ୍ଥର ଶ୍ରୋତା ଭାବେ ଗୃହୀତ ହେଲେ, କୁରୁ -ପାଣ୍ଡବ ବଂଶର ଶେଷ ରାଜା ପରୀକ୍ଷିତ । ସର୍ପାଘାତରେ ତାଙ୍କ ଶରୀର ଜର୍ଜରିତ । ମନରେ ଶାନ୍ତି ନାହିଁ । ସନ୍ତାନ-ସନ୍ତତି ବିନା ବଂଶ ନାଶର ଭୟ ମନକୁ ବାରମ୍ବାର ଆନ୍ଦୋଳିତ କରୁଥିଲା । ଏହି ସବୁ ଦୁଃଖରୁ ମୁକ୍ତି ପାଇବା ପାଇଁ ମହାରାଜା ପରୀକ୍ଷିତ ଅନ୍ତର୍ଜଳରେ ଥାଇ ହରିନାମ ସ୍ମରଣ କରୁଥିଲେ । ସେତିକିବେଳେ ସେଠାରେ ଉପସ୍ଥିତ ହେଲେ ବ୍ୟାସ ମୁନିଙ୍କ ସୁତ ଭାଗବତର ବକ୍ତା ଭାବେ ପ୍ରସିଦ୍ଧ ଶୁକମୁନି । ଜୀବନ - ମରଣର ସଙ୍କଟରୁ ରକ୍ଷା କରିବା ପାଇଁ ଶୁକମୁନି ରାଜାଙ୍କ ସମ୍ମୁଖରେ ବର୍ଣ୍ଣନା କଲେ, ଚଣ୍ଡୀଙ୍କ କଥା । ଏହି ହିଁ ହେଲା ଗ୍ରନ୍ଥର ପ୍ରସ୍ତାବନା ।

ଶ୍ରୀମଦ୍ ଭାଗବତରେ ପରୀକ୍ଷିତ ପ୍ରାୟ ପ୍ରତ୍ୟେକ ଅଧ୍ୟାୟର ପ୍ରାରମ୍ଭରେ ପ୍ରଶ୍ନଟିଏ ଉତ୍‌ଥାପନ କରିଛନ୍ତି ଏବଂ ଶୁକମୁନି ତା'ର ଉତ୍ତର ପ୍ରଦାନ କରିଛନ୍ତି । ଏହି ନୀତିକୁ ଅନୁସରଣ କରି ଭାଗବତରେ ପ୍ରତ୍ୟେକ ଅଧ୍ୟାୟର ଆରମ୍ଭ ଓ ଶେଷ ହୁଏ । ଚଣ୍ଡୀ ପୁରାଣରେ ଭାଗବତର ବକ୍ତା ଓ ଶ୍ରୋତାଙ୍କୁ ଗ୍ରହଣ କରାଯାଇଥିଲେ ହେଁ, ଅଧ୍ୟାୟ ବିଭାଜନ ନାହିଁ । କବି ସମୟ ସମୟରେ ଆରାଧ୍ୟ ଦେବୀ ବା ଦେବତାଙ୍କର ବନ୍ଦନା କରି, ନିଜ ସମ୍ବନ୍ଧରେ କିଛି ସୂଚନା ଦେଇ ପ୍ରସଙ୍ଗ ସମାପ୍ତ କରିଥିବା ପରି ଜଣାଯାଏ । ଏହା ପରେ କଥା ଆରମ୍ଭ ହୁଏ । ଏଥି ଅନନ୍ତରେ ଏବଂ ବକ୍ତା ଓ ଶ୍ରୋତାଙ୍କ କଥୋପକଥନରେ ଏହାକୁ ପ୍ରସଙ୍ଗ ସମାପ୍ତି ଓ ଆରମ୍ଭ ସୂଚନା ରୂପେ ଗ୍ରହଣ କରାଯାଇପାରେ । କିନ୍ତୁ ଏହା ମଧ୍ୟ ସବୁଠାରେ ନାହିଁ । ତେଣୁ ବକ୍ତା ଓ ଶ୍ରୋତା ଗ୍ରନ୍ଥ ର କେତେକ ସ୍ଥାନରେ ପ୍ରସଙ୍ଗ ଆରମ୍ଭ କରିବା ପାଇଁ କଥୋପକଥନ କରିଥିଲେ ହେଁ, ଅନ୍ୟ କେତେକ ସ୍ଥଳରେ ପ୍ରସଙ୍ଗ ମଝିରେ ଏକାଠି ହୋଇ କଥାବାର୍ତ୍ତା ଆରମ୍ଭ କରି ଦେଉଥିଲେ । ଗ୍ରନ୍ଥ ମାଧ୍ୟମରେ ସର୍ବ ମୋଟ ସତରଟି ସ୍ଥାନରେ ବକ୍ତା ଓ ଶ୍ରୋତାଙ୍କ ସମ୍ବାଦ ମିଳୁଥିଲେ ହେଁ, ସେ ସବୁ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ପ୍ରକାଶିତ । ସେହି ସବୁ ସମ୍ବାଦକୁ ନିମ୍ନ ଭାବେ ବିଭାଗ କରାଯାଇପାରେ ।

(କ) ପ୍ରସ୍ତାବନା

(ଖ) ନୂତନ କଥାର ସଂଯୋଜନା

ପୁରାଣରେ ସମ୍ବାଦ ସବୁ ସାଧାରଣତଃ କଥାକୁ ଅଗ୍ରଗତି କରାଇବା ପାଇଁ ପ୍ରଯୁକ୍ତ ହୋଇଥାଏ । ସମ୍ବାଦର ଏହା ହିଁ ସାଧାରଣ ଲକ୍ଷଣ । ଏଥିପାଇଁ ସମ୍ବାଦ ରୁହେ କଥାର

ଆରମ୍ଭରେ ବା କଥାର ମଧ୍ୟ ଭାଗରେ । କଥାର ମଧ୍ୟ ଭାଗରେ ଥିବାବେଳେ ଏହା ପ୍ରାୟ ନୂତନ କଥା ସୃଷ୍ଟିର ସହାୟକ ହୁଏ । **ଚଣ୍ଡୀ ପୁରାଣ**ରେ ଥିବା ଚନ୍ଦ୍ରାବତୀ ସ୍ୱୟମ୍ବର (ପୃ-୩୭), ଅନ୍ୱେକ ମନ୍ତ୍ରୀ ଉପାଖ୍ୟାନ (ପୃ-୧୪) ଅନଳ ଜାତ ହେବା ପରେ ଦେବତାମାନଙ୍କର କାର୍ଯ୍ୟକଳାପ (ପୃ-୯୨), ଅମ୍ବିକା ଚାଣ୍ଡାଳ ବା ଚାଣ୍ଡାଳପୁର ଉତ୍ପତ୍ତି କଥା (ପୃ-୧୦୮), ଆଦିତ୍ୟ ଦେବତାଙ୍କ ରଥର ଇତିବୃତ୍ତ (ପୃ-୨୨୬) ଓ ଅଗଣିତ ରକ୍ତବୀର୍ଯ୍ୟ ସୃଷ୍ଟିର ରହସ୍ୟ (ପୃ-୧୭୦) ପ୍ରଭୃତିକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ ।

**ଚଣ୍ଡୀ ପୁରାଣ**ର ସୃଷ୍ଟି ବର୍ଣ୍ଣନା ପୂର୍ବରୁ ଥିବା ସମ୍ବାଦରେ ସୃଷ୍ଟି ରହସ୍ୟ ଜାଣିବା ପାଇଁ ପରୀକ୍ଷିତ କୌଣସି ପ୍ରଶ୍ନ ପଚାରି ନଥିଲେ ବି ଶୁକମୁନି ଏହାର ବର୍ଣ୍ଣନା କରି ପ୍ରସଙ୍ଗ ପରବର୍ତ୍ତୀ ସମ୍ବାଦରେ ଏହାର ସୂଚନା ଦେଇଛନ୍ତି ।

ପରୀକ୍ଷ ନୃପତି ଶୁଣିଲା ସନ୍ଦେହ
ବୋଇଲା ମୁନି ହେ ମୋତେ ସଂଚପିଣ କହ
ଶୁଣ ହୋ କଉରବ ବଂଶର ଆଦିପତି
ତୁ ଯାହା ପୁଚ୍ଛା କଲୁ ଏସନ ଅଟଇ ପୃଥ୍ୱୀ ।                ପ.ସଂ-୮୩-୮୪

ଉପରେ ପ୍ରଦତ୍ତ ହୋଇଥିବା ବ୍ୟତିକ୍ରମ ବ୍ୟତୀତ ଆଉ ସବୁ ସ୍ଥଳରେ ପ୍ରସଙ୍ଗର ଆରମ୍ଭ ହୋଇଛି ସମ୍ବାଦରେ ଏବଂ ପରୀକ୍ଷିତଙ୍କ ପ୍ରଶ୍ନରେ । ଉଦାହରଣ ପାଇଁ ମହିଷାସୁରର ପଶ୍ଚିମ ଦିଗ ଅଭିଯାନ (ପୃ-୩୫), ଶୁମ୍ଭ ଓ ନିଶୁମ୍ଭ ସହ ଯୁଦ୍ଧ (ପୃ-୫୫), ବ୍ରହ୍ମାଙ୍କ ସମାଧିର କାରଣ (ପୃ-୮୧), ବ୍ରହ୍ମାଙ୍କୁ ଇନ୍ଦ୍ରଙ୍କ ନିବେଦନ (ପୃ-୨), ରକ୍ତବୀର୍ଯ୍ୟ ବଧ ପରବର୍ତ୍ତୀ କଥା ପ୍ରତି ଆଗ୍ରହ (ପୃ-୧୬୫), ଭାସ୍କର ଦୈତ୍ୟ ବଧର ପରବର୍ତ୍ତୀ କଥା (ପୃ-୨୦୫) ଓ ନିମଞ୍ଜାର ଗର୍ଭରେ ଆଦିତ୍ୟ ଗୋପ୍ୟ ହେବାର ପରବର୍ତ୍ତୀ ଆଖ୍ୟାନ (ପୃ-୨୦୬) କୁ ଗ୍ରହଣ କରାଯାଇପାରେ ।

ଗ୍ରନ୍ଥ ମଧ୍ୟରେ ଶୁକ ପରୀକ୍ଷିତ ସମ୍ବାଦ ମୋଟେ ସତର ଥର ବ୍ୟବହାର କରାଯାଇଥିଲେ ହେଁ, ପରୀକ୍ଷିତଙ୍କ ସହ ସମ୍ପର୍କ ରଖିବା ପାଇଁ ଏବଂ କଥାର ଅଗ୍ରଗତି କରାଇବା ପାଇଁ ବକ୍ତା ଶ୍ରୋତାଙ୍କୁ ଗ୍ରନ୍ଥ ମଧ୍ୟରେ ବାରମ୍ବାର ସମ୍ବୋଧନ କରୁଥିଲେ । ସେ କେତେବେଳେ ତାଙ୍କୁ କେବଳ 'ଅହୋ' କହୁଥିଲେ ତ କେତେବେଳେ 'ଆହୋ ପରୀକ୍ଷ ଶୁଣ ହୋ' (ପୃ-୫, ୬,୮,୧୧,୬୬,୫୮,୭୫,୧୬୨,୧୬୫), 'ଶୁଣ ହୋ ପରୀକ୍ଷ' (ପୃ-୯୨, ୧୯୮, ୨୪୪), 'ଶୁଣ ହୋ ମହାରାଜା' (ପୃ-୩୭, ୨୪୯), 'ଶୁଣ ପରୀକ୍ଷ' (ପୃ-୫୫, ୧୯୪, ୨୪୯) 'ଶୁଣ ହେ ମହାରାଣ' (ପୃ-୧୫୬), 'ଶୁଣ ଦେବ ଅବଧାରି' (ପୃ-୧୪୧) 'ଶୁଣ ହେ ପରୀକ୍ଷି' (ପୃ-୧୩୭), 'ଶୁଣ ଦେବ ରାଜ୍ୟେଶ୍ୱର' (ପୃ-୧-୬), 'ଶୁଣ ପରୀକ୍ଷରାଏ' (ପୃ-୧୧୭), 'ଶୁଣ ହୋ ରାଜନ' (ପୃ-୯୭,୯୮), 'ଶୁଣ ଦେବ ମହାରାଜ' (ପୃ-୭୭)

'ସାବଧାନେ ଶୁଣ ଦେବ' (ପୃ-୨୮) 'ହୋ ଶୁଣ' (ପୃ-୬) ପ୍ରଭୃତି ଦ୍ୱାରା ସମ୍ବୋଧନ କରୁଥିଲେ । ଏସବୁ ମଧ୍ୟରୁ 'ଆହୋ ପରୀକ୍ଷ' ' ଶୁଣ ହୋ ପରୀକ୍ଷ 'ଏବଂ 'ଆହୋ'ର ବାରମ୍ବାର ଉଚ୍ଚାରଣ ଗ୍ରନ୍ଥ ମଧ୍ୟରେ ଯେଉଁ ଗୁଞ୍ଜନ ସୃଷ୍ଟି କରିଛି, ତାହା ଗ୍ରନ୍ଥକୁ ଏକ ଅପୂର୍ବ ବିଭାରେ ବିଭାସିତ କରେ । ପୁଣି ଏଥିରେ 'ଆହୋ ପରୀକ୍ଷ'ର ଉଲ୍ଲେଖ ସର୍ବାଧିକ । ସେଥିପାଇଁ ଏ ପ୍ରକାର ପ୍ରୟୋଗ ପ୍ରତି କବିଙ୍କର ବିଶେଷ ଶ୍ରଦ୍ଧା ଥିବା ଅନୁମାନ କରାଯାଇପାରେ । କିନ୍ତୁ ଗ୍ରନ୍ଥର ଏହା ମଧ୍ୟ ଏକ ଆବଶ୍ୟକୀୟ ଅଙ୍ଗ ଏବଂ ଗ୍ରନ୍ଥ ମଧ୍ୟରେ ଏହା ବିଭିନ୍ନ ଭାବେ ବ୍ୟବହୃତ ହୁଏ ।

**ଚଣ୍ଡୀ ପୁରାଣ**ରେ ଅଧ୍ୟାୟ ବିଭାଜନ ନ ଥିଲେ ହେଁ ପ୍ରସଙ୍ଗ ବିଭାଜନର କେତେକ ସୂଚନା ମିଳିଥାଏ । କବିଙ୍କ ଭଣିତା ଥିବା ଅଂଶ ହେଉଛି ଏକ ପ୍ରସଙ୍ଗର ପରିସମାପ୍ତି । ଏହା ପରେ କବି 'ଆହୋ' (ପୃ-୨) 'କୌରବ ମଣ୍ଡଳେ ପଚାରିଲେ ପରୀକ୍ଷ ରାୟେ' (ପୃ-୩), 'ଶୁଣ ହୋ ପରୀକ୍ଷ ରାଏ' (ପୃ-୧୧, ୯୫, ୧୧୯, ୧୩୭, ୨୩୦, ୨୩୪, ୨୮୦), 'ଏଥୁ ଅନନ୍ତରେ' (ପୃ-୩୫, ୫୫, ୬୭, ୮୨, ୧୧୭, ୧୬୯, ୨୧୫), 'ଶୁଣ ପରୀକ୍ଷ' (ପୃ-୧୯୦, ୧୯୪, ୨୦୧), 'ଆହୋ ପରୀକ୍ଷ', (ପୃ-୯୮,୧୦୩, ୧୪୯ ଓ ୧୬ 'କହନ୍ତି ଶୁକମୁନି' (ପୃ-୨୦୫), 'ଏହା ଶୁଣି ବୋଇଲେ' (ପୃ-୨୫୬), 'ସିନ୍ଧୋ ଉପସିନ୍ଧୋ' 'ଉତ୍ତାରେଣ କଥା' (ପୃ-୨୬୦) ପ୍ରଭୃତିର ବ୍ୟବହାର କରି ଅନ୍ୟ ପ୍ରସଙ୍ଗରେ ଆରମ୍ଭ କରିଛନ୍ତି । ନିମ୍ନରେ ପ୍ରସଙ୍ଗ ବିଭାଜନ ଦୃଷ୍ଟିରୁ 'ଆହୋ ପରୀକ୍ଷର' ପ୍ରୟୋଗ ସବୁକୁ ଉଦ୍ଧାର କରାଯାଇଛି ।

୧ । ଆହୋ ପରୀକ୍ଷ ଦେବତାମାନଙ୍କର ଯେସନ ଭଗତି
ସମସ୍ୟା ଫିଟିଲା ଅଭଏ ଶାନ୍ତି ମୃତି - ୧୪୮୫

୨ । ଆହୋ ପରୀକ୍ଷ ଦେବତାଙ୍କ ବିକଳ ଦେଖି ପ୍ରସନ୍ନ
ହୋଇଲେ କାତ୍ୟାନୀ
ଅମୃତ ଦୃଷ୍ଟିରେ ବୋଇଲେ ବର ମାଗ ପଦ୍ମଯୋନି -୧୫୬୪

୩ । ଆହୋ ପରୀକ୍ଷ ଶୁଣ ବଦୟନ୍ତି ଶୁକ ବ୍ରହ୍ମା
ସଞ୍ଚପି ଶୁଣ ହୋ ଚଉଷଠି ଯୋଗ୍ନୀଙ୍କର ମହିମା - ୨୨୯୦

୪ । ଆହୋ ପରୀକ୍ଷ କାଳଦଣ୍ଡ ବଧ୍ୟ ଅନ୍ତରେଣ କଥା
ଶୁଣ ସାବଧାନେ ହୋ ସଂଗ୍ରାମର ବାରତା -୨୪୦୦

ପ୍ରସଙ୍ଗ ବିଭାଜନ ଓ ପ୍ରସଙ୍ଗ ପରିବର୍ତ୍ତନ ଦୁଇଟି ସ୍ୱତନ୍ତ୍ର କଥା । କବି ସାଧାରଣତଃ କୌଣସି ଦେବୀ ବା ଦେବତାଙ୍କ ବନ୍ଦନା ପରେ ନିଜ ବିଷୟରେ କିଛି ସୂଚନା ଦେଇ ଓ ଭଗବାନଙ୍କଠାରେ ନିଜର ବିନତି ଜଣାଇ ପ୍ରସଙ୍ଗର ସମାପ୍ତି କରିଛନ୍ତି । ଏହାପରେ 'ଆହୋ

ପରୀକ୍ଷ' ଦ୍ୱାରା ଅନ୍ୟ ପ୍ରସଙ୍ଗର ଅବତାରଣା କଲାପରେ 'ଆହୋ ପରୀକ୍ଷ'ର ପୁଣି ଥରେ ପ୍ରୟୋଗ କରି କଥାରେ ବିଭିନ୍ନ ପ୍ରକାରର ପରିବର୍ତ୍ତନ ଆଣିଛନ୍ତି । ନିମ୍ନରେ ସେଥିମଧ୍ୟରୁ କେତେକର ଉଦାହରଣ ପ୍ରଦତ୍ତ ହେଲା :

୧ । ମେରୁଶୂଳ ସହିତ ଯୁଦ୍ଧ ବର୍ଣ୍ଣନା କରୁଥିବାବେଳେ କରଞ୍ଚ ଦେଶର ଅଭିଯାନ କଥା କହିବା ପାଇଁ । 'ଆହୋ ପରୀକ୍ଷ'ର ବ୍ୟବହାର କରି ପ୍ରସଙ୍ଗ ପରିବର୍ତ୍ତନ କରିଛନ୍ତି ।

ଆହୋ ପରୀକ୍ଷ ରାଜ କୃଷ୍ଣ ଚଉଠିର ଦିନ
ପଣ୍ଡିତ ବାର ନକ୍ଷତ୍ର ହସ୍ତକ ଅନ୍ୟ
X X X
ସେଦିନ ମହିଷାସୁର ବିଜେ କଲା ସ୍ୱର୍ଗ -୩୩୦-୩୩୧

୨ । ଅଗ୍ନି ତେଜରୁ ଦୁର୍ଗା ଉତ୍ପତ୍ତି ହେବା ପରେ ଅଗ୍ନିକୁ ନିବାରଣ କରି ମୂର୍ତ୍ତିବନ୍ତ ହୋଇ ପ୍ରକାଶିତ ହେଲେ । ଏହାପରେ ସେ ଆସି ରତ୍ନ ସିଂଘ ପର୍ବତରେ ଜଗମୋହନ ରୂପ ଧାରଣ କରି ଆସୀନା ହେଲେ । ଏହି ଦୁଇ ପ୍ରସଙ୍ଗର ମଧ୍ୟ ଭାଗରେ 'ଆହୋପରୀକ୍ଷ'ର ପ୍ରୟୋଗ କରାଯାଇଛି ।

ଆହୋ ପରୀକ୍ଷ ରାଜା ଅନେକ କୋଟି ବ୍ରହ୍ମାଣ୍ଡ ଘୋଟି ଏକ ଦୃଷ୍ଟି
ବିଜଏ ମାହେଶ୍ୱରୀ ଗଜ ରୀପୁ ପିଠି । - ୧୬-୧୭

କୌଣସି ଗୋଟିଏ ପ୍ରସଙ୍ଗକୁ ବର୍ଣ୍ଣନା କଲାବେଳେ ସେଥିରେ ବିଚିତ୍ରତା ଆଣିବା ପାଇଁ 'ଆହୋ ପରୀକ୍ଷ'ର ବାରମ୍ବାର ପ୍ରୟୋଗ କରାଯାଇଛି । ଦୁର୍ଗା ଓ ମହିଷାସୁରର ଉକ୍ତି -ପ୍ରତ୍ୟୁକ୍ତି ବେଳେ ଏହା ବିଶେଷ ଭାବେ ଲକ୍ଷଣୀୟ ।

୧ । ଆହୋ ପରୀକ୍ଷ ଜଗୁଜନ ମୋହିନୀ ସେ ଦୁର୍ଗା ରୂପ ଦେଖି
ମୁଏଷାଂସୁର ଦାନବ ସେ କହଇ ଦୃଢ ବାକି -୪୦୭୦

୨ । ଆହୋ ପରୀକ୍ଷ ମଏଷାଂସୁର ବଚନ ଶୁଣିଲା ମହାମାଏ
କହନ୍ତି ଦୃଢ ବାକ୍ୟ ସେ ଅତିହିଂ ନିର୍ଦ୍ଦଏ - ୪୦୭୫

୩ । ଆହୋ ପରୀକ୍ଷ ଅସୁର ନାରାଯ ଦେଖି ଗୋସାମଣି
ପାଞ୍ଚ ସହସ୍ର ଭୂଜେ ଧନୁ ଧଇଲେକ ଟାଣି -୪୦୮୧

୪ । ଆହୋ ପରୀକ୍ଷ ଅସୁରଙ୍କର ଷହସ୍ରେ ଲାଗିଲା ଦୁଗାଙ୍କର ତେଜ
ଦୂରୁଂ ସର୍ବ ଶର ହୋଇଲା ଦହିଜ -୪୦୮୫

**ପ୍ରସଙ୍ଗ ଗୁରୁତ୍ୱ ସୂଚାଇବା ପାଇଁ ଏହାର ପ୍ରୟୋଗ :**

୧ । ଆହୋ ପରୀକ୍ଷ ଅନେକ ରତ୍ନ ଆଭରଣ ସେ ମଇଂଷି ସିଙ୍ଘର କାଏ
ପ୍ରତକ୍ଷେ ଦିଶିଲା ସେ ଉଦିଏ ଗିରି ପ୍ରାଏ -୪୧୩୬
୨ । ଆହୋ ପରୀକ୍ଷ ମହାକାଳ ବାଣ ଧରନ୍ତେ ଧାଇଁଲେ ଦେବୀ ଦୁଗେ
ଅସୁରକୁ କଟାର ଘେନି ମାଇଲେ ଦେବୀ ବେଗେ ।
-୪୧୭୪

ପ୍ରତ୍ୟେକ ପଦରେ ଏହାର ପ୍ରୟୋଗ:ସାଧାରଣତଃ କେତେକ ପଦର ବ୍ୟବଧାନରେ 'ଆହୋ ପରୀକ୍ଷ'ର ବ୍ୟବହାର କରାଯାଉଥିଲେ ହେଁ, କେତେକ ସ୍ଥଳରେ କୌଣସି ବ୍ୟବଧାନ ନ ରଖି ଏହାର ବ୍ୟବହାର କରାଯାଇଛି ।

୧ । ଆହୋ ପରୀକ୍ଷ ଆଶିଣ ମାସ ଶୁକଳ ଅଷ୍ଟମୀର ଦିନ
ତିନି ଦିନ ମୂଳା ନକ୍ଷତ୍ର ବିଦ୍ୟମାନ
ଆହୋ ପରୀକ୍ଷ ମୂଳା ନକ୍ଷତ୍ର ଉପରେ ପୂର୍ବାଷାଢା ନକ୍ଷତ୍ର
ମଏଷାଂସୁର ଦାନବ ବିଜଏ କଲା ରଥ ।
- ୪୦୫୯-୬୦

୨ । ଅହୋ ପରୀକ୍ଷ ରଥ ଯହୁଂ ଦିଶିଲା ସନିଧ୍ୟାନ
ବିଜେ କଲେ ଦେବୀ ଖେଚରୀ ବିମାନ । -୪୦୬୯
ଶୁଣ ହେ ପରୀକ୍ଷ ଗଙ୍ଗା ନଦୀର ତଟ
ଖେଚରୀ ବିବାନେ ଦୁହେଂ ହୋଇଲେକ ଭେଟ । - ୪୦୬୮
ଆହୋ ପରୀକ୍ଷ ଜଗୁଜନ ମୋହନୀ ସେ ଦୁଗା ରୂପ ଦେଖି
ମଏଷାଂସୁର ଦାନବ ସେ କହଇ ଦୂତ ବାକି । -୪୦୭୦

ପରୀକ୍ଷିତ ଗ୍ରନ୍ଥର ଶ୍ରୋତା । ତେଣୁ ତାଙ୍କ ସହ ସମ୍ପର୍କ ରକ୍ଷାକରିବା ପାଇଁ ଗ୍ରନ୍ଥ ମଧ୍ୟରେ ବକ୍ତା ତାଙ୍କୁ ବାରମ୍ବାର ବିଭିନ୍ନ ଭାବେ ସମ୍ବୋଧନ କରିଛନ୍ତି । ଏହି ସବୁ ସମ୍ବୋଧନ ମଧରୁ 'ଆହୋ ପରୀକ୍ଷ' ଥିଲା କବି ତଥା ବକ୍ତାଙ୍କର ଅତି ପ୍ରିୟ । ସମ୍ବୋଧନ ସେଥିପାଇଁ ଗ୍ରନ୍ଥ ମଧ୍ୟରେ ଏହା ପ୍ରାୟ ୧୬୬ ଥର ବ୍ୟବହାର କରାଯାଇଛି । ତେବେ ଗ୍ରନ୍ଥ ମଧ୍ୟରେ ଗୋଟିଏ ସମ୍ବୋଧନକୁ ବାରମ୍ବାର ବ୍ୟବହାର କରିବା ଦ୍ୱାରା ପାଠକ ମାନଙ୍କ ମନରେ ହୁଏତ ବିରକ୍ତି ଆସିପାରେ, ସେଥିପାଇଁ ସମ୍ବୋଧନରେ ବିଚିତ୍ରତା ଆଣିବା ପାଇଁ ଅନେକ ସ୍ଥଳରେ 'ଆହୋ ପରୀକ୍ଷ' ପରିବର୍ତ୍ତେ କେବଳ 'ଆହୋ'ର ବ୍ୟବହାର କରାଯାଇଛି । ସେତେବେଳେ ଏହା ନିର୍ଦ୍ଦିଷ୍ଟ ଭାବେ ପରୀକ୍ଷଙ୍କୁ ନ ବୁଝାଇ ପ୍ରସଙ୍ଗ ଅନୁଯାୟୀ କେତେବେଳେ ସାଧାରଣ ପାଠକକୁ ଆଉ କେତେବେଳେ ଗ୍ରନ୍ଥର କୌଣସି ଚରିତ୍ରକୁ ବୁଝାଇଛି । ସେ ଦୃଷ୍ଟିରୁ ବିଚାର କରି ଏହାକୁ ନିମ୍ନ କେତେକ ଭେଦରେ ବିଭାଗ କରାଯାଇପାରେ ।

ପରୀକ୍ଷିତଙ୍କୁ ଲକ୍ଷ୍ୟକରି -

ଆହୋ ଜମ୍ବୋଦ୍ବୀପେ ଦେବତା ବ୍ରାହ୍ମଣଙ୍କର ବାସ
ସୁଜନ ପଣ୍ଡିତମାନେ କରନ୍ତି ଅଭ୍ୟାସ । -୭୨୪

ସାଧାରଣ ପାଠକଙ୍କ ଉଦ୍ଦେଶ୍ୟରେ -

ଆହୋ ଶୟଳ ସ୍ଥାପନକୁ କୃପାଜଳ ନାମେ ବ୍ରହ୍ମା
ସୃଷ୍ଟି କରତା ଯେବଣ ମହାତମା । ପ. ସଂ-୧୬

ଅନ୍ୟ ଚରିତ୍ରଙ୍କୁ ସମ୍ବୋଧନ କରି -

୧ । ଆହୋ ଶମ୍ଭୁ ନିଶମ୍ଭୁ .....-୮୭୭

୨। ଆହୋ ମହତମାଏ ...... -୮୮୭

୩ । ଆହୋ ଏକ ମୁଖେ.... - ୮୮୮୩ (ଶମ୍ଭୁ ଓ ନିଶମ୍ଭଙ୍କ ପାଇଁ)

୪ । ଆହୋ ଅସକନ୍ଦ -୧୧୦୩

୫ । ଆହୋ ଦାନେବ -୧୭୯୦

ଗ୍ରନ୍ଥର ମୁଖ୍ୟ ବକ୍ତା ଓ ଶ୍ରୋତା ଗ୍ରନ୍ଥ ମଧ୍ୟରେ ବାରମ୍ବାର କଥାବାର୍ତ୍ତା କରୁଥିଲେ ହେଁ, ସେମାନେ ନିଜ ବିଷୟରେ କିଛି କହୁ ନଥିଲେ । ସେଥିପାଇଁ ସେମାନଙ୍କ କଥାରେ କ୍ରୋଧ, ପ୍ରେମ, ହିଂସା, ଅହିଂସା, କାମ, ଲାଳସା ପ୍ରଭୃତି ମାନବିକ ଗୁଣର ପ୍ରକାଶ ପାଇଁ କୌଣସି ଅବକାଶ ନଥିଲା । ସେମାନେ ସମ୍ପୂର୍ଣ୍ଣ ନିରାସକ୍ତ ଭାବେ ଅନ୍ୟମାନଙ୍କ କଥା କହୁଥିଲେ ବା ଶୁଣୁଥିଲେ । ପୁଣି ଅନ୍ୟମାନଙ୍କ କଥାରେ ହିଁ ଥିଲା, ଗ୍ରନ୍ଥର ପ୍ରକୃତ ବିଷୟବସ୍ତୁ । ବକ୍ତା ଓ ଶ୍ରୋତାଙ୍କ କଥାବାର୍ତ୍ତାରେ ସେହିମାନେ ହିଁ କଥା କହୁଥିଲେ । ନିଜେ କହୁଥିଲେ, ଅନ୍ୟକୁ କହୁଥିଲେ । ତେଣୁ ବକ୍ତା ଓ ଶ୍ରୋତାଙ୍କ ସମ୍ବାଦ ଥିଲା ଏକ ଧରାବନ୍ଧା ପଦ୍ଧତିର ପ୍ରଶ୍ନୋତ୍ତର । ଅଥଚ ସେମାନେ ଯେଉଁମାନଙ୍କ କାହାଣୀ ଶୁଣାଉଥିଲେ ସେମାନଙ୍କ କଥାବାର୍ତ୍ତାରେ ଗ୍ରନ୍ଥର ବିଷୟବସ୍ତୁ ଦ୍ରୁତଗତିରେ ଧାବମାନ ହେଉଥିଲା । ସମାଜର ବିଭିନ୍ନ ପ୍ରକାର ଚରିତ୍ର ବିଭିନ୍ନ ବେଶରେ, ବିଭିନ୍ନ ଭଙ୍ଗୀରେ କଥା କହି ପାଠକ ବା ଶ୍ରୋତାଙ୍କୁ ବିଭିନ୍ନ ପ୍ରକାର କଥାରେ ରସାପ୍ଲୁତ କରୁଥିଲେ ।

ମହିଷାସୁର ଗ୍ରନ୍ଥର ମୁଖ୍ୟ ନାୟକ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ଗ୍ରନ୍ଥର ବିଷୟ ବସ୍ତୁକୁ ନିୟନ୍ତ୍ରଣ କରିଛି ବିଭିନ୍ନ ରୂପରେ । ସେ କେତେବେଳେ ଦିଗ୍‌ବିଜୟୀ ସମ୍ରାଟର ଭୂମିକାରେ ଅବତୀର୍ଣ୍ଣ ହୋଇ ଧରାକୁ ସରା ଜ୍ଞାନକରି ତା'ର ଭୟଙ୍କର ଗର୍ଜନ ଘାତରେ ପୃଥିବୀର ସମସ୍ତ ଜୀବଜନ୍ତୁଙ୍କୁ ପ୍ରକମ୍ପିତ କରେ ତ କେତେବେଳେ ଯୁଦ୍ଧ କ୍ଷେତ୍ରରେ ପରାଜିତ, ଲାଞ୍ଛିତ ହୋଇ, ଦାନ୍ତରେ କୁଟା ଧରି ବିନମ୍ରତା ପ୍ରକାଶ କରେ । ସେ ପୁଣି କେତେବେଳେ ପୁରୁଷ ଅଭିସାରିକା ସାଜି ଅସ୍ଥିର ଚିତ୍ତରେ ନିଜର ଅଧସ୍ତନ ସେନାପତିମାନଙ୍କୁ ନିବେଦନ କରେ ତ କେତେବେଳେ ଯୁଦ୍ଧ କ୍ଷେତ୍ରରେ ଆହତ, ଅପମାନିତ ହୋଇ ସମ୍ମାନହୀନ ଅଧୀଶ୍ୱର ସଦୃଶ ରୋଦନ କରେ । ଗ୍ରନ୍ଥ ମଧ୍ୟରେ ବିଭିନ୍ନ ରୂପରେ ଆତ୍ମପ୍ରକାଶ କଲାବେଳେ ତା'ର ସ୍ୱର ବଦଳେ ଓ କଥା

କହିବାରେ ବିଚିତ୍ରତା ପରିଲକ୍ଷିତ ହୁଏ । ସେତେବେଳେ କବିଙ୍କ ସମ୍ବାଦ ଶୈଳୀରେ ଯେଉଁ ସଜୀବତା, ନାଟକୀୟତା ଓ ଗତିମୟତା ପ୍ରକାଶ ପାଏ, ତାହା ହିଁ ଗ୍ରନ୍ଥକୁ ସରସ, ସୁନ୍ଦର ଓ ଚିତ୍ତାକର୍ଷକ କରିଦିଏ । କେବଳ ମହିଷାସୁର ନୁହେଁ, ବିଭିନ୍ନ ପ୍ରକାରର ଚରିତ୍ର ଓ ସେମାନଙ୍କ ଉକ୍ତି -ପ୍ରତ୍ୟୁକ୍ତିରେ ଗ୍ରନ୍ଥର ସମ୍ବାଦ ଯୋଜନା ପରିପୁଷ୍ଟ ହୁଏ । ଗ୍ରନ୍ଥରେ ଥିବା ସମ୍ବାଦସବୁ ସାଧାରଣତଃ ଚାରୋଟି କାର୍ଯ୍ୟ କରିଥାଏ ।

୧ । କଥାବସ୍ତୁର ଗତିଶୀଳତା ।

୨ । ଚରିତ୍ର ସବୁର ଅନ୍ତର୍ବୃତ୍ତି ବିଶ୍ଳେଷଣ ।

୩ । କଥାରେ ନାଟକୀୟତା ।

୪ । ବର୍ଣ୍ଣନାରେ ସଜୀବତା ।

**କଥାବସ୍ତୁର ଗତିଶୀଳତା -** ଚଣ୍ଡୀ ପୁରାଣର ଯେ କୌଣସି ଉପଖ୍ୟାନକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ତେବେ ଏଠାରେ ମହିଷାସୁରର ବିଭିନ୍ନ ଅଭିଯାନ ମଧ୍ୟରୁ ପ୍ରଥମ ତିନୋଟିକୁ ଗ୍ରହଣ କରାଯାଇଛି । ମହିଷାସୁରର ଦିଗ୍‌ବିଜୟରେ ପ୍ରଥମ ପ୍ରତିଦ୍ୱନ୍ଦୀ ରାଜା ହେଲେ କୁରଞ୍ଜେକ ବା କୁରାଞ୍ଚଳ ନଗ୍ରର ନୃପତି, ତାରାକ୍ଷୀ । ମହିଷାସୁରର ଆକ୍ରମଣ କଥା ଶୁଣି ସେ କ୍ରୋଧରେ କେବଳ ଦୁଇଟି ବାକ୍ୟ କହିଥିଲା । (୧) ''କେବଣ ଦର୍ପରେ ମହଂଷାସୁର ଆସୁଅଛି'' ଏବଂ (୨) ''ବୋଇଲାରେ ଏହିକ୍ଷଣି ସାଜ ମୋର ଦଣ୍ଡ'' (ପୃ-୧୮) । ଏକ ଲକ୍ଷ ଯୋଦ୍ଧାଙ୍କ ସହ ଏକ ମୁଖ ହୋଇ ମହିଷାସୁରର ସେନାବାହୀନିକୁ ମନ୍ଥନ କଲାବେଳେ ମହିଷାସୁରର ସେନାପତି କାନ୍ତିମାଳା ଚିତ୍କାର କରି କହିଥିଲା, - 'ଆରେ ଆରେ ରହ ରହ' (ପୃ-୧୯) । ମେରୁଶୂଳ ନୃପତି ସହ ଯୁଦ୍ଧବେଳେ ସୈନ୍ୟମାନେ ଯୁଦ୍ଧକ୍ଷେତ୍ରରେ ପରାଜିତ ହୋଇ ପଳାୟନ କଲାବେଳେ, କାନ୍ତିମାଳା ସେମାନଙ୍କୁ ସମାର୍ଜି କହିଥିଲା, 'କାହିଁକି ତୁମ୍ଭେ ପଳା ?' ପୁଣି ସୈନ୍ୟମାନେ ପୃଷ୍ଠଭଙ୍ଗ ଦେବାର ଦେଖି ମହିଷାସୁର ସେମାନଙ୍କୁ ସାହାସ ଦେଇ ହାକ ଦିଅଇ 'କିମ୍ପାତେ ଏତେକ ଭରସା ?'

କରଞ୍ଜ ଦେଶ ଅଭିଯାନ ବେଳକୁ ସମ୍ବାଦ ସବୁ ଆହୁରି ଶକ୍ତିଶାଳୀ ଭାବେ ପ୍ରକାଶିତ ହୋଇ କଥାର ଅଗ୍ରଗତିରେ ସାହାଯ୍ୟ କରେ । ଏହି ଦେଶର ରାଜା ଧୂମଖେତ ମହିଷାସୁର ପରି ଅସୁରକୁଳ ସମ୍ଭୂତ । ତେଣୁ ବଂଶ ଦୃଷ୍ଟିରୁ ସେମାନେ ସୋଦର । ସେଥିପାଇଁ ଏ ପ୍ରସଙ୍ଗରେ ଏହି ପରିବେଶକୁ ଦୃଷ୍ଟିରେ ରଖି ସମ୍ବାଦ ପରିବେଷଣ କରାଯାଇଛି । ମହିଷାସୁରର ଦିଗ୍‌ବିଜୟ ସମ୍ବାଦ ପ୍ରଥମେ ଉଦ୍ଦେଶ୍ୟ ମନ୍ତ୍ରୀ ମୁଖରେ ପ୍ରଦତ୍ତ । ରାଜାଙ୍କୁ ଖବର ଦେଇ ସେ କହିଛି, ''ନୃପତି ଧୂମଖେତ ! ତୋହର ରାଜ୍ୟରେ ବିଜେକଲା କପିଳ ସିଙ୍ଘର ସୂତ'' । ଲକ୍ଷ୍ୟ କରିବାର କଥା ଏଥିରେ ଅଭିଯାନ ସମ୍ପର୍କିତ ବାହିଲା ଶବ୍ଦର ପ୍ରୟୋଗ କରା ନଯାଇ ସମ୍ମାନ ପ୍ରଦର୍ଶନ କରି କୁହାଯାଇଛି ବିଜେ କଲା । 'କପିଳ ସିଂଘର ସୁତ'ରେ ମଧ୍ୟ ସେହି ସ୍ୱର ଅପରିବର୍ତ୍ତିତ । ଏହି ଉକ୍ତିକୁ ସମର୍ଥନ କରି ପୁଣି ପରେ କୁହାଯାଇଛି, 'ତୋହୋର ସୋଦର ଅଟଇ ଉପର ବଂଶ' ।

ଏହି ଉକ୍ତିକୁ ଗୁରୁତ୍ୱ ଦେଇ ମନ୍ତ୍ରୀ ପୁଣି ଥରେ କହିଥିଲା 'ତାହାର ତୋହୋର ଏକ ବଂଶେ ଜାତ ।' ବଂଶଗତ ପ୍ରୀତିଥିବା ଜାଣି ଧୂମଖେତ ତାର ପୁତ୍ର ଧୂମ୍ର ଲୋଚନକୁ ଆଦେଶ ଦେଇ କହିଲା, 'ପାରିଦଣ୍ଡ ମାନନ୍ତ ଘେନିଣ ବାବୁ ଯା ଯା ।'

ମହିଷାସୁରର ମନ୍ତ୍ରୀ କାନ୍ତିମାଳାର ଉକ୍ତିରେ ମଧ୍ୟ ରାଜୋଚିତ ସମ୍ମାନ ସଂପର୍କିତ ଶବ୍ଦାବଳୀର ପ୍ରୟୋଗ ଦେଖିବାକୁ ମିଳେ । ଧୂମଲୋଚନର ପରିଚୟ ଦେଇ ସେ କହିଛି,

ରାଜାକୁ ବୁଝାଇ ମନ୍ତ୍ରୀ କାନ୍ତିମାଳା
ଏ ସେ ଧୂମଲୋଚନ ଧୂମଖେତୁର ବଳା - ୩୫୪

ତୋତେ ସେ ପ୍ରୀତି ଉପୁଜାଇବା ଅର୍ଥେ
ଦେଖା ଦରଶନି ଉପହାର ଘେନି ଭେଟଇ ତୋତେ - ୩୫୫

ସେ ଧନ ଦେଇ ତୋତେ ନୃପତି ବିନଏ
କରଞ୍ଜ ଦୀପ ତୋତେ ସାଧ ହୋଇଲା ରାଏ । ପ. ସଂ -୩୫୬

ଏହି ପରିଚୟ ପରେ ଧୂମଲୋଚନ ମହିଷାସୁର ଛାମୁରେ ଉପସ୍ଥିତ ହୋଇ ଅତି ବିନମ୍ର ଭାବେ ପ୍ରଣାମ କରି କୁହେ, ''ଦର୍ଶନେ ସିଦ୍ଧ ନାଥ ଉଦ୍ଧାର ଦେବ ସ୍ୱାମୀ' । ମହିଷାସୁରର ବ୍ୟବହାର ଓ କଥାରେ ଥିବା ଶାଳୀନତା ମଧ୍ୟ ଲକ୍ଷଣୀୟ ।

୧ । ଆସ ଆସ ତୁ ମୋର ପ୍ରାଣସଖାଏ -୩୫୯

୨ । ଆମ୍ଭର ଆସ୍ଥାନେ ଦେବ ବିଜଏ କରିବା । - ୩୬୦

୩ । ଆଜ ହୁଂ ମୋହୋର ଅର୍ଥେ ଅଧିକାରୀ । - ୩୬୬

ମହିଷାସୁର ଓ ଧୂମଲୋଚକ ପ୍ରସଙ୍ଗ ହେଉଛି ପ୍ରୀତି ଓ ସୌହାର୍ଦ୍ଦପୂର୍ଣ୍ଣ ପରିବେଶର ଏକ ସୁନ୍ଦର ଦୃଷ୍ଟାନ୍ତ । ସେଥିପାଇଁ କବି ଏଥିରେ ପ୍ରୀତି, ଦେଖା ଦରଶନି, ଉପହାର, ବିନଏ, ସଦଏ, ବିଜଏ, ସେବା, ଦ୍ରୁହସିତ, ପରିଣାମି, ନାଥ, ଦେବ, ସ୍ୱାମୀ, ପ୍ରାଣସଖା, ଆସ ଆସ ତୁ ମୋର, ପ୍ରଭୃତି ଶବ୍ଦର ବ୍ୟବହାର କରିଛନ୍ତି । ପ୍ରୀତି ଓ ବିନୟ ପରିବେଶକୁ ଶକ୍ତିଶାଳୀ ଭାବେ ପ୍ରକାଶ କରିବା ପାଇଁ ଅଧୀନସ୍ଥ ମନ୍ତ୍ରୀ ମଧ୍ୟ ଆତ୍ମୀୟ ସଖା ପରି ରାଜାଙ୍କୁ ଆଦର ସୂଚକ 'ତୋତେ' ବ୍ୟବହାର କରିଛି ।

କଥା ଗତି କରି ଚାଲିଛି, ମହିଷାସୁର କୃତ କୁଶଦ୍ୱୀପ ଅଭିଯାନ ଉପାଖ୍ୟାନକୁ । ଏଠାରେ ସନ୍ଧି ଓ ଯୁଦ୍ଧ ସହଜରେ ସମାହିତ ହୋଇନାହିଁ ବିଚିତ୍ର ପରିବେଶ ମଧ୍ୟରେ ସମ୍ବାଦ ପରିବେଷିତ ହୋଇଛି । ଚାରର ସମ୍ବାଦରେ କଥାର ଆରମ୍ଭ ହୁଏ-

ରାଜାର ଅଗ୍ରତେ ସେ କହନ୍ତି ଚାରଗଣ
ସ୍ୱାମୀ ତୋହୋର ରାଜ୍ୟକୁ ମଂୟେଷାସୁର କରଇ ପୟାଣ

ବଡାଇ ପ୍ରତାପୀ ସେ ମଂଷାସୁର ରାଜା
ବ୍ରହ୍ମାର ବରେ ସେ ନ ଲେଖଇ କାହ ଦୂଜା । ୩୯୦

ଅବ୍ୟକ୍ତ ନାରାୟେଣ ସେ କଇଛା ଜଗଯେଠି
ତ୍ରିଇଲୋକେ ବିଦିତ ତାହାର ନାମ ଗୋଟି । ୩୯୧

ସତ୍ୟଯୁଗ ଅନ୍ତ ତୁ କଲୁ କର୍ମବଳେ
ତୋତେ ପରଥାଠ ହୋଇଲା ଏତେକାଳେ । ୩୯୨

ସମର କରିବା କି କରିବା ଦେବ ସନ୍ଧି
ତୁ ସର୍ବଜ୍ଞ ଧାର୍ମିକ ଜାଣୁ ସର୍ବବୁଧି । ୩୯୩

ଚାର ତା ' ଉକ୍ତିର ଶେଷ ଅଂଶରେ ନିଜ ରାଜାଙ୍କୁ ସର୍ବଜ୍ଞ, ଧାର୍ମିକ, 'ଜାଣୁ ସର୍ବ ବୁଧି' କହି ପ୍ରଶଂସା କରିଥିଲେ ହେଁ, ମହିଷାସୁରର ବଳବୀର୍ଯ୍ୟ, ପ୍ରତାପ ଓ ମହିମା ବର୍ଣ୍ଣନା ତୁଳନାରେ ଏ ସବୁ ମୂଲ୍ୟହୀନ ହୋଇଯାଏ । ମହିଷାସୁରର ପ୍ରତାପ ବର୍ଣ୍ଣନାରେ ଚାରର ମନକଥା ଅତି ସ୍ପଷ୍ଟ । ରାଜା ମଧ୍ୟ ସବୁ ଜାଣି ଶୁଣି ଏହାର ଉତ୍ତର ଦେଇ ନାହାନ୍ତି । ସେଥିପାଇଁ ଶିବପାଳ ମନ୍ତ୍ରୀ ବୁଝାଇବାକୁ ଚେଷ୍ଟା କରିଛି ।

ରାଜାକଇ ବୁଝାବଇ ସେ ଶିବପାଳ ମନ୍ତ୍ରୀ
ମୁଁ ଯିବିକି ସେ ମହିଷାସୁରକୁ ନିବର୍ତ୍ତି । ୩୯୭

କିସ ଅର୍ଥେ ଆଗମ ସେ ଆମ୍ଭର ପୁରକୁ
ସଂକ୍ଷେପ କରି ଦେବ ପୁଚ୍ଛିବା ତାହାକୁ । ୩୯୮

ପ୍ରୀତି ହୋଇଲେ ସନ୍ଧି କି କରିବା
ଅଥବା କାର୍ଯ୍ୟ ହିଂ ନଗଲେ ଯୁଧ୍ୟ କି କରିବା । ୩୯୯

ଏହା ପରେ ପ୍ରଚଣ୍ଡାସୁର ସନ୍ଧିରେ ରାଜି ହୋଇ ଧନ, ରତ୍ନ ସହିତ ଯାଇ ମହିଷାସୁର ସହିତ ସନ୍ଧି କରିବା ପାଇଁ ମନ୍ତ୍ରୀଙ୍କୁ ଆଦେଶ ଦିଏ ।

ଆଗ୍ୟାଂ ଦେଲା ସେ ପ୍ରଚଣ୍ଡସୁର ରାଏ
ଅନେକ ଉପହାର ଯୋଗାଡ ଘେନ ଆଏ । ୪୦୦

ମନ୍ତ୍ରୀ ଯାଇ ମହିଷାସୁର ସମ୍ମୁଖରେ ଅତି ବିନୟ ସହକାରେ ସନ୍ଧି ପ୍ରସ୍ତାବ ଆଗତ କରେ ।

ମନ୍ତ୍ରୀ ବୋଇଲା ଦେବ ଶୁଣ ଦେବ ବଚନ ମୋହୋର
ପ୍ରଚଣ୍ଡସୁର ରାଜା ଯେ ପୀରତି ତୋହୋର । ୪୧୦

ସେ ଶିବର ପୁତ୍ର ତୁ ଅଟୁ ବ୍ରହ୍ମାର ନନ୍ଦନ
ତାହାରେ ତୋହୋରେ ସେ ଅନେକ ପ୍ରୀତିମାନ । ୪୧୧

ମନ୍ତ୍ରୀର କୋମଳ ବିନୟ ବଚନ ମହିଷାସୁର ଶରୀରରେ ରୋମାଞ୍ଚ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ ହେଁ, ସେ ଏହି ପ୍ରସ୍ତାବରେ ରାଜି ନ ହୋଇ କହିଲା -

ତାହାର ମୋହୋର ଯେବେ ହୋଇଲା ଏକ ପ୍ରୀତି
ମୁକୁଳ ଦେଉ ସେ ଚଣ୍ଡ ମୁଣ୍ଡ ଦୁହିଁନ୍ତି । ୪୦୬



ଅଥବା ନ ଦେବ ସେ ଚଣ୍ଡ ମୁଣ୍ଡନ୍ତ
ମୋହୋର ତୁଲେ ସେ ସମର କରିବ ନିତାନ୍ତ । ୪୧୮
ମାରିବଇଂ ସମରେ କାଟିବଇଂ ମାଂସ
ଖାଇବି ସବୁକୁହିଂ ଉଜାଡିବି ଦେଶ । ୪୧୯

ମନ୍ତ୍ରୀଙ୍କଠାରୁ ସବୁ ସମ୍ବାଦ ଶୁଣି-

ପ୍ରଚଣ୍ଡସୁର ବୋଇଲା ଯେ ତାହାର ମୋହୋର ପୀରତି
ପୁଅନ୍ତ ଦେଇ ମୋହୋର କିସ ଜୀବତି । ୪୨୭

ସନ୍ୟ ଦେବି ଅନେକ ଧନ ରତ୍ନ ଦେବି
ଯେତେବେଳେ ଯହିଁକି ପେଷିବ ତହିଁକି ଦଣ୍ଡ ସାଜି ଚଳିବି । ୪୨୮

ଏକଥା କହୁଂ କହୁଂ ରାଜାଙ୍କ ହୃଦୟ ବିଚଳିତ ହୋଇଗଲା । ଅଶ୍ରୁପୂର୍ଣ୍ଣ ନୟନରେ ସେ ନିରୁପାୟ ଓ ନିସତ ହୋଇ ଆଦେଶ ଦେଲେ 'ମୋର ଦଣ୍ଡ ସାଜ ବେଗେ ଯାଅ ଯା' । ଯୁଦ୍ଧ ହେଲା ଏବଂ ଯୁଦ୍ଧରେ ମହିଷାସୁର ପରାଜିତ ହେଲା । ସେତେବେଳେ -

ମହିଷାସୁର ବୋଇଲା ଯେ ସମର ଛାଡ ବୁଦ୍ଧି
ଏହାର ଆମ୍ଭର ହୋ କରନା ପ୍ରୀତି ସନ୍ଧି । ୪୭୭

ନିଶହସ୍ତ୍ର ହୋଇ ଛାମୁକୁ ତା ଯିବା
ବିନୟ ହୋଇଣ ପୁରସରି କହିବା । ୪୭୮

ବନ୍ଧୁଗୁଣ ଉପୁଜାଇ ବସିବା ସନ୍ନିଧ୍ୟାନେ
ଅବା ସନ୍ଧି ନୋହିଲେ ସମର ହୋଉ ଅନ୍ୟେ ଅନ୍ୟେ । - ୪୭୯

ପ୍ରଥମେ ସନ୍ଧି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ପରେ ସେହି ସର୍ତ୍ତକୁ ବାଧ୍ୟ ହୋଇ ଗ୍ରହଣ କରିବାବେଳେ ସମ୍ବାଦ ଅନୁରୂପ ପରିବେଶ ସୃଷ୍ଟି କରିବା ପାଇଁ କବି ଚେଷ୍ଟା କରିଛନ୍ତି । 'ନିଶହସ୍ତ୍ର ହୋଇ ଛାମୁକୁ ଯିବା', 'ବିନୟ ହୋଇଣ ପୁରସରି କହିବା', 'ବନ୍ଧୁଗୁଣ ଉପୁଜାଇ ବସିବା ସନ୍ନିଧ୍ୟାନେ' ପ୍ରଭୃତି ଉକ୍ତି ଥିଲା, 'ମାରିବଇଂ ସମରେ କାଟିବଇଂ ମାଂସ ଓ ଖାଇବି ସବୁକୁହିଂ ଉଜାଡିବି ଦେଶ' ପରି ପ୍ରତିଜ୍ଞା କରିଥିବା ମହିଷାସୁରର ।

**ଚରିତ୍ର ସବୁର ଅନ୍ତର୍ବୃତ୍ତି ବିଶ୍ଳେଷଣ:** ସମ୍ବାଦ ହିଁ ମନୁଷ୍ୟର ଅନ୍ତର୍ବୃତ୍ତିକୁ ପ୍ରକାଶ କରିବା ପାଇଁ

ପ୍ରଧାନ ମାଧ୍ୟମ । ନିଜ ମନର ସୁଖ, ଦୁଃଖ ଚିନ୍ତା ଓ ଚେତନାକୁ ଅନ୍ୟ ସମ୍ମୁଖରେ ଜଣାଇବା ପାଇଁ ମନୁଷ୍ୟ କଥା କୁହେ, ଏବଂ ସେହି କଥା କହିବାବେଳେ, ସେ ଯଉଁ ସବୁ ଚିନ୍ତା ପ୍ରକଟ କରେ, ସେହିସବୁ ତା' ଚରିତ୍ରକୁ ବିଶ୍ଲେଷଣ କରିବାରେ ସାହାଯ୍ୟ କରେ। ପ୍ରବଳ ପ୍ରତାପଶାଳୀ ମହିଷାସୁର ଦେବତାମାନଙ୍କୁ ନିଜ ଶରୀର ଶକ୍ତିବଳରେ ପରାଜିତ କରିପାରୁଥିଲେ ହେଁ, ତା'ର ମନର ବଳ ଆଦୌ ନଥିଲା । ନାରୀର ମୋହିନି ରୂପ, ତାର ସମସ୍ତ ବିଶିଷ୍ଟ ସେନାପତି ଓ ଅଗଣିତ ସେନାଙ୍କୁ ବିନିଷ୍ଟ କରୁଥିବା ସେ ଆଖି ଆଗରେ ଦେଖୁଥିଲେ ହେଁ, ଶେଷ ସମୟ ପର୍ଯ୍ୟନ୍ତ, ସେ ନିଜକୁ ସେହି ମାୟାରୁ ନିବୃତ୍ତ କରିପାରି ନଥିଲା । ଦୁର୍ଗାଙ୍କ ସହ ସମ୍ମୁଖ ସମରରେ ହାରିଯାଇ ଅନ୍ତଃପୁରରେ ଆଶ୍ରୟ ନେଇଥିବା ମହିଷାସୁର ନିଜ ଶକ୍ତି ସମ୍ବନ୍ଧରେ ସଚେତନ ହୋଇ ଯାଇଥିଲେ ବି, ଶରଣ ନେବାର ସାହସ ମଧ୍ୟ ତାର ନଥିଲା । ମହିଷାସୁରର ଏହି ଅନ୍ତର୍ଦ୍ୱନ୍ଦ ତା'ର ପତ୍ନୀ କାଳୀ ଓ କରାଳୀ ସହ କଥାବାର୍ତ୍ତା ବେଳେ ପରିସ୍ଫୁଟ ।

ମହିଷାସୁର ଯୁଦ୍ଧ କ୍ଷେତ୍ରରୁ ପଳାୟନ କରି ଅନ୍ତଃପୁରରେ ପ୍ରବେଶ କରିବାରୁ କାଳୀ କରାଳୀ 'ବେନି ଭାରିଯା' ଅର୍ଘ୍ୟ ଘେନି ରାଜାଙ୍କର ବନ୍ଦାପନା କଲେ । ରାଜାଙ୍କର ଦୁର୍ଦ୍ଦଶା ଦେଖି ସେମାନେ ଶରଣ ପଶିବା ପାଇଁ ରାଜାଙ୍କୁ ଅନୁରୋଧ କରିଥିଲେ । ସେମାନଙ୍କ ମନରେ ଶରଣ ପଶିବା ହିଁ ସବୁ ଚିନ୍ତାରୁ ମୁକ୍ତି ପାଇବାର ଏକମାତ୍ର ପଥ ।

ରାଜାର ବିଷାଦ ଦେଖି ସେ ବଦନ୍ତି ପ୍ରିୟବତୀ
ଶରଣ ପଶିବା ଯାଇଁ ଛାଡ ମନଭ୍ରାନ୍ତି । ୩୯୦୨
ସ୍ୱାମି ଗଳାରେ କୋଠାର ବାନ୍ଧି ଦାନ୍ତେ ତିରଣ ଘେନି
ଚାଲ ଛାମୁରେ ଯାଇ ପଶିବା ଦଇନି । ୩୯୦୩

ରାଣୀମାନଙ୍କ ଅନୁରୋଧରେ ମହିଷାସୁରର ପ୍ରତିକିୟା ତତ୍ତ୍ୱ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ମନୁଷ୍ୟ ମାୟା, ମୋହ ଓ ଅହମିକା ତ୍ୟାଗ କରି ଭଗବାନଙ୍କ ନିକଟରେ ଶରଣ ଯିବାକୁ ହିଁ ପ୍ରକୃତ ଧର୍ମବାଟ କୁହାଯାଇଛି । ଗୀତାର ଏହି ମହାନ ଉପଦେଶକୁ ମହିଷାସୁର ମଧ୍ୟ ଭଲ ରୂପେ ଜାଣିଥିଲା । କିନ୍ତୁ ତା'ର ଉଦ୍ଦେଶ୍ୟ ଥିଲା ଭିନ୍ନ । ପରମ ସ୍ରଷ୍ଟାଙ୍କର ସମସ୍ତ ନିୟମକୁ ଭାଙ୍ଗି ଏକ ନୂଆ ସଂସାର ଗଢ଼ିବା ପାଇଁ ସେ ଚାହିଁଥିଲା । ସେଥିପାଇଁ ସ୍ତ୍ରୀମାନଙ୍କର କୋମଳ ବିନୟ ବାଣୀରେ ସେ ସନ୍ତୁଷ୍ଟ ହୋଇ ଯେତେବେଳେ ଅଭିମାନ ଶୂନ୍ୟ ହେଲା, ସେତେବେଳେ ସେ କହିଥିଲା-

ପଶିବଇଂ ଶରଣ ଯେବେ ମାଗିବଇଂ ଧର୍ମବାଟ
ଅସୁର ବଳ ଗୋତ୍ରକୁ ଆମ୍ଭର ହୋଇବ ବଡ଼ ଘାଟ । - ୩୯୦୫

କିନ୍ତୁ ମହାଶକ୍ତି[illegible]ୀ ଦୁର୍ଗାଙ୍କୁ ସେ ଏକ ସାଧାରଣ ସ୍ତ୍ରୀ ଭାବେ ବିଚାର କରୁଥିଲା । ଅନେକ ମନ୍ତ୍ରୀ କହିବା ଧଲେ ତା'ର ବୁଦ୍ଧି ହେଲା ନାହିଁ । ସ୍ୱଚକ୍ଷୁରେ ନାରାୟଣୀଙ୍କୁ ଦେଖି ମଧ୍ୟ ସେ ବୁଝିପାରିଲା ନାହିଁ । ସେଥିପାଇଁ ସେ କହିଲା -

ଆହେ ନାନା ଜନ୍ତୁ ମଧ୍ୟେ ସ୍ତିରୀ ଲିଙ୍ଗହିଂ ସେ ହୀନ
ଏଡେ ବଡ ବାଟକୁ କିସ ତାହାର ଗ୍ୟାନ ।

ସେ ଯଦି ଧର୍ମ ବାଟକୁ ନ ଜଗେ, ଦୟା ନକରେ, ତାହେଲେ, ଛତ୍ରୀ କୁଳକୁ ଯେ କେବଳ ଉପହାସ ହେବ, ତାହା ନୁହେଁ ଶରଣ ପଶିବା ବୃଥା ହୋଇଯିବ । ସେତେବେଳେ ସେ ସ୍ଥିର କଲା -

ଏ ଘାନ୍ତି ରଣ ଯୁଧ୍ୟ କରିବି ମୁହିଂ ଏକା
ଛାଡିଲି ମାୟା ମୋହ ମରଣକୁ ନିଶଙ୍କା ପ.ସଂ-୩୮୦୦

ଏହିପରି ବହୁ ସମ୍ବାଦ ମଧ୍ୟରେ ଅନ୍ତର୍ବୃତ୍ତି ବିଶ୍ଳେଷଣ କରିବାଥିଲା କବିଙ୍କର ଲକ୍ଷ୍ୟ ।

**କଥାରେ ନାଟକୀୟତା :** ବିଷୟବସ୍ତୁ ମଧ୍ୟରେ ବହୁ ବିଭିନ୍ନ ଚରିତ୍ରର ସମାବେଶ କରି ଏବଂ ଚରିତ୍ର ସବୁରେ ଉକ୍ତି ପ୍ରତ୍ୟୁକ୍ତିର ସଂଯୋଜନା କରି ପୁଣି ସେହି ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ରୂପବର୍ଣ୍ଣନା, ଶ୍ରୀମୁଖ ବା ଚିଟାଉ ଓ ଅନ୍ୟାନ୍ୟ ବର୍ଣ୍ଣନାକୁ ରଖି, କବି **ଚଣ୍ଡୀ ପୁରାଣ**କୁ ସମ୍ବାଦ ଶୈଳୀ ପରିପୁଷ୍ଟ ଏକ ନାଟକୀୟ ଗ୍ରନ୍ଥରେ ପରିଣତ କରିଛନ୍ତି । ଉକ୍ତି ପ୍ରତ୍ୟୁକ୍ତି ବେଳେ ପ୍ରତ୍ୟେକ ଚରିତ୍ରର ନାମକୁ ନାଟକ ସଦୃଶ ପ୍ରଥମରୁ ହିଁ ରଖାଯାଇଛି ।

'ବୋଇଲା' - ୧ । ନ ଘୋଷ ବୋଇଲା ତୋହୋର ଆଏ କିଏ ବଳେ ନେମ ? -୧୭୦୩
୨ । ଚାଣ୍ଡାଳ ବୋଇଲା ମୋହର ଯୁଗତେ ଅଛି ମହାରାଏ -୧୭୦୪
୩ । ବଶିଷ୍ଟେ ବୋଇଲେ ଶୁଣ ହୋ ଚାଣ୍ଡାଳ । -୧୭୧୫
୪ । ଋଷିମାନେ ବୋଇଲେ ହୋ ଅମ୍ବିକା ଚାଣ୍ଡାଳ । -୧୭୨୪
୫ । ସେ ଚାଣ୍ଡାଳ ବୋଇଲା ଶୁଣିମା ଗୋସାଇଂ । -୧୭୨୬
୬ । ବଶିଷ୍ଟେ ବୋଇଲେ ଦେଖିବା ଆଣ ତୋର ଝିଅ -୧୭୨୮

'କହଇ' - 'ବୋଇଲା' ଓ 'ବୋଇଲେ' ପରି ବେଳେ ବେଳେ 'କହଇ' କ୍ରିୟାର ପ୍ରୟୋଗ କରାଯାଇଛି ।

୧ । ଅନ୍ଧେକ ମନ୍ତ୍ରୀ କହଇ ଶୁଣ ଜଗୁପତି । - ୧୧୯୨

ସାରଳା ଦାସଙ୍କ ସମ୍ବାଦ ଶୈଳୀର ନାଟକୀୟତା କେବଳ ଏହି ଗୋଟିଏ ରୂପରେ ନୁହେଁ, ବିଭିନ୍ନ ଘେନି ଆତ୍ମପ୍ରକାଶ କରିଛି ।

ସମ୍ବୋଧନ ପରେ କଥାର ଆରମ୍ଭ-

ଶୁଣ ହୋ ପରୀକ୍ଷ ରାଜା !! ବଦନ୍ତି ଶୁକମୁନି । -୧୬୩୨
ଶୁଣ ହୋ ପରୀକ୍ଷ ରାଜା ! ବଦୟନ୍ତି ଶୁକ ବ୍ରହ୍ମା । -୨୧୦୦

କ୍ରିୟାକୁ ପ୍ରଥମେ ରଖି ପରେ ସମ୍ବୋଧନ କରି -

ବଦନ୍ତି ଶୁକମୁନି ଶୁଣ ହେ ପରୀକ୍ଷି - ୨୧୦୫

କୌଣସି ସମ୍ବୋଧନ ନଥାଇ ମଧ୍ୟ କହିବାର ଅବତାରଣା

ବଦନ୍ତି ସାରଳା ଦାସ ପ୍ରଣପତ୍ୟ ସଂସାର ଜନଙ୍କର ହିତେ - ୨୦୯୯

ଚରିତ୍ର ସବୁଙ୍କୁ ସମ୍ବୋଧନ କରିବା ବିଧିରେ ମଧ୍ୟ ଗ୍ରନ୍ଥରେ ନାଟକୀୟତା ପ୍ରବେଶ କରେ । ପରୀକ୍ଷଙ୍କ ପ୍ରତି ଆହୋ, ଆହୋ ପରୀକ୍ଷ, ଶୁଣ ପରୀକ୍ଷ ପ୍ରଭୃତିର ବ୍ୟବହାର ପରି ଗ୍ରନ୍ଥସ୍ଥିତ ଅନ୍ୟାନ୍ୟ ଚରିତ୍ରମାନଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ସମ୍ବୋଧନ ବାଚକ ପଦର ବ୍ୟବହାର ଗ୍ରନ୍ଥରେ ଦେଖିବାକୁ ମିଳେ । ଏହି ସମ୍ବୋଧନରେ ସ୍ୱାଭାବିକତା ଆଣିବା ପାଇଁ କବି ଦୁର୍ଗାଙ୍କୁ 'ମାତ ଗୋ', 'ମା ଗୋ' ଓ 'ଗୋ ମାତା' କହୁଥିବାବେଳେ ମୁନିମାନଙ୍କୁ 'ମୁନି ହେ' ଓ 'ଭୋ ମୁନି' କହିଛନ୍ତି । ଦେବତା ମାନଙ୍କୁ ସମ୍ବୋଧନ କଲାବେଳେ ଏହାର ରୂପକୁ ପରିବର୍ତ୍ତିତ କରି 'ଭୋ ଈଶ୍ୱର'ର ପ୍ରୟୋଗ କରାଯାଇଛି । ଦେବତା ଓ ମୁନିମାନଙ୍କ ପାଇଁ ସମ୍ମାନ ସୂଚକ ସମ୍ବୋଧନ ପଦର ବ୍ୟବହାର ହୋଇଥିବା ବେଳେ ଦାନବ ମାନଙ୍କୁ ସମ୍ବୋଧନ କଲାବେଳେ କବି 'ଆରେ ମୂର୍ଖ ଦାନେବ' କହିଛନ୍ତି । ସେହିପରି ଦୂତ ଓ ସେନା ମାନଙ୍କୁ 'ଆରେ ଆରେ' କୁହାଯାଇଛି । ପୁରୁଷମାନଙ୍କ ପରି ସ୍ତ୍ରୀମାନଙ୍କ ସମ୍ବୋଧନରେ ମଧ୍ୟ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଯେତେବେଳେ ନାରୀମାନଙ୍କୁ ପ୍ରୀତି ଓ ଆଦରର ସମ୍ବୋଧନ କରାଯାଇଛି, ସେତେବେଳେ 'ରେ ପ୍ରାଣବଲ୍ଲଭୀ'ର ପ୍ରୟୋଗ ହେବାପରି ଅନାଦର ବେଳେ 'ଆଲୋ ଆଲୋ' କୁହାଯାଇଛି ।

ଏହିସବୁ ସମ୍ବୋଧନ ବାଚକ ପଦ ମଧ୍ୟରେ ବେଳେ ବେଳେ 'ଇଦଂ ବାଚ, ୟେ,' 'ଇଦଂ ବାକ୍ୟ କହିଲେ' ପୁଣି 'କିସ ପ୍ରତିବାକ୍ୟ' ପରି ପ୍ରୟୋଗ ଦେଖିବାକୁ ମିଳେ । ଏ ସବୁ ବୋଧହୁଏ ଥିଲା କବିଙ୍କ ଉପରେ ସଂସ୍କୃତ ଭାଷାର ପ୍ରଭାବ ।

ଗ୍ରନ୍ଥ ମଧ୍ୟରେ କେବଳ ଚରିତ୍ର ସବୁ ଯେ ପରସ୍ପରକୁ ସମ୍ବୋଧନ କରି କଥାବାର୍ତ୍ତା କରୁଥିଲେ ତାହା ନୁହେଁ, କବି ମଧ୍ୟ ଅନେକ ସମୟରେ ବୁଧ ଓ ପଣ୍ଡିତ ମାନଙ୍କୁ ସମ୍ବୋଧନ କରି ପଦେ ଦି ପଦ ନୀତିବାକ୍ୟ ଶୁଣାଇବା ପାଇଁ ଇଚ୍ଛା ପ୍ରକାଶ କରୁଥିଲେ ।

୧ । ହେ ପଣ୍ଡିତ ଜନେ ବିଚାର କର ହୃଦେ
ଚିର ଆଇଷ୍ୟ କ୍ଷୟ ଯାଇଚି ପରସ୍ତିରୀ ଲୁବୁଧେ । -୨୧୦୨

୨ । ହେ ବୁଧଜନେ ନ ଘେନିମା ମୋର ଦୋଷ
ସମସ୍ତ ଝଗଡ ଛାଡି କୃଷ୍ଣ ନାମ ଘୋଷ -୧୦୮୦

ଆଦେଶ ସୂଚକ କ୍ରିୟାର ବ୍ୟବହାର ସମ୍ବାଦର ଅନ୍ୟ ଏକ ରୂପ ଏବଂ ଏହା ଦ୍ୱାରା ଗ୍ରନ୍ଥରେ ନାଟକୀୟତାର ସମାବେଶ ହୁଏ । ଚଣ୍ଡୀ ପୁରାଣରୁ ଏହାର କେତେକ ଉଦାହରଣ ଗ୍ରହଣ କରାଯାଇପାରେ :

୧ । ଆରେ ଆରେ ରହ ରହ ବୋଲି ବୋଲଇ ମହିଷା - ୪୫୪

୨ । ପ୍ରାଣେ ନ ମାର ରେ ଧର ଏହା ବେଢ଼ି
ମୋହର ରାଜ୍ୟକୁ ରେ ନେମା ଦଣ୍ଡ ଚଢ଼ି ପ.ସଂ- ୪୫୬

୩ । ଧାଅ ଲୋ ମାର ଲୋ ବୋଲି ଦିଅନ୍ତି ହାକ । ପ.ସଂ - ୨୫୫୮
ମାର ଲୋ ଦାନବ ବଳ କେମନ୍ତେ ଲୋ ଦେଖ । ପ.ସଂ -୨୫୫୯

୪ । ଧାଆ ଲୋ ଖାଅ ଲୋ ଅସୁର ବଳ ବେଢ଼ି । ପ.ସଂ- ୨୬୪୦୫

ବର୍ଣ୍ଣନାରେ ସଜୀବତା : କବି ସାରଳାଦାସ **ଚଣ୍ଡୀ ପୁରାଣ**କୁ ସଜୀବ କରିବା ପାଇଁ ଏଥିରେ କେବଳ ଯେ ବିଭିନ୍ନ ପ୍ରକାର ସମ୍ବାଦର ସମାବେଶ କରିଛନ୍ତି ତାହା ନୁହେଁ, ସେ ଏହି ସବୁ ସମ୍ବାଦକୁ ସ୍ୱାଭାବିକ, ରମଣୀୟ ତଥା ସଂକ୍ଷିପ୍ତ କରି ପ୍ରକାଶ କରିଛନ୍ତି । ଯାହା ଫଳରେ ସମ୍ବାଦ ହୋଇଛି **ଚଣ୍ଡୀ ପୁରାଣ**ର ପ୍ରାଣ । ଏଥିରୁ ସମ୍ବାଦ ସବୁକୁ ଅଲଗା କରିଦେଲେ, ଏହାର ସଜୀବତା ନଷ୍ଟ ହୋଇ ଏହା ପଙ୍ଗୁ ହୋଇଯାଏ । ସମ୍ବାଦ ସବୁ ପୁରାଣର ଏକ ଆବଶ୍ୟକୀୟ ଅଙ୍ଗ ରୂପେ ଗୃହୀତ ହୋଇଥିଲେ ହେଁ, **ଚଣ୍ଡୀ ପୁରାଣ**ରେ କବି ଏହାକୁ ବିଶେଷ ଗୁରୁତ୍ୱ ଦେଇଥିବା ଜଣାଯାଏ । ନିମ୍ନରେ ସମ୍ବାଦ ସବୁକୁ ଏହାର ତିନୋଟି ବିଶିଷ୍ଟ ପ୍ରବୃତ୍ତି ଦୃଷ୍ଟିରୁ ପରୀକ୍ଷା କରାଯାଇଛି ।

ସ୍ୱାଭାବିକତା -

ଚଣ୍ଡୀ ପୁରାଣ ହେଉଛି, ଏକ ଯୁଦ୍ଧର ପୁରାଣ । କବିଙ୍କ ମତରେ ରାମାୟଣ ଓ ମହାଭାରତର ଯୁଦ୍ଧ ଅପେକ୍ଷା ଏହାର ମହତ୍ତ୍ୱ ବେଶୀ । ଗ୍ରନ୍ଥର ଆଦିରୁ ଅନ୍ତ ପର୍ଯ୍ୟନ୍ତ ଅର୍ଥାତ ମହିଷାସୁରର ଦିଗ୍‌ବିଜୟଠାରୁ ତାର ମୃତ୍ୟୁ ପର୍ଯ୍ୟନ୍ତ ସବୁଠାରେ ଯୁଦ୍ଧର ବାଦ୍ୟ ହିଁ ଶୁଣିବାକୁ ମିଳିଥାଏ । ଚଣ୍ଡୀମାନଙ୍କଠାରେ ଯୁଦ୍ଧର କିଛି ମୂଲ୍ୟ ନ ଥିଲା । ସେମାନେ ଅସୁରଙ୍କୁ ଗୋଟା ଗୋଟା ଗିଳି ଦେଉଥିଲେ, ରକ୍ତପାନ କରୁଥିଲେ ଏବଂ ହାଡକୁ ମଡ ମଡ କରି ଚୋବାଉଥିଲେ । ଚଣ୍ଡୀଙ୍କର ଅଲୌକିକ ଶକ୍ତିର ପ୍ରଦର୍ଶନ ପାଇଁ କବି ଏ ପ୍ରକାର ବର୍ଣ୍ଣନା ଗ୍ରନ୍ଥ ମଧ୍ୟରେ ପ୍ରଦାନ କରିଥିଲେ ହେଁ, ପାଠକକୁ ଏହା ବିବ୍ରତ କରେ ନାହିଁ । ଚଣ୍ଡୀଙ୍କର ଏ ପ୍ରକାର କୃତୀ ସହ ସାଧାରଣ ହିନ୍ଦୁ ସମାଜ ଏତେ ସଚେତନ ଯେ, ଏଥିରେ ଥିବା ଅସ୍ୱାଭାବିକତା ତାକୁ ଆଦୌ ସ୍ପର୍ଶ କରେ ନାହିଁ । ସେ ବରଂ ସାରଳା ଦାସଙ୍କ ସଙ୍ଗରେ କଣ୍ଠ ମିଳାଇ କୁହେ -

ସମୋଦ୍ର ପର୍ବତ ମିଶାଇ ପିଇଲେ ନ ଅଣ୍ଟଇଂ
ଏ କିସ ବଳ ଥାଠ ଅସୁର ବଳ ହିଁ ।

ଯେତେହେଲେ ଚଣ୍ଡୀ ହେଲେ ନାରୀ । ମହାଭାରତରେ ମଲ୍ଲଯୁଦ୍ଧକୁ ପ୍ରଧାନ୍ୟ ଦେଇଥିବା ସାରଳା ଦାସ ସେଥିପାଇଁ **ଚଣ୍ଡୀ ପୁରାଣ**ରେ ଗ୍ରନ୍ଥର ସ୍ୱାଭାବିକତା ରକ୍ଷା କରିବା ପାଇଁ ମଲ୍ଲ ଯୁଦ୍ଧର ଆଦୌ ଉଲ୍ଲେଖ କରି ନାହାନ୍ତି । ପୁଣି ଯୁଦ୍ଧ କାଳରେ ଦୁଇ ବିପକ୍ଷ ପକ୍ଷ ପରସ୍ପର ମଧ୍ୟରେ ଯେଉଁ ଉକ୍ତି ପ୍ରତ୍ୟୁକ୍ତି କରିଛନ୍ତି, ତାହା ଚରିତ୍ରୋମୁଖୀ ତଥା ସ୍ୱାଭାବିକ ହୋଇଛି ।

ମହିଷାସୁରର ଦୃଢ଼ ବାକ୍ୟ-

ଅଦଭୁତ ହୋଇଣ ଆଇଲୁଂ କେବଣ ଦେଶୁଂ
ସ୍ତିରୀ ଲିଙ୍ଗ ଦେଖାଇ ସଖା ମୋ ନାଶୁଂ । ୪୦୭୧
ଆଲୋ ଆଲୋ ମୋର ଯୋଧ୍ୟାନ୍ତ ମାଇଲୁ ଅଖଡେ
ସ୍ତନ ଯଉବନ ବହିଂ ତୋର ବିଶ୍ୱାସଘାତ ଏଡେ । ୪୦୭୨
ପୁଣ ପୁଣ ଦାନବ କହଇ ଗଳଗାଜି
ଆଜ ମଏଂସ ତୋର ଖାଇବି ମୁଇଂ ଭାଜି । ୪୦୭୩
ଆଲୋ ତୋହର ରୋଧିରେ ଆଜ କରିବି ସ୍ନାହନ
ତେବେ ସେ ପାଶୋରିବି ସଖାନ୍ତ ଦୁଃଖମାନ । ୪୦୭୪

ନିର୍ଭୟା ମହାମାୟାଙ୍କ ଦୃଢ଼ ବାକ୍ୟ -

ଆରେ ଦେବଲୋକ ଉରସଲ କାହିଁକି ଆଜ ଯିବୁ
ସଖାନ୍ତ ମରାଇ ତୁ ଥାଇ ଏକା କିସ କରିବୁ । ୪୦୭୬
ଏଡେକ ଦର୍ପ ତୁରେ କହୁଛୁ ରାକ୍ଷସ
ତିଳ ପରମାଣେ କାଟିବି ତୋର ମାଏଂସ । ୪୦୭୭
ଯଶବନ୍ତୀ ପୁରେ ତୁ ଯାଇଂ କରିବୁ ବାସ
ଗର୍ଦ୍ଧଭ ଜମ୍ବୁକୀରେ କରିବେ ତୋତେ ଗ୍ରାସ । ୪୦୭୮

ନାରାୟଣୀ ଓ କାଳ ବିମୋଚନର ଉକ୍ତିପ୍ରତ୍ୟୁକ୍ତିରେ ନାରୀ ନିନ୍ଦା, ନାରୀ ମହିମା ଓ ସଂସାରର ନଶ୍ୱରତା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଶକ୍ତିଶାଳୀ ଭାଷା ମାଧ୍ୟମରେ ମନର ଦୃଢତା ହିଁ ପ୍ରକାଶିତ ।

କାଳ ବିମୋଚନ -

'ଆଗୋ କେବଣ ଦେଶରୁ ତୁ ଅଇଲୁ ତୁ ଯେ ଅଦଭୁତେ ଯୁବତୀ
ବିଶ୍ୱାସଘାତକେ ମାଇଲୁଂ ସମସ୍ତ ସେନାପତି । ୨୮୨୩

ଦାନବର ଉଞ୍ଚବାଚ ଶୁଣି ଦୁର୍ଗାଙ୍କ ଉତ୍ତର -

ଆହୋ ସର୍ବଦା ପ୍ରାଣୀଙ୍କର ନୋହଇ ସମ୍ପଦ
ଯେ ବଢଇ ସେ ଛିଡଇ ପଡଇ ପରମାଦ ।
ଆରେ ତୁମ୍ଭଙ୍କୁ ଯେ ବର ହେଲା ଯେବଣ ମହାତମା
କୋଟିଏ ବେଳ ପ୍ରାଣତ୍ୟାଜ ହୋଇଲା ନିଜେ ବ୍ରହ୍ମା ।
ଆରେ ଈଶ୍ୱରଙ୍କୁ ବୋଲି ଆଦି ଯୋଗବାସୀ
ସହସ୍ରେ ବାସ୍ତରି ବେଳ ଶ୍ୟରୀର ବିନାଶି ।

ପଦ୍ମେକ ବାର ଇନ୍ଦ୍ର ହିଂ ନାଶ ଗଲା
ଦିଗପାଳମାନନ୍ତ କେହୁ ଶୁଣିଲା ।
କେଉଂ ବ୍ରହ୍ମା ବର ପାଇଂ ତୁମ୍ଭର ଏତେକ ଗରବ
ସେ ବ୍ରହ୍ମା ପୁଣି ଅବଶ୍ୟ ନାଶ ଯିବ ।
ନାରାୟଣୀ ବୋଇଲେ ନ ଜାଣି ଅପଖ୍ୟାତ ଦିଅ ତୁମ୍ଭେ ଅବା
ଏ ମୃତୁମଣ୍ଡଳେ ସମସ୍ତେ ହେଂ ମରିବା ।
ତୁମ୍ଭେ କେମନ୍ତେ ତ୍ରିଜୀବୀ ପାଇଁ ଅଛ
ଯେ ତୁମ୍ଭଙ୍କୁ ବର ଦେଲା ସବୁ ତାହାର ମିଛ ।
ଅନେକ କାଳ ତୁମ୍ଭେ ଭୋଗ କରୁଥିଲ ପୃଥୀ
ଏତେ କାଳେ ମୃତୁ ହୋଇଲା ପ୍ରାପତି ।
ଯେତେ ଦର୍ପ କହ ତୁମ୍ଭର ସବୁ ଅକାରଣ
ସମସ୍ତ ଦାନେବ ତୁମ୍ଭେରେ ମରିବ ଏହିକ୍ଷଣ । -୫-୨୮୩୩

କାଳ ବିମୋଚନ-

ସାଧ୍ୟ ବଚନ ଶୁଣି ବୋଇଲେ କାଳ ବିମୋଚନ
ଆମ୍ଭେ ଯେବେ ମରିବୁ ଲୋ ତୁମ୍ଭର କିସ ଜୀବନ ।
ସ୍ତିରୀ ଜୀବନ ତୁମ୍ଭେ ଅଟ ଲୋ ପାପିଷ୍ଟ
ସଦ ଅସଦବନ୍ତ ଯେ ମନ୍ଦବାଟ ।
ଆମ୍ଭେ ଯେବେ ଆଗ ଆସନ୍ତୁ ଜାଣନ୍ତୁ ବଡପଣ
ସ୍ତିରୀ ମାତ୍ର ଛାର ପାମେରୀ ବୋଲି ନ ମାରି ହୋଇଲୁ ରଣଭଣ ।
୨୮୩୪-୨୮୩୬

ନାରାୟଣୀ-

ନାରାୟଣୀ ବୋଇଲେ ଶୁଣ ହେ ଦେବଅରି
ଆମ୍ଭେ ସେ ସ୍ତିରୀ ଉତ୍ତମ ନୋହୁ ରେ ପାମେରୀ ।
ଆରେ କାଳବିମୋଚନ ଆମ୍ଭେ ମାତା ରୂପ ହୋଉ
ରାତ୍ର କାଳେ ଆମ୍ଭେ ଭାରିଯା ରୂପେ ରତି ଦେଉ ।
ଅନ୍ତକାଳେ ହୋଉଂ ରେ କାଳିକା ମୂରତି
ଶେଷକାଳେ ଦହିକ କରୁ ଅନଳ ବହତୀ ।
ଆରେ ଆମ୍ଭେ ଜାତ ଅନ୍ତ ମଧ୍ୟରେ ଅବସାନି
ଜାତ ଅନ୍ତ କରାଉଂ ଅନାଦିର ଜାନି ।

ଆରେ ରେତ କାଳେ ତୁମ୍ଭନ୍ତ କରୁ ଉତପତି
ଅନ୍ତକାଳେ ପୁଣ ଭକ୍ଷୁ ଯେ ସବୁନ୍ତି ।
ଅଗ୍ୟାନ ଦୃଷ୍ଟ ପଣେ ମର ତୁମ୍ଭେ ବାଇ
ଆମ୍ଭେ ପରମଯୋଗ୍ନୀ ଅଟୁ ମହାମାଇ ।
ଆହୋ କାଳବିମୋଚନ ଆମ୍ଭେ ଜାତ ଅନ୍ତ
ମଧ୍ୟରେ ଭୋଗ କରାଉ ତୁମ୍ଭନ୍ତ ।
ଆମ୍ଭର ଚରିତ୍ର ତୁମ୍ଭେ ରେ ନ ପାରିଲ ଜାଣି
ଏହିକ୍ଷଣି ତୁମ୍ଭନ୍ତ ଖାଇବେ ରେ କଳିକାଳ ନାରାଏଣୀ । ୨୮୩୭-୩୮୪୪

ରମଣୀୟତା

ଚଣ୍ଡୀ ପୁରାଣର ସମ୍ବାଦ ସବୁ ଏହାର ରମଣୀୟତା ପାଇଁ ପ୍ରସିଦ୍ଧ । କଥାବସ୍ତୁ ଦୃଷ୍ଟିରୁ ଏଥିରେ ଶାକ୍ତ ଦର୍ଶନର ଉପସ୍ଥାପନା ପାଇଁ ବିଶେଷ ସୁଯୋଗ ଥିଲେ ବି କବି ଏଥିରେ ନୀରସ, ଶୁଷ୍କ ଓ ଦାର୍ଶନିକ ବାର୍ତ୍ତାଳାପର ପ୍ରାୟ ସଂଯୋଜନା କରିନାହାନ୍ତି । ବରଂ ସମ୍ବାଦରେ ବିଭିନ୍ନ ରସାଶ୍ରିତ ଉକ୍ତି-ପ୍ରତ୍ୟୁକ୍ତିର ସମାବେଶ କରି ସେ ଏହାକୁ ଆକର୍ଷକ କରିଛନ୍ତି । ମହିଷାସୁର ସେନାବାହିନୀକୁ ସମୁଦ୍ର ସହ ତୁଳନା କଲାବେଳେ, ସେ କିପରି ହାସ୍ୟରସର ସୃଷ୍ଟି କରିଛନ୍ତି, ତାହା ନିମ୍ନ ବର୍ଣ୍ଣନାରୁ ଜଣାଯାଏ :

ମନ୍ତ୍ରୀ ଆଗେ ପଦ୍ମଲାଭ ଦାନେବ ପ୍ରକାଶଇଂ
ପଶ୍ଚିମ ଦିଗ ମାତ୍ର ସମୋଦ୍ର ମାଡି ବସଇ । ୭୦୦
ମନ୍ତ୍ରୀ ବୋଇଲା ସେ ସମୋଦ୍ର ନୁହଇ ରାଏ
ମଂଷାର ସଇନି ସେ ଦିଶଇ ଜଳ ପ୍ରାଏ । ୭୪୧

ମାଳତୀ ଓ ବଇଲୋଚନ ସମ୍ବାଦରେ ମାଳତୀ ବଇଲୋଚନଙ୍କୁ ମାରିବାକୁ କହୁଥିବା ବେଳେ ବଇଲୋଚନ ଉକୁଣୀ ମାରିବା କଥା ଭାବି ମାଳତୀକୁ ବାରମ୍ବାର ମାରିବା କଥା କହିଛି ।

ମାଳତୀ ବୋଇଲା ନାଥ ହୋଇଲାନି ଗୋଧୂଳିର ବେଳ
ବଇଲୋଚନ ବୋଇଲା ମାର ନ କର ହେଳ । ୨୭୭୩
X X X X
ମାଳତୀ ବୋଇଲା ନାଥ ମାରୁଅଛି ନି ମୁ ତୁକୁ
ବଇଲୋଚନ ବୋଇଲା ସଂଗାତ ବେଗେ ମାର ମୁକୁ । ୨୭୭୯

ସାଧାରଣ ଶବ୍ଦାବଳୀ ପ୍ରୟୋଗରେ ଦୁଇଟି ଅର୍ଥ ପ୍ରକାଶ ପାଇ ଦୁଇଟି କାର୍ଯ୍ୟ ସମାହିତ ହୋଇ ଏକ ବିଚିତ୍ର ରସ ସୃଷ୍ଟି କରିଛି ।

**ସଂକ୍ଷିପ୍ତତା -**

**ସ୍ୱାଭାବିକତା ପାଇଁ ଉଦ୍ଧୃତ ଦୁଇଟି ଉଦାହରଣ ବ୍ୟତୀତ ଅନ୍ୟ ସବୁ ସ୍ଥଳରେ ସମ୍ବାଦର ସଂକ୍ଷିପ୍ତତା ଚଣ୍ଡୀ ପୁରାଣରେ ସମ୍ବାଦ ଶୈଳୀକୁ ନାଟକୀୟ ତଥା ସଜୀବ କରି ପାରିଛି । ଦେବତା ମାନଙ୍କର ଦୀର୍ଘ ଦୁର୍ଗା ବନ୍ଦନା ପରେ ଦୁର୍ଗା ସଂସ୍କୃତ ଦୁର୍ଗା ସପ୍ତସତୀ ପରି କେବଳ ଗୋଟିଏ ବାକ୍ୟରେ ଦେବତାମାନଙ୍କୁ ଆଶ୍ୱାସନା ପ୍ରଦାନ କରି କହିଛନ୍ତି -**

ଦୁର୍ଗାଏ ବୋଇଲେ ଦେବ . . .ନ୍ତ ଥାଅ ସ୍ୱର୍ଗେ
ମାରିବି ନିଶାଚର ବଳ କଉତୁକ ରଣ ରଙ୍ଗେ । ୧୫୬୮

**ଚଣ୍ଡ ମୁଣ୍ଡଙ୍କୁ** ମଧ୍ୟ ସେହିପରି ଗୋଟିଏ ପଦରେ ଉତ୍ତର ଦିଆଯାଇଛି-

ଦୁର୍ଗାଏ ବୋଇଲେ ତୁମ୍ଭେ ଜଣାଅ କିନା ପାଶେ
ମୁହିଂ ଏଥିକି ଅଇଲି ମଏଷାଂସୁର ଆଶେ । ୧୮୨୩

ମହିଷାସୁରଙ୍କ ଚିଟାଉ ଓ ଚଣ୍ଡ ମୁଣ୍ଡ, କାଳ ବିକାଳଙ୍କ ବାର୍ତ୍ତାକୁ ସମ୍ବାଦଭାବେ ଗ୍ରହଣ କରାଯାଇପାରେ । ଏଥିରେ ଚରିତ୍ର ସବୁ ନିଜେ ନ କହି ଲିଖିତ ଚିଟାଉ ମାଧ୍ୟମରେ ଅଥବା ଦୂତ ମୁଖରେ କହିଛନ୍ତି । ବାର୍ତ୍ତାର ଉଦାହରଣ ରୂପେ ଚଣ୍ଡ ମୁଣ୍ଡଙ୍କ ଉକ୍ତିକୁ ଗ୍ରହଣ କରାଯାଇ ପାରେ ।

ଆମ୍ଭଙ୍କୁ ବୋଇଲା ମଷାଂସୁର ରାଜାକୁ କହ ତୁମ୍ଭେ ଯାଇ
ତାହାର ବର୍ଣ୍ଣ ଚିହ୍ନ ଦେଖିବଇଂ ମୁହିଂ
ତୁ ପୁରୁଷ କୁଳେ ଉତ୍ତମ ସେ ସ୍ତିରୀ କୁଳେ ଉତ୍ତମୀ
ତାହାର ତୋହର ସେ ପ୍ରୀତି ହୋଇବ ସ୍ୱାମୀ । ୧୮୮୬-୮୭

ଚିଟାଉ ବା ଶ୍ରୀମୁଖ ମାଧ୍ୟମରେ ବକ୍ତାର ବକ୍ତବ୍ୟକୁ ଶ୍ରୋତା ନିକଟରେ ଯଥାବିତ୍ ପ୍ରକାଶ କରାଯାଇପାରେ, କିନ୍ତୁ ଦୂତ ମାଧ୍ୟମରେ ଯାଉଥିବା ସନ୍ଦେଶ ଦୂତର ଦକ୍ଷତା ଉପରେ ନିର୍ଭର କରେ । ଚଣ୍ଡ ମୁଣ୍ଡ ଦୁର୍ଗାଙ୍କ ରୂପର ବିସ୍ତୃତ ବର୍ଣ୍ଣନା ଦେବା ପରେ କହିଥିଲେ, ସେ ସ୍ତିରୀ କୁଳେ ଉତ୍ତମୀ । ସେତିକି କଥା ମହିଷାସୁରର ହୃଦୟକୁ ନିସନ୍ଦେହ ଭାବେ ଉଦ୍‌ବେଳିତ କରିପାରିଥିଲା ଯାହା ଫଳରେ ତା'ର କାମ ବାସନା ଉତ୍ତେଜିତ ହୋଇଥିଲା ।

**ସ୍ତୁତି:**

ବିଭିନ୍ନ ସମ୍ବାଦ ପରି ସ୍ତୁତି ବା ବନ୍ଦନା ସାରଳା ଦାସଙ୍କ ପ୍ରକାଶ ଭଙ୍ଗୀର ଏକ ବିଶିଷ୍ଟ ଅଙ୍ଗ । ସାରଳା ଦେବୀଙ୍କ ସୁତ ସାରଳା ଦାସ **ଚଣ୍ଡୀ ପୁରାଣରେ** ଗଣେଶ (ପୃ-୧), ଝଙ୍କଡବାସିନୀ ଶାରଳା (ପୃ-୨୩), ବ୍ରହ୍ମା (ପୃ-୧୧,୧୪,୫୬,୮୨,୧୧୧), ଶିବ (ପୃ-୫୪), ବିଷ୍ଣୁ (୬୪,୭୦,୧୧୬,)ଅଗ୍ନି ଓ ଦେବୀ (ପୃ-୫୫,୭୧,୯୫,୯୭,୧୦୨)ଙ୍କର ବନ୍ଦନା ଗାନ କରିଛନ୍ତି । ଏହିସବୁ ବନ୍ଦନାରେ ମୁଖ୍ୟତଃ ଭଗବାନଙ୍କ ଐଶ୍ୱର୍ଯ୍ୟ ରୂପ ଓ ଔଦାର୍ଯ୍ୟ

ପ୍ରକାଶି ପାଇଥାଏ ଏବଂ ପ୍ରାୟ ସବୁ ବନ୍ଦନାରେ ବନ୍ଦନକର୍ତ୍ତାଙ୍କ ଦୈନ୍ୟ ପ୍ରକାଶିତ ହୁଏ । ଏହିସବୁ ବନ୍ଦନାକୁ ନିମ୍ନଭାବେ ବିଭାଗ କରାଯାଇପାରେ ।

**ଗ୍ରନ୍ଥର ପ୍ରାରମ୍ଭରେ ଥିବା ମାଙ୍ଗଳିକ ସ୍ତୋତ୍ର :** ଚଣ୍ଡୀ ପୁରାଣ ଆରମ୍ଭ ହୁଏ ଗଣେଶଙ୍କ ବନ୍ଦନାରେ । ଏହାପରେ କବି ଝଙ୍କଡ ବାସିନୀ ଶାରଳାଙ୍କ ବନ୍ଦନା କରି ବିଷୟବସ୍ତୁର ଆରମ୍ଭ କରିଛନ୍ତି । ଗଣେଶ ହେଉଛନ୍ତି ବିଘ୍ନ ବିନାଶକ ଦେବତା । ତେଣୁ ଗ୍ରନ୍ଥର ଶୁଭ ସମାପ୍ତି ପାଇଁ ତାଙ୍କର ବନ୍ଦନା ଆବଶ୍ୟକ ଥିଲା ଏବଂ ଏହା ହେଲା ଭାରତୀୟ କାବ୍ୟ ପରମ୍ପରାର ପରିପୂରକ । ଝଙ୍କଡ ବାସିନୀ ସାରୋଳ ଚଣ୍ଡୀ ହେଲେ, କବିଙ୍କର ଇଷ୍ଟ ଦେବୀ । ପୁଣି **ଚଣ୍ଡୀ ପୁରାଣର** ମୁଖ୍ୟ ନାୟିକା । ସେ ପୁଣି ଗ୍ରନ୍ଥର ପ୍ରକୃତ ବକ୍ତା କବି କେବଳ ଲେଖନକାର । ସେହି ଦେବୀଙ୍କ ଦୟା ବଳରେ 'ମୂର୍ଖ, ଅସାଧୁ, ଅପଣ୍ଡିତ' ସାରଳା ଦାସ ହେଲେ ଶୁଦ୍ରମୁନି । କବି ଏହାର ସୂଚନା ଗ୍ରନ୍ଥର ଆଦ୍ୟ ଭାଗରେ ପୁଣି ଝଙ୍ଖେରପୁର ବାସିନୀ ସାରୋଳ ଚଣ୍ଡୀଙ୍କ ବନ୍ଦନାରେ ହିଁ ସ୍ପଷ୍ଟ କରି କହିଛନ୍ତି -

ସେ ଦେବୀର ଆଜ୍ଞା ପ୍ରମାଣେ କରି
ଶାହାସ୍ତ୍ର କହିତ ଯିବଇ ମୁଂ ଦେବୀର ନାମ ଧରି ।
ହେ ବୁଧ ଜନେ ସେ ପ୍ରସନେ ମୋତେ ଯାହା କହଇ
ଅରୁଣ ପ୍ରକାଶେ ମୁଂ ତାହା ଲିହଇ । ପ.ସଂ-୨୭-୨୮

ତେଣୁ ବିଷୟବସ୍ତୁ ଆରମ୍ଭ ହେବା ପୂର୍ବରୁ ସଂଯୋଜିତ ହୋଇଥିବା ଦୁଇଟି ବନ୍ଦନାର ଉଦ୍ଦେଶ୍ୟ ଭିନ୍ନ । ଗଣେଶଙ୍କ ପ୍ରସନ୍ନତାରେ କବି ନିର୍ଭୟ ହୋଇ ଲେଖିବାର ଶକ୍ତି ଆହରଣ କଲେ ଏବଂ କବିଙ୍କ ମନରେ ବିଷୟବସ୍ତୁର ଯୋଜନା ପ୍ରସ୍ତୁତ କରିଥିଲେ , 'ଅଭୟେ ମାତାଙ୍ଗୀ ଶ୍ରୀ ସାରୋଳା ଚଣ୍ଡୀ ଦେବୀ' । ସେ ରାତିରେ କୁହନ୍ତି, ଓ କବି ସକାଳେ ଲେଖନ୍ତି । ଏହିପରି ସମରର ପର୍ଯ୍ୟନ୍ତ ଲେଖା ଚାଲିଲା ଓ ଯାହା ଫଳରେ ଓଡ଼ିଆ ପାଠକ ପାଇଲେ **ଚଣ୍ଡୀ ପୁରାଣ** ପରି ଅପୂର୍ବ ଗ୍ରନ୍ଥ ।

ମହିଷାସୁରଙ୍କୁ ବଧ କରିବା ପାଇଁ ଚଣ୍ଡୀଙ୍କ ଆବିର୍ଭାବ । ବିଷୟବସ୍ତୁର ଏହି ମୂଳ ଉଦ୍ଦେଶ୍ୟକୁ କବ ସାରଳା ଦାସ ଗ୍ରନ୍ଥ ମଧ୍ୟରେ ଅକ୍ଷରତଃ ପାଳନ କରିଛନ୍ତି । କିନ୍ତୁ ମହିଷାସୁରର ଦୁର୍ଦ୍ଦାନ୍ତ ସେନାପତି ମାନଙ୍କୁ ବଧ କରିବା ପାଇଁ ଚଣ୍ଡୀ ନିଜ ଶରୀରରୁ ନବ କଷ୍ଟ ଚଣ୍ଡୀ ଓ ଚଉଷଠୀ ଯୋଗିନୀ ଓ ବହୁ ଚାମୁଣ୍ଡା ସୃଷ୍ଟି କରିଥିଲେ । ସେମାନଙ୍କ ମଧ୍ୟରୁ ପ୍ରଧାନ ହେଲେ- ଇନ୍ଦ୍ରାଏଣୀ, ଉଗ୍ରତାରା, କମଳା, କାମାକ୍ଷି, କାଙ୍କାଳୀ, ଚଞ୍ଚଳା, ଚନ୍ଦ୍ରକାନ୍ତି, ଚାଚିକା, ଚାମୁଣ୍ଡା, ଡ଼ାକେଶ୍ବରୀ, ତାରାକ୍ଷି, ତ୍ରିପୁର ମୋହିନୀ, ନାରାଏଣୀ, ବାରାହୀ, ବାଶେଳୀ, ବିକରାଳ, ବିରଜା, ବେତାଳୀ, ବ୍ରହ୍ମାଏଣୀ, ଭଦ୍ରକାଳୀ, ମହାମାୟା, ୨୪ ମାତାଙ୍ଗୀ ମାହେଶ୍ୱରୀ ଯୋଗେଶ୍ୱରୀ, ସମରାସ୍ତ୍ରୀ । କବି ପ୍ରତ୍ୟେକ ସେନାପତିଙ୍କ ମୃତ୍ୟୁପରେ ପ୍ରସଙ୍ଗର ପରିସମାପ୍ତି କରିବା ପାଇଁ ପ୍ରାୟ ତେର ଥର ଦେବୀଙ୍କର ବନ୍ଦନା କରିଛନ୍ତି । ଏହି ବନ୍ଦନା କ୍ରମରେ କବି

ବିଶେଷକରି ମୋହନୀ ଦେବୀ, ତ୍ରିପୁରା ମାରକମା, ରାମଚଣ୍ଡୀ ଓ ତୁଳସାଙ୍କର ନାମ ଉଲ୍ଲେଖ କରିଛନ୍ତି । ଦେବୀଙ୍କ ପରାକ୍ରମ ବର୍ଣ୍ଣନା ପାଇଁ ଏ ସବୁ ସାଧାରଣତଃ ଉଦ୍ଦିଷ୍ଟ ହେଲେ ହେଁ କବି ଏଥିରେ ନିଜର ଦୈନ୍ୟ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ନିଜର ଦୁଃଖ, ଶୋକ, ରୋଗ, ନାଶ କରିବା ପାଇଁ ପ୍ରାର୍ଥନା କରିଛନ୍ତି ।

ଏହିପରି ଗ୍ରନ୍ଥ ମଧ୍ୟରେ ଦେବୀମାନଙ୍କ ପରାକ୍ରମ ବର୍ଣ୍ଣନା ପରେ ଧନ୍ୟବାଦ ସୂଚକ ସ୍ତୋତ୍ର ଏବଂ କବିଙ୍କ ପ୍ରାର୍ଥନା ସଂପର୍କିତ ସ୍ତୋତ୍ରର ସମାବେଶ କରାଯାଇଛି । କବି ଯେ କେବଳ ଦେବୀଙ୍କର ସ୍ତୁତି ଗାନ କରିଛନ୍ତି, ତାହା ନୁହେଁ, ସେ କେତେକ ସ୍ଥଳରେ, ନରସିଂହ, ବିଷ୍ଣୁ, ଶିବ, ବ୍ରହ୍ମା ଓ ବ୍ୟାସଙ୍କର ସ୍ତୁତି ଗାନ କରିଛନ୍ତି । ଦେବତାମାନେ ସେହିପରି ସମସ୍ତ ବିଶ୍ୱ ସଂସାର ବା ଧରଣୀ ଦେବୀଙ୍କୁ ମହିଷାସୁରର ନିର୍ଯାତନାରୁ ରକ୍ଷା କରିବା ପାଇଁ ବନ୍ଦନା ବିଷ୍ଣୁଙ୍କୁ ଏବଂ ବିଷ୍ଣୁଙ୍କ ପରାମର୍ଶ କ୍ରମେ ବ୍ରହ୍ମାଙ୍କ ମୁଖରେ ଦେବୀଙ୍କର ବନ୍ଦନା କରିଛନ୍ତି । ସ୍ତୋତ୍ର ରଚନା ପୁରାଣର ଏକ ବିଶିଷ୍ଟ ଅଙ୍ଗ । **ଚଣ୍ଡୀ ପୁରାଣ**ରେ ସେଥିପାଇଁ ପୌରାଣିକ ସ୍ତୋତ୍ର ଶୈଳୀର ଅନୁକରଣ କରାଯାଇଛି ।

**ମାହାତ୍ମ୍ୟ:** ପୌରାଣିକ ଶୈଳୀରେ ମାହାତ୍ମ୍ୟ କୀର୍ତ୍ତନ ଏକ ବିଶିଷ୍ଟ ଅଙ୍ଗ । ମାହାତ୍ମ୍ୟ ସବୁରେ ଅତିଶୟୋକ୍ତି ପୂର୍ଣ୍ଣ ଫଳାଗମର ବିବରଣ ପ୍ରାୟ ପ୍ରଦତ୍ତ ହୋଇଥାଏ । **ଚଣ୍ଡୀପୁରାଣ**ରେ ଥିବା ମାହାତ୍ମ୍ୟ ପ୍ରସଙ୍ଗକୁ ନିମ୍ନ ଭାବେ ବିଭାଗ କରାଯାଇ ପାରେ ।

(କ) ପୁରାଣର ପଠନ-ପାଠନ ଏବଂ ଶ୍ରବଣ ସମ୍ବନ୍ଧୀ ମାହାତ୍ମ୍ୟ

(ଖ) ଅବତାର ମାହାତ୍ମ୍ୟ

ସ୍ତୋତ୍ର ଓ ମାହାତ୍ମ୍ୟ ବିଭିନ୍ନ ପୁରାଣ ତଥା **ଚଣ୍ଡୀପୁରାଣ**ର ଏକ ଆବଶ୍ୟକୀୟ ଅଙ୍ଗ ହେଲେ ହେଁ, ତା ଉଇଣ୍ଟରନିଜ୍‌ଙ୍କ ମତରେ ସାହିତ୍ୟ-କଳା ଦୃଷ୍ଟିରୁ ଏକ ପ୍ରକାର ନିକୃଷ୍ଟ ସାହିତ୍ୟ ।

**ଅଳଙ୍କାର ବିଧାନ : ଚଣ୍ଡୀପୁରାଣ** ମଧ୍ୟକାଳୀନ କାବ୍ୟ ସଦୃଶ ଅଳଂକୃତ ଗ୍ରନ୍ଥ ନୁହେଁ । ତେବେ ବି ଏଥିରେ କେତେକ ଉପମାନ ସ୍ୱାଭାବିକ ଭାବେ ପ୍ରଯୁକ୍ତ ହୋଇଥିବା ଦେଖିବାକୁ ମିଳେ । ନିମ୍ନରେ ଅଳଙ୍କାରର ବିବିଧ ରୂପ ଦୃଷ୍ଟିରୁ ନୁହେଁ, ଉପମାନର ବିବିଧତା ଦୃଷ୍ଟିରୁ ସେ ସବୁର ଆଲୋଚନା କରାଯାଇଛି ।

କଥା ହେଲା, ଚଣ୍ଡୀଯୁଦ୍ଧ ମହା ପୁରାଣ । ସଂସ୍କୃତରେ ରଚିତ 'ଦୁର୍ଗା ସପ୍ତଶତୀ' ଓ 'ଶ୍ରୀମଦ୍ ଦେବୀ ଭାଗବତ'ରେ ମଧ୍ୟ ଏହି ଉପାଖ୍ୟାନର ବର୍ଣ୍ଣନା ଦେଖିବାକୁ ମିଳେ । ତେବେ ସାରଳା ଦାସ ଦୁର୍ଗା ବା ଦେବୀ ନକହି 'ଚଣ୍ଡୀ' ନାମକୁ ଗ୍ରହଣ କଲେ । ଚଣ୍ଡୀ ଦେବୀ ଦୁର୍ଗାଙ୍କର ଅନ୍ୟ ଏକ ନାମ ହେଲେ ହେଁ, ଓଡିଆ ସମାଜରେ ପ୍ରଚଳିତ 'ଚଣ୍ଡୀ' ଶବ୍ଦ କେବଳ ଦେବୀଙ୍କ ପାଇଁ ପ୍ରଯୁକ୍ତ ନୁହେଁ । ପୁରୁଷକୁ ପରାଜିତ ଓ ବଧ କରୁଥିବା ବା ପୁରୁଷ ଜାତି ଉପରେ ଅଧିକାର ସାବ୍ୟସ୍ତ କରୁଥିବା ନାରୀକୁ ହିଁ ଓଡିଆରେ 'ଚଣ୍ଡୀ' କୁହାଯାଏ । ଏହିଥିରୁ 'ଅଣ୍ଡିରାଚଣ୍ଡୀ' ।

ସାରଳା ଦାସଙ୍କ ଚଣ୍ଡୀ ନାମରେ ବି ଏହି ଅର୍ଥ । ସେଥିପାଇଁ ସଂସ୍କୃତର କୁମାରୀ କନ୍ୟା ଦୁର୍ଗା ଓଡ଼ିଆ ପୁରାଣରେ ହେଲେ, 'ବିବାହିତା ନାରୀ' ବିବାହିତା ହେଲେ ମଧ୍ୟ ସେ ପତିବ୍ରତା ନୁହେଁ । ସେ 'ମୋହୋନୀ କାମସେଣୀ' । କିଞ୍ଚିତ ଅବଲୋକନ ଦୃଷ୍ଟି ଓ ମଧୁର ଦ୍ରହସିତ ବାକ୍ୟରେ ସେ କୌଣସି ପୁରୁଷଙ୍କୁ ମୋହମୁଗ୍ଧ କରିପାରେ । ସେ ପୁଣି ଉଚ୍ଚକୁଳ ସମ୍ଭୂତା, ''ପରମ ଦଇବତ'' ପରି ସ୍ୱାମୀର ସେ ସ୍ତ୍ରୀ । ଏ ସବୁ ସତ୍ତ୍ୱେ ସେ ଘର, ଦ୍ୱାର କୁଳ ଓ ପତି ଛଡ଼ା ସେ 'ଅତି' ହିଁ ଅଭୟା ଓ ଅସହଣୀ । ତାର ଦୁର୍ଦ୍ଧାର ପ୍ରକୃତି ଯୋଗୁଁ ସେ ସ୍ୱାମୀ ସହ ଘର କରି ରହିବାକୁ ଚାହିଁନାହିଁ, ସ୍ୱାମୀ ସହ ଏକ ଶଯ୍ୟାରେ ଶୟନ କରିବା ତ ଦୂରର କଥା । ସେ କେବଳ ସ୍ୱାମୀରେ ନିର୍ଭୟା ନୁହେଁ, ରକ୍ଷ, ରାକ୍ଷସଙ୍କୁ ମଧ୍ୟ ତା ହୃଦୟରେ ତିଳେ ହେଲେ ଭୟ ନଥିଲା । ସାରଳା ଦାସ ସେଥିପାଇଁ ତାଙ୍କୁ 'ବୋଲଣୀ' 'ରାକ୍ଷସଣୀ' ଓ 'ପିଚାସୁଣୀ' ସହ ସମାନ କଲେ - ଏବଂ ଏହି ଚଣ୍ଡୀ ମୂର୍ତ୍ତିର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟେଙ୍ଗରେ ଦେଖିଲେ ଅପୂର୍ବ ଜ୍ୟୋତିର ସମାବେଶ । ରୂପସୀ ମାନିନୀ ନାରୀର ଠାଣିରେ, ଦ୍ରହସିତ ବଦନରେ ଏବଂ ମଧୁର ବାଣୀରେ ସେ ପୁରୁଷ କୁଳକୁ ଆକର୍ଷଣ କରିବା ପାଇଁ ସମର୍ଥା ଥିଲେ ହେଁ, ପୁରୁଷ ଜାତିକୁ ପରାଭୂତ କରିବା ପାଇଁ ତାଙ୍କର ସୃଷ୍ଟି ହେଲା । ସେ ଅପୂର୍ବ ରୂପ ସମନ୍ୱିତା ଏକ ଭୀଷଣ ନାରୀ ମୂର୍ତ୍ତି । ଏହିପରି ଏକ ଚଣ୍ଡୀ ଦେବୀ ବା ଦୁର୍ଗା ହେଲେ **ଚଣ୍ଡୀ ପୁରାଣର** ନାୟିକା ।

ଏହି ଚଣ୍ଡୀଙ୍କର ପ୍ରତିଦ୍ୱନ୍ଦୀ ହେଉଛି ମହିଷାସୁର । ଗୋଟିଏ ପରେ ଗୋଟିଏ ବଳବାନ ରାକ୍ଷସଙ୍କୁ ପରାଜିତ କରି , ରାଜ୍ୟ ପରେ ରାଜ୍ୟ ଜୟକରି, ସେ ହେଲା, 'ତ୍ରୈଲୋକ୍ୟ'ଠାକୁର । ଦେବତାମାନଙ୍କୁ ପରାସ୍ତକରି ସେ ହେଲା ଦେବାଧିଦେବଙ୍କର 'ମଉଡମଣୀ' । କବି ତାଙ୍କୁ ଚକ୍ରବର୍ତ୍ତୀ ଆଖ୍ୟା ମଧ୍ୟ ଦେଇଛନ୍ତି । ଯମ ବାହାନ ମହିଷର ଔରସରୁ ସେ ଜନ୍ମଲାଭ କରିଥିବାରୁ ନରତ୍ୱ ଓ ପଶୁତ୍ୱର ସେ ଏକ ସମ୍ମିଶ୍ରଣ । ବ୍ରହ୍ମାଙ୍କ ବରରେ ବଳିୟାନ ହେବାପରେ ଏବଂ ଅମର ପଦ ପାଇବା ପରେ ଏକ ଅପରାଜେୟ ଶକ୍ତି ଭାବେ ବିଶ୍ୱ ନିୟନ୍ତା ଭଗବାନଙ୍କ ବିରୁଦ୍ଧରେ ସେ ତାର ଅଭିଯାନ ଆରମ୍ଭ କଲା ।

ଏହି ଦୁଇ ମହାଶକ୍ତିର ସଂଘର୍ଷ ବର୍ଣ୍ଣନା ପାଇଁ ଚଣ୍ଡୀ ପୁରାଣର ପରିକଳ୍ପନା । ସାରଳା ଦାସ ଏହି ଯୁଦ୍ଧର ଭୟଙ୍କରତା ସମ୍ପର୍କରେ ସୂଚନା ଦେଇ ଲେଖିଛନ୍ତି -

ଶୁଣ ହୋ ପରୀକ୍ଷ ବଦନ୍ତି ଶୁକ ବ୍ରହ୍ମା
ଚଣ୍ଡୀର ଯୁଧ୍ୟ ହାଦେ ଏସନେକ ମହିମା
ଅସଂକ୍ଷ ଅଗୋଚର ଅପୂର୍ବ ଚରିତ
ଦେବଙ୍କୁ ଦୁର୍ଲଭ ଏ ସମର ଅପ୍ରମିତ                ପୃ - ୨୭

ଏ ସଂସାରରେ କେତେ ରାମାୟଣ ଯୁଦ୍ଧ ହୋଇଛି, କେତେ ମହାଭାରତ ହୋଇଯା  କିନ୍ତୁ ଏ ସବୁ ହେଉଛି, ଚଣ୍ଡୀ ଯୁଦ୍ଧ ତଳେ ।

ଏହିପରି ଏକ ଦୃଷ୍ଟିକୋଣ ନେଇ **ଚଣ୍ଡୀ ପୁରାଣ**କୁ କଥା କବିବାର ସ୍ୱାଭାବିକ ରୀତିରେ

କବି ବର୍ଣ୍ଣନା କରିଥିଲେ ହେଁ ବେଳେ ବେଳେ ତାଙ୍କ କଥାକୁ ପ୍ରଭାବଶାଳୀ କରିବା ପାଇଁ କଥା ମଧ୍ୟରେ ସେ କେତେକ ଉପମାର ସଂଯୋଜନା କରିଥିଲେ । ଏ ସବୁ ଉପମା ମୁଖ୍ୟତଃ ନାରୀ ରୂପ ଓ ଯୁଦ୍ଧବର୍ଣ୍ଣନା ପାଇଁ ପ୍ରଯୁକ୍ତ । ତେବେ ବି ଏସବୁ ଉପମାକୁ ଅଧ୍ୟୟନ କଲେ ଦେଖାଯାଏ ଯେ ଏ ସବୁ କେବଳ ରୂପ ବା ଯୁଦ୍ଧ ବର୍ଣ୍ଣନା ପାଇଁ ଅଭିପ୍ରେତ ନୁହେଁ । ରୂପ ବା ଯୁଦ୍ଧ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଏମାନେ ସ୍ୱତନ୍ତ୍ରଭାବେ ଏକ ପ୍ରଳୟାନ୍ତକାଳୀନ ପରିବେଶର ସୃଷ୍ଟି କରେ । ଚଣ୍ଡୀ ଓ ମହିଷାସୁରର ଯୁଦ୍ଧ ସହ ଏମାନେ ମଧ୍ୟ ଅହରହ ସଂଗ୍ରାମ ରତ ।

**ଚଣ୍ଡୀ ପୁରାଣ**ରେ ଥିବା ନାରୀ ଚରିତ୍ର ମଧ୍ୟରେ ଧର୍ମରେଖା, ଶକୁନ୍ତଳା, ଚନ୍ଦ୍ରାବତୀ, ଅରୁନ୍ଧତୀ, ଚଣ୍ଡୀ ଓ ଚଣ୍ଡୀଙ୍କ ସୃଷ୍ଟି ବିଭିନ୍ନ ଦେବୀଙ୍କୁ ଗଣନା କରାଯାଇପାରେ । **ମହାଭାରତ** ପରି **ଚଣ୍ଡୀ ପୁରାଣ**ରେ ମଧ୍ୟ କବି କେବଳ ମୁଖ୍ୟ ନାୟିକାର ରୂପ ବର୍ଣ୍ଣନା ପ୍ରତି ଆଗ୍ରହ ପ୍ରକାଶ କରିଛନ୍ତି । ତେବେ ମହିଷାସୁରର ପତ୍ନୀ ଚନ୍ଦ୍ରାବତୀ ଉପେକ୍ଷିତା ନୁହେଁ । **ଚଣ୍ଡୀ ପୁରାଣ**ରେ ଏଥିପାଇଁ ଦୁଇଟି ସ୍ଥାନ ନିରୂପିତ । ପ୍ରଥମ ସ୍ଥଳରେ ପିତା ମୁଖରେ କନ୍ୟାର ରୂପ ବର୍ଣ୍ଣନା । ସେଥିପାଇଁ କବି ଅତି ସଂଯତ ଭାବେ କେବଳ ଗୋଟିଏ ପଦରେ ଏହାକୁ ସମାପ୍ତ କରିଛନ୍ତି । କବି କହିଛନ୍ତି-

ଏ ମୋହର ଦୋହିତା ଯେ ଅଟଇ ଚନ୍ଦ୍ରାବତୀ
ତଇଲୋକ ମୋହିନୀ ସେ ମଦନ ମୂରତି ।

ଏଥିରେ ଥିବା 'ତଇଲୋକ ମୋହିନୀ' ଓ 'ମଦନମୂରତି' ପ୍ରଭୃତି ପ୍ରୟୋଗ ସାରଳା ଦାସଙ୍କ ପାଇଁ ଏକ ସାଧାରଣ କଥା, ପ୍ରାୟ ସବୁ ନାରୀଙ୍କୁ ସେ ଏହି ଭାବେ ସମ୍ବୋଧନ କରିଥାନ୍ତି ।

ଦ୍ୱିତୀୟ ସ୍ଥଳ ହେଉଛି, ସ୍ୱୟମ୍ବର ସଭାରେ ଉପସ୍ଥିତ ଥିବା ରାଜାମାନଙ୍କ ମୁଖରେ କନ୍ୟାର ବର୍ଣ୍ଣନା । କନ୍ୟାର ଅପୂର୍ବ ରୂପଶ୍ରୀରେ ବିମୋହିତ ହୋଇ ରାଜାମାନେ କହିଛନ୍ତି-

ରାଜାମାନେ ବୋଇଲେ ଏ ତ କନ୍ୟା ରତ୍ନମଣି
ରୂପ ନିରୋପନ୍ତେ ଏ ପାର୍ବତୀ ତୁଲ ଜାଣି ।

ଏଥିରେ ସେମାନଙ୍କ ମନ ସନ୍ତୁଷ୍ଟ ହୋଇନାହିଁ । କନ୍ୟାର ରୂପ ଉପରେ ପୁଣି ଥରେ ବିଚାର କଲାବେଳେ କନ୍ୟା ତାଙ୍କୁ 'ପରମଲକ୍ଷ୍ମୀ' ପରି ପ୍ରତିଭାତ ହୋଇଛି । ସେମାନେ କହିଛନ୍ତି -

ବିଚାର ଯୁଗତେ ନୋହିଲୁ ଆମ୍ଭେ କିଛି
କିଅବା ବିଜେ କଲା ଏଥି ପରମ ଲକ୍ଷ୍ମୀ ।

ପାର୍ବତୀ ଓ ଲକ୍ଷ୍ମୀ ନାରୀ ରୂପର ଆଦର୍ଶ ରୂପେ ପୁରାଣରେ ପ୍ରତିଷ୍ଠିତା ହୋଇଥିଲେ ହେଁ, କବି ପରଂପରାରେ ନାରୀ ରୂପ ବର୍ଣ୍ଣନା ପ୍ରସଙ୍ଗରେ ଚନ୍ଦ୍ର ଓ ରତ୍ନକୁ ମଧ୍ୟ ଗ୍ରହଣ କରାଯାଇଥାଏ । କବି ପରଂପରାରୁ ଏହି ଦୁଇଟି ପଦାର୍ଥକୁ ଆଣି ଚନ୍ଦ୍ରାବତୀ ସହ ତୁଳନା କଲେ । ଚନ୍ଦ୍ରମା ସହ ତୁଳନା କରି କବି କହିଛନ୍ତି ।

ଏହାର ମୁଖ ଚନ୍ଦ୍ରମାକୁ ପଟାନ୍ତରି ନ ପାରି

ଚନ୍ଦ୍ରମା ତନୁ ତ ଦେଖିଣ ଖିନ କରି ।

ରତ୍ନର ମଧ ସେଇଦଶା -

ରତ୍ନକୁ ପଟାନ୍ତାର କରନ୍ତୁ ଅବା କାଏ

ସେହି ମଳିଣ ଦିଶଇ ଏହାର ତେଜମଏ ।

କବି ଏସବୁ ଉପମାନ ପ୍ରୟୋଗରେ ସନ୍ତୁଷ୍ଟ ହୋଇଥିବା ଜଣାଯାଏ ନାହିଁ । ସେଥିପାଇଁ ସେ ଏକ ପକ୍ଷରେ ରାଜାମାନଙ୍କୁ ଓ ଅନ୍ୟ ପକ୍ଷରେ କନ୍ୟା ରୂପକୁ ରଖି ତୁଳନା କଲେ । ଏହି ତୁଳନାରୁ ଜଣାଗଲା ରାଜାମାନେ ତାରାପରି ଶୋଭା ପାଉଥିବା ବେଳେ କନ୍ୟା ହେଲା ଚନ୍ଦ୍ର । ସାରଳା ଦାସଙ୍କ ମତରେ ଏହା ଏକ ବିଡମ୍ବନା କଥା । ତାରାମାନଙ୍କର ପତିଭାବେ ଚନ୍ଦ୍ର ପ୍ରସିଦ୍ଧି । ଅଥଚ ଏଠି ପତି ହେବାକୁ ଆସିଥିବା ରାଜାମାନେ ହେଲେ ପତ୍ନୀ ଓ କନ୍ୟା ହେଲା ପତି । ଏହିପରି ବିଭିନ୍ନ ଭାବେ ଅର୍ଥାତ୍ ଶ୍ରେଷ୍ଠତା, ନ୍ୟୁନତା ଓ ବୈଚିତ୍ର୍ୟଭାବ ମଧ ଦେଇ ଉପମାନ ସବୁର ପ୍ରୟୋଗ କଲାପରେ ନାରୀ ରୂପ ବର୍ଣ୍ଣନା ସମାପ୍ତ ହେଲା ନାହିଁ । କବି ସ୍ୱାଭାବିକ ରୀତିରେ ନାରୀ ରୂପକୁ କଳନା କରି ଦେଖି କହିଲେ -

ଦିନ ନ ଅଣ୍ଟିବ ଏହା ସ୍ୱରୂପ ବର୍ଣ୍ଣିବାକୁ

ନଥିଲା ଉପରେ ନଥିଲା ତଳକୁ ।

ରୂପ ବର୍ଣ୍ଣନାର ଏହି ସୀମାହୀନ ଭାବନା ହିଁ, ନାରୀ ରୂପର ପ୍ରକୃତ ପରିମାପ । କୌଣସି ବସ୍ତୁ ମଧରେ ଏହାକୁ ସୀମିତ କରିଦେବା ସହଜ ନୁହେଁ ।

**ଚଣ୍ଡୀ ପୁରାଣ**ରେ ଚନ୍ଦ୍ରାବତୀ ହେଉଛି କେବଳ ଜଣେ ରୂପସୀ ରାଜକନ୍ୟା, ମହିଷାସୁରର ଅନୁଗତା ପତ୍ନୀ । ଏହାର ରୂପ ନିକଟରେ ଚନ୍ଦ୍ର ଓ ରତ୍ନ ନିଷ୍ପ୍ରଭ ହୋଇ ଯାଉଥିଲେ ହେଁ, ଏଥିରେ ଅଛି ପାର୍ବତୀ ବା ଲକ୍ଷ୍ମୀଙ୍କର ସ୍ୱର୍ଗୀୟ ସୁଷମା । ଚଣ୍ଡୀ କିନ୍ତୁ କାହାରି ଅନୁଗତା ଭାର୍ଯ୍ୟା ନୁହଁନ୍ତି । ସେ କେବଳ ପୁରାଣର ମୁଖ୍ୟ ନାୟିକା ନୁହଁନ୍ତି , ସେ ହେଉଛନ୍ତି କବିଙ୍କର ଆରାଧ ଦେବୀ । ମହିଷାସୁର ପରି ଦୁର୍ଦ୍ଦାନ୍ତ ଅସୁରର ଦଳନ ପାଇଁ ତାଙ୍କର ଜନ୍ମ । ପୁଣି ତାଙ୍କ ଶରୀରରେ ସବୁ ଦେବତାଙ୍କର ତେଜ ପୁଞ୍ଜିଭୂତ । ସେଥିପାଇଁ କବି ଚଣ୍ଡୀଙ୍କ ରୂପ ବର୍ଣ୍ଣନା କଲାବେଳେ ଯେଉଁସବୁ ଉପମାନକୁ ଗ୍ରହଣ କରିଛନ୍ତି, ସେଥିରେ ଚଣ୍ଡୀଙ୍କ ପ୍ରକୃତିର ସବୁ ବୈଚିତ୍ର୍ୟ ସମନ୍ୱିତ ହୋଇଥିବା ଜଣାଯାଏ । ଦେବୀଙ୍କ ରୂପବର୍ଣ୍ଣନା ଗ୍ରନ୍ଥର ବହୁସ୍ଥଳରେ ବନ୍ଦନା ରୂପେ ଦେଖିବାକୁ ମିଳୁଥିଲେ ହେଁ ଚଣ୍ଡ ମୁଖରେ ପ୍ରଦତ୍ତ ବର୍ଣ୍ଣନା ହିଁ ସବୁଠାରୁ ଦୀର୍ଘ ।

କଥା ଅନୁଯାୟୀ ରତ୍ନଗିରି ଉପରେ ଅବସ୍ଥିତା ଦୁର୍ଗାଙ୍କୁ ଦେଖି ଚଣ୍ଡ ମୁଣ୍ଡ ପ୍ରଥମେ ଭାବିଥିଲେ , ସେ ଜଣେ ସାଧାରଣ ରୂପସୀ ନାରୀ । ସେଥିପାଇଁ ସେମାନେ ତାଙ୍କୁ **ନିଜର ସ୍ତ୍ରୀ** ରୂପେ ପାଇବା ପାଇଁ ଲାଳାୟିତ ହୋଇଥିଲେ । ସାଧାରଣ ନାରୀକୁ ଚାଟୁ କଲାପରି ସେମାନେ

ବି କହିଥିଲେ -

ଅନେକ ଧନ ରତ୍ନ ଅଳଙ୍କାର ଦେବୁ
ପ୍ରାଣୁ ଅଧିକା କରି ପ୍ରତି ପାଳିଥିବୁ
ସ୍ୱାମୀପଣ ଛାଡି ତୋତେ ହୋଇବୁ ଭୃତ୍ୟରେ ଭୃତ୍ୟ
ବିନୟ ଭାବ କରି ତୋତେ ହୋଇବୁ ଶିରାଗ୍ରତ ।

ସେମାନେ ଚଣ୍ଡୀଙ୍କର ଦ୍ରୁହସିତ ବଦନ, ମାନିନୀ ରୂପ ଦେଖି ହୁଏତ ମୁଗ୍ଧ ହୋଇ ଏ ପ୍ରକାର ଅନୁରୋଧ କରିଥିଲେ, କିନ୍ତୁ ଯେତେବେଳେ ସେମାନେ ଶୁଣିଲେ ଯେ ସେ ମହିଷାସୁରର ଆଶାରେ ସେଠରେ ଉପସ୍ଥିତ, ସେତେବେଳେ ସେମାନେ ଭୟରେ କାକୁସ୍ଥ ହୋଇ ଦେବୀଙ୍କର ଶରଣାପନ୍ନ ହେଲେ । ସେମାନଙ୍କ ଦୁର୍ଦ୍ଦଶାର ଚିତ୍ରଣ କରି କବି ଲେଖିଛନ୍ତି-

ଏସନକ ବାକ୍ୟ ଶୁଣିଲେ ଯହୁଁ ବାଣୀ
ଶ୍ରବଣେ ହସ୍ତ ଦେଇଂ କାତରେ ରହିଲେ ଧରଣୀ
ତୁମ୍ଭର ଠାକୁରାଣୀ ହୋଇବୁ ଆଗୋ ମାଏ
ଦଣ୍ଡ ଦୋଷ କ୍ଷେମାକର ଫିଟୁ ଆମ୍ଭର ଭଏ
ଶିବ ଶିବ ସୁମରି ଚଳନ୍ତି ଚଣ୍ଡ ମୁଣ୍ଡେ
ପବନୁ ବେଗେ ଚଳି ନ ରହନ୍ତି ଦଣ୍ଡେ ପୃ-୧୦୦

ଚଣ୍ଡ ମୁଣ୍ଡ ହେଉଛନ୍ତି ମହିଷାସୁରର ମୁଖ୍ୟ ସେନାପତି । ରାଜ୍ୟରେ ସୁନ୍ଦରୀ ସ୍ତ୍ରୀର ସନ୍ଧାନ ପାଇଲେ, ସେମାନେ ରାଜାଙ୍କୁ ଏ ବିଷୟରେ ଅବଗତ କରାଇଥାନ୍ତି । ପୁଣି ସୁଯୋଗ ପଡିଲେ ନିଜେ ମଧ୍ୟ ଏପରି ନାରୀଙ୍କୁ କରାୟତ୍ତ କରି ନିଜର କାମ ବାସନା ତୃପ୍ତ କରନ୍ତି । ମୁସଲମାନ ଶାସନର ଏହି ଚିତ୍ର ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ କବି ଚଣ୍ଡ ମୁଣ୍ଡଙ୍କ ମୁଗ୍ଧ ଓ ଶଙ୍କିତ ମନ ମଧ୍ୟରୁ ନିଜ ଆରାଧ୍ୟା ଦେବୀ ରୂପ ବର୍ଣ୍ଣନା ଆରମ୍ଭ କଲେ ।

ଉପମା ପ୍ରୟୋଗର ପରମ୍ପରା ଅନୁଯାୟୀ ଦେବୀଙ୍କର ରୂପ ବର୍ଣ୍ଣନା ଚରଣରୁ ଆରମ୍ଭ ହୋଇ ମସ୍ତକ ବର୍ଣ୍ଣନାରେ ଶେଷ ହେବାର କଥା । କିନ୍ତୁ ଗ୍ରନ୍ଥର ପ୍ରସଙ୍ଗ ଅନୁରୋଧରେ ଚଣ୍ଡ ମୁଣ୍ଡଙ୍କ ମୁଖରେ ରୂପ ବର୍ଣ୍ଣନା ପ୍ରଦତ୍ତ ହୋଇଥିବାରୁ ଏଠି ଦେବୀ ଭାବନା ନାହିଁ । ସାଧାରଣ ନାରୀ ପରି ବର୍ଣ୍ଣନା ଆରମ୍ଭ ହୋଇଛି, ଚିକୁରରୁ ।

ରୂପ ବର୍ଣ୍ଣନା ପାଇଁ ପ୍ରଯୁକ୍ତ ଉପମାନ ସବୁକୁ ମୁଖ୍ୟତଃ ଦୁଇ ଭାଗରେ ବିଭାଗ କରାଯାଇପାରେ - (୧) ଜ୍ୟୋତି ପ୍ରକାଶକ ଉପମାନ (୨) କାନ୍ତି ପ୍ରକାଶକ ଉପମାନ ।

୧ । ଜ୍ୟୋତି ପ୍ରକାଶକ ଉପମାନ

| | | |
|---|---|---|
| (କ) | ଲଲାଟ ପାଟି | ରସାଣ କଣୟ ପ୍ରାୟକ |
| (ଖ) | ନାସା | ସୁସଞ୍ଚ କଣୟ ଘଟଣ |

| | | |
|---|---|---|
| (ଗ) | ଦନ୍ତ | ହୀରା ବା ଶଶାଙ୍କ |
| (ଘ) | କର୍ଣ୍ଣ | କୁନ୍ଦ ଘଟଣ ଜାଣି |
| (ଙ) | ଅଙ୍ଗୁଷ୍ଠି | ରୂପିଲା ରତ୍ନ ପ୍ରାଏକ |
| (ଚ) | କୁଚ | କୁନ୍ଦ ଘଟଣ କଣୟ |
| (ଛ) | ଅଞ୍ଚଳ ଉଡ଼ିବା ଫଳରେ ଶରୀର | କି ସୂର୍ଯ୍ୟ ଶଶୀ ଘେନି |
| (ଜ) | ମଝା | ବେନି କଣୟଧରର ସଙ୍କଟ |
| (ଝ) | ତେଜ | ଚନ୍ଦ୍ରମା ଉଦଏ |
| (ଞ) | ନାଭି ଓ ସ୍ତନ ମଧ୍ୟସ୍ଥ ରୋମାବଳୀ-ରତ୍ନପନ୍ତି ମଧ୍ୟେ ନୀଳା ରେଖାବଳୀ | |

୨। କାନ୍ତି ପ୍ରକାଶକ ଉପମାନ

| | | |
|---|---|---|
| (କ) | ଚିକୁର | ଜମ୍ବୁଧର ମେଘପ୍ରାଏ |
| (ଖ) | ତରଳିତ ଲୋଚନ | ସଙ୍ଗହୀନ ବାଳ କୁରଙ୍ଗୀର ବିଭଙ୍ଗ ଚାହାଁଣୀ |
| (ଗ) | ଅଧର | ବନ୍ଧୁଳ ପୁଷ୍ପପ୍ରାଏକ |
| (ଘ) | ବାଣୀ | ବସନ୍ତ ଋତୁରେ ଶତଦଳର ସ୍ୱନ । |
| (ଙ) | ଭୂଜ | କୁମୋଦ ନାଳ ପ୍ରାଏକ |
| (ଚ) | ବକ୍ଷ | ସୁରଭିର ତେଜ ପ୍ରାଏ |
| (ଛ) | ନଖ | ପୁଷ୍ପ ପାଖୁଡ଼ା କାନ୍ତି |
| (ଜ) | ପେଟ | ଜଳେ ଯେସନେକ ଶିଆଳିପତ୍ରତଟ |
| (ଝ) | ଜାନୁ | ଓଲଟ ରାମ କଦଳୀ |
| (ଞ) | ଚାଲିବା ଠାଣୀ | ଜଳେ ହଂସ ଗବନୀ |

ଜ୍ୟୋତି ଓ କାନ୍ତି ପ୍ରକାଶକ ଉପମାନ ସବୁକୁ ପ୍ରାୟ ଗୋଟିଏ ପରେ ଗୋଟିଏ ରଖି ପାଦପର୍ଯ୍ୟନ୍ତ ଆସିବା ପରେ କବି ସାରଳା ଦାସଙ୍କ ଦୃଷ୍ଟି ଭଙ୍ଗୀ ବଦଳି ଯାଇଛି । ଚଣ୍ଡ ମୁଖରେ ଦେବୀଙ୍କର ପାଦ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ପାଇଁ ସେ ବୋଧହୁଏ ଚାହିଁ ନାହାନ୍ତି । ପାଦର ତିନୋଟି ଭାଗ- (୧) ପାଦତଳି (୨) ଲଖପନ୍ତି ଓ (୩) ଆଙ୍ଗୁଳି । କବି ପାଦ ତଳି ପାଇଁ ଅଶୋକ, ଲଖପନ୍ତି ପାଇଁ ତରାଟ ଓ ଆଙ୍ଗୁଳି ପାଇଁ କନକ ପୁଷ୍ପର ନିର୍ବାଚନ କରିଛନ୍ତି । ଏବଂ ଶେଷରେ ଦେବୀଙ୍କ ପାଦ କବିଙ୍କୁ ପଦ୍ମ ସଦୃଶ ଦେଖା ଦେଇଛି । ଏସବୁ ଉପମାନଙ୍କୁ ଦେଖିଲେ

ମନେହୁଏ, ସତେ ଯେପରି ଦେବୀ ଭକ୍ତ ସାରଳା ଦାସ ବିଭିନ୍ନ ପୁଷ୍ପ ଖଚିତ ପୁଷ୍ପଗୁଚ୍ଛ ଦେବୀ ପାଦ ପଦ୍ମରେ ଅର୍ପଣ କରି ନିଜର ଭକ୍ତି ଭାବନା ପ୍ରକାଶ କରିଛନ୍ତି ।

ଚଣ୍ଡୀଙ୍କ ରୂପ ବର୍ଣ୍ଣନାରେ ପ୍ରଯୁକ୍ତ ହୋଇଥିବା ଉପମାନ ସବୁରେ ନୂତନତା ନାହିଁ, କିନ୍ତୁ କବି ଏ ସବୁକୁ ଯେଉଁ ଭାବରେ ଉପସ୍ଥାପିତ କରିଛନ୍ତି, ତାହା ହିଁ ତାଙ୍କର ବୈଶିଷ୍ଟ୍ୟ । ଦେବତାମାନଙ୍କ ତେଜ ପୁଞ୍ଜରୁ ସୃଷ୍ଟି ଦେବୀଙ୍କୁ ପ୍ରକାଶ କରିବା ପାଇଁ ସେ ଗ୍ରହଣ କରିଛନ୍ତି, ହୀରା ରତ୍ନ ଓ ମଣି, ପୁଣି ବିଶେଷ କରି ସୁବର୍ଣ୍ଣକୁ । ଦେବୀଙ୍କ ବିଭିନ୍ନ ଅଙ୍ଗ ପ୍ରତ୍ୟେଙ୍ଗକୁ ବର୍ଣ୍ଣନା କରିସାରି କବି ଯେତେବେଳେ ଦେବୀଙ୍କ ସମୂହରୂପ ପ୍ରତି ଦୃଷ୍ଟି ନିକ୍ଷେପ କରିଛନ୍ତି, ସେତେବେଳେ ଚଣ୍ଡୀଙ୍କ ବଦନ ସୌନ୍ଦର୍ଯ୍ୟ ନିକଟରେ ଚନ୍ଦ୍ରର ପ୍ରଭା ମଳିନ ହୋଯାଇଛି । ରମ୍ଭା ପରି ସ୍ୱର୍ଗ ସୁନ୍ଦରୀ ମଧ୍ୟ ନିଷ୍ପ୍ରଭ ହୋଇଯାଇଛି । ସେତେବେଳେ କବିଙ୍କ ଦୃଷ୍ଟିରେ ଚଣ୍ଡୀ ହୋଇଛନ୍ତି, 'ଅମୂଲ୍ୟ ରତ୍ନ କାନ୍ତି' ।

ଚନ୍ଦ୍ରାବତୀ ରୂପ ବର୍ଣ୍ଣନା ସହ ଚଣ୍ଡୀଙ୍କ ରୂପ ବର୍ଣ୍ଣନାକୁ ତୁଳନା କରି ଦେଖିଲେ କବିଙ୍କ ଦୃଷ୍ଟିକୋଣ କେତେକ ପରିମାଣରେ ସ୍ପଷ୍ଟ ହେଉଥିଲେ ହେଁ, ରୂପ ବର୍ଣ୍ଣନା ପାଇଁ କବିଙ୍କର କେତେକ ପ୍ରିୟ ଶବ୍ଦ ଥିଲା । କିଛି ବିଚାର ନ କରି ସେ ସବୁ ନାରୀଙ୍କ ପାଇଁ ସେହି କଥାକୁ କହୁଥିଲେ । ଏହା ସତ୍ତ୍ୱେ ଚଣ୍ଡୀଙ୍କ ରୂପ ବର୍ଣ୍ଣନାରୁ ତାଙ୍କର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ପ୍ରକାଶ ପାଇଥିଲା । ଏହା କେବଳ ପ୍ରସଙ୍ଗୋଚିତ ନୁହେଁ, ମହିଷମର୍ଦ୍ଦିନୀ ଦୁର୍ଗାଙ୍କର ରୂପବିଭାକୁ ବିଶେଷ ଗୁରୁତ୍ୱ ଦେଇ ପ୍ରକାଶ କରିବା ଥିଲା ତାଙ୍କର ଲକ୍ଷ୍ୟ । ଚନ୍ଦ୍ରାବତୀଙ୍କ ରୂପ ବର୍ଣ୍ଣନା ପରି ଏଥିରେ ମଧ୍ୟ ଉପମା ନ ଥିବା ପଂକ୍ତି ସବୁ ଦେବୀଙ୍କ ରୂପ ବର୍ଣ୍ଣନାକୁ ବିଶେଷ ଭାବେ ତେଜୋଦୀପ୍ତ କରି ପ୍ରକାଶ କରିବାରେ ସାହାଯ୍ୟ କରେ । ଏହି ସବୁ ପଂକ୍ତିରେ କବି କେବଳ ଅଙ୍ଗ ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ନ ଦେଇ ତାଙ୍କର ବିଭିନ୍ନ ଗୁଣ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକୃଷ୍ଟ କରନ୍ତି ।

ସେହିସବୁ ଉକ୍ତିରୁ ସେ ସମୟରେ ଏକ ମର୍ଯ୍ୟାଦାବନ୍ତ ନାରୀ ପ୍ରତି ସାଧାରଣ ଲୋକମାନଙ୍କ ଧାରଣା ସ୍ପଷ୍ଟ ହୁଏ । ନିମ୍ନରେ କେତେକ ପଂକ୍ତିକୁ ଉଦ୍ଧାର କରାଯାଇଛି ।

କବି ଚଣ୍ଡୀଙ୍କ ଗୁଣାବଳୀର ସୂଚନା ଦେଇ କହିଛନ୍ତି -

ନୁହିଁଇ ଚିରକୋପୀ କୃପା ଉଦେଶୀ
କୁଳୀନ ଚାରୁ ହଂସୀ ଧର୍ମ ଶାହାସ୍ତ୍ରବାଦୀ
ଦ୍ରଶନେ ପ୍ରସନେ ସେ ଚଞ୍ଚଳା ସର୍ବସାଧି
ସ୍ୱାମୀ ! କିଅବ୍ ଚଞ୍ଚଳ ସେ ପରମ ବୈଷ୍ଣବୀ
ଗୁଣନିଧି ସେ କ୍ଷେମାଶୀଳ ସାଧବୀ ।

ଅନ୍ୟ ସ୍ଥଳରେ କବି କହିଛନ୍ତି -

ସ୍ଥିରୀ କର୍ମ ଉତ୍ତମୀ ସେ ସଦୟେ ବାରାନିଧି ।

ଏହି ସବୁ ଗୁଣ ହେତୁ ସେ 'ତ୍ରୈଲୋକ୍ୟ ମୋହିନୀ' । ଏହାର ବ୍ୟାଖ୍ୟା କରି କବି କହିଛନ୍ତି -

ଅଶୋଭନ୍ତେ ଶୋଭାକର ହସନ୍ତେ ଶୋଭାବନୀ
ସ୍ୱାମୀ ! ଚାଲନ୍ତେ ଶୋଭାକାର ତ୍ରୈଲୋକ୍ୟ ମୋହିନୀ ।

କବି ଏସବୁ କହି ମଧ ସନ୍ତୁଷ୍ଟ ହେଲେ ନାହିଁ । ଶେଷରେ ସେ କହିଲେ, ପ୍ରଜାପତି ଯୁଗ ଯୁଗ ଧରି ଏହି ରୂପ ନିର୍ମାଣ ପାଇଁ ଚେଷ୍ଟା କରିଥିଲେ ହେଁ ଏବଂ ବାରମ୍ବାର ଭାଙ୍ଗି ପୁଣି ଗଢିବାକୁ ଇଚ୍ଛା କରିଥିଲେ ହେଁ ରୂପରେ ପୂର୍ଣ୍ଣତା ଆଣିପାରି ନ ଥିଲେ । ସ୍ରଷ୍ଟାଙ୍କର ଏହି ନିରାଶ ଭାବର ସନ୍ଧାନ ପାଇ ଦେବୀ ସ୍ରଷ୍ଟାଙ୍କୁ ଆଉ ହଇରାଣ ନ କରିବା ପାଇଁ ସ୍ଥିର କଲେ ।

ଭାଙ୍ଗି କେତେକାଳ ସେ ଗଢିବ ପ୍ରଜାପତି
ତେଣୁକରି ବଡ ମନ୍ଦେ ନ ଚାଲେ ପାଦଗତି ।

ରୂପ ବର୍ଣ୍ଣନା ଚଣ୍ଡୀଙ୍କ ସମୂହ ବର୍ଣ୍ଣନାର କେବଳ ଏକ ଅଂଶ ମାତ୍ର । ଏହା ହେଉଛି କେବଳ ଚଣ୍ଡୀଙ୍କ ମାନିନୀ ରୂପର ବର୍ଣ୍ଣନା । ଅସ୍ତ୍ର, ଆୟୁଧ ଓ ବାହନରେ ସୁସଜ୍ଜିତା ହେବା ପରେ ହିଁ ତାଙ୍କର ପ୍ରକୃତ ରୂପ ପ୍ରକାଶପାଏ, ଏବଂ ତାହା ହିଁ ତାଙ୍କୁ ରଣରଙ୍ଗିନୀ, ମହିଷ ବିମର୍ଦ୍ଦିନୀ ଦୁର୍ଗା ଭାବେ ପ୍ରତିଷ୍ଠିତ କରେ । ଚଣ୍ଡୀ ପୁରାଣ ବିଶେଷ କରି ଯୁଦ୍ଧ ବର୍ଣ୍ଣନା ପାଇଁ ଅଭିପ୍ରେତ । ଏହି ବର୍ଣ୍ଣନା ପାଇଁ କବି ଯେଉଁ ସବୁ ଉପମାନର ନିର୍ବାଚନ କଲେ ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଚଣ୍ଡୀ ଓ ମହିଷାସୁର ଯୁଦ୍ଧର ଭୀଷଣତା ଦର୍ଶାଇବା ହିଁ କବିଙ୍କର ଉଦ୍ଦେଶ୍ୟ । ଏହା ହେଉଛି, ପ୍ରଳୟାନ୍ତକାଳ ବା ଯୁଗସନ୍ଧିର ସମୟ । ସେତେବେଳେ ବିଶ୍ୱର ଶକ୍ତିଯୁକ୍ତ ସମସ୍ତ ବସ୍ତୁ ପରସ୍ପର ମଧ୍ୟରେ ସଂଘର୍ଷ କରିଥାନ୍ତି । ଏସବୁ ମଧ୍ୟରେ ପର୍ବତ, ସାଗର, ବଜ୍ର, ମେଘ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ମଉନାଗ, ରାହୁ, କାଳସର୍ପ, ଶ୍ରୋଣେହା, ସେଣାପକ୍ଷୀ, ଗରୁଡ, ସିଂହ ପ୍ରଭୃତି ବିଶେଷ ଭାବେ ଉଲ୍ଲେଖ ଯୋଗ୍ୟ । ଏହି ସବୁ ବସ୍ତୁର ଉତ୍ପାତ ମଧ୍ୟରେ ହିଁ ପ୍ରଳୟ ସଂଘଟିତ ହୁଏ । କବି ଚଣ୍ଡୀ ଯୁଦ୍ଧକୁ ଏକ ଯୁଗସନ୍ଧି ସମୟ ବା ପ୍ରଳୟାନ୍ତକାଳ ରୂପେ ଗ୍ରହଣ କରିଥିବାରୁ ତାଙ୍କ ଉପମାନ ମଧ୍ୟରେ ଏହିସବୁ ବସ୍ତୁ ବିଶେଷ ପ୍ରମୁଖତା ଲାଭ କଲେ । ମହିଷାସୁରର ସେନାବାହିନୀ ଓ ଅଭିଯାନ ପ୍ରଭୃତିର ବର୍ଣ୍ଣନା କଲାବେଳେ କବିଙ୍କ ଦୃଷ୍ଟି ବିଶେଷ ଭାବେ ସାଗରଠାରେ ନିବଦ୍ଧ ହେଲା । ମହିଷାସୁରର ସେନା, ଦ୍ୱିତୀୟ ସାଗର ସଦୃଶ ଆଗକୁ ମାଡି ଚାଲିଛି, ସେମାନଙ୍କର ରୂପ ନୀଳବର୍ଣ୍ଣ ସମୁଦ୍ରପରି, ମୁଖଘୋଷ ସମୁଦ୍ରର ଘୋଷ ବା ଗର୍ଜନ ପରି । ମହିଷାସୁରର ଅଗଣିତ ସେନା କବିଙ୍କୁ ଅକଳିତ, ଅପାର ଓ ଅଗାଧ ସମୁଦ୍ର ପରି ଦେଖାଦେଲା । ରାଜ୍ୟ ପରେ ରାଜ୍ୟ ଜୟ କରିବା ଭିତରେ କବି ଦେଖିଲେ କୂଳ ଲଂଘନ କରୁଥିବା ସମୁଦ୍ରର ଦୃଶ୍ୟ । ମହିଷାସୁରର ଉତ୍ଫୁଲ୍ଲ ତଥା ବିଜୟୀ ସେନାବାହିନୀ ଦର୍ଶନକରି କବି ସାଗରର ଉତଲ୍ଲା ବା ପରିପୂର୍ଣ୍ଣ ସମୁଦ୍ରକୁ ଦେଖିପାରି ଥିଲେ । ସେନାବାହିନୀର ବିସ୍ତାରରେ କବି ଦେଖିଲେ ପୂର୍ବ ଦିଗରେ ବିସ୍ତାରିତ ହୋଇ ରହିଥିବା ସମୁଦ୍ରକୁ । ରାକ୍ଷସ ସେନା କଥା

କହିବାବେଳେ ସତେ ଯେପରି କବି ସମୁଦ୍ରର ବିଭିନ୍ନ ଦୃଶ୍ୟ ବ୍ୟତୀତ ଆଉ କିଛି ଦେଖିପାରି ନ ଥିଲେ । ପ୍ରଳୟ କାଳରେ ସମୁଦ୍ର ହିଁ ସମସ୍ତ ବିଶ୍ୱକୁ ଗ୍ରାସ କରେ । ଚଣ୍ଡୀ ଯୁଦ୍ଧରେ ମହିଷାସୁରର ସେନାସାଗର ହିଁ ବିଶ୍ୱ ପ୍ରତି ବିରାଟ ସଂକଟ ସୃଷ୍ଟି କରିଥିଲା ।

ସେନାବାହିନୀ ପାଇଁ କବି ଯେପରି ସାଗରକୁ ଦେଖିଥିଲେ, ଯୁଦ୍ଧ ବର୍ଣ୍ଣନାବେଳେ ସେ ସେହିପରି ଦେଖିଲେ ପର୍ବତକୁ । ଦୁଇ ପ୍ରତିଦ୍ୱନ୍ଦ୍ୱୀର ସମର ତାଙ୍କୁ ପ୍ରାୟ ସବୁବେଳେ ମେରୁ ମନ୍ଦରର ସଂଘର୍ଷ ପରି ଦେଖାଯାଉଥିଲା । ଅସ୍ତ୍ରଶସ୍ତ୍ର ହୀନ ରାକ୍ଷସ ରୂପରେ ସେ ଦେଖିଲେ, 'ପୋଡିଲା ପର୍ବତ'ର ଦୃଶ୍ୟ । ରାକ୍ଷସର ରଡିରେ ସେ ଶୁଣିଲେ ଆକାଶରୁ ଖସିପଡୁଥିବା ପର୍ବତ ଗର୍ଜନର ପ୍ରତିଧ୍ୱନି । ସେନାଦ୍ୱାରା ଅବରୋଧ ସ୍ଥାନ ତାଙ୍କୁ ଜଳକୁ ଅବୋରି ରଖିଥିବା ପର୍ବତ ପରି ଦେଖାଦେଲା । କୌଣସି ବିଶିଷ୍ଟ ରାକ୍ଷସ ସେନାପତି ବା ଚଣ୍ଡୀ ତାଙ୍କୁ ଏକ ପର୍ବତ ପରି ପ୍ରାୟ ସବୁବେଳେ ଦେଖାଯାଉଥିଲେ ।

ପର୍ବତ ଓ ପର୍ବତ ମଧ୍ୟରେ ସଂଘର୍ଷ ପୁଣି ସମୁଦ୍ର ଜଳର ମହାପ୍ଲାବନ ସହିତ ବିଶ୍ୱର ଅନ୍ୟସବୁ ଶକ୍ତିଶାଳୀ ଜୀବଜନ୍ତୁ ଓ ପଦାର୍ଥ ମଧ୍ୟ ବିଶ୍ୱରେ ପ୍ରଳୟ ସୃଷ୍ଟି କରିବା ପାଇଁ ସକ୍ରିୟ ହୋଇ ଉଠିଥିଲେ । ସେଥିରେ ସହଯୋଗ କଲେ ପ୍ରଚଣ୍ଡ ବହ୍ନି, ନିର୍ଦ୍ଧୂମ ଅଗ୍ନି, ବଜ୍ର, ବଜ୍ରଦଣ୍ଡ, ବଜ୍ରଶିଳା, ମତ୍ତନାଗ, ସେଣା ଓ ଖରାବର ପକ୍ଷୀ , ଶ୍ରୋଣେହା, କାଳସର୍ପ । ବିସ୍ତାରିତ ରାହୁଗର୍ଭ, କକଡା ମାସର ମୂଷଳଧାର ବୃଷ୍ଟି ଓ ସୂର୍ଯ୍ୟଙ୍କ ପ୍ରଖର ଜ୍ୟୋତି ପ୍ରଭୃତି ଉପମାନ । ଏମାନେ ସମସ୍ତେ ମିଶି ସତେ ଯପରି ବିଶ୍ୱରେ ପ୍ରଳୟ ସୃଷ୍ଟି କରିଥିଲେ ।

ଚଣ୍ଡୀ ପୁରାଣରେ ଯୁଦ୍ଧ ବର୍ଣ୍ଣନା ପାଇଁ ପ୍ରଯୁକ୍ତ ଏହିସବୁ ଉପମାନ ମଧ୍ୟରେ ଆଉ କେତେକ ବିଶିଷ୍ଟ ଉପମାନର ପ୍ରୟୋଗ ଦେଖିବାକୁ ମିଳେ । ସେ ସବୁ ପରମ୍ପରାରୁ ଗୃହୀତ ନୁହେଁ, କବି ସେ ସବୁକୁ ବୋଧହୁଏ, ନିଜ ସମାଜରେ ଦେଖିଥିଲେ । ଅସ୍ତ୍ରଶସ୍ତ୍ର ବିହୀନ ଯୋଦ୍ଧାକୁ ଦେଖି କବିଙ୍କ ମନରେ ମୁଣ୍ଡା ବୃକ୍ଷର ଦୃଶ୍ୟ ପ୍ରତିଭାତ ହୋଇଥିଲା । ସେନାର ପଳାୟନ ଦୃଶ୍ୟରେ କବି ଦେଖିଲେ 'ବାସଭଗ୍ନ' ପକ୍ଷୀର ଦୁର୍ଦ୍ଦଶା । ଏକ ଶକ୍ତିଶାଳୀ ସେନାବାହିନୀ ନିକଟରେ କାକୁସ୍ତ ହୋଇ ରହିଥିବା ଏକ ଦୁର୍ବଳ ସେନାବାହିନୀକୁ ଦେଖି କବି ବ୍ୟାଘ୍ର ସମ୍ମୁଖରେ ଥିବା ଛାଗଳର ବିବଶତାକୁ ସ୍ମରଣ କଲେ । କୌଣସି ସମର୍ଥ ବୀର ସୈନ୍ୟବାହିନୀକୁ ମର୍ଦ୍ଦନ ବା ଗଣ ସଂହାର କରୁଥିବା ବେଳେ କବି କଦଳୀବନ ମଧ୍ୟରେ ମତ୍ତଗଜ ଏବଂ କୃପାଣ ଦ୍ୱାରା କଦଳୀବନ ବିନାଶ କଥା କହିଲେ । ମହିଷାସୁରର ଗିରି ଉତ୍ପାଟନ ଦୃଶ୍ୟରେ କବି ଦେଖିଲେ କୌଣସି ବଳଶାଳୀ ବୃଷଭ ଦ୍ୱାରା ମୃତ୍ତିକା ଖନନର ଦୃଶ୍ୟ । ପୁଣି ମହିଷର ଶୃଙ୍ଗ ଉପରେ ଗିରିର ଅବସ୍ଥିତି ଷଣ୍ଢ ଶିଙ୍ଘରେ ଲାଗିଥିବା ମାଟିପରି କବିଙ୍କୁ ଦେଖାଦେଲା । ଗିରିକୁ ମାଟି ସହ ତୁଳନା କରିବା ଫଳରେ ମହିଷାସୁରର ବିଶାଳ ରୂପ ହିଁ ପାଠକକୁ ଚମତ୍କୃତ କରିଥାଏ ।

କବି ଲେଖିଛନ୍ତି -

କେଷ୍ଟକରି ମହିଷାସୁର ସେ ପର୍ବତ ଉପାଡଇ
ତିଳ ମଦା ପ୍ରାଏ କରି ସିଙ୍ଘେଣ ଘୋଟଇ
ଦେଖ ହୋ ବଳବନ୍ତା ସେ ଦାନବ କୁଳରାଏ
ପର୍ବତ ସିଙ୍ଘର ମୂଳେ ଧରିଅଛି ମୃତ୍ତିକା ଖଣ୍ଡପ୍ରାଏ
ଭୂମିରେ ହାଣିଲେ ଯେହ୍ନେ ସିଙ୍ଘରେ ଲାଗଇ ମାଟି
ସେହିମତି ପ୍ରାଏ ହୋଇଲା ରତ୍ନଗିରି ପର୍ବତ ଗୋଟି । ପୃ-୨୪୮

ବିରହୀ ପୁରୁଷମାନେ କାମ ଭାବନାରେ ପ୍ରପୀଡ଼ିତ ହେଲାବେଳେ ସେମାନଙ୍କର ହିତାହିତଜ୍ଞାନ ଲୋପ ପାଏ । ନାରୀକୁ ଲାଭ କରିବା ଲୋଭରେ ସେମାନେ ଏପରି ବଶୀଭୂତ ହୋଇଯାଆନ୍ତି ଯେ ନାରୀଇଙ୍ଗିତରେ ନୃତ୍ୟ କରିବା ବ୍ୟତୀତ ତାଙ୍କର ଆଉ ଗତି ନଥାଏ । କବି ସାରଳା ଦାସ **ଚଣ୍ଡୀ ପୁରାଣ**ରେ ଏହି ଦୃଶ୍ୟକୁ ବାରମ୍ବାର ଉପସ୍ଥାପିତ କରିଥିଲେ ହେଁ, ନାରାୟଣୀ ଓ କାନ୍ତିମାଳା ପ୍ରସଙ୍ଗରେ ସେ ଯେଉଁ ଉପମାନ ପ୍ରୟୋଗ କଲେ, ତାହା ପୁରୁଷର ଏହି ଭାବଦଶାକୁ ଅତି ଜୀବନ୍ତ ଭାବେ ପ୍ରକାଶ କଲା । କବି କହିଛନ୍ତି -

ହେ ପଣ୍ଡିତ ଜନମାନେ ବିଚାର କର ଏହା
ପୁରୁଷ ବିରହିତା ନ କରଇ ତାହା ।
ଯେତେ ପ୍ରାକର୍ମ ଥିଲେ ବୁଡଇ ମଦନ କଳେ ପଡିଲେ
ଦଉଡି ଲାଗି ଯେହ୍ନେ ଗମଇ ବଇଲେ ପୃ-୧୫୮

**ଚଣ୍ଡୀ ପୁରାଣ**ର ପଦ ସଂଖ୍ୟା ହେଉଛି ୪୪୪୮ । ସେଥିରେ ଉପମାନର ସଂଖ୍ୟା ହେଉଛି ମୋଟେ ୨୨୧ । ପଦସଂଖ୍ୟା ଦୃଷ୍ଟିରୁ ଉପମାନର ସଂଖ୍ୟା ନଗଣ୍ୟ ହେଲେ ବି କବି କଥା ବର୍ଣ୍ଣନା ସଦୃଶ ଉପମାନ ପ୍ରୟୋଗ ମାଧମରେ ପ୍ରଳୟାନ୍ତ କାଳର ଏକ ସଫଳ ଚିତ୍ର ଅଙ୍କନ କରିବାାର ସମର୍ଥ ହୋଇଥିଲେ ।

## ବର୍ଣ୍ଣନା ବୈଚିତ୍ର୍ୟ :

ଉପମାନ ନିର୍ବାଚନରେ କବିଙ୍କର ବୈଶିଷ୍ଟ୍ୟ ପ୍ରତିପାଦିତ ହେଉଥିଲେ ହେଁ, ଗ୍ରନ୍ଥ ମଧ୍ୟରେ ଏ ସବୁର ସ୍ୱଳ୍ପତା ଦୃଷ୍ଟିରୁ କବିଙ୍କ ଶୈଳୀର ଏହା ଯେ ଏକ ପ୍ରମୁଖ ଅଙ୍ଗ ନ ଥିଲା, ତାହାହିଁ ଜଣାଯାଏ । କେବଳ ସାରଳା ଦାସ ନୁହନ୍ତି, ସବୁ ପୁରାଣକାର ସେମାନଙ୍କ ଗ୍ରନ୍ଥରେ ବର୍ଣ୍ଣନାକୁ ପ୍ରାଧାନ୍ୟ ଦେଉଥିଲେ । ଏସବୁ ବର୍ଣ୍ଣନା ମଧ୍ୟରେ ସାଧାରଣତଃ ବଂଶ ବର୍ଣ୍ଣନା, ଅରଣ୍ୟର ବୃକ୍ଷ, ଲତା, ପଶୁ ଓ ପକ୍ଷୀର ଗଣନା, ଖାଦ୍ୟ ପଦାର୍ଥ ଓ ବିଭିନ୍ନ ପ୍ରକାର ବାଦ୍ୟର ନାମୋଲ୍ଲେଖ ରହୁଥିଲା । କାହାଣୀ ଭିତରେ କାହାଣୀର ସଂଯୋଜନା ପ୍ରବୃତ୍ତିକୁ ପୁରାଣକାରମାନେ ବିଶେଷ ପ୍ରାଧାନ୍ୟ ଦେଉଥିବାରୁ ପ୍ରସଙ୍ଗ ଯୋଜନାରେ କ୍ରମହୀନତା ଏବଂ ଅସ୍ପଷ୍ଟତା ପରିଲକ୍ଷିତ ହେଉଥିଲା । ପୁଣି ଅପରିମିତ ଅତିଶୟୋକ୍ତି ପ୍ରତି ବିଶେଷ ଆଗ୍ରହ ହେତୁ ପୁରାଣ ସବୁକୁ ସମୀକ୍ଷା ସାହିତ୍ୟ ଦୃଷ୍ଟିରୁ ବିଚାର କରାଯାଇ ପାରେ ନାହିଁ । ଏଥିରେ କାବ୍ୟ-

ସୌନ୍ଦର୍ଯ୍ୟର ଅନୁସନ୍ଧାନ କଲେ ଅନେକ ସମୟରେ ନିରାଶ ହେବାକୁ ହୁଏ । ଏଥିରେ ମାନବତାର ପ୍ରତିପାଦନ ପାଇଁ ବିଭିନ୍ନ ଆଦର୍ଶର ସମାବେଶ ହୋଇଥିଲେ ହେଁ, ମାନବୀୟ ଭାବନା, ଯାହା କି କାବ୍ୟର ଆତ୍ମା, ସେ ସବୁକୁ ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ । ପୁରାଣର ବକ୍ତା କଥା ପରେ କଥାର ସୃଷ୍ଟି କରେ, ପାଠକର ମନୋରଞ୍ଜନ ପାଇଁ ନୁହେଁ, ଦେବତାଙ୍କ ଯଶୋଗାନ ପାଇଁ । ପୁଣି ଶ୍ରୋତାମାନଙ୍କୁ ପାପମୁକ୍ତ କରି ମଙ୍ଗଳ ବିଧାନ କରିବା ଏହାର ଲକ୍ଷ୍ୟ । ଭାରତୀୟ ଧର୍ମର ଅଧ୍ୟେତାମାନଙ୍କ ପାଇଁ ଏହାର ଅଧ୍ୟୟନ ଅପରିହାର୍ଯ୍ୟ । ଏହା ହେଉଛି, ଭାରତୀୟତାର ଦର୍ପଣ ଧର୍ମ ଶାସ୍ତ୍ରର ସବୁ କଥା, ସବୁ ବିଶ୍ୱାସ ଓ ସବୁ ମାନ୍ୟତା ଏଥିରେ ସଜୀବ ବର୍ଣ୍ଣନ ମାଧ୍ୟମରେ ପ୍ରକାଶିତ ।

ଏସବୁ ସତ୍ତ୍ୱେ ଏହା କାବ୍ୟ ନୁହେଁ, ପୁରାଣ । ଭାରତୀୟ ସଭ୍ୟତା ତଥା ସଂସ୍କୃତିର ଇତିହାସ ପାଇଁ ଏହା ଉପାଦେୟ । ତେବେ ବି ସାରଳା ଦାସଙ୍କ ପରି ସିଦ୍ଧହସ୍ତ କବି ବର୍ଣ୍ଣନା କୌଶଳ ଦ୍ୱାରା ପୁରାଣର ଇତିବୃତ୍ତାତ୍ମକ ଅଂଶକୁ ଏପରି ସରସ ଓ ସଜୀବ କରିଦିଅନ୍ତି, ଯେ ପୁରାଣର ସବୁ ବୈଶିଷ୍ଟ୍ୟ ମଧ୍ୟରେ ଏଥିରେ କାବ୍ୟୋଚିତ ଗୁଣ ସବୁକୁ ମଧ୍ୟ ଦେଖିହୁଏ । ନିମ୍ନରେ **ଚଣ୍ଡୀ ପୁରାଣ**କୁ ସାହିତ୍ୟିକ ଦୃଷ୍ଟିରୁ ବିଚାର କରିବା ପାଇଁ କେତେକ ନିର୍ଦ୍ଦିଷ୍ଟ ବିଭାଗରେ ବିଭକ୍ତ କରାଯାଇଛି :

(କ) ବସ୍ତୁ ବର୍ଣ୍ଣନା

(ଖ) ବିବାହ ବର୍ଣ୍ଣନା

(ଗ) ଯୁଦ୍ଧ ବର୍ଣ୍ଣନା

(ଘ) ରୂପ ବର୍ଣ୍ଣନା

(ଙ) ଅନ୍ୟ ବର୍ଣ୍ଣନା

**(କ) ବସ୍ତୁ ବର୍ଣ୍ଣନା :** ନଗର - ଚଣ୍ଡୀ ପୁରାଣରୁ ବହୁ ନଗରର ଉଲ୍ଲେଖ ମିଳୁଥିଲେ ହେଁ, କବି ସେ ସବୁର ବର୍ଣ୍ଣନା ପାଇଁ ଆଦୌ ଧ୍ୟାନ ଦେଇ ନଥିବା ଜଣାଯାଏ । ମହା ସମ୍ପର୍ଦ ରାଜ୍ୟ କହିଦେଲେ ତାଙ୍କ ନଗର ବର୍ଣ୍ଣନା ସମାପ୍ତ ହୋଇ ଯାଉଥିଲା । ତେବେ କେତେକ ସ୍ଥଳରେ ସେ ନଗର ପାଇଁ ପଦେ ଅଧେ କହି ବି ଦେଇଥିଲେ, କରଞ୍ଜ ଦେଶ କଥା କହିବାବେଳେ ସେ ଏକ ନଗରର ବର୍ଣ୍ଣନା କରୁଥିବା ଅନୁମିତ ହୁଏ -

ସୁବର୍ଣ୍ଣ କଳସ ପାତାଙ୍କେ ଉଡ଼ନ୍ତି
ସମସ୍ତ ସୁବର୍ଣ୍ଣମଏ ମଣ୍ଡପ ଜଗତୀ
ସମଦଣ୍ଡ ସଇନି ଦୁନ୍ଦୁଭି ଶବଦ ବାଜେ
ସନ୍ୟ ଘେନିଣ ମହିଷା କରଇ ଦିଗବିଜେ ।

କୁଳାବତୀ ନଗ୍ର ବର୍ଣ୍ଣନା କଲାବେଳେ ମଧ୍ୟ କବି କେବଳ 'ପରିମଳ' ଶବ୍ଦ ପ୍ରୟୋଗ କରି ନଗରର ସୌନ୍ଦର୍ଯ୍ୟ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକୃଷ୍ଟ କରିଛନ୍ତି ।

ଆହୋ ପରୀକ୍ଷ ସାଗର ସଙ୍ଗମ ମଉଦଧି ଦକ୍ଷିଣ କୂଳେ
କୁଳାବତୀ ବୋଲି ଏକ ନଗ୍ର ପରିମଳେ । ପ-୮୩୬

କବି ସାରଳା ଦାସ ନଗର ବର୍ଣ୍ଣନାକୁ ନିଜ ଗ୍ରନ୍ଥରେ କୌଣସି ଗୁରୁତ୍ୱ ନ ଦେବା ପରି ଖାଦ୍ୟ ପଦାର୍ଥ, ଦାନ, ଉପହାର ପ୍ରଦାନ ପ୍ରଭୃତିକୁ ମଧ୍ୟ ପରିତ୍ୟାଗ କରିଛନ୍ତି । ତେବେ ଚଣ୍ଡୀଙ୍କର ଆବିର୍ଭାବ ପରେ ଦେବତାଦିଙ୍କର ଅସ୍ତ୍ର, ତେଜ ଓ ବାହନ ପ୍ରଦାନକୁ ଦାନ ବା ଉପହାର ପ୍ରଦାନ ରୂପେ ଗ୍ରହଣ କରାଯାଇପାରେ । କବି 'ଦୁର୍ଗା ସପ୍ତସତୀ'କୁ ଅବଲମ୍ବନ କରି ବିଭିନ୍ନ ଅସ୍ତ୍ର ଶସ୍ତ୍ର ଓ ବାହନ ଦାନ ପ୍ରସଙ୍ଗକୁ ଗ୍ରହଣ କରିଥିଲେ ହେଁ ସେଥିରେ ବହୁ ମୌଳିକତା ପରିଲକ୍ଷିତ ହୁଏ ।ନିମ୍ନରେ 'ଦୁର୍ଗା ସପ୍ତସତୀ' ଓ **ଚଣ୍ଡୀପୁରାଣ**ର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରାଯାଇଛି ।

**ଶ୍ରୀ ଦୁର୍ଗା ଶପ୍ତଶତୀ**

| **ଦେବତା** | **ଅସ୍ତ୍ର** | **ଶରୀରଅଂଶ** |
|---|---|---|
| ଶଙ୍କର | ଶୂଳ | ମୁଖ |
| ଯମରାଜ | ଦଣ୍ଡ | କେଶ |
| ବିଷ୍ଣୁ | ଚକ୍ର | ଭୁଜା |
| ଚନ୍ଦ୍ରମା | | ଦୁଇସ୍ତନ |
| ଇନ୍ଦ୍ର | ବଜ୍ର, ଘଣ୍ଟା | ମଧ୍ୟଭାଗ |
| ବରୁଣ | ଶଙ୍ଖ, ପାଶ | ଜଂଘ |
| ପୃଥିବୀ | | ନିତମ୍ବ |
| ବ୍ରହ୍ମା | କମଣ୍ଡଳୁ | ଦୁଇ ଚରଣ |
| ସୂର୍ଯ୍ୟ | ରୋମକୂପରେ କିରଣ | ହାତଆଙ୍ଗୁଳି |
| ବସୁ | ତେଜ | ହାତଆଙ୍ଗୁଳି |
| କୁବେର | | ନାସିକା |
| ପ୍ରଜାପତି | ସ୍ଫଟିକା ମାଳା | ଦାନ୍ତ |
| ଅଗ୍ନି | ଶକ୍ତି | ନେତ୍ର |
| ସଂଧ୍ୟା | | ଭ୍ରୂଲତା |
| ବାୟୁ | ଧନୁ, ବାଣ ତରକସ୍ | କାନ |
| କାଳ | ଢାଲ, ତରବାରୀ | |

| | |
|---|---|
| କ୍ଷୀର ସମୁଦ୍ର | ଉଜ୍ଜଳ ହାର, ଅମଳାନବସ୍ତ୍ର |
| | ଦିବ୍ୟ ଚୂଡାମଣୀ କୁଣ୍ଡଳ |
| | କଡା ଅର୍ଦ୍ଧଚନ୍ଦ୍ର କେୟୁର |
| | ନୂପୁର ହଂସୁଲି ରତ୍ନ ଅଙ୍ଗୁଠି |
| ବିଶ୍ୱକର୍ମା | ଫରସା, ଅସ୍ତ୍ର, ଅଭେଦ୍ୟ କବଚ |
| | କମଳ ମାଳ |
| ଜଳଧି | ସୁନ୍ଦର କମଳ |
| ହିମାଳୟ | ସିଂହ, ବିଭିନ୍ନ ରତ୍ନ |
| କୁବେର | ମଧୁପୂର୍ଣ୍ଣପାତ୍ର |
| ଶେଷ | ବହୁମୂଲ୍ୟ ମଣି ବିଭୂଷିତ ନାଗହାର |

## ଚଣ୍ଡୀପୁରାଣ

| ଦେବତା | ଅସ୍ତ୍ର | ଶରୀରଅଂଶ |
|---|---|---|
| ବ୍ରହ୍ମା | କମଣ୍ଡଳୁ, ଜପାମାଳି | କପୋଳ |
| | ବ୍ରହ୍ମଶର, ଶକ୍ତି | |
| ନାରାୟଣ | ଶଙ୍ଖ, ଚକ୍ର, ଗଦା | ବଦନ |
| ଈଶ୍ୱର | ତ୍ରିଶୂଳ, ଡମ୍ବରୁ | ଦନ୍ତପନ୍ତି, |
| | ପିନାକୀ, ପଶୁପତ୍ରଧନୁ | |
| ମଘବାନ | ଅଜଗବ ଧନୁ, ବ୍ରହ୍ମଶକ୍ତି | ନାସିକା |
| ଆଦିତ୍ୟ | ସୂର୍ଯ୍ୟାବର୍ତ୍ତକ ଚକ୍ର, | ବଦନ |
| | ଆମୃତ କୁଣ୍ଡଳ ଜୟମାଳ | |
| ଚନ୍ଦ୍ର | ଅମୃତଶର, ହେମ | ଜିହ୍ୱା |
| ଯମ | କାଳଚକ୍ର ଦଣ୍ଡ | ଗଣ୍ଡ |
| କୁବେର | | ବକ୍ଷ |
| ବିଶ୍ୱଦେବତା | ଖଡ୍‌ଗ | କୁକ୍ଷି |
| ଘନେକ | | ନାଭି |
| ଅଶ୍ୱିନୀକୁମାର | ଅସର ଶାୟକ ଅଞ୍ଜନ | ମଝୀ |
| | ମଭଷୋଧି ରୁଧି, ବୁଦ୍ଧି, ବ୍ୟାଧି | |
| ନାଶକର | | ଏକ ଫୁଲଣା |

| | | |
|---|---|---|
| ବୃହସ୍ପତି | | ଏକ ଫୁଲଣା |
| ପ୍ରଜାପତି | | ଜାନୁ |
| ଅନନ୍ତ ବାସୁକୀ | ନାଗଫାଶ ବାଣ | ପାଦ |
| ଅଷ୍ଟକୁଳା ନାଗ | | |
| ନବଗ୍ରହ ଭୃଗୁ | ମୋହନାଶର | ବେନି ଚରଣର |
| | କାମ ଆଦ୍ରାବଳୀ | ଆଙ୍ଗୁଳି |
| ହେମନ୍ତ | ପର୍ବତାଶର | ପିଠି |
| ନକ୍ଷତ୍ର | | ରୋମାବଳୀ |
| ବରୁଣ | କାଳଫାଶୀ | ମହାଗର୍ଭ |
| ମେଘ | | ଅମ୍ବୁ |
| ପବନ | | ଭୁଜ |
| ଅନିଳେକ ରୁଦ୍ର | ନୀଳଚକ୍ର | |
| କାମ | ସ୍ତମ୍ଭନ, ମୋହନ | |
| | ବଶ୍ୟ ଉଚାଟନ | |
| ଜଏଚଣ୍ଡ | ପଶୁ, ମୁଦ୍ଗର, | |
| ବିହନ୍ତା ପୁରୁଷ | ଦୀପାନ୍ତେକ, ଚକ୍ରଦଣ୍ଡ | |
| ମରୁତ | ଅବିଶ୍ରାମ ଚକ୍ର | |
| ସୁରକେଶୀ | ମନଭେଦୀ ଶର | |
| ଗଣପତି | ନାଗଫାଶ ଶର | |
| କାର୍ତ୍ତିକ | ଅମୃତ ଲଡୁ | |
| ସୁରଚାଣ | ବଜ୍ର , ନିର୍ଘାତ, | |
| (ଇନ୍ଦ୍ର) | ଅମୃତ ବାଣ, ମେଘା, ଅଗ୍ନିଶର | |
| ମରୁଦ୍ର ପୁରୁଷ | ନିଦ୍ରାଶର, ଅସାଷ୍ଟମ ବାଣ, ଅକ୍ଷୟ ଦ୍ରୋଣ | |
| ଈଶାନ୍ୟ ଦେବତା | ନୀଳ ଭୁଜବାଣ, ବଜ୍ରବାଣ | |
| ଶତମନୁ | ରତ୍ନ ମୁକୁଟ, ସରଳ, ଅଜପା ଜପାମାଳ | |
| | ବିଜୁଳି, ଆଦ୍ରାବଳୀ, ଅମରକୋଷ ଧନୁ | |
| ଅନାଦି ଗ୍ରହଗଣ | ମଦନ ମାର୍ଦ୍ଦନ, ମୋହନ, ଶୋଷନ | |
| ବିଦ୍ୟାଗୁରୁ | ଆୟୁର୍ବେଦ, ଜ୍ୟୋତିର୍ବେଦ, | |

| | |
|---|---|
| | ଧନୁର୍ବେଦ, ଶିଷୁମୁନା ବେଦ, |
| | ଜପା ଅଜପା ଯୋଗ, |
| | ଋକ୍ ଶାମ, ଯଜୁ, ଅଥର୍ବ |
| ଅଗ୍ରାଧିତ ଦେବୀ | ରୁଧି, ସିଦ୍ଧି |
| | ଗଉରୀ, ଶଉରି, ରଦନ, ନବବିଧି |
| ସୂର୍ଯ୍ୟ ଦେବତା | ସୁମନ୍ତେକ ତିମିରି ବିଦାରଣ |
| | ବଉଦ୍ରୁଯ ମଣି |
| ବଶ୍ୟାନର | ଜ୍ଞାନ |

'ଦୁର୍ଗା ସପ୍ତଶତୀ'ରେ ହେମବନ୍ତ କେବଳ ସିଂହ ବାହାନ ପ୍ରଦାନ କରିଥିଲେ । ସାରଳା ଦାସ ଏଥିରେ ବହୁ ଦେବତାଙ୍କ ବାହାନ ଯୋଗ କରି ଏକ ଦୀର୍ଘ ତାଲିକା ପ୍ରସ୍ତୁତ କଲେ । ଏହିପରି ଦେଖିଲେ, ସାରଳା ଦାସ 'ଦୁର୍ଗା ସପ୍ତଶତୀ'ର ସୂତ୍ର ଗ୍ରହଣ କରିଥିଲେ ହେଁ, ଏଥିରେ ଏପରି ବହୁ ପରିବର୍ତ୍ତନ କରିଛନ୍ତି, ଯାହାକି ମୂଳ ଗ୍ରନ୍ଥରେ ଦେଖିବାକୁ ମିଳୁନଥିଲା ।

**(ଖ) ବିବାହ ବର୍ଣ୍ଣନା:** କବି **ସାରଳା ଦାସ** ମହାଭାରତରେ ବହୁ ବିବାହ ଓ ସ୍ୱୟମ୍ବରର ବର୍ଣ୍ଣନା କରିଥିବା ବେଳେ **ଚଣ୍ଡୀ ପୁରାଣ**ରେ କେବଳ ଚନ୍ଦ୍ରାବତୀ ଓ ଅରୁନ୍ଧତୀଙ୍କ ବିବାହ ବର୍ଣ୍ଣନା ଦେଖିବାକୁ ମିଳେ । ଚନ୍ଦ୍ରାବତୀ ପ୍ରସଙ୍ଗରେ ସ୍ୱୟମ୍ବରର ଆୟୋଜନ, ବିଭିନ୍ନ ଦେଶର ରାଜାଙ୍କ ଉପସ୍ଥିତି, ସ୍ୱୟମ୍ବରର ସର୍ତ୍ତ ଘୋଷଣା, ରାଜାମାନଙ୍କର ବିଫଳତା, ମହିଷାସୁରର ଆଗମନ ଓ ଲକ୍ଷ୍ୟଭେଦ ପ୍ରଭୃତି ଘଟଣାକୁ କବି ଅତି ସଫଳତାର ସହିତ ଚିତ୍ରଣ କରିଥିଲେ ହେଁ, ବିବାହର କେବଳ ଉଲ୍ଲେଖ କରିଛନ୍ତି । 'ଅନେକ ଉଛବ', ସଜ, ଯୋଗାଡ, ସର୍ବ ମଙ୍ଗଳ, ଅନୁକୂଳ, ତିଥି, ବାର, ନକ୍ଷତ୍ର, କରଣ ଓ ଯୋଗ ପ୍ରଭୃତି ଶବ୍ଦ ପ୍ରୟୋଗ କରିସାରି କବି ଶେଷରେ କହିଛନ୍ତି -

> କନ୍ୟା ବିଭା ହୋଇ ସେ ଦାନେବ ବୀରମଣି
> ଅନେକ ଉଛବ ସେ ମଙ୍ଗଳ ଧ୍ୱନି ବାଣୀ । -୬୯୮

ଅରୁନ୍ଧତୀଙ୍କ ବିବାହ ଅପେକ୍ଷାକୃତ ଦୀର୍ଘ, ଏଥିରେ କବି କେତେକ ଅଧିକ ବିଧି ବିଧାନ (କୁଳ, ଗୋତ୍ର, ଉଚ୍ଚାରଣ, କୁଶ ବନ୍ଧନ, ଶଙ୍ଖେ ଜଳ ତିଳଦାନ, ଯଉତୁକ, ଲଜ୍ୟାହୋମ, ଘୃତ ଭୋଗ, ପାଉଣା) ର ଉଲ୍ଲେଖ କରିଛନ୍ତି । ମହାଭାରତରେ ବିବାହର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା କରୁଥିବା କବି ସାରଳା ଦାସ **ଚଣ୍ଡୀ ପୁରାଣ**ରେ କେବଳ ଗୋଟିଏ ଦୁଇଟି ଧାଡିରେ ବିବାହ ବର୍ଣ୍ଣନା କରିଥିବା ହେତୁ, ଏଥିରେ ତାଙ୍କର ଆଗ୍ରହ ନ ଥିବା ହିଁ ଜଣାଯାଏ । **ଚଣ୍ଡୀ ପୁରାଣ**ର ମୂଳ କଥା ଚଣ୍ଡୀଙ୍କ ଯୁଦ୍ଧ ହୋଇଥିବାରୁ କବି ତାଙ୍କ ଶ୍ରୋତାମାନଙ୍କୁ ଯଥା ଶୀଘ୍ର ଯୁଦ୍ଧ କ୍ଷେତ୍ରକୁ ନେବା ପାଇଁ ହୁଏତ ଚାହିଁଥିଲେ । କିନ୍ତୁ ପ୍ରକୃତରେ ତାହା ନୁହେଁ । ବିବାହ ବର୍ଣ୍ଣନା ନ ଦେଲେ

ବି, ଚନ୍ଦ୍ର ଦ୍ୱୀପର ଉତ୍ପତ୍ତି, ଚାଣ୍ଡାଳ ନଗ୍ର ବିବରଣ ଓ ଅନ୍ୟାନ୍ୟ ବହୁ ପ୍ରକାର ବର୍ଣ୍ଣନା ଦେବାପାଇଁ ସେ ଆଦୌ କୁଣ୍ଠିତ ନଥିଲେ । ଏପରିକି ପ୍ରକୃତ ଯୁଦ୍ଧ ସମୟରେ ବି ସେ ମାଳତୀ ଅବତାର, ରକ୍ତବୀର୍ଯ୍ୟ ରହସ୍ୟ ପ୍ରଭୃତି କଥା କହି, ଶ୍ରୋତାମାନଙ୍କୁ କ୍ଷଣକ ପାଇଁ ଯୁଦ୍ଧର ବିଭୀଷିକା ମଧ୍ୟରୁ ଦୂରେଇ ନେଇଥିଲେ । ଏଥିରୁ କେବଳ ଏତିକି ଅନୁମାନ କରାଯାଇ ପାରେ ଯେ  କବି ମହୀଷାସୁର ଓ ଚଣ୍ଡୀଙ୍କ ପରାକ୍ରମ ପ୍ରଦର୍ଶନ କରିବାପାଇଁ ଯେତେ ଲାଳାୟିତ ଥିଲେ, ବିବାହ-ବର୍ଣ୍ଣନା ପାଇଁ ସେପରି ଆଗ୍ରହ ପ୍ରକାଶ କରୁ ନଥିଲେ ।

**(ଗ) ଯୁଦ୍ଧ ବର୍ଣ୍ଣନା : ଚଣ୍ଡୀ ପୁରାଣ** ଏକ ଯୁଦ୍ଧ ପୁରାଣ । ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଏହା କେବଳ ଯୁଦ୍ଧ ବର୍ଣ୍ଣନାରେ ହିଁ ପରିପୂର୍ଣ୍ଣ । ଯୁଦ୍ଧ ସହିତ ସଂପୃକ୍ତ ବିଭିନ୍ନ ପ୍ରକାର ଘଟଣା ଅର୍ଥାତ ଚାରମାନଙ୍କର ସମ୍ବାଦ ପ୍ରଦାନ, ମନ୍ତ୍ରୀମାନଙ୍କ ସହ ପରାମର୍ଶ ଓ ମନ୍ତ୍ରଣା, ବୀରମାନଙ୍କର ପ୍ରତିଜ୍ଞା, ଯୁଦ୍ଧ କ୍ଷେତ୍ରରେ ଉକ୍ତି-ପ୍ରତ୍ୟୁକ୍ତି, ସେନାମାନଙ୍କର ପ୍ରସ୍ଥାନ, ରଣସଜ୍ଜା, ଆକ୍ରମଣ, ଅଭିଯାନ ଓ ଶସ୍ତ୍ର ପ୍ରହାର ପ୍ରଭୃତିର ବର୍ଣ୍ଣନା ଏଥିରୁ ମିଳୁଥିଲେ ହେଁ, ରାକ୍ଷସ ସେନାଙ୍କର ଯୁଦ୍ଧ କ୍ଷେତ୍ରକୁ ଯାତ୍ରା କରିବାର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ।

ଅଭିଯାନ: କବି ଏହି ଦୃଶ୍ୟର ଭୀଷଣତା ପ୍ରଦର୍ଶନ କରିବା ପାଇଁ ପ୍ରଥମେ ସୈନ୍ୟ ସଂଖ୍ୟା ଉପରେ ଗୁରୁତ୍ୱ ଦେଇଛନ୍ତି । ସେଥିପାଇଁ ସେ 'ଦଶ ଶହସ୍ର ସେନାପତି', 'ନବ ସାଗର ସୈନ୍ୟ', 'ଦୁଇଲକ୍ଷ ଯୋଦ୍ଧା', 'ପାଞ୍ଚ ମର୍ଭୁତ ସଇନି', 'ବୀରା ଲକ୍ଷେ ଥାଟ'ର ଉଲ୍ଲେଖ କରିଛନ୍ତି । ଶେଷରେ କବି ମହିଷାସୁରର ଅଗଣିତ ସେନାର ପରିଚୟ ଦେଇ କହିଛନ୍ତି -

ମଏଷାସୁର ଧଙ୍ଗେ ଏଗାର କୋଟି ପାଞ୍ଚମର୍ଭୁତ ଅଠଷଠି ସଇନି
ଏକାଦଶ ଦିବସ ଯୁଦ୍ଧ ଅନ୍ତେ ଅଇଲେ ଯେତେକ ବଳ ଘେନି ।'

ଏହିସବୁ ସେନାପତି, ସୈନ୍ୟ, ଯୋଦ୍ଧା, ବୀରା, ଥାଠ, ବଳ ସହିତ ଥିଲେ, ତିନି କୋଟି ଆଠ ଅହିବ୍ରତ ବେନି ଲକ୍ଷ ଛତ୍ରୀହାର ଓ ତିନି ଲକ୍ଷ ଆଠ ଅହିବ୍ରତ ବାଦ୍ୟକାର । କେବଳ ସେତିକି ନୁହେଁ, ଯୁଦ୍ଧ ଯାତ୍ରା କାଳରେ ବାଜି ଉଠିଲା ପଞ୍ଚଷଠି ସହସ୍ର  ବୀରତୂର, ପଞ୍ଚଷଠି ସହସ୍ର ବୀର ଢୋଲ, ପଞ୍ଚ ସହସ୍ର ନିଶାଣ, ପଞ୍ଚ ସହସ୍ର ଟମକ, ପଞ୍ଚଷଠି ସହସ୍ର ଝଂଝାଳ, ଓ ପାଞ୍ଚ ସହସ୍ର କାହାଳୀ । ଏହା ସାଙ୍ଗରେ ଯୋଗଦେଲେ କଡ, ଦାରିଣ୍ଡି, ବିଜିଘୋଷ, ସମର ମର୍ଦ୍ଦଳ ପ୍ରଭୃତି ବାଦ୍ୟ । ଅସୁରଙ୍କର ରଡି ଓ ବାଦ୍ୟର ଶବ୍ଦ ମିଶି ସମୁଦ୍ର ଗର୍ଜନ ପରି ଶୁଣାଗଲା । ସେଥିପାଇଁ କବି କହିଲେ -

ସିନ୍ଧୁ ଉଚ୍ଛୁଳୁଛି ଥାଠ ଚଳିବା ଶବଦ

ଏହି ବିରାଟ ସୈନ୍ୟର ନେତୃତ୍ୱ ନେଲେ, ଆଗିଆଣି ଥାଠରେ କାଳ ବିମୋଚନ, ଡାହାଣ ପଖାଏ ଅସୁର ସିଂଘନାଦ, ବାମ ପାଶେ ଦୁନ୍ଦୁଭି ଓ ପଛିଆଣୀ ଥାଡ଼େ ଏକାମ୍ବର ଚକ୍ରବର୍ତ୍ତୀ । କାଳ ବିମୋଚନ, ସିଂଘନାଦ, ସିଂଘମୁଖ ଗୋମୁଖ, ଗଜ, ତୁରଙ୍ଗ, ଦୁନ୍ଦୁଭି ପ୍ରଭୃତି ସେନାପତିଙ୍କ

ନାମରେ ମଧ ପ୍ରକାଶ ପାଇଲା ଭୀଷଣତା । ସେମାନେ ଗର୍ଦ୍ଦଭ, ବ୍ୟାଘ୍ର ଭଲ୍ଲୁକ ପ୍ରଭୃତି ବାହାନ ଆରୋହଣ କରି ଆହୁରି ପ୍ରଚଣ୍ଡ ଦେଖାଗଲେ । ସେମାନଙ୍କ ଭୀଷଣତା ବୃଦ୍ଧି ପାଇଥିଲା, ଦୁଇ ପାଖରେ ଥିବା ଅହିବ୍ରତେକ କଳି ଚାମର, ଅହିବ୍ରତେକ କଳା ଆଲୟ, କୋଟି କୋଟି କଳା ପାଟ, ବେନି କୋଟି କଳା ରାଏଟ ପାଟର ମେରିଆ ଛତ୍ରୀ ଦ୍ୱାରା । କେବଳ ସେତିକି ନୁହେଁ, କଳା ଚାମର, କଳା ବଟଲା, କଳା ପରିହରଣ, କଳା ତନୁ ଓ ଶେଷରେ ଶରୀରକୁ ରକ୍ଷା କରିବା ପାଇଁ, କଳା ଲୁହାର ସାଞ୍ଜୁ ଶୋଭା ପାଇଥିଲା । କୃଷ୍ଣ ବର୍ଣ୍ଣର ଏହି ସେନା ସମୁଦ୍ର କବିଙ୍କ ଦୃଷ୍ଟିରେ 'କକଡ ମାସେ ଯେହ୍ନେ ଉଠନ୍ତି ହାଦେ ମେଘେ' ପରି ଦେଖାଦେଲା । ସେମାନେ ସବୁ ଥିଲେ ରାଜଚକ୍ରବର୍ତ୍ତୀ ମହିଷାସୁରର ଅନୁଗତ । ସେଥିପାଇଁ ସେମାନଙ୍କ ଶରୀରରେ ଦର୍ପ, ଅଭିମାନ ଓ ଆଡମ୍ବରର ସଙ୍କେତ ରୂପେ ଶୋଭା ପାଉଥିଲା, 'ଗଜ ମୁକୁତା ଲକ୍ଷେ ଲକ୍ଷେ' 'ତିନି ଅହିବ୍ରତେକ ମୟୁର ଝାଲ ଛତା' 'ନବ ଲକ୍ଷ ଶୁକ୍ଳ ବର୍ଣ୍ଣଚାମର ଓ ରତ୍ନ ମେଖଲା', ଏସବୁ ଶ୍ୟାମଳ ବର୍ଣ୍ଣ ମେଘରେ ଉଡି ଯାଉଥିବା ବଳାହକ ପଲପରି ଶୋଭା ପାଇଥିଲା । ଦୁତୀ ସମୋଦ୍ର ପ୍ରାଏକ ଅସୁର କବଲ ଥାଠ ଚଳିବା ବେଳେ ।

ଗଗନ ଅନ୍ଧାର ହେଲା ଉଲ୍କାପାତ ସମରାଷ୍ଟ
+ +
ଆକାଶ କମ୍ପଇ ସେ ଶବଦେ କମ୍ପଇ ଭୂମି ।
+ +
ପୃଥିବୀ କମ୍ପିଲା ଯେ ସାଜନ୍ତେଣ ଥାଠ

ଶେଷକୁ ଯେତେବେଳେ 'ଅସୁର ବଳ ଉଠନ୍ତି ଏକମୁଖ ହୋଇ' ମେଦନୀ ଦଲ ଦଲ ହୋଇଅଛି ମହାଭାର ପାଇଁ । - ୩୫୯୧

କାଲ ବିମୋଚନର ଅଭିଯାନ ଏହାଠାରୁ ଆହୁରି ଭୟାନକ । ରାଜାଙ୍କର ଆଜ୍ଞାପାଇ ଅଠାଇଶ ସେନା ଯୁଦ୍ଧ ବାହାରିଲା ବେଳେ ସତେ ଯେପରି ପୂର୍ବ ଦିଗର ସମୁଦ୍ର ଉଚ୍ଛୁଳି ଉଠିଲା । ମହୀ ହେଳ ଘେନିଲା । ପୃଥିବୀ ପ୍ରକମ୍ପିତ ହେଲା । ବାଟ ଦେଖାଗଲା ନାହିଁ । ଅସୁରଙ୍କର ଘୋର ରଡିରେ ମେରୁଗିରି ଭାଙ୍ଗି ଝଡି ପଡିବା ପରି ଶବ୍ଦ ହୋଇ ତ୍ରୈଲୋକ୍ୟ କମ୍ପି ଉଠିଲା । ସେନାମାନଙ୍କ ମକରଣରେ ମଧ ଭୀଷଣତାର ପରିକଳ୍ପନା । କବି କହିଛନ୍ତି -

ରାଜାର ବିକଳ ଦେଖିଣ ଅସୁର ସେନା
ଯମଘଣ୍ଟ କାଲ ବିମୋଚନ କଙ୍କାସୁର ଧୂମଲୋଚନା ।
ଚଣ୍ଡାସୁର ପ୍ରଚଣ୍ଡାସୁର ଲୋହାସୁର ଧଙ୍କ
ମତ୍ତହସ୍ତୀ ସହସ୍ରିରେଣ ଉଦ୍ଧବଙ୍କ
ବଙ୍କାସୁର ଧଙ୍କାସୁର ଭାସ୍କର ଦଇତ
ବଜ୍ରାଙ୍ଗ କାଳାନଳ ଆବର ଗର୍ଜନ ବଜ୍ରଘାତ

ବାତାସୁର ମେଘାସୁର ବଜାସୁର ମହୀଗିଳା
ଅଶ୍ୱମୁଖ ଗଜମୁଖ ଆବର ଅନର୍ଗଳା ।
ଶ୍ରୀକାଳମୁଖ ଗୁଧମୁଖ ଘୋରମୁଖ ବିକଟା
ମଞ୍ଜାରୀମୁଖ ଶୋଣେହାମୁଖ ପାଦ ରୋଟା ।

- ୨୬୭୫ - ୨୮୦୦

କେବଳ ନାମ ନୁହେଁ ରୂପରେ ମଧ ସେମାନେ ବିକଟାଳ ଥିଲେ -

ରତ୍ନଗିରି ପର୍ବତ ବେଢିଲେ ଅସୁର ସେନା
ମୁତ୍ରପୁରେ ଚରଣ ସେ ଦିଗାଙ୍କେ ମୁଧୁନା । - ୨୮୧୮

ସେମାନେ ପୁଣି ମଦିରା ରସ ଖାଇ ମହା ମତୁଆଳ ହୋଇ ଦେବ ଓ ଦାନବଙ୍କୁ ନିଜ ପାସଙ୍ଗରେ ପକାଉ ନ ଥିଲେ :

ମହା ମତୁଆଳ ମଦିରା ରସ ଖାଇ
ଅନୁରଙ୍କର ପ୍ରତଗ୍ୟାଂ କହିତ କେ ପାରଇ । - ୨୮୧୬

ଶମ୍ଭୁ ଓ ନିଶମ୍ଭୁଙ୍କର ସୈନ୍ୟଚାଳନା କାଳରେ କବି ଅଶ୍ୱ ଓ ଗଜଙ୍କର ବିକ୍ରମର ସୁନ୍ଦର ବର୍ଣ୍ଣନା ଉପସ୍ଥାପିତ କରିଛନ୍ତି -

ଚୋଖାର ତୁରଙ୍ଗମ ପବନୁ ବେଗେ ବାଜୀ
ଖେଦନ୍ତି ଖୁରୁସାଣି ଘଣ୍ଟା ରାବେ ମହାତେଜି
ଅସିପତ୍ର ବୁଲାଇ ଉଠନ୍ତି ରାଉତେ
ଗଜନ୍ତ ଚଳାଇଂ ତର୍ଜନ୍ତି ମାହୁନ୍ତେ । - ୯୪୧

ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ସେନାବାହିନୀର ଦୃଶ୍ୟ ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ :

ଖଡଗ କୋନ୍ତ ନରାଚ ଅସିପତ୍ର ଯଷ୍ଟି
ଶାବେଳି କୋଦାଳ କୋଠାର ତେଜଘ ଯାଠୀ -୯୩୮
ଝଟକନ୍ତି ନାକିଂଆ ଯେ ବିଜୁଳିତେଜେ ଜାଣି
ସେହ୍ନାଙ୍କର ଜଡିଲା ଅଛି ବାଳଅର୍କ ମଣି । -୯୩୯

**ଶସ୍ତ୍ରାସ୍ତ୍ର ପ୍ରହାର :** ଯୁଦ୍ଧ କ୍ଷେତ୍ରରେ ବିଭିନ୍ନ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ଯୁଦ୍ଧର ବିଭୀଷିକାକୁ ବୃଦ୍ଧି କରେ । **ଚଣ୍ଡୀ ପୁରାଣ**ରେ ଏକ ପକ୍ଷରେ ଥିଲେ ମହିଷାସୁରର ପୁରୁଷ ସେନା ଓ ଅନ୍ୟ ପକ୍ଷରେ ଥିଲେ ଚଣ୍ଡୀଙ୍କର ନାରୀ ସେନା । ବିଭିନ୍ନ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ପୁରୁଷଙ୍କ ପରି ନାରୀମାନେ ନିପୁଣା ଥିଲେ । ନାରୀମାନଙ୍କ ନିକଟରେ ଅନ୍ୟ ଗୋଟିଏ ଅମୋଘ ଅସ୍ତ୍ର ଥିଲା । ତାହା ହେଲା, ସେମାନଙ୍କ ମୋହିନୀ ରୂପ । ସାରଳା ଦାସ ଶୁମ୍ଭ, ନିଶୁମ୍ଭ, ଚାମର, ବେମାଳ, ବିଡାଳାକ୍ଷ, କାନ୍ତମାଳା, ଅଠାଇଶ ସେନା ଏପରିକି ମହିଷାସୁରକୁ ନିହତ କଲେ । ନାରୀର

ଏହି ମୋହିନୀ ରୂପରେ । ଏ ସବୁ କଥା ମୂଳ ସଂସ୍କୃତ ଗ୍ରନ୍ଥ ସବୁରେ ନ ଥିଲା । ପୁଣି ସାରଳା ଦାସ ପୁରୁଷମାନଙ୍କୁ ବାରମ୍ବାର କାମବଶ ନ ହେବା ପାଇଁ ଉପଦେଶ ଦେଇଥିଲେ ହେଁ, ନାରୀମାନଙ୍କ ନିକଟରେ ଏହା ହିଁ ଥିଲା ସବୁଠାରୁ ବଳି ଶ୍ରେଷ୍ଠ ମାରଣାସ୍ତ୍ର । ସେଥିପାଇଁ ମହିଷାସୁର କହିଥିଲା -

ଆଲୋ ଆଲୋ ମୋର ଯୋଦ୍ଧାନ୍ତ ମାଇଲୁ ଆଖଡେ
ସ୍ତନ ଯଉବନ ବହିଂ ତୋର ବିଶ୍ବାସଘାତ ଏଡେ ।                    - ୪୦୭୨

ଜୟଚଣ୍ଡୀଙ୍କର ମହିମା ଗାନ କରି କବି ଲେଖିଛନ୍ତି -

ଶୁଣ ହୋ ପରୀକ୍ଷ ଜୟଚଣ୍ଡୀର ମହିମା
ଯୁବା ବୟସ ହେଲେ ଷାଠିଏ ବାମା
ମଦନ ଶର ବାଣେ ଚାହିଂଲେ ଅପାଙ୍ଗେ
କାମଶର ଭେଦିଲା ସେ ଦଇତାଙ୍କ ସର୍ବାଙ୍ଗେ
ମଦନ ଶରେ ସଭିଂଏ ହୋଇଲେ ଅସାକ୍ଷମ
ଶସ୍ତ୍ର ବାହାନ ତେଜି ହୋଇଲେ ମତିଭ୍ରମ
ମାତାଙ୍ଗୀ କାମାକ୍ଷୀ ମୋହନୀ କାମସେଣା
କାମଅର୍ଥେ ଦାନବେ ହୋଇଲେ ସର୍ବ ବଣା ।
ଶୃଙ୍ଗାର ଦେବା ବୋଲି ଆସୁଛନ୍ତି ଭଂଡି
ବିନ୍ଧ୍ୟଗିରି ପର୍ବତେ ବସି ସୁଖେ ଅଛନ୍ତି ଚଂଡୀ ।
ସଙ୍ଗାତ ସଙ୍ଗାତ ବୋଲି କେ ଭୁଜେ କରନ୍ତି କୋଳ
ନଖେଂ ବିଦାରି କେ ଚିରନ୍ତି ବେନି ତୋଳ ।
ଆକାଶକୁ ପକାଇ ଦେଇଂ ତଳେ ପାଚନ୍ତି ତୁଂଡ
ଚାପନ୍ତେ ଧୂଳି ହୋଅଇ ଘୋଡ ମୁଂଡ
ହସ୍ତ ଦେହେ ଦେଇଂ ମୁଖେ ଚୁମ୍ବନ୍ୟ ଦେଇଂ
ତୁଂଡ ଭିତରେଣ ଦେଇ ମୁଂଡନ୍ତ ଚୋବାଇ ।          - ୨୫୫୩-୩୦୬୦

ଜୟଚଣ୍ଡୀଙ୍କ ମଦନ ଶର ବାଣରେ ସମସ୍ତ ଅସୁର ସେନା ନିପାତ ହୋଇଗଲେ ଯୁଦ୍ଧ କରିବା ଏପରିକି ଅସ୍ତ୍ରଶସ୍ତ୍ର ପ୍ରୟୋଗ କରିବା ଆବଶ୍ୟକ ହେଲା ନାହିଁ ।

ଯୁଧ୍ୟ ନକଲା ନ ହାଣିଲା ଏକାଜଣେ
ସବୁକୁ ହିଂ ପକାଇଲା ସେ ମୋହୋନା ଶରବାଣେ ।
ଅସୁର ବଳ ସଇନି କି ସେ ଲଗାଇଲା ଭେଳକି
ଯୁଦ୍ଧ କରି ନ ପାରି ସେ ମୋହ ହେଲେ ଦେଖି ।          -୩୦୬୬-୩୦୬୭

ଯୁଦ୍ଧ କ୍ଷେତ୍ରରେ ଯୋଦ୍ଧାମାନେ, ଶର, ନାରାଚ, ଗଦା, ମୁଦ୍ଗର, ପାଶୀ, ପ୍ରଶୁ, ପରିଘ, ଗଦା,

ତ୍ରିଶୂଳ, ଶକ୍ତି, କାଟାର ପ୍ରଭୃତି ମାନବାସ୍ତ୍ର ଓ ବଜ୍ରଶର, ଅଗ୍ନିଶର, ପର୍ବତାଶର, ବରୁଣାଶର, ସହସ୍ରଧାରା ଶକତି, କାଳ ଚକ୍ର, ରୁଦ୍ରାଶର, ଚାକୁଦାଶର ପ୍ରଭୃତି ଦେବାସ୍ତ୍ର ବ୍ୟବହାର କରୁଥିଲେ । ସେଥିରୁ କିଏ ଅଗ୍ନି ବର୍ଷା କରୁଥିଲା ତ କିଏ ପର୍ବତ ବର୍ଷା କରୁଥିଲା । ଏସବୁ ଅସ୍ତ୍ର ପ୍ରୟୋଗ ସତ୍ତ୍ୱେ ଦେବୀ ଓ ଅସୁରମାନେ ଅତି ଆଶ୍ଚର୍ଯ୍ୟଭାବେ ବାରମ୍ବାର ରକ୍ଷା ପାଇ ଯାଉଥିଲେ । ଅସୁରମାନେ ଯେପରି ଦେବ ବରରେ ବଳୀୟାନ ଥିଲେ, ଦେବୀମାନେ ସେହିପରି ଅଲୌକିକ ଶକ୍ତି ସମ୍ପନ୍ନା ଥିଲେ । ସେଥିପାଇଁ ସେମାନଙ୍କ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ଅସାଧାରଣ ଦକ୍ଷତା ପରିଲକ୍ଷିତ ହେଉଥିଲା ।

ଯେସନେକେ ଗଗନୁ ପଡଇ ନୀରଧାର
ତେସନେକେ ଦାନବ ବିନ୍ଧୁଛନ୍ତି ଶର
ଲକ୍ଷେ ପଦ୍ମସାଗର ମାରନ୍ତି ବୀର ତୋଳି
ଗଗନେ ଅଦୃଶ୍ୟ ହୋଇଲେ ଅଂଶୁମାଳି ।   -୨୯୬୧-୨୯୬୨

**ଅଲୌକିକତା :** ଚଣ୍ଡୀ ପୁରାଣରେ ଚଣ୍ଡୀଙ୍କର ମହାତ୍ମ୍ୟ ବର୍ଣ୍ଣିତ ହୋଇଥିବାରୁ ଏଥିରେ ଅଲୌକିକତା ରହିବା ଯେପରି ସ୍ୱାଭାବିକ, ସାରଳା ଦାସ ଦେବୀଙ୍କର ଭକ୍ତ ହୋଇଥିବାରୁ ଦେବୀଙ୍କର ଶକ୍ତି ବର୍ଣ୍ଣନା କଲାବେଳେ ଅତିଶୟୋକ୍ତିପୂର୍ଣ୍ଣ ବର୍ଣ୍ଣନା କରିବା ସେହିପର ସ୍ୱାଭାବିକ । ତେଣୁ ଚଣ୍ଡୀ ପୁରାଣର ଚାମୁଣ୍ଡାମାନେ ବଳଶାଳୀ ଅସୁର ଯୋଦ୍ଧାମାନଙ୍କୁ ଗୋଟା ଗୋଟା ଗିଳି ଦେଉଥିଲେ । ଏପରିକି ପର୍ବତ ପ୍ରାଏକ ବଡ ବଡ ରାକ୍ଷସଙ୍କୁ ତୁଣ୍ଡେ ପୂରାଇ ବେନି ପାଟି ଚାପିଦେବା ଫଳରେ ସେମାନଙ୍କ ହାଡ, ଚର୍ମ, ମାଂସ ସବୁ ପେଷି ହୋଇ ଧୂଳି ହୋଇ ଯାଉଥିଲା । ଦେବୀମାନେ ଏକାଥରକେ ଅଶୀ, ପଞ୍ଚାଶ ଧରି ନିମିଷକ ମଧରେ ଶତେ ଦୁଇ ଶତ ଅସୁରଙ୍କୁ ଗ୍ରାସ କରିଦେଉଥିଲେ । ଏ ସବୁକୁ ସହଜରେ ବିଶ୍ୱାସ କରି ନ ହେଉଥିଲେ ବି, ଏ ସବୁଥିଲା ଦେବୀଙ୍କ ମହିମା । ସାରଳା ଦାସ ମଧ କହିଛନ୍ତି ।

ଶୁଣନ୍ତେ ଅନିର୍ଯାପ ଦେବୀଙ୍କର ଯୁଦ୍ଧ କଥା
ସଞ୍ଜପି କହିବାକୁ କେ ଅବା ଶକତା
ଏସବୁ ଯୁଦ୍ଧ ଥିଲା ଦେବଙ୍କୁ ଦୁଲଭ ସେ ମାନବେ ଅଗୋଚର ।  - ୨୯୭୭

ସାରଳା ଦାସ 'ଶୁଣନ୍ତେ ଅନିର୍ଯାପ' କହିଦେଇ ବହୁ ଅସମ୍ଭବ କଥାର ଅବତାରଣା କଲେ । ଦେବୀଙ୍କ ନାଁରେ ଏପରି ବହୁ ଅସ୍ୱାଭାବିକ ଦୃଶ୍ୟ ସ୍ୱାଭାବିକ ରୂପେ ହିନ୍ଦୁ ସମାଜରେ ସାଧାରଣତଃ ଗୃହୀତ ହେଉଥିଲେ ହେଁ, ଏଥିରେ ଯେ ବାସ୍ତବ ଯୁଦ୍ଧ ବର୍ଣ୍ଣନା ନଥିଲା, ଏହା ହିଁ ସ୍ୱୀକାର କରିବାକୁ ହୋଇଥାଏ । ଏହିପରି ଯୁଦ୍ଧ ଚାଲିଥିବା ବେଳେ କୌଣସି ଦୁର୍ଦ୍ଦାନ୍ତ ଯୋଦ୍ଧା ଯୁଦ୍ଧ କ୍ଷେତ୍ରରେ ଏକୁଟିଆ ପଡିଗଲେ, ପ୍ରତିପକ୍ଷର ଯୋଦ୍ଧାମାନେ ଏକତ୍ର ମିଶି ତାକୁ ହାଣି ପକାଉଥିଲେ, କାଳ ବିମୋଚନର ବଧ କାଳରେ ଏହିପରି ଏକ ଦୃଶ୍ୟ ଉପଲବ୍ଧ ହୁଏ ।

ଯୁଦ୍ଧ କ୍ଷେତ୍ରରେ କାଳବିମୋଚର ପ୍ରବେଶ ଚଣ୍ଡୀଙ୍କ ମହଲରେ ବିପୁଳ ଆଲୋଡନ

ସୃଷ୍ଟି କରିଥିଲା । ସେମାନଙ୍କ ମଦନ ଶର ଏଠି କାମ କରି ନଥିଲା । କାଳ ବିମାଚନ ଅତି କ୍ରୋଧରେ ଦେବୀମାନଙ୍କୁ ଦରାଣ୍ଡୀ ଚତୁର୍ଦ୍ଦିଗକୁ ଫିଙ୍ଗି ଦେଲା । ଦେବୀମାନେ ହାତ ଗୋଡ ଭାଙ୍ଗି ନଦୀ, ବନ, ଗିରି ଓ ସାଗର ମଧ୍ୟରେ ବିଛୁ ହୋଇ ପଡିଲେ । ଜଣାଗଲା, ସତେ ଯେପରି ଦେବୀକୁଳ ନାଶ ହୋଇଗଲେ । ଯୁଦ୍ଧ କ୍ଷେତ୍ରରେ ବିଜୟ ହାସଲ କରି କାଳ ବିମୋଚନ ଦେବୀଙ୍କ ସମ୍ମୁଖରେ ଉପସ୍ଥିତ ହେଲା ଏବଂ ତାଙ୍କୁ ପାଞ୍ଚାଳୀଙ୍କ ପରି ପ୍ରପଞ୍ଚ କରି ଟେକି ନେବା ପାଇଁ ଧମକ ଦେଲା । ଦେବୀ ଆଉ ସହ୍ୟକରି ପାରିଲେ ନାହିଁ । 'ଆଲୋ' କହିବା ମାତ୍ରେ ଲକ୍ଷେ ଦେବୀ ଆକାଶରୁ ଖସିପଡିଲେ । ହାଣ ହାଣ ବାଣୀରେ ଯୁଦ୍ଧ କ୍ଷେତ୍ର ପୂରିଗଲା । କିଏ ମୁଦ୍‌ଗରରେ ମାଇଲା ତ କିଏ ତ୍ରିଶୂଳ ପହୁଡିଲା । କିଏ କର୍ଣ୍ଣକଟାରୀରେ ପରାଭବ ଦେଲା ତ କିଏ ନାଗ ଫାଶରେ ବାନ୍ଧି ପକାଇଲା । କିଏ ବଜ୍ରଶକ୍ତିରେ ପିଟିଲା ତ କିଏ ବ୍ରହ୍ମଶର ପେଷିଲା । କିଏ ତ୍ରିଶୂଳ ଶକ୍ତି ଭୁଷିଲା ତ କିଏ ସୂର୍ଯ୍ୟବଳି ଗଦାରେ ପ୍ରହାର କଲା । କିଏ ଖଣ୍ଡାରେ ଦକ୍ଷିଣ ଭୁଜ ହାଣିଲା ତ କିଏ କୋଠାର ଧରି ବାମ ଭୁଜକୁ ଆଘାତ କଲା । ଶେଷରେ ଅଧାଚନ୍ଦ୍ର ବାଣ ଧରି ତାର ମୁଣ୍ଡ ଛେଦି ପକେଇଲେ ।

ଉକ୍ତି-ପ୍ରତ୍ୟୁକ୍ତି : ଯୁଦ୍ଧ କ୍ଷେତ୍ରରେ ଗୋଟିଏ ଯୋଦ୍ଧାକୁ ବହୁ ଯୋଦ୍ଧା ମିଶି ବେଳେ ବେଳେ ବଧ କରୁଥିଲେ ହେଁ, ଦ୍ୱନ୍ଦ ଯୁଦ୍ଧହିଁ ଥିଲା, ଚଣ୍ଡୀ ପୁରାଣର ସାଧାରଣ ଦୃଶ୍ୟ । ଜଣେ ଅସୁର ସେନାପତି ସହ ଗୋଟିଏ ଦେବୀ ପ୍ରାୟ ସମର କରୁଥିଲେ । ଅସ୍ତ୍ର ପରୀକ୍ଷା ହେଉଥିଲା । ପୁଣି ଉକ୍ତି - ପ୍ରତ୍ୟୁକ୍ତିର ମାଧମରେ ପ୍ରତିଦ୍ୱନ୍ଦୀ ଯୋଦ୍ଧାମାନେ ପରସ୍ପରକୁ ଯୁଦ୍ଧ ପାଇଁ ଆହ୍ୱାନ କରୁଥିଲେ । ମହିଷାସୁର ଓ ଦୁର୍ଗାଙ୍କର ଉକ୍ତି ଓ ପ୍ରତ୍ୟୁକ୍ତିର ପ୍ରଥମ ଦୃଶ୍ୟ ସମ୍ବାଦର ଦୃଷ୍ଟାନ୍ତ ଭାବେ ଉଦ୍ଧୃତ ହୋଇଛି । ଯେତେବେଳେ ସେମାନଙ୍କ ଉକ୍ତିରେ ଯୁଦ୍ଧ ପାଇଁ ଆହ୍ୱାନର ବାଣୀ ହିଁ ପ୍ରକାଶିତ ହୋଇଥିଲା । କିନ୍ତୁ ମହିଷାସୁର ଚଣ୍ଡୀଙ୍କ ଦ୍ୱାରା ପରାଜିତ ହେବା ପରେ ଚଣ୍ଡୀଙ୍କୁ ପ୍ରଶଂସା କରି ସେ କହିବାକୁ ଲାଗିଲା :

ଆଗୋ ଏର୍ଣ୍ଣେକ ସୁଲକ୍ଷଣୀ ତୁ କାହାର କୁଳବଧୂ
ତ୍ରିରୀ ଲିଙ୍ଗ ବହି ତୁ ମହିମା ସାଧୁ ସାଧୁ । ୪୧୯୮

\+ \+

ଏବେ ରେ ସୁନ୍ଦରୀରେ କହଇ ମୁହିଂ ତୋତେ
ହୋଇବୁ କି ଭାରିଯା ମୋର ଇଚ୍ଛା କଲେ ତୋତେ । ୪୧୯୮
ମଏଷାଂ ବୋଇଲା ମୋତେ ମାଇଲେ ହେବୁ କି ଜଗତେ ସେନାପତି
ତୋତେ ମାଇଲେ ମୁଁ ହେବି ଜଗତେ ବିଖ୍ୟାତି । ୪୧୯୯
ଅନେକ ଭଗତି ଯେ ହୋଇବି ମୁହିଂ ତୋତେ
ବେଳେକ ସୁନ୍ଦରୀ ଗୋ ରକ୍ଷାକର ମୋତେ । ୪୧୦୦

ମହିଷାସୁରର ଏହି ଦୟନୀୟ ଦୁର୍ଦ୍ଦଶାରେ ମଧ୍ୟ ଦେବୀଙ୍କର ହୃଦୟ ବିଚଳିତ ହେଲା ନାହିଁ ।

ସେ ପୂର୍ବପରି ଦୃଢ଼ କଣ୍ଠରେ କହିଲେ -

ଦୁର୍ଗା ବୋଇଲେ ହୋ କିମ୍ପା ହେଉ ନିସତ
ଉଭଏ କୁଳ ବିବାଦେ ତୋତେ ନାହିଁ ଜୀବନ୍ତ ।
ଆହୋ ତତେ ମୁଁ କରଇ ଅବା ରକ୍ଷା
ତୋହୋର ନିମନ୍ତେଣ ଦେବତାଙ୍କର ବଡ଼ କକ୍ଷା । - ୪୧୦୧-୪୧୦୨

**ରଣ କର୍ମଚାରୀ :** ଅଗଣିତ ସେନାରେ ପରିପୂର୍ଣ୍ଣ ରଣାଙ୍ଗନର ପରିଚାଳନା ପାଇଁ ରାଜାଙ୍କ ଦ୍ୱାରା କେତେ କର୍ମଚାରୀ ନିଯୁକ୍ତ ହେଉଥିଲେ । ଚଣ୍ଡୀ ପୁରାଣରେ ଦୁଇ ପ୍ରକାର କର୍ମଚାରୀଙ୍କର ପରିଚୟ ମିଳେ - (୧) ମଣ୍ଡଳାଧିପତି (୨) କ୍ଷେତ୍ରପାଳ । ରାଜା ନିଜେ ମଧ ତଦାରଖ ପାଇଁ ସମୟ ସମୟରେ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେଉଥିଲେ । ଏହିପରି ଏକ ଦୃଶ୍ୟ ଦେଖିବାକୁ ମିଳେ, ମହିଷାସୁରର ପ୍ରଥମ ବାର ଯୁଦ୍ଧ କାଳରେ । ନାରୀ ମାନଙ୍କୁ ଉପଭୋଗ କରିବାକୁ ଆଜ୍ଞା ଦେଇ ମହିଷାସୁର ହୁଏ ତ ଦେଖିବାକୁ ଚାହିଁଥିଲା ସୈନ୍ୟମାନଙ୍କର ଆନନ୍ଦ । ସେଥିପାଇଁ ସେ ଶ୍ରୀକରେ ରତ୍ନ ଯଷ୍ଟି ଧାରଣ କରି ଅଶ୍ୱ ଉପରେ ନୁହେଁ, ଶାର୍ଦ୍ଦୋଳ ଆରୋହଣ କରି ବନ୍ଧୁ ସୈନ୍ୟଙ୍କ ସହ ଯୁଦ୍ଧ କ୍ଷେତ୍ରକୁ କୌତୁହଳ ଉପଭୋଗ କରିବା ପାଇଁ ଯାଇଥିଲା, ଯୋଦ୍ଧା ଭାବରେ ନୁହେଁ, ରସିକ ରୂପେ । ସାରଳା ଦାସ କହିଛନ୍ତି -

ବୋଇଲା ଦାନବ ଦେଖିବା ଦଳବଳ
କେମନ୍ତ ରଙ୍ଗ ଉପୁଜୁଅଛି କୋତୋହୋଳ ।
ଶାର୍ଦ୍ଦୋଳେକ ଆରୋହି ଶ୍ରୀକରେ ରତ୍ନ ଯାଠି
ବିଜଏ ମଏଂଷାସୁର ତୁଲେ ସୈନ୍ୟ ଲକ୍ଷେ କୋଟି । - ୩୬୬୫-୩୬୬୬

**ଚଣ୍ଡୀପୁରାଣ**ରେ ଯୁଦ୍ଧ ବର୍ଣ୍ଣନାରେ ବୀର, ରୌଦ୍ର, ଭୟାନକ, ବୀଭତ୍ସ, କରୁଣ ଏବଂ ଶୃଙ୍ଗାର ରସର ଅବତାରଣା କରିବା ପାଇଁ କବି ଚାହିଁଥିଲେ ହେଁ, ସେ ଏଥିରେ ଅଲୌକିକତା ଓ ଅତିଶୟୋକ୍ତି ଗୁଣକୁ ବିଶେଷ ପ୍ରାଧାନ୍ୟ ଦେବା ଫଳରେ ଯୁଦ୍ଧ ବର୍ଣ୍ଣନାରେ ବାସ୍ତବତା ପ୍ରାୟ ଦେଖିବାକୁ ମିଳେ ନାହିଁ, ଏହା ହେଉଛି ପ୍ରସଙ୍ଗାନୁରୋଧରେ କବିଙ୍କ ଶସ୍ତ୍ରଜ୍ଞାନର ସଂଘର୍ଷ ।

**(ଘ) ରୂପ ବର୍ଣ୍ଣନା :** ଚଣ୍ଡୀ ପୁରାଣରେ ରୂପ ବର୍ଣ୍ଣନା କହିଲେ, ଦେବୀ ଦୁର୍ଗାଙ୍କର ମାନବୀ ରୂପର ବର୍ଣ୍ଣନା । ବହୁ ଉପମାର ସମାବେଶରେ ସେ ଦେବୀ ମୂର୍ତ୍ତିର ଏକ ସଜୀବ ଚିତ୍ର ଆଙ୍କିଛନ୍ତି । ପୁଣି ଦେବୀଙ୍କୁ ମହନୀୟ କରିବା ପାଇଁ ସେ ତାଙ୍କୁ ସଜାଇଛନ୍ତି ବିଭିନ୍ନ ଅସ୍ତ୍ର, ଶସ୍ତ୍ର, ଅଳଙ୍କାର ଓ ବାହନରେ । ଦୁର୍ଗାଙ୍କ କୃପାରୁ ହିଁ ସାରଳା ଦାସ ହେଲେ ସଫଳ କବି । ସେଥିପାଇଁ ଦୁର୍ଗାଙ୍କ ରୂପ ବର୍ଣ୍ଣନାରେ ଦେଖିବାକୁ ମିଳେ କବିଙ୍କ ରସିକତା ତଥା ଭକ୍ତିମଭାର ଅପୂର୍ବ ସମନ୍ୱୟ ।

**(ଙ) ଅନ୍ୟ ବର୍ଣ୍ଣନା :** କବି କଥା କହିବାରେ ଯେତିକି ପ୍ରବୀଣ ଥିଲେ ବର୍ଣ୍ଣନା କରିବାରେ ମଧ୍ୟ ସେତିକି ନିପୁଣ ଥିଲେ । ଗ୍ରନ୍ଥ ମଧ୍ୟରେ କବି ଯୁଦ୍ଧ ବର୍ଣ୍ଣନାକୁ ପ୍ରାଧାନ୍ୟ ଦେଇଥିଲେ

ହେଁ, ଉତ୍ସବ ମୁଖରିତ ନଗର, ବିଭିନ୍ନ ରତ୍ନ ଖଚିତ ସୂର୍ଯ୍ୟମଣ୍ଡଳ ରଥ ଏବଂ ସର୍ବୋପରି ମନୁଷ୍ୟର ବିଭିନ୍ନ ମାନସିକ ଅବସ୍ଥାର ବର୍ଣ୍ଣନା କରି ସେ ନିଜ ଗ୍ରନ୍ଥକୁ ସୁପାଠ୍ୟ କରିପାରି ଥିଲେ। ଦୁର୍ଦ୍ଦଶାଗ୍ରସ୍ତ ମହିଷାସୁରର ବର୍ଣ୍ଣନା କରି କବି ଲେଖିଛନ୍ତି -

ଆହୋ ପରୀକ୍ଷ ରାଜା ବୁଡିଲା ସମ୍ପଦ ବୋଲି ପଡିଲା ନୃପମଣି
କାଳ ବିମୋଚନ ଧରି ନିଉଡନ୍ତି ପାଣି
ସାଷ୍ଟମ ପ୍ରାଏ ହୋଇ ସେ ଦତ୍ୟକୁଳରାଏ
ଛାଡଇ ନିଶ୍ୱାସ ସେ ଗତପ୍ରାଣ ପ୍ରାଏ ।          ପ. ସଂ- ୩୪୬୧-୬୨

\+ \+ \+

ସାଷ୍ଟାମ ହେଲା ପରେ ମହିଷାସୁର କହିଛି -

ଆହେ ବାଭିଏ ମୋର ପ୍ରାଣର ସଙ୍ଘାତ
ଏକାବେଳେକେ ମୋତେ କରିଗଲ ଅନାସ୍ତ ।
ଆରେ କାଳବିମୋଚନ ମୋତେ ଲାଗିଲା ବଡ ଭଏ
କେବଣ ସମୁଦ୍ରେ ମୋର ଲୁଚାଇବି କାଏ ।
ଯେବଣ ଯେବଣ ସେନା ପ୍ରାଣ ତେଜ୍ୟା ହେଲେ ରଣେ
ଆବର ଜୀବନ କିମ୍ପୁତ କାରଣେ ।          ପ. ସଂ -୩୪୬୨-୬୩,୬୪

## ସାରଳା ଦାସଙ୍କ ରାଜନୈତିକ ଚେତନା -

**ଚଣ୍ଡୀ ପୁରାଣ** କବି ସାରଳା ଦାସଙ୍କ ଦ୍ୱାରା ରଚିତ ଏକ ଅନୁପମ ଗ୍ରନ୍ଥ । ମହାଭାରତ ପରି ଏହା ବିଶାଳ ନୁହେଁ କି ରାମାୟଣ ପରି ବିଚିତ୍ର ନୁହେଁ, କିନ୍ତୁ ଏଥିରେ ସାରଳା ଦାସଙ୍କ ଯୁଗର ବାଣୀ ଯେଉଁଭାବେ ପ୍ରକାଶିତ ତାହା ଅନନ୍ୟ ।

**ବିଷୟବସ୍ତୁରେ ବ୍ୟତିକ୍ରମ -** କବିଙ୍କ ଗ୍ରନ୍ଥରୁ ଯୁଗର ବାଣୀକୁ ଶୁଣିବାକୁ ହେଲେ ବିଷୟବସ୍ତୁ ସମ୍ବନ୍ଧରେ ସମ୍ୟକ ଧାରଣା ଆବଶ୍ୟକ । ସାଧାରଣତଃ ବିଶ୍ୱାସ କରାଯାଏ ଯେ **ଚଣ୍ଡୀ ପୁରାଣ**ର ବିଷୟବସ୍ତୁ 'ଦୁର୍ଗା ସପ୍ତଶତୀ'ରୁ ଗୃହୀତ । ଦୁର୍ଗାଙ୍କ ଦ୍ୱାରା ବିଭିନ୍ନ ଅସୁର ବଧ ଏହାର ମୂଳ କଥା ।

'ଦୁର୍ଗା ସପ୍ତଶତୀ'ର ବିଷୟବସ୍ତୁକୁ ସାଧାରଣତଃ ତିନି ଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମ ଚରିତ୍ର (ଅଧ୍ୟାୟ-୧), ମଧ୍ୟମ ଚରିତ୍ର (ଅଧ୍ୟାୟ ୨ରୁ ୪ ) ଓ ଉତ୍ତର ଚରିତ୍ର (ଅଧ୍ୟାୟ ୫ରୁ ୧୩) । ପ୍ରଥମ ଚରିତ୍ରରେ ସୁରଥ ରାଜା ଓ ସମାଧି ବୈଶ୍ୟ ରାଜ୍ୟ ଓ ଗୃହରୁ ଯଥାକ୍ରମେ ପ୍ରଜା ଓ ପରିବାର ଦ୍ୱାରା ବିତାଡିତ ହୋଇ ଅରଣ୍ୟରେ ମେଧା ମୁନିଙ୍କୁ ସାକ୍ଷାତ କଲେ । ସେମାନଙ୍କୁ ସାନ୍ତ୍ୱନା ଦେବା ଛଳରେ ମେଧା ମୁନି ସେମାନଙ୍କ ସମ୍ମୁଖରେ ବର୍ଣ୍ଣନା କଲେ, ଦେବୀ ଦୁର୍ଗାଙ୍କର ମହିମା । ଏହା ହିଁ ହେଉଛି ଦୁର୍ଗା ସପ୍ତଶତୀର ଉପକ୍ରମ,

ଚଣ୍ଡୀ ପୁରାଣରେ ପ୍ରଥମ ଚରିତ୍ର ନାହିଁ । ଏହା ସ୍ଥାନରେ ଭାଗବତର ଶୁକ - ପରୀକ୍ଷିତ ସମ୍ବାଦ ଗୃହୀତ । ରାଜା ପରୀକ୍ଷିତ ସର୍ପଦ୍ୱାରା ଦଂଶିତ ହୋଇ ଆସନ୍ନ ମୃତ୍ୟୁକୁ ଅପେକ୍ଷା କରୁଥିଲେ । ବଂଶ ରକ୍ଷାର ଚିନ୍ତା ହିଁ ରାଜାଙ୍କୁ ବିବ୍ରତ କରୁଥିଲା । ସେତିକିବେଳେ ମହାଭାଗବତ ଶୁକମୁନି ସେଠାରେ ପହଞ୍ଚି ରାଜାଙ୍କ ପ୍ରତି ଦୟା ପରବଶ ହୋଇ, ପୁତ୍ର ପ୍ରାପ୍ତିର ଉପାୟର ନିଜେ ଚଣ୍ଡୀ ଯୁଦ୍ଧ ପ୍ରସଙ୍ଗର ବର୍ଣ୍ଣନା କଲେ ।

ମଧ୍ୟମ ଚରିତ୍ରର ବିଷୟବସ୍ତୁ ହେଲା ମହିଷାସୁର ବଧ । ଦୈତ୍ୟପତି ମହିଷାସୁର ବ୍ରହ୍ମାଙ୍କ ବରରେ ବଳୀୟାନ ହୋଇ ଦେବଗଣଙ୍କୁ ପରାସ୍ତ କରି ଇନ୍ଦ୍ରପଦରେ ଅଭିଷିକ୍ତ ହେବା ପରେ ତାଙ୍କ କବଳରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ଦେବତାମାନେ ବ୍ରହ୍ମାଙ୍କୁ ସମ୍ମୁଖରେ ରଖି ଶିବ ଓ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହେଲେ । ସେମାନଙ୍କ ଠାରୁ ମହିଷାସୁରର ନିର୍ଯ୍ୟାତନା କଥା ଅବଗତ ହୋଇ ଶିବ ଓ ବିଷ୍ଣୁ ବିଶେଷ ଭାବେ କ୍ରୋଧିତ ହେଲେ । ଭଗବାନ ବିଷ୍ଣୁଙ୍କର ଏହି କ୍ରୋଧବହ୍ନୀରୁ ଏକ ମହାତେଜର ସୃଷ୍ଟି ହେଲା, ଏହା ପରେ ବ୍ରହ୍ମା ଶିବ, ଇନ୍ଦ୍ର ଆଦି ଦେବତାଙ୍କ ଶରୀରରୁ ମଧ୍ୟ ମହାନ ତେଜ ନିର୍ଗତ ହେବାକୁ ଆରମ୍ଭ କରେ । ସବୁ ଦେବତାଙ୍କର ତେଜ ମିଶ୍ରିତ ହୋଇ ଏକ ମହାନ ତେଜ ପୁଞ୍ଜ ଜାଜ୍ଜ୍ୱଲ୍ୟମାନ ପର୍ବତର ଆକାର ଧାରଣ କଲା ଏବଂ ସେହି ମହାନ ତେଜରୁ ଏକ ନାରୀ ରୂପ ପ୍ରକାଶିତ ହୋଇ ସମସ୍ତ ବିଶ୍ୱକୁ ଆଲୋକିତ କରିଥିଲା । ସବୁ ଦେବତାଙ୍କ ତେଜରୁ ଆବିର୍ଭୁତା ଦେବୀ ବିଭିନ୍ନ ଦେବତାଙ୍କ ଅସ୍ତ୍ରଶସ୍ତ୍ରରେ ଶକ୍ତିମତୀ ହେଲେ । ଏହାପରେ କ୍ଷୀର ସାଗରରୁ ବିଭିନ୍ନ ଅଳଙ୍କାର ଆଣି ଦେବୀ ନିଜ ଶରୀରକୁ ଅଳଙ୍କୃତ କଲେ । ଏହିପରି ଭାବେ ଅସ୍ତ୍ରଶସ୍ତ୍ର ଓ ଅଳଙ୍କାରରେ ସୁସଜ୍ଜିତା ହୋଇ ଦେବୀ ଅଟ୍ଟହାସ କରିବାକୁ ଲାଗିଲେ । ଭଗବତୀଙ୍କର ସିଂହନାଦରେ ସମସ୍ତ ବିଶ୍ୱ ପ୍ରତିଧ୍ୱନିତ ହେଲା । ସମୁଦ୍ର କମ୍ପିତ ହେଲା, ପୃଥିବୀ ଥରି ଉଠିଲା ଏବଂ ପର୍ବତ ସବୁ ଟଳି ପଡିଲେ । ଦେବୀଙ୍କର ଏହି ଗର୍ଜ୍ଜନକୁ ଶୁଣି ଓ ଏହାକୁ ଲକ୍ଷ୍ୟ କରି ମହିଷାସୁର ଚକ୍ଷୁର, ଚାମର, ଉଦଗ୍ର, ମହାହନୁ, ଅଶୀ ଲୋମା, ବାସ୍କଳ, ପାରିବାରିତ ଓ ବିଦାଳି ପ୍ରଭୃତି ଦୈତ୍ୟ ସେନାପତିମାନଙ୍କ ଦ୍ୱାରା ପରିବୃତ୍ତ ହୋଇ ଅଭିଯାନ ଆରମ୍ଭ କଲେ । ଯୁଦ୍ଧ ହେଲା ଏବଂ ଯୁଦ୍ଧରେ ଦେବୀ ଲମ୍ଫ ପ୍ରଦାନ କରି ମହିଷାସୁରକୁ ଚରଣତଳେ ଚାପି ଶୂଳ ଦ୍ୱାରା ତାହାର କଣ୍ଠ ଦେଶକୁ ଆଘାତ କଲେ । ତେବେ ବି ସେହି ଅସୁର ମୁକ୍ତି ପାଇବା ଇଚ୍ଛାରେ ବାହାରିବାକୁ ଚେଷ୍ଟାକଲା । ତାହାର ଅର୍ଦ୍ଧଅଙ୍ଗ ବାହାରି ଆସିବାବେଳେ ଦେବୀ ନିଜ ଶକ୍ତିବଳରେ ତାକୁ ପ୍ରତିରୋଧ କରି ଏକ ବିଶାଳ ତରବାରୀରେ ତାର ମସ୍ତକ ଛେଦନ କଲେ । ମହିଷାସୁର ବଧ ପରେ ଦେବତାମାନଙ୍କ ସ୍ତୁତିରେ ମଧ୍ୟମ ଚରିତ୍ରର ପରିସମାପ୍ତି ହୁଏ ।

ଉତ୍ତର ଚରିତ୍ରର ମୁଖ୍ୟ ବିଷୟ ବସ୍ତୁ ହେଲା ଶୁମ୍ଭ ନିଶୁମ୍ଭ ବଧ । ମହିଷାସୁର ପରି ଶୁମ୍ଭ ଇନ୍ଦ୍ରପଦ ଅଧିକାର କରି ସବୁ ଦେବତାଙ୍କୁ ସ୍ୱର୍ଗରୁ ବହିଷ୍କାର କରିଦେଲା । ସେହି ସଙ୍କଟ କାଳରେ ଦେବତାମାନେ ପାର୍ବତୀଙ୍କୁ ସ୍ମରଣ କରିବାରୁ ପାର୍ବତୀ ନିଜ ଶରୀର କୋଷରୁ ଭଗବତୀଙ୍କୁ

ଜନ୍ମ ଦେଲେ । ଭଗବତୀ ପ୍ରକଟ ହେବା ପରେ ପାର୍ବତୀଙ୍କ ଶରୀର କୃଷ୍ଣ ବର୍ଣ୍ଣ ଧାରଣ କଲା ଏବଂ ସେ କାଳିକା ନାମରେ ପ୍ରସିଦ୍ଧ ହେଲେ । ଶୁମ୍ଭ ନିଶୁମ୍ଭଙ୍କ ଭୃତ୍ୟ ଚଣ୍ଡ ମୁଣ୍ଡ ମନୋହର ସ୍ୱରୂପଯୁକ୍ତା ଦେବୀଙ୍କୁ ଦେଖି ଶୁମ୍ଭଙ୍କ ନିକଟରେ ଏହି ଖବର ଦେଇଥିଲା । ସେତେବେଳେ ସେ କହିଥିଲା, 'ଆପଣଙ୍କ ଭବନରେ ତିନିଲୋକରେ ଶ୍ରେଷ୍ଠ ମଣିରତ୍ନ, ହସ୍ତୀ, ଅଶ୍ୱ, ହଂସଯୁକ୍ତ ବିମାନ, ମହାପଦ୍ମନିଧି, ସ୍ୱର୍ଣ୍ଣ ବର୍ଷକ ଛତ୍ର ଏବଂ ବହୁ ଶ୍ରେଷ୍ଠ ରଥ ବିଦ୍ୟମାନ ଥିଲେ ହେଁ ହିମାଳୟରେ ବାସ କରୁଥିବା ଦିବ୍ୟକାନ୍ତି ବିଶିଷ୍ଟା ସ୍ତ୍ରୀ ରତ୍ନ ଆପଣଙ୍କ ନିକଟରେ ନାହିଁ । ଏହା ଶୁଣି ଶୁମ୍ଭ ଶୁଗ୍ରିବା ନାମକ ମହାସୁରକୁ ଦୂତ ରୂପେ ପ୍ରେରଣ କଲା । ସେହି ଦୂତ ଭଗବତୀଙ୍କୁ ସମ୍ବୋଧନ କରି କହିଲା 'ଦୈତେଶ୍ୱର ଶୁମ୍ଭ ତ୍ରୈଲୋକ୍ୟର ପରମେଶ୍ୱର । ସେ ସବୁ ଦେବତାଙ୍କର ପ୍ରଭୁ । ସବୁ ରତ୍ନର ସେ ଅଧିକାରୀ । ସୁତରାଂ ହେ ଚପଳ କଟାକ୍ଷ ମୟୀ ସୁନ୍ଦରୀ ! ତୁମ୍ଭେ ଶୁମ୍ଭ ବା ନିଶୁମ୍ଭର ସେବା କରିବା ପାଇଁ ତାଙ୍କ ଭୁବନକୁ ଆଗମନ କର ।' ସେତେବେଳେ ଦେବୀ କହିଲେ 'ହେ ଦୂତ ! ଶୁମ୍ଭ ତ୍ରୈଲୋକ୍ୟର ଅଧିପତି । ନିଶୁମ୍ଭ ମଧ ବଳବାନ' କିନ୍ତୁ ମୋର ପ୍ରତିଜ୍ଞା ହେଉଛି, ଯିଏ ଯୁଦ୍ଧ ଦ୍ୱାରା ମୋର ଅଭିମାନ ଚୂର୍ଣ୍ଣ କରିପାରିବ ଏବଂ ଯୁଦ୍ଧରେ ମୋତେ ପରାଜିତ କରିଦେବ ସେହି ବଳଶାଳୀ ବ୍ୟକ୍ତି ହିଂ ହେବ ମୋର ସ୍ୱାମୀ । 'ଦେବୀଙ୍କର ଏହି ପ୍ରତିଜ୍ଞା ଶୁଣି ଦୈତ୍ୟରାଜ ଶୁମ୍ଭ ଧୂମ୍ରଲୋଚନକୁ ଦେବୀଙ୍କୁ ପରାଜିତ କରିବା ପାଇଁ ପ୍ରେରଣ କଲେ । କିନ୍ତୁ ସେ ଦେବୀଙ୍କ ହୁଙ୍କାରରେ ହିଁ ଭସ୍ମ ହୋଇଗଲା । ଏହାପରେ ଦେବୀଙ୍କୁ ପରାଜିତ କରିବା ପାଇଁ ଚଣ୍ଡ ମୁଣ୍ଡ ଓ ରକ୍ତବୀର୍ଯ୍ୟ ଯାଇ ଦେବୀଙ୍କ ହସରେ ନିହତ ହେଲେ । ରକ୍ତବୀର୍ଯ୍ୟ ବଧ ପରେ ପ୍ରଥମେ ଶୁମ୍ଭ ଓ ପରେ ନିଶୁମ୍ଭ ନିହତ ହେଲେ । ପରିଶେଷରେ ଦେବତାମାନଙ୍କ ଦେବୀ ସ୍ତୁତିରେ 'ଦୁର୍ଗା ସପ୍ତଶତୀ' ସମାପ୍ତ ହୁଏ ।

'ଦୁର୍ଗା ସପ୍ତଶତୀ'ର ବିଷୟ କ୍ରମ ଚଣ୍ଡୀ ପୁରାଣରେ ନାହିଁ । 'ଦୁର୍ଗା ସପ୍ତଶତୀ' ପାଠର ନିୟମ ହେଉଛି ଶୁଦ୍ଧ ହୋଇ ଶୁଦ୍ଧ ଉଚାରଣ, ଶୁଦ୍ଧ ଭାବରେ ପାଠ କଲେ ଆଶାତୀତ ଫଳ ଲାଭ ହୁଏ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ । ସାରଳା ଦାସ ହିନ୍ଦୁ ଥିଲେ ପୁଣି ନିଜକୁ ସାରଳା ଦେବୀଙ୍କ ସୁତ ଭାବେ ଜଗତ ସମ୍ମୁଖରେ ପ୍ରଚାର କରୁଥିଲେ । ଶୁଦ୍ଧ ଉଚ୍ଚାରଣ ତ ଦୂରର କଥା, ମୂଳ ବିଷୟବସ୍ତୁ ବି ପରିବର୍ତ୍ତିତ ହୋଇଗଲା । ଏଥିପାଇଁ ଦୁଇଟି କାରଣର ସନ୍ଧାନ କରାଯାଇପାରେ । ପ୍ରଥମ ହେଲା, ସଂସ୍କୃତକୁ ଓଡିଆ କରିବାର ସମସ୍ୟା । ସଂସ୍କୃତକୁ ଓଡିଆ ଅନୁବାଦ କଲେ ଏହା ଓଡିଆ ଭାଷାର ପ୍ରବୃତ୍ତି ସବୁକୁ ଗ୍ରହଣ କରି ଓଡିଆ ହୋଇଯାଏ । ଏଥିରୁ ସଂସ୍କୃତ ଭାଷାର ଶୁଦ୍ଧ ଉଚ୍ଚାରଣକୁ ଖୋଜି ବସିଲେ ନିରାଶ ହିଁ ସାର ହୁଏ ।

ଦ୍ୱିତୀୟ କାରଣ ହେଲା, ପ୍ରସଙ୍ଗର ପରିବର୍ତ୍ତନ । 'ଦୁର୍ଗା ସପ୍ତଶତୀ'ର ପ୍ରଥମ ଚରିତ୍ରକୁ ପରିତ୍ୟାଗ କରିବା ପରେ ବାକି ରହିଲା ମହିଷାସୁର ଓ ଶୁମ୍ଭ ନିଶୁମ୍ଭ ବଧ । ସାରଳା ଦାସ ମହିଷାସୁରକୁ ପ୍ରମୁଖତା ପ୍ରଦାନ କରି 'ଦୁର୍ଗା ସପ୍ତଶତୀ'ରେ ଉଲ୍ଲିଖିତ ସମସ୍ତ ଦୈତ୍ୟପତି ମାନଙ୍କୁ ତାଙ୍କ ଅଧୀନସ୍ଥ ସେନାପତି ଭାବେ ଘୋଷଣା କଲେ । କଥାର ଏହି ପରିବର୍ତ୍ତନ କରିବା

ପାଇଁ ସେ ମହିଷାସୁର ଜନ୍ମ, ବରପ୍ରାପ୍ତି ଓ ଦିଗ୍‌ବିଜୟ ପ୍ରଭୃତି ପ୍ରସଙ୍ଗ ବର୍ଣ୍ଣନା କରିସାରି ଦୁର୍ଗାଙ୍କ ଆବିର୍ଭାବର ପ୍ରସଙ୍ଗ ବର୍ଣ୍ଣନା କଲେ । 'ଦୁର୍ଗା-ସପ୍ତଶତୀ'ରେ ଥିବା ଅସୁର ମାନଙ୍କ ନାମ ମଧ୍ୟରୁ ଚଣ୍ଡ, ମୁଣ୍ଡ, ରକ୍ତବୀର୍ଯ୍ୟ, ଶୁମ୍ଭ ନିଶୁମ୍ଭ, ଚାମର ଓ ଧୂମ୍ରଲୋଚନଙ୍କ ବ୍ୟତୀତ କବି ଅନ୍ୟ ସବୁ ନାମକୁ ମଧ୍ୟ ପରିବର୍ତ୍ତନ କରିଦେଲେ । କଥାକୁ ଏ ପ୍ରକାର ପରିବର୍ତ୍ତନ କରିବା ଦ୍ୱାରା 'ଦୁର୍ଗା-ସପ୍ତଶତୀ'ର ସମସ୍ତ କଥାବସ୍ତୁ ଏକ ସୂତ୍ରରେ ଆବଦ୍ଧ ହୋଇଗଲା । ଦୁର୍ଗା ଏହି ସଂଗ୍ରାମ କ୍ରମରେ ବହୁ ଅସୁରଙ୍କୁ ବଧ କରିଥିବାରୁ ତାଙ୍କର ମହିଷାମର୍ଦ୍ଦିନୀ ନାମ ମଧ୍ୟ ସାର୍ଥକ ହେଲା ।

**ଯୁଗବାଣୀ :** ସାରଳା ଦାସ କଥାବସ୍ତୁରେ ଯେଉଁ ପରିବର୍ତ୍ତନ ଆଣିଥିଲେ, ଏକସୂତ୍ରତା ତାହାର ଏକମାତ୍ର କାରଣ ହୋଇପାରେ କିନ୍ତୁ ଏହା ଯଥାର୍ଥ କାରଣ ନୁହେଁ । **ଚଣ୍ଡୀ ପୁରାଣ**କୁ ପରୀକ୍ଷା କଲେ ଏଥିରେ ଯେଉଁ ସବୁ ନୂତନ ତତ୍ତ୍ୱର ସଂଯୋଜନା ଦେଖିବାକୁ ମିଳେ ସେ ସବୁକୁ କେବଳ, କବି କଳ୍ପନା ରୂପେ ମଧ୍ୟ ଗ୍ରହଣ କରି ହୁଏ ନାହିଁ । ଏହି ସବୁ ସଂଯୋଜନା ମୂଳରେ ବୋଧହୁଏ ଥିଲା ଯୁଗର ପ୍ରଭାବ ।

ସାରଳା ଦାସଙ୍କ ସମୟ ହେଉଛି ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧ । ସେତେବେଳକୁ ସମସ୍ତ ଭାରତବର୍ଷରେ ମୁସଲମାନ ମାନଙ୍କର ରାଜତ୍ୱ । ସେମାନେ ଗୋଟିକ ପରେ ଗୋଟିଏ ହିନ୍ଦୁ ରାଜ୍ୟକୁ କବଳିତ କରି ନିଜର ରାଜ୍ୟର ସୀମା ବୃଦ୍ଧି କରୁଥିଲେ । ସେମାନଙ୍କ ଅତ୍ୟାଚାର ଫଳରେ ସମସ୍ତ ଭାରତୀୟ ଜନତା ନିଷ୍ପେଷିତ ହେଉଥିଲେ । ଯମଙ୍କ ବାହନ ମହିଷର ପୁତ୍ର ମହିଷାସୁର ବା ମୈଷାସୁର ଏବଂ ମୁସଲମାନ ନାମ ମଧ୍ୟରେ ବିଶେଷ ପାର୍ଥକ୍ୟ ନ ଥିଲା । ଭାରତୀୟ ଦୃଷ୍ଟିରେ ଉଭୟେ ଥିଲେ ଦାନବ । ବିଶେଷ କରି ପ୍ରଥମ ଦୁଇଟି ଅକ୍ଷରରେ ଥିଲା ଅପୂର୍ବ ସାମଞ୍ଜସ୍ୟ । ଶବ୍ଦଗତ ଏହି ସାଦୃଶ୍ୟରୁ ଏବଂ ଏକା ପ୍ରକାର ଅତ୍ୟାଚାରୀ ଏବଂ ଦେବତା ବିରୋଧୀ ପ୍ରକୃତିରୁ ମହିଷାସୁରକୁ ଏକ ମୁସଲମାନ ନବାବରେ ପରିଣତ କରିବାରେ ଅସୁବିଧା ହେଲା ନାହିଁ । ଏହାର ସୂଚନା **ଚଣ୍ଡୀ ପୁରାଣ**ରୁ ହିଁ ଉପଲବ୍ଧ ହୁଏ । **ଚଣ୍ଡୀ ପୁରାଣ**ରେ ମହିଷାସୁରର ସଭାସଦମାନଙ୍କର ପରିଚୟ ଦେଇ କବି କହିଛନ୍ତି -

ମୀରା ଅମିରା ଯରା ଖାସ୍ ମଲିକ ସକଳ
ଆସ୍ତାନ ତଳେ ସେ ପୂରିତ ଗହଳ

ପର୍ସିଆନ ଭାଷାରେ ମୀର୍, ଅମିର୍, ଯରୀଲ ମଲ୍ଲିକ୍ ପ୍ରଭୃତି ଶବ୍ଦ ମୁସଲମାନ ସଂପ୍ରଦାୟର ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପାଇଁ ପ୍ରଯୁକ୍ତ । ଏପରି ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର ଅଧିନାୟକ ସେ ଜଣେ ମୁସଲମାନ ନବାବ, ଏହା ନିସନ୍ଦେହ । ଏକଥା ପ୍ରମାଣିତ ହେବା ପରେ ମହିଷାସୁର ଉପାଖ୍ୟାନରେ ଥିବା ନୂତନ ସଂଯୋଜନା ସବୁକୁ ବୁଝିବାରେ ଅସୁବିଧା ହୁଏନାହିଁ । ଭାରତବର୍ଷର ତତ୍କାଳୀନ ରାଜନୈତିକ ଇତିହାସରୁ ଜଣାଯାଏ କେବଳ ଓଡିଶା ଓ ଆଉ କେତେକ କ୍ଷୁଦ୍ର ରାଜ୍ୟ ବ୍ୟତୀତ ଭାରତବର୍ଷର ଅନ୍ୟ ସମସ୍ତ ରାଜ୍ୟ ମୁସଲମାନ ନବାବଙ୍କ ଦ୍ୱାରା ଶାସିତ

ହେଉଥିଲା । ହିନ୍ଦୁ ରାଜାମାନେ ନିଜର ସଂଘବଦ୍ଧତା ଅଭାବରୁ ମୁସଲମାନମାନଙ୍କ ଦ୍ୱାରା ପରାଜିତ ହେଉଥିଲେ । **ଚଣ୍ଡୀ ପୁରାଣ**ରେ ବ୍ରହ୍ମା ଦେବତାମାନଙ୍କ ମଧ୍ୟରୁ ଅନ୍ୟତମ ହେଲେ ହେଁ ସେହିଥିଲେ ମହିଷାସୁରର ବରଦାତା । ସେହିପରି ସେତେବେଳେ ବହୁ ହିନ୍ଦୁ ଥିଲେ ଯେଉଁମାନଙ୍କ ସହାୟତାରେ ହିଁ ମୁସଲମାନ ମାନେ ଅନ୍ୟ ହିନ୍ଦୁ ରାଜାମାନଙ୍କୁ ପରାସ୍ତ କରୁଥିଲେ । ବ୍ରହ୍ମାଙ୍କ ଯୋଗୁ ହିଁ ଦେବରାଜ ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତା ମହିଷାସୁର ଦ୍ୱାରା ପରାଜିତ ହେଲେ । ପୁରାଣର ମହିଷାସୁର କଥାକୁ ଯୁଗୀୟ ବାତାବରଣ ସହ ମିଶାଇ ଦେବା ପରେ ପୁରାଣ ହେଲା ଇତିହାସ । ଦେଶର ଦୁର୍ଦ୍ଦଶା ବେଳେ ସାରଳା ଦାସ **ଚଣ୍ଡୀ ପୁରାଣ** ରଚନା କରୁଥିବାରୁ 'ଦୁର୍ଗା ସପ୍ତଶତୀ'ର ମୂଳ ରହସ୍ୟ ଅର୍ଥାତ୍ ସଂଘ ଶକ୍ତିର ସାର୍ଥକତା ପ୍ରଦାନ କରିବା ପାଇଁ ପୂର୍ବ କଥାର ପୁନରାବୃତ୍ତିର କରିଥିବା ଅନୁମିତ ହୁଏ । ଏଥିରେ ହିନ୍ଦୁ ଦେବତା ସବୁ ହେଲେ ହିନ୍ଦୁ ରାଜାଙ୍କର ପ୍ରତୀକ ଓ ସେମାନଙ୍କ ସଂଘବଦ୍ଧତା ହେଲା, ଚଣ୍ଡୀ ମୂର୍ତ୍ତି ।

**ଚଣ୍ଡୀ ପୁରାଣ**ର ଏହି ଗୋଟିଏ ଦୃଷ୍ଟାନ୍ତ ନୁହେଁ ! ଅନ୍ୟ ଦୁଇଟି ଉଲ୍ଲେଖରୁ ମଧ୍ୟ ଏହା ପ୍ରମାଣିତ ହୁଏ । ଚଣ୍ଡୀଙ୍କ ଆଦେଶର ଅବମାନନା କରୁଥିବା, **ଚଣ୍ଡୀ ପୁରାଣ**ର ଏକ ନୂତନ ତତ୍ତ୍ୱ । ଆଦେଶକୁ ଅବମାନନା କରୁଥିବା ଦେବୀମାନଙ୍କୁ ଦଣ୍ଡଦାନ କରିବା ପାଇଁ ଚଣ୍ଡୀ ଯେଉଁ କ୍ଷେତ୍ରପାଳମାନଙ୍କୁ ସୃଷ୍ଟି କଲେ, ସେଥିରୁ ଗୋଟିଏ ପ୍ରକାର କ୍ଷେତ୍ରପାଳ ଥିଲେ, 'ତୁତୁକ' । ସେନାପତି ବା ରାଜାଙ୍କ ଆଦେଶର ଅବମାନନା ଅର୍ଥାତ ସେନାବାହିନୀର ବିଦ୍ରୋହ ଭାବ ଥିଲା ସାରଳା ଦାସଙ୍କ ହିନ୍ଦୁ ସମାଜର ଏକ ଦୁର୍ବଳତା । ବିଶ୍ୱାସଘାତକତା ଯୋଗୁ ହିଁ ବହୁ ହିନ୍ଦୁ ରାଜା ପରାଜିତ ହୋଇଥିବା ଇତିହାସରୁ ଜଣାଯାଏ ।

**ଚଣ୍ଡୀ ପୁରାଣ**ର ଅନ୍ୟ ଗୋଟିଏ ଉଲ୍ଲେଖକୁ ପରୀକ୍ଷା କରାଯାଇପାରେ । ମହିଷାସୁରଙ୍କ ସେନାବାହିନୀର ବର୍ଣ୍ଣନା କ୍ରମରେ ସାରଳା ଦାସ ପୁଣି ଥରେ ଉର୍ମିଳାମାନଙ୍କର ଉଲ୍ଲେଖ କରିଛନ୍ତି । ଉର୍ମିଳା ଯେ ଅମୀରର ରୂପାନ୍ତର ଏହା ପୂର୍ବୋକ୍ତ ପଂକ୍ତିରୁ ପ୍ରମାଣିତ ।

**ମୂର୍ତ୍ତି ଓ ମନ୍ଦିର ଧ୍ୱଂସ :** ସାରଳାଦାସଙ୍କ ପୂର୍ବରୁ ଏ ଦେଶରେ ଖିଲଜୀ, ତୁଗଲକ, ସୈୟଦ ଓ ଲୋଦି ବଂଶର ମୁସଲମାନମାନେ ରାଜତ୍ୱ କରିସାରି ଥିଲେ । କୁତୁବୁଦ୍ଦିନ ୧୧୮୪ ଖ୍ରୀ.ରେ ଜୟଚନ୍ଦ୍ରଙ୍କୁ ପରାଜିତ କଲା । ନାଳନ୍ଦା, ବିକ୍ରମଶୀଳ, ଓ ଦନ୍ତପୁରୀସ୍ଥିତ ବୌଦ୍ଧ ବିଶ୍ୱବିଦ୍ୟାଳୟକୁ ବିଧ୍ୱଂସ କଲା । ବନାରସର ୧୦୦୦ ମନ୍ଦିରକୁ ଭାଙ୍ଗି ଏ ଦେଶର ସଂସ୍କୃତିକୁ ବିନଷ୍ଟ କରିଦେବା ପାଇଁ ଚାହିଁଥିଲା । ଏହା ପୂର୍ବରୁ ମହମୁଦ ଗଜନବୀ ସୋମନାଥ ମନ୍ଦିରକୁ ବିଧ୍ୱସ୍ତ କରି ୫୦୦୦ ନରନାରୀ ହତ୍ୟା କରିଥିଲେ । ସିକନ୍ଦର ଲୋଦୀ ପରି ଧର୍ମାନ୍ଧ ଶାସକ ଜ୍ୱାଳାମୁଖୀ ମନ୍ଦିରର ମୂର୍ତ୍ତି ଭାଙ୍ଗି ଏହି ମୂର୍ତ୍ତିର ପ୍ରସ୍ତର ଖଣ୍ଡକୁ କଂସାଇମାନଙ୍କୁ ବଟକରା କରିବା ପାଇଁ ଦେଇଥିଲା । ଏସବୁ ବର୍ବର ଓ ରୋମାଞ୍ଚକର କାହାଣୀ ଦେଶର ଜାଗ୍ରତ ନାଗରିକମାନଙ୍କୁ ଯେ ବିବ୍ରତ କରୁଥିଲା, ଏହାର ପ୍ରମାଣ ହେଲେ ନିଜେ ସାରଳା ଦାସ । ମହିଷାସୁରର ଦିଗ୍‌ବିଜୟ ବର୍ଣ୍ଣନା କଲାବେଳେ ସେ ଅଭିଯାନର ଯେଉଁ ଚିତ୍ର ଦେଇଛନ୍ତି, ସେଥିରେ ହିଁ ମୁସଲମାନ ନବାବଙ୍କ

ଅଭିଯାନ ବାର୍ତ୍ତା ଚିତ୍ରିତ । କବି କହିଛନ୍ତି-

କାଶୀଦେଶ କଉଶିକ ଦେଶ କୁବୁଜ ଦେଶ କନାଉଜ
ଯେତେ ବିଖ୍ୟାତ ଦେଶ ଜିଣିଲା ସର୍ବରାଜା
ଭଏଣ ପଳାନ୍ତି ଦନ୍ତେ କୋଠାର ତିରଣ
ଧନ ଭଣ୍ଡାର ଦେଇ କେ ପଶନ୍ତି ଶରଣ ।
ଆହୋ ପରୀକ୍ଷ ! କାଷ୍ଠ ପାଷାଣ ଯେତେ ମୃତ୍ତିକା ଦେବତା
ସମସ୍ତ ଭାଙ୍ଗିଣ ସେ କରନ୍ତି ନାଶଗତା ।
ମେଢ଼ ମଣ୍ଡପ ଯେ ଦେଉଳ ଜଗତୀ
ଧର୍ମ କୀର୍ତ୍ତିମାନ କାହିଁ ନ ଥୋଅନ୍ତି ।
ଆହୋ କଯୋଦୀପେ ଦେବତା ବ୍ରାହ୍ମଣଙ୍କର ବାସ
ସୁଜନ ପଣ୍ଡିତମାନେ କରନ୍ତି ଅଭ୍ୟାସ
ଯେତେବେଳେ ଦୁରାନ୍ତକ ମାଡି ଯାଉଅଛି
ଜନ ମନୁଷ୍ୟ ସହିତେ ନ ରହନ୍ତି କିଛି ।
ଯେସନେକ ବନସ୍ତ ଭାଙ୍ଗନ୍ତି ବାତଘାତେ
ସେହିମତି ହୁଅନ୍ତି ଦଇତର ପାଦଘାତେ ।
ଦେବେ ଅପସରନ୍ତି ଯେବଣ ବଳ ଦେଖି
ମାନବ ମାତ୍ରକୁ ଛାର କିସ ତାହା ଲେଖି ।
ଗାନ୍ଧାର ଦେଶ ପାରିଜାତେକ ଦେଶ ନେପାଳି ଦେଶ ବାରସ୍ୱତୀ
ସକଳ ଦେଶମାନେ ହୋଉଂଛନ୍ତି ସନ୍ଧନ୍ତି ।
ନାଟ ଚୋଟ କର୍ଣ୍ଣାଟ ତିହୁତି ଚୁନ୍ଦେରୀ
ଭାଙ୍ଗିଣ ନଗ୍ରନ୍ତ ଭଣ୍ଡାର ଲୁରକରି                    ପୃ-୪୮.୪୯

କେବଳ ଅଭିଯାନ ସମୟରେ ନୁହେଁ ଯୁଦ୍ଧ କାଳରେ ମଧ୍ୟ ମୂର୍ତ୍ତି ଭାଙ୍ଗିବାର ଯେଉଁ ମର୍ମସ୍ପର୍ଶୀ ଚିତ୍ର ସାରଳା ଦାସ ଆଙ୍କିଛନ୍ତି, ତାହା ଅନ୍ୟତ୍ର ବିରଳ । ଭଗ୍ନ ମୂର୍ତ୍ତିମାନଙ୍କର ଦୁର୍ଦ୍ଦଶାର ଚିତ୍ର ତାଙ୍କ ବର୍ଣ୍ଣନାରେ ଅତ୍ୟନ୍ତ ଜୀବନ୍ତ ଭାବେ ପ୍ରକାଶିତ । ମୁସଲମାନ ଆକ୍ରମଣ ଫଳରେ ଭାରତବର୍ଷର ବହୁ ଦେବ ମୂର୍ତ୍ତି ଖଣ୍ଡ ବିଖଣ୍ଡିତ ହେଲେ । କାହାର ହାତ ଗଲା, କାହାର ଗୋଡ ଗଲା, କିଏ ଜଳଶାୟୀ ହେଲେ, କିଏ ଅପୂଜା ହୋଇ ବଣ ଜଙ୍ଗଲରେ ପଡ଼ି ରହିଲେ । ସେ ସବୁର ହିସାବ ନେବା ପାଇଁ ହିନ୍ଦୁର ବଳ ନ ଥିଲା, କି ସମ୍ବଳ ନଥିଲା, କାଳ ବିମୋଚନର ଯୁଦ୍ଧ ବର୍ଣ୍ଣନା କଲାବେଳେ କବି ଦେଶର ଏହି ଦୁର୍ଦ୍ଦଶାମୟ ଚିତ୍ରକୁ ରୂପ ଦେଇ କହିଛନ୍ତି ।

ମୁହଂ ବକ୍ର କାହାର ଅଧଖଣ୍ଡ କାଏ
କାହାର ହସ୍ତ କମ୍ପଇ କାହାର ଭଗ୍ନ ବେନିଜାଏ ।

ପେଟ କୋତ କାହାର ପିଠି ହୋଇଲା କୁଜା
କେହୁ ଅଷ୍ଟବକ୍ର ହୋଇଲେ ଅପୂଜା ।

**ନାରୀ ଅପହରଣ :** ଚଣ୍ଡୀଙ୍କ ଆବିର୍ଭାବ ପ୍ରସଙ୍ଗରୁ ମୁସଲମାନ ରାଜତ୍ୱର ଅନ୍ୟଏକ ଦୃଶ୍ୟ ପ୍ରତି ଲକ୍ଷ୍ୟ କରାଯାଇପାରେ । ଇତିହାସରୁ ଜଣାଯାଏ ଯେ ମୁସଲମାନ ଶାସକମାନଙ୍କର ପ୍ରିୟ କାର୍ଯ୍ୟଥିଲା, ହିନ୍ଦୁ-ସୁନ୍ଦରୀମାନଙ୍କର ଅପହରଣ । ଅନେକ ବାଦଶାହ ଏପରି ଏକ ଫରମାଣ ଜାରୀ କରିଥିଲେ, ଯାହା ବଳରେ ଯେ କୌଣସି ମୁସଲମାନ ଯେ କୌଣସି ହିନ୍ଦୁ କନ୍ୟାକୁ ବିବାହ ପାଇଁ ବାଧ୍ୟ କରିପାରୁ ଥିଲା । ଏଥିରେ ହିନ୍ଦୁମାନେ ଆପତ୍ତି କଲେ, ନବାବଙ୍କ ପକ୍ଷରୁ ମୁସଲମାନଙ୍କୁ ହିଁ ସହାୟତା ମିଳୁଥିଲା ଓ ହିନ୍ଦୁମାନେ ଦଣ୍ଡିତ ହେଉଥିଲେ । କେବଳ ସେତିକି ନୁହେଁ, ରାଜକର୍ମଚାରୀମାନେ ଦେଶରେ ବୁଲି ବୁଲି ନବାବଙ୍କ ପାଇଁ ସୁନ୍ଦରୀ କନ୍ୟାର ସନ୍ଧାନ କରୁଥିଲେ ଏବଂ ସେଥିରୁ କେତେକଙ୍କୁ ନିଜେ ମଧ୍ୟ ଉପଭୋଗ କରୁଥିଲେ ।

ମୁସଲମାନ ଶାସନର ଏହି ଚିତ୍ର ମିଳେ, **ଚଣ୍ଡୀ ପୁରାଣ**ରେ । ରୂପବତୀ ଚଣ୍ଡୀଙ୍କୁ ଦେଖିବା କ୍ଷଣି ମହିଷାସୁରର ଦୁଇ ସେନାପତି ଚଣ୍ଡ ଓ ମୁଣ୍ଡ ତାଙ୍କ ପ୍ରତି କେବଳ ଯେ ଆସକ୍ତ ହୋଇଥିଲେ, ତାହା ନୁହେଁ, ରୂପରେ ଆକୃଷ୍ଟ ହୋଇ, ତାଙ୍କୁ ସ୍ତ୍ରୀ କରିବାକୁ ଚାହିଁଥିଲେ, ସେତେବେଳେ ସେମାନେ କହିଥିଲେ -

କେବଣ ବିମୁଖେ ତୁ ଗୃହବାସ କଲୁ ତେଜ୍ୟା
ଅଛି କି ସନମତ ଆମ୍ଭର ହୋଇବୁ କି ଭାରିଯା ।
ଅନେକ ଧନ ରତ୍ନ ଅଲଙ୍କାର ଦେବୁ
ପ୍ରାଣୁ ଅଧିକା କରି ପ୍ରତିପାଳିଥିବୁ ।
ସ୍ୱାମୀ ପଣ ଛାଡି ତୋତେ ହୋଇବୁ ଭୃତ୍ୟରେ କୃତ
ବିନୟ ଭାବ କରି ତୋତେ ହୋଇବୁ ଶିରାଗ୍ରତ (ପୃ-୧୧୮)

କିନ୍ତୁ ଯେତେବେଳେ ସେମାନେ ଜାଣିଲେ ଯେ ସେ ମହିଷାସୁରର ପତ୍ନୀ ହେବା ପାଇଁ ଇଚ୍ଛୁକ, ସେତେବେଳେ ସେମାନଙ୍କର ଭୟର ସୀମା ରହିଲା ନାହିଁ । ସେମାନଙ୍କର ସବୁ ତେଜ କ୍ଷଣକେ ମଉଳି ଗଲା । ସେମାନେ ତାଙ୍କ ପାଦ ତଳେ ପଡି କ୍ଷମା ଭିକ୍ଷା କରିବାକୁ ଲାଗିଲେ -

ଏସନକ ବାକ୍ୟ ଶୁଣିଲେ ଯହୁଁ ବାଣୀ
ଶ୍ରବଣେଂ ହସ୍ତ ଦେଇଂ କାତରେ ରହିଲେ ଧରଣୀ
ତୁ ଆମ୍ଭର ଠାକୁରାଣୀ ହୋଇବ ଆଗୋ ମାଏ
ଦଶ ଦୋଷ କ୍ଷେମା କରି ଫିଟୁ ଆମ୍ଭର ଭଏ ।
ଶିବ ଶିବ ସୁମରି ଚଳନ୍ତି ଚଣ୍ଡ ମୁଣ୍ଡେ
ପବନୁ ବେଗେ ଚଳନ୍ତି ନ ରହନ୍ତି ଦଣ୍ଡେ । (ପୃ-୧୨୦)

**ନାରୀ ଧର୍ଷଣ:** ମୁସଲମାନ ଶାସକମାନେ ଯେ କେବଳ ହିନ୍ଦୁ ରମଣୀମାନଙ୍କୁ ଅପହରଣ

କରି ଉପଭୋଗ କରୁଥିଲେ, ତାହା ନୁହେଁ, ସମୟ ସମୟରେ ଗଣ ଧର୍ଷଣ କରି ହିନ୍ଦୁ ସଂସ୍କୃତିକୁ ଲୋପ କରି ଦେବା ପାଇଁ ଚାହିଁଥିଲେ । ସେମାନେ କେବଳ ଦେଶକୁ ଲୁଣ୍ଠନ କରୁ ନ ଥିଲେ , ଅପମାନିତ କରିବାକୁ ଚାହିଁ ଥିଲେ । ଦେଶ ସବୁକୁ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ଭାରତୀୟ ନାରୀକୁ ଅପହରଣ ପୁଣି ସେମାନଙ୍କ ପ୍ରତି ବଳାତ୍କାର ସଦୃଶ ବର୍ବର ଓ ନୀନ୍ଦନୀୟ କାର୍ଯ୍ୟ ବି କରିଥିଲେ ।

ମହିଷାସୁର ଯୁଦ୍ଧ କ୍ଷେତ୍ରରେ ଉପନୀତ ହେବା କ୍ଷଣି ସମ୍ମୁଖରେ ଦେଖିଲା ରୂପବତୀ ନାରୀର ସାଗର । ସେମାନଙ୍କୁ ଦେଖି ତା' ମନରେ କାମ ବାସନା ଜାଗ୍ରତ ହୋଇ ଉଠିଲା । ସେ ହିତାହିତ ଜ୍ଞାନ ଶୂନ୍ୟ ହୋଇ ସେନାପତିମାନଙ୍କୁ ଆଦେଶ ଦେଲା ଯାଅ, ଉପଭୋଗ କର । ସମ୍ମୁଖରେ ରୂପବତୀ ନାରୀର ସମୁଦ୍ର ଦେଖି, ସେଥିରେ ଅବଗାହ ନ କରି ଫେରିଯିବା କଣ କୌଣସି ତୀର୍ଥଯାତ୍ରୀ ପକ୍ଷରେ ସମ୍ଭବ ? ସେଇଆ ହେଲା । ମହିଷାସୁରର ଆଦେଶରେ ସମସ୍ତ ଅସୁର ସେନା କାମ ସ୍ନାନ କରିବା ପୁଣ୍ୟ ଅର୍ଜନ କରିବା ପାଇଁ ନାରୀ ରୂପ ସମୁଦ୍ରରେ ଝାସ ଦେଲେ ।

**ଧର୍ମର ନୂତନ ବ୍ୟାଖ୍ୟା:** ଦେଶରେ ଯେଉଁ ନୂଆ ଶାସକ ଆସିଥିଲେ ସେମାନେ ଅଧର୍ମକୁ ଧର୍ମ ବୋଲି କହୁଥିଲେ । ନାରୀର ସତୀତ୍ୱ ରକ୍ଷା କରିବା ପାଇଁ ହିନ୍ଦୁମାନେ ପ୍ରାଣବଳୀ ଦେଉଥିଲା ବେଳେ ହିନ୍ଦୁ ନାରୀ ସତୀତ୍ୱ ନଷ୍ଟ କରିବା ହିଁ ଥିଲା ମୁସଲମାନ ଶାସକଙ୍କ ଧର୍ମର ଆଦର୍ଶ । ସେଥିପାଇଁ ଦେଶରେ ସ୍ୱତନ୍ତ୍ର ଫରମାଣ ବି ଜାରୀ ହୋଇସାରିଥିଲା । ସେମାନେ ରକ୍ଷକ ହୋଇ ଭକ୍ଷକର କାମ କରୁଥିଲେ । ଦେଶରେ ଏହି ପରିସ୍ଥିତିରେ ଧର୍ମର ଯେଉଁ ବ୍ୟାଖ୍ୟା ହିନ୍ଦୁମାନେ କରୁଥିଲେ, ତା'ର ଓଲଟ ଅର୍ଥ କରୁଥିଲେ ମୁସଲମାନ ଶାସକ ଏବଂ ତାଙ୍କର ଅନୁଗତମାନେ । ଦୁର୍ଗା ଓ ଚଣ୍ଡମୁଣ୍ଡଙ୍କ ଉକ୍ତି - ପ୍ରତ୍ୟୁକ୍ତି ମଧ୍ୟରେ ଧର୍ମ ଜଗତରେ ଆରମ୍ଭ ହୋଇଯାଇଥିବା ତର୍କ ବିତର୍କର ସ୍ୱର ହିଁ ଶୁଣିବାକୁ ମିଳେ । କବି କହିଛନ୍ତି -

ଦୁର୍ଗା ବୋଇଲେ ମୁଁ ସ୍ତିରୀ ରତ୍ନ ଧର୍ମଣି
ତୁମ୍ଭେ ବୀରବର କ୍ଷତ୍ରୀୟ ଚୂଡାମଣି
ସମୋଦ୍ର ଯେବେ ଲଘିବାକ ମହୀ
କାହାର ଆଗରେ ଆଉ କହିବାକୁ ଯାଇଁ
ରାଜା ହୋଇ ଯେବେ କରିବାକୁ ଅବିଧି
ପରଜା ମାତ୍ରକ ତହିଂ କିସ କରିବ ବୁଧି ।
ପୁରୁଷମାନେ ଯେବେ ଲଘିବେ ସ୍ତିରୀକି
ଏତେ କଥାକୁ ହୋ ଧର୍ମ ହିଂ ସାକ୍ଷୀ । (ପୃ-୧୨୭)

ସାରଳା ଦାସଙ୍କ ଏ ବିନୟ ଦୁର୍ଗାଙ୍କ ମୁଖରେ ହିଁ ପ୍ରଦତ୍ତ । ଦୁର୍ଗା ଧର୍ମର ବ୍ୟାଖ୍ୟା କରି

ଯେଉଁ କଥା କହିଲେ ଏହା ଥିଲା ହିନ୍ଦୁମାନଙ୍କର ଧର୍ମ ବିଷୟରେ ବିଚାର । ଦନୁଜଙ୍କ ରୀତିରେ ଧର୍ମ ହେଲା ଓଲଟା । ଋଷି, ମାନୁଷୀ, ତପୋଧନଙ୍କୁ ଭକ୍ଷଣ କରି ମଦିରା ପାନ କରିବା ହିଁ ହେଲା ସେମାନଙ୍କ ଧର୍ମ । ଚଣ୍ଡ ମୁଣ୍ଡ ମୁଖରେ କୁହାଯାଇଛି -

କୋପେଣ ଦାନବ ହେ ଅଧର କଲା ପୃଷ୍ଟ
ଆମ୍ଭେ କେହ୍ନେ ଜାଣିମା ତୋହୋର ଧର୍ମ ବାଟ
ଋଷି ମାନୁଷି ତପୋଧନ କରୁ ଭକ୍ଷ
ମଦିରା ପାନ କରି ଆମ୍ଭେ ଧର୍ମ କରୁ ବାଛ ।

ଯେତେବେଳେ ଦେଶରେ ମେଢ଼, ମଣ୍ଡପ, ଦେଉଳ ଓ ଜଗତୀ ପରି ଦେବକୀର୍ତ୍ତିମାନ ଧ୍ୱଂସ ପାଉଥିଲା, ଯେତେବେଳେ କାଠ, ପଥର, ଓ ମାଟି ନିର୍ମିତ ଦେବ, ଦେବୀ ମୂର୍ତ୍ତି ସବୁକୁ ଭାଙ୍ଗି ଶାସକ ମାନେ ନିଜର ବିଜୟ ଘୋଷଣା କରୁଥିଲେ, ଯେତେବେଳେ ନାରୀର ଅପହରଣ ଓ ଧର୍ଷଣ ପରି ନିନ୍ଦିତ କାର୍ଯ୍ୟ ଧର୍ମଭାବେ ବିବେଚିତ ହେଲା, ଯେତେବେଳେ ବ୍ରାହ୍ମଣ, ପଣ୍ଡିତ ଓ ସୁଜନମାନେ ଦୂରାଚାରୀ ଦ୍ୱାରା ବିନଷ୍ଟ ହେଲେ, ଯେତେବେଳେ ଗାଁକୁ ଗାଁ ଜନ ମନୁଷ୍ୟ ଶୂନ୍ୟ ହୋଇଗଲା, ପୁଣି ଯେତେବେଳ ଏ ଦେଶକୁ ରକ୍ଷା କରିବା ପାଇଁ କୌଣସି ଦେବ ଦେବୀ କ୍ଷମ ହେଲେ ନାହିଁ, ସେତେବେଳେ ଦେଶକୁ ରକ୍ଷା କରିବାର ଏକ ମାତ୍ର ଉପାୟ ରୂପେ କବିଙ୍କୁ ସାକ୍ଷାତ ଦର୍ଶନ ଦେଲେ ମହିଷମର୍ଦ୍ଦିନୀ ଚଣ୍ଡୀ ।

କବିଙ୍କର ମନେ ପଡିଲା, ମହିଷାସୁର ଉପାଖ୍ୟାନ । ସେତେବେଳେ ବି ଦେଶରେ ଏହିପରି ଏକ ସଙ୍କଟ କାଳ ଉପସ୍ଥିତ ହୋଇଥିଲା । ସବୁ ଦେବତା ମହିଷାସୁର ଦ୍ୱାରା ପରାଭୂତ ହୋଇଥିଲେ । ମହିଷାସୁରକୁ ବଧ କରିବା ପାଇଁ ଦୈତ୍ୟନିସୂଦନ ଶ୍ରୀ ବିଷ୍ଣୁ ନିଜର ଅକ୍ଷମତା ଘୋଷଣା କଲାପରେ ଦେବୀ ଦୁର୍ଗାଙ୍କର ଆବିର୍ଭାବ ହେଲା ।

ଏହି ଉପାଖ୍ୟାନ ସ୍ମରଣ କଲା ପରେ କବିଙ୍କ ମନରେ ଆସିଲା ନୂଆ ଜାଗରଣ । ସେତେବେଳେ ସେ ବୁଝିଲେ ନାରୀ ଦୁର୍ବଳା ନୁହେଁ । ସେମାନଙ୍କୁ 'ପାମରୀ, ଦୂରାଚାରୀ, ସ୍ତିରି ମାତ୍ର ଛାର' କହି ସେମାନଙ୍କ ଶକ୍ତିର ଅବମାନନା କରିବା ଠିକ୍ ନୁହେଁ । ନାରୀ ମାତାରୂପେ ମାନବ ସମାଜ ସୃଷ୍ଟିର କାରଣ ହୁଏ, ପୁଣି ଭାର୍ଯ୍ୟା ରୂପରେ ରତି ଦାନ କରି ପୁରୁଷକୁ ଆନନ୍ଦ ଦାନ କରେ ସତ, କିନ୍ତୁ ସେତିକିରେ ତା'ର କାର୍ଯ୍ୟ ଶେଷ ହୁଏ ନାହିଁ । ସେ ପୁଣି ଅନ୍ତକାଳରେ ହୁଏ କାଳିକା ଏବଂ ଅଗ୍ନି ରୂପରେ ମାନବ ସମାଜକୁ ପୋଡି ପାଉଁଶ କରିଦିଏ । ନାରୀଠାରେ ଏହିପରି ମହନୀୟ ଶକ୍ତି ଲୁକାୟିତ ଥିବା ବେଳେ, ସେ କେବଳ ପତିବ୍ରତା ବ୍ରତ ପାଳନ କରି, ପୁରୁଷର ମନୋହାରିଣୀ ସାଜି, ଅନ୍ୟ ଦ୍ୱାରା ଅପହୃତା, ଧର୍ଷିତା ଓ ଅତ୍ୟାଚାରିତା ହେବା ଠିକ୍ ନୁହେଁ । ନାରୀ ଜାତିକୁ ଜାଗ୍ରତ କରବା ଉଦ୍ଦେଶ୍ୟରେ ସେ **ଚଣ୍ଡୀ ପୁରାଣ**ର ବିଷୟବସ୍ତୁକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିଦେଲେ ।

ଏହି ପରିବର୍ତ୍ତନର ପ୍ରଥମ ଚରିତ୍ର ହେଲେ ଚଣ୍ଡୀ । 'ଦୁର୍ଗା ସପ୍ତଶତୀ'ରେ ସେ କୁମାରୀ

ଅଥଚ ଚଣ୍ଡୀପୁରାଣରେ ସେ ନିଜକୁ ବିବାହିତା ରୂପେ ପରିଚୟ ଦେଲେ । ବିବାହିତା ହେଲେ ବି ସ୍ୱାମୀର ଶଯ୍ୟାଶାୟିନୀ ହେବା ପାଇଁ ସେ ଚାହିଁ ନ ଥିଲେ । ଗୃହ ତ୍ୟାଗ କରି ନିର୍ଜନ ବନ ମଧ୍ୟରେ ରତ୍ନଗିରି ଶିଖର ଉପରେ, ବ୍ୟାଘ୍ର, ଭଲ୍ଲୁକ, ରାକ୍ଷସ, ପିଶାଚ ପ୍ରଭୃତିକୁ ଭ୍ରୂକ୍ଷେପ ନ କରି ସେ ମୋହିନୀ ରୂପରେ ଅପେକ୍ଷା କରି ରହିଥିଲେ ଶତ୍ରୁ ଦାନବ ବୀର ମହିଷାସୁରର ଆଗମନକୁ । ଦେବୀ 'ଦୁର୍ଗା ସପ୍ତଶତୀ'ର ଯୁଦ୍ଧ ଆହ୍ୱାନ ଏଥିରେ ନ ଥିଲା ।

କଥାର ଏହି ପରିବର୍ତ୍ତନ ମଧ୍ୟରୁ କବି ସାରଳା ଦାସଙ୍କ ଦୃଷ୍ଟିକୋଣକୁ ବିଚାର କରାଯାଇପାରେ । ଦୁର୍ଗା ଯେଉଁ ରୂପରେ ଚଣ୍ଡମୁଣ୍ଡକୁ ଆକୃଷ୍ଟ କରି ପାରିଥିଲେ ତାହା ଥିଲା, ତାଙ୍କର ମାନିନୀ ରୂପ, କାମିନୀ ବୟସ, ଦ୍ରୁହସିତ ବଦନ, ମଧୁର ବାକ୍ୟ ଓ 'କିଞ୍ଚିତ ପ୍ରକାରେ ଅବଲୋକନ ଦୃଷ୍ଟି' । ସାରଳା ଦାସଙ୍କ ମତରେ ଏହା ହିଁ ହେଲା ନାରୀର ଅମୋଘ ଅସ୍ତ୍ର ।

ସେଥିପାଇଁ ସେ ବାରମ୍ବାର କହିଲେ ନାରୀ ଜାତି ଦୁର୍ବଳା ନୁହେଁ । ମହିଷାସୁର ମୁଖରେ ସାରଳା ଦାସ ଏହି ମାରଣାସ୍ତ୍ରର ଉଲ୍ଲେଖକରି କହିଛନ୍ତି -

ବକ୍ର ନୟନେ ଚାହିଂଲେ ପର୍ବତ ଉଠଇ
ଅବଲୋକନେ ଚାହିଂଲେ ପାଷାଣ ଫୁଟଇ ।

ଏହି ମାରଣାସ୍ତ୍ରକୁ ପ୍ରୟୋଗ କରି ଛାୟା ଓ ମାୟା ବଧକଲେ ଚାମର ଓ ବେମାଳକୁ, ଦୁର୍ଗା ନିହତ କଲେ ଶୁମ୍ଭ ଓ ନିଶୁମ୍ଭକୁ, ନାରାୟଣୀ ନିଧନ କଲେ କାନ୍ତିମାଳାକୁ ଏବଂ ପରିଶେଷରେ ମହିଷାସୁରର ମର୍ଦ୍ଦନ ହେଲା ଚଣ୍ଡୀଙ୍କ ହସ୍ତରେ । ପ୍ରତ୍ୟେକ ଉପାଖ୍ୟାନ ବର୍ଣ୍ଣନା କଲାବେଳେ ସାରଳା ଦାସଙ୍କ ଉକ୍ତି ସବୁ ଅତ୍ୟନ୍ତ ପ୍ରଣୀଧାନ ଯୋଗ୍ୟ । ଚାମର ବେମାଳ ବଧବେଳେ କୁହାଯାଇଛି -

ବ୍ରହ୍ମାଣ୍ଡ ସାଧ୍ୟ କଲି ଯାହାର ବୁଦ୍ଧି ବଳେ
କିଞ୍ଚିତେ ନାଶ ଗଲେ ମୋହୋର ବୁଦ୍ଧିର ଅବଳେ । ପୃ-୧୪୨

ଶୁମ୍ଭ ନିଶୁମ୍ଭ ବଧ ବେଳେ କବିଙ୍କର ଉକ୍ତି ହେଉଛି -

ଅବଶେଷ କାଳ ଯେବେ ହୋଇବାକ ପ୍ରାଣୀ
କର୍ମଣି ଚାଲ ହସ୍ତେକ ମୃତ୍ୟୁଠାବ ନଜାଣି
ତ୍ରଇଲୋକ୍ୟରେ ଯେଉଁ ବୀରଙ୍କୁ ନାହିଁ ମୃତ୍ୟୁ
କାମଲୁବ୍‌ଧେ ବୀରେ ବୁଡାଇଲେ ହେତୁ । ପୃ-୧୩୬

ଯେବଣ ବିଦ୍ରୁଳାକ୍ଷ ଜିଣିଲା ଯମଦଣ୍ଡ
ଶୃଙ୍ଗାର ରସେ ସେ ହୋଇଲା ଖଣ୍ଡ ଖଣ୍ଡ । ପୃ -୧୫୨

କାନ୍ତିମାଳା ବଧ ବେଳେ କବି ବିରହୀ ପୁରୁଷର ଦୁର୍ଦ୍ଦଶା ବର୍ଣ୍ଣନା କରି ଲେଖିଛନ୍ତି-

ହେ ପଣ୍ଡିତ ଜନମାନେ ବିଚାର କର ଏହା
ପୁରୁଷ ବିରହିତା ନ କରଇ କାହା

ଯେତେ ପ୍ରାକର୍ମ ଥିଲେ ବୁଡ଼ଇ ମଦନ ଜଳେ ପଡିଲେ
ଦଉଡି ଲାଗି ଯେହ୍ନେ ଗମଇ ବଇଲେ । ପୃ-୧୫୮

ସଂସ୍କୃତ ଗ୍ରନ୍ଥରେ ନ ଥିବା ଏହି ସବୁ ପ୍ରସଙ୍ଗକୁ ଦେଖି ଏ ବିଷୟରେ ବିଭିନ୍ନ ପ୍ରକାର ମତ ଦିଆଯାଇ ପାରେ । ବୀରରସପ୍ରଧାନ ଗ୍ରନ୍ଥରେ ଶୃଙ୍ଗାରିକତାର ଅନୁପ୍ରବେଶ କରାଇ ପାଠକକୁ ବିଭିନ୍ନ ରସରେ ପ୍ଲାବିତ କରିବା ପାଇଁ ଏହା ହୁଏତ ଥିଲା ଏକ କୌଶଳ । ପୁଣି ଏହା ହେଲା ସହଜିୟା ପ୍ରଭାବ । ସମାଜରେ କାମ ଭାବନା ପ୍ରବଳ ହେଲେ, ସମାଜ ଯେ ଦୁର୍ବଳ ହୋଇଯାଏ, ଏହା ଥିଲା ସାରଳା ଦାସଙ୍କର ଦୃଢ ମତ । ସେ କହୁଥିଲେ ମଣିଷ ଜନ୍ମ ହେବାକ୍ଷଣି, କ୍ଷୁଧା କାମ ଓ ସଂଗ୍ରାମ ମନୋବୃତ୍ତିର ଦାସ ହୋଇଯାଏ । ଏଥିରେ ପୁଣି ସବୁଠାରୁ ବଳବାନ ହେଉଛି, ମନୁଷ୍ୟର କାମ ପ୍ରବୃତ୍ତି । ଏହାକୁ ଦମନ କରିବା ସହଜ ନୁହେଁ । ସେଥିପାଇଁ ସେ ତାଙ୍କ **ମହାଭାରତ**ରେ ବହୁ ଉପାଖ୍ୟାନର ଅବତାରଣା କରି କାମ ବାସନାଠାରୁ ଦୂରେଇ ରହିବା ପାଇଁ ପାଠକମାନଙ୍କୁ ଅନୁରୋଧ କରିଛନ୍ତି । ତାଙ୍କ ମତରେ ସାଧାରଣ ମନୁଷ୍ୟ ତ ଦୂରର କଥା, ବ୍ରହ୍ମା, ଶିବ, ବିଷ୍ଣୁ ଓ ଇନ୍ଦ୍ରଙ୍କ ପରି ଦେବତା ମଧ୍ୟ କାମ ପ୍ରଭାବରୁ ନିଜକୁ ମୁକ୍ତ କରି ପାରି ନାହାନ୍ତି । ସାରଳା ଦାସଙ୍କ ଏହି ସ୍ୱର ମଧ୍ୟ ଏଥିରେ ଶୁଣିବାକୁ ମିଳିଥାଏ । ସେତେବେଳେ ସହଜିୟା ବୈଷ୍ଣବମାନଙ୍କ ପ୍ରଚାର ଫଳରେ ଦେଶରେ ଯେଉଁ ଶୃଙ୍ଗାରିକ ସାଧନାର ପରିବେଶ ସୃଷ୍ଟି ହୋଇଥିଲା, ସେଥିରେ ଦେଶ ଯେ ଦୁର୍ବଳ ହୋଇ ପଡିଥିଲା , ଏହା ସାରଳା ଦାସ ଭଲକରି ବୁଝିଥିଲେ ।

ଏହା ସତ୍ତ୍ୱେ ସମାଜରେ ନାରୀ ଜାତିର ଏକ ସ୍ୱତନ୍ତ୍ର ଭୂମିକା ଥିଲା ଏବଂ ସ୍ତ୍ରୀମାନଙ୍କୁ ହୀନ, ପାମେରୀ କହି ଦୂରେଇ ଦେଲେ ଦେଶ ଯେ ଉଦ୍ଧାର ହୋଇଯିବ ତାହାର ବି କୌଣସି ସୂଚନା ନଥିଲା । ତେଣୁ ସାରଳା ଦାସ କହିଲେ ପୁରୁଷ ପରି ନାରୀର ବି ସ୍ୱତନ୍ତ୍ର ଶକ୍ତି ଅଛି । ଚଣ୍ଡୀ ଅବତାରରେ ସେ ସବୁ ଦେବତା ଏପରିକି ବ୍ରହ୍ମା, ବିଷ୍ଣୁ ମହେଶ୍ୱରଙ୍କଠାରୁ ମଧ୍ୟ ଶକ୍ତିଶାଳୀ ହୋଇ ପାରିଥିଲେ । **ଚଣ୍ଡୀ ପୁରାଣ**ରେ ଚଣ୍ଡୀଙ୍କର ମହିମା ଗାନ କଲାବେଳେ କବି ପରୋକ୍ଷରେ ସବୁ ନାରୀ ଜାତିକୁ ସେମାନଙ୍କ ଶକ୍ତି ସମ୍ବନ୍ଧରେ ସଚେତନ କରିଦେଲେ । ସାରଳା ଦାସଙ୍କର ଏହି ଚେତାବନୀକୁ କେବଳ ପୁରାଣର କଥା କହି ଉଡାଇ ଦେଲେ, କବିଙ୍କ ମର୍ମବାଣୀକୁ ଜାଣିହୁଏ ନାହିଁ । ମୁସଲମାନଙ୍କ ବର୍ବରୋଚିତ ଆକ୍ରମଣ ବିରୁଦ୍ଧରେ ସଙ୍ଗଠିତ ହୋଇ ପୁରୁଷର ବିନା ସାହାଯ୍ୟରେ ନିଜକୁ ରକ୍ଷା କରିବା ପଇଁ ଏହାଥିଲା କବି ସାରଳା ଦାସଙ୍କର ଯୁଗୋଚିତ ଆହ୍ୱାନ ।

ମୁସଲମାନଙ୍କ ବର୍ବରୋଚିତ ଆକ୍ରମଣ ଫଳରେ ଦେଶର ଚାରିଆଡେ ଏକ ନୈରାଶ୍ୟ ଜନକ ପରିସ୍ଥିତି ସୃଷ୍ଟି ହୋଇଥିଲା । ପୁରୁଷମାନେ ନାରୀମାନଙ୍କର ରକ୍ଷା କରିପାରୁ ନ ଥିଲେ । ହିନ୍ଦୁ ଜାତିର ରକ୍ଷକ ଦେବ ଓ ଦେବୀଙ୍କର ଦୁର୍ଦ୍ଦଶା ଆହୁରି ଶୋଚନୀୟ ଥିଲା । ମନ୍ଦିର ପରେ ମନ୍ଦିର ଧ୍ୱଂସ ପାଉଥିଲା । ଦେବମୂର୍ତ୍ତି ସବୁ ମୁସଲମାନ ଶାସକଙ୍କ ଦୟାର ପାତ୍ର ହୋଇଥିଲେ ।

ଏପରି ଏକ ବିପଦ କାଳରେ ସାରଳା ଦାସ କେବଳ ଯେ ନାରୀ ସମାଜକୁ ଜାଗ୍ରତ କରିବାକୁ ଚାହିଁଥିଲେ, ତାହା ନୁହେଁ ସମସ୍ତ ହିନ୍ଦୁ ଜାତିକୁ ସାନ୍ତ୍ୱନା ଦେଇ ସେ କହିଲେ -

ଆହୋ ସର୍ବଦା ପ୍ରାଣୀଙ୍କର ନୋହଇ ସମ୍ପଦ
ଯେ ବଢ଼ଇ ସେ ଛିଡଇ ପଡଇ ପରମାଦ ।

ଅପେକ୍ଷା କର । ମା' ମଙ୍ଗଳା ହିଁ ଉଦ୍ଧାର କରିବେ ଏହି ଦୁର୍ଦ୍ଦଶାଗ୍ରସ୍ତ ଜାତିକୁ ।

## ସାମାଜିକ ଚେତନା :

ସାରଳା ଦାସ ଥିଲେ ସତ୍ୟଦ୍ରଷ୍ଟା କବି । ନିଜର ଐହିକ ଐଶ୍ୱର୍ଯ୍ୟ ବୃଦ୍ଧି ପାଇଁ ନୁହେଁ ଜଗତର ମଙ୍ଗଳ ପାଇଁ ସେ ଲେଖିଥିଲେ, ତାଙ୍କ ଅପୂର୍ବ **ଚଣ୍ଡୀ ପୁରାଣ** । ତାଙ୍କ ସାଧନାର ଆଦର୍ଶଥିଲା, 'ବହୁଜନ ହିତାୟ ଜଗଦ୍ଧିତାୟ ଚ' । ଭାରତର ପୂର୍ବବର୍ତ୍ତୀ ମନିଷୀମାନଙ୍କୁ ଅନୁସରଣ କରି, ସାରଳାଦାସ ପୁରାଣ ପରେ ପୁରାଣ ରଚନା କରୁଥିଲା ବେଳେ ଦେଶରେ ସୃଷ୍ଟି ହୋଇଥିବା ନୂତନ ସଙ୍କଟ, ତାଙ୍କୁ ବାରମ୍ବାର ବିବ୍ରତ କରିଥିଲା । ମୁସଲମାନଙ୍କ ଆକ୍ରମଣ ଓ ଅତ୍ୟାଚାର ଫଳରେ ଦେଶ ଯେ ନଷ୍ଟ ଭ୍ରଷ୍ଟ ହେଉଥିଲା, ତାହା ସେ ଅକ୍ଳେଶରେ ହୃଦୟଙ୍ଗମ କରିପାରିଥିଲେ । କିନ୍ତୁ ଦେଶର ଏହି ଅଧଃପତନ ପାଇଁ କେବଳ ଯେ ମୁସଲମାନ ଜାତି ଦାୟୀ ନ ଥିଲା, ଏହା ମଧ୍ୟ ସେ ଜାଣିଥିଲେ ।

ସେ ଯେତେବେଳେ ଆତ୍ମନିରୀକ୍ଷଣ କରିବା ପାଇଁ ନିଜ ଦେଶକୁ ଦୃଷ୍ଟି ଦେଲେ, ସେତେବେଳେ ସେ ଦେଖିଲେ ରାଜା ଓ ରାଜା ମଧ୍ୟରେ ବିରୋଧ, ପ୍ରଜା ଓ ପ୍ରଜା ମଧ୍ୟରେ ସଂଘର୍ଷ, ଜାତି ଓ ଜାତି ମଧ୍ୟରେ ବିଭେଦ, ବିଭିନ୍ନ ଧର୍ମ ସଂପ୍ରଦାୟ ମଧ୍ୟରେ ବିଭିନ୍ନ ପ୍ରକାର ମତର ପ୍ରତିଷ୍ଠା । ସବୁଠାରୁ ବଳି ବଡ ସମସ୍ୟା ଥିଲା, ହିନ୍ଦୁ ଜାତି ମଧ୍ୟରେ ଥିବା ଅନ୍ତର୍ବିରୋଧ । ସେମାନେ ଅନ୍ତ୍ୟଜମାନଙ୍କୁ ଘୃଣା କରୁଥିଲେ ଓ ନାରୀମାନଙ୍କୁ ସେମାନଙ୍କ ଗୌରବରୁ ବଞ୍ଚିତ କରିଥିଲେ । ସାରଳା ଦେବୀଙ୍କର ସୁତ ସାରଳା ଦାସ ଯେତେବେଳେ ଦେବୀଙ୍କ ଆଶୀର୍ବାଦ ଘେନି ଲେଖନୀ ଧାରଣ କଲେ, ସେତେବେଳେ ସେ ସମାଜର ଏହି ଦୁର୍ବଳତାକୁ ଦୂର କରି ହିନ୍ଦୁମାନଙ୍କ ସଙ୍ଗଠିତ କରିବା ପାଇଁ ଦୃଢ ସଂକଳ୍ପ ହେଲେ । କେବଳ ସାରଳା ଦାସ ନୁହନ୍ତି, ସେ ସମୟର ପ୍ରାୟ ପ୍ରତ୍ୟେକ ଚିନ୍ତାନାୟକଙ୍କ ବାଣୀରେ ଅସ୍ପୃଶ୍ୟତା ନିବାରଣର ସ୍ୱର ପ୍ରକଟିତ ହେଉଥିଲା । ସେମାନେ ସମାଜର ସବୁ ଜାତିର ଲୋକଙ୍କୁ ସମାନ ଅଧିକାର ଦେବାକୁ ଚାହୁଁଥିଲେ । ବୁଦ୍ଧଦେବଙ୍କ ସମୟରୁ ଏହି ମହାନ ବାଣୀ ଦେଶରେ ପ୍ରଚାରିତ ହେଉଥିଲା । ତ୍ରୟୋଦଶ ଶତାବ୍ଦୀର ମହାନ ସାଧକ ସ୍ୱାମୀ ରାମାନନ୍ଦ ଜାତିରେ ବ୍ରାହ୍ମଣ ହେଲେ ବି, ନିଜର ଶିଷ୍ୟଭାବେ ମୋଚି, ଚମାର ଓ ମୁସଲମାନ ଜାତିର ଲୋକଙ୍କୁ ଗ୍ରହଣ କରିଥିଲେ । ଶୂଦ୍ର ଜାତିର ଲୋକେ ଧର୍ମ ପ୍ରଚାରକ ଭାବେ ସମାଜରେ ପ୍ରତିଷ୍ଠିତ ହୋଇଥିଲେ ଏବଂ ନିଜକୁ ବ୍ରହ୍ମଜ୍ଞାନୀ ଭାବେ ବ୍ରାହ୍ମଣଙ୍କଠାରୁ ଶ୍ରେଷ୍ଠ ବୋଲି କହୁଥିଲେ । ଏହିପରି ଏକ ସମୟରେ ସାରଳା ଦାସ ଜନ୍ମଗ୍ରହଣ କରିଥିବାରୁ ତାଙ୍କ ଗ୍ରନ୍ଥ ରାଜିରେ ବିଶେଷ କରି **ଚଣ୍ଡୀ ପୁରାଣ**ରେ ଅସ୍ପୃଶ୍ୟତା

ନିବାରଣ ସ୍ୱର ଶୁଣିବାକୁ ମିଳେ, ଅରୁନ୍ଧତୀ ବିବାହ ଉପାଖ୍ୟାନରେ ।

ଅରୁନ୍ଧତୀ ଉପାଖ୍ୟାନ ମାର୍କଣ୍ଡେୟ ପୁରାଣରୁ ଗୃହୀତ । ସେଥିରେ ଅରୁନ୍ଧତୀ ଥିଲେ, ମେଧାତିଥି ଋଷିଙ୍କର କନ୍ୟା । ସେ ଯଜ୍ଞାନଳରୁ ଜାତ ହୋଇଥିଲେ । ଯୁବତୀ ହେବାପରେ ସେ ଦିନେ ତପସ୍ୟାରତ ବଶିଷ୍ଠଙ୍କୁ ଦେଖି ତାଙ୍କ ପ୍ରତି ଆସକ୍ତ ହେଲେ । ବଶିଷ୍ଠ ମଧ ଅରୁନ୍ଧତୀଙ୍କ ପାଇଁ ତପସ୍ୟା କରୁଥିଲେ । ଫଳରେ ଉଭୟଙ୍କର ବିବାହ ସମାହିତ ହୋଇଥିଲା ।

ସାରଳା ଦାସଙ୍କ **ଚଣ୍ଡୀ ପୁରାଣ**ରେ ଅରୁନ୍ଧତୀ ହେଲେ ଅମ୍ବିକା ଚାଣ୍ଡାଳର କନ୍ୟା । ଅମ୍ବିକା ଜାତିରେ ଚାଣ୍ଡାଳ ହେଲେ ବି, ସେ ଥିଲା ବହୁ ଧାନର ମାଲିକ । ନଘୋଷଙ୍କ ରାଜ୍ୟରେ ଯେତେବେଳେ ବର୍ଷ ବର୍ଷ ଧରି ଅପାଳକ ହେଲା ଓ ରାଜାଙ୍କ ଭଣ୍ଡାର ଶୂନ୍ୟ ହୋଇଗଲା, ଲୋକେ ଖାଦ୍ୟାଭାବରୁ ହାହାକାର କରିବାକୁ ଲାଗିଲେ, ସେତେବେଳ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ନାରଦ ରାଜ୍ୟପରେ ରାଜ୍ୟ ବୁଲି ଅମ୍ବିକା ଚାଣ୍ଡାଳ ଘରେ ଧାନ ଥିବା ଠାବ କଲେ । ଅମ୍ବିକା ଚାଣ୍ଡାଳ ମଧ ଧାନ ଦେବା ପାଇଁ ଅମଙ୍ଗ ନଥିଲା, କିନ୍ତୁ ଗୋଟିଏ ସର୍ତ୍ତରେ । ଅରୁନ୍ଧତୀଙ୍କ ବିବାହରେ ଏ ଧାନ ହେବ ଯଉତୁକ । ନାରଦ ଏକଥା ପ୍ରଥମେ ନଘୋଷଙ୍କୁ କହିଥିଲେ । ନଘୋଷ ଯାଇ ଅମ୍ବିକା ଚାଣ୍ଡାଳକୁ ଏଥିପାଇଁ ଅନୁରୋଧ କଲେ । କିନ୍ତୁ ଅମ୍ବିକା ଚାଣ୍ଡାଳର ସର୍ତ୍ତ ଶୁଣି ସେ ଫେରି ଆସିଲେ । ପରିଶେଷରେ ବ୍ରହ୍ମାଙ୍କ ଆଦେଶରେ ବଶିଷ୍ଠ ଯାଇ ଅରୁନ୍ଧତୀଙ୍କୁ ବିବାହ କଲେ ଏବଂ ଧାନ ସବୁକୁ ଯଉତୁକ ରୂପେ ଗ୍ରହଣ କଲେ । ସୃଷ୍ଟି ରକ୍ଷା ହେଲା ।

ଏହି ପ୍ରସଙ୍ଗରେ ସାରଳା ଦାସଙ୍କ ଉକ୍ତି ସବୁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ସଙ୍କଟ କାଳରେ ଦେଶକୁ ରକ୍ଷା କରିବାକୁ ହେଲେ ବ୍ରାହ୍ମଣ ଓ ଚାଣ୍ଡାଳର ଜାତିଗତ ଭେଦକୁ ଭୁଲି ଯିବାକୁ ହୁଏ । ବଶିଷ୍ଠ ହେଲେ ଏହାର ଆଦର୍ଶ । ସେ ଚାଣ୍ଡାଳ କନ୍ୟା ଅରୁନ୍ଧତୀକୁ ବିବାହ କରିଥିଲେ ବି କବି କହିଲେ -

> ବହୁତ ଧ୍ୱନି ଉପୁଜିଲା ମହାତ୍ମା ଗୁଣକଲା
> ଚାଣ୍ଡାଳ କୁଳ ସେ ଦୋଷ ନ ଲାଗିଲା ପ. ସଂ-୧୭୪୭

କେବଳ ସେତିକି ନୁହେଁ ଅରୁନ୍ଧତୀ ହେଲେ -

> ତେଷଠି ଅପର୍ଣ୍ଣା ତୁଲେ ଯେ ଚଉଷଠି ଅପର୍ଣ୍ଣା
> ସେ ବ୍ରହ୍ମ ଦେବସ୍ତିରୀ ପ୍ରଳୟ ଅନ୍ତ ସେହ୍ନା । ପ. ସଂ - ୧୭୫୧

ଚାଣ୍ଡାଳ କନ୍ୟାକୁ ବ୍ରହ୍ମା ଓ ଦେବ ସ୍ତ୍ରୀ ଆସନକୁ ଉନ୍ନତି କଲାବେଳେ, କବି ପ୍ରସଙ୍ଗ କ୍ରମେ ଆଉ କେତେକ ସାମାଜିକ ତତ୍ତ୍ୱ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକୃଷ୍ଟ କରିଥିଲେ । କବିଙ୍କ ମତରେ ଦେଶର ସଙ୍କଟ କାଳରେ ଯେତେବେଳେ ଭୋକିଲାକୁ ଅନ୍ନ ଗ୍ରାସେ ଦେଇ ବାସ୍ତବି ମାତ ସୁବର୍ଣ୍ଣ ଦାନର ଫଳ ମିଳେ, ସେ ସମୟରେ ଏପରି ବିବାହ ଧର୍ମ ଆଚାରରେ ପରିଣତ ହୁଏ ।

କବି ପୁରାଣ ଶୈଳୀରେ ବଶିଷ୍ଠ ଓ ଅରୁନ୍ଧତୀ ବିବାହକୁ ଶାସ୍ତ୍ର ସମ୍ମତ ବିବାହରେ ପରିଣତ କରିଥିଲେ ହେଁ, ଏହା କେବଳ ଗୋଟିଏ ଯୁଗର କଥା ନୁହେଁ । ସବୁ ଯୁଗରେ ସବୁ କାଳରେ ଦେଶକୁ ସଙ୍କଟରୁ ଉଦ୍ଧାର କରିବାକୁ ହେଲେ ଦେଶ ତଥା ସମାଜର କଳଙ୍କ, ବ୍ୟକ୍ତି ତଥା ଜାତି ଭେଦକୁ ଭୁଲିଯିବା ଆବଶ୍ୟକ ହୁଏ । ମୁସଲମାନଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ, ଯେତେବେଳେ ହଜାର ହଜାର ସଂଖ୍ୟାରେ ନିମ୍ନବର୍ଗୀୟ ହିନ୍ଦୁମାନେ ଧର୍ମାନ୍ତର ଗ୍ରହଣ କରୁଥିଲେ ସେତେବେଳେ ବଶିଷ୍ଠ ଓ ଅରୁନ୍ଧତୀଙ୍କ ଆଦର୍ଶକୁ ଦେଶ ସମ୍ମୁଖରେ ଉପସ୍ଥାପିତ କରିବା ଥିଲା, ସମାଜ ପତି ସାରଳା ଦାସଙ୍କର କାମ । ଦେଶର ଦୁର୍ଗତି ବେଳେ କେବଳ ଚାଣ୍ଡାଳର କନ୍ୟା ନୁହେଁ, ଚାଣ୍ଡାଳର ଧାନ ମଧ୍ୟ ପବିତ୍ର ହୋଇଗଲା । ସେତେବେଳେ କେଉଁ ଖତରେ ଏତେ ଧାନ ଉତ୍ପନ୍ନ ହେଲା, ସେକଥା ମଧ କେହି ବିଚାରକୁ ନେଲେ ନାହିଁ । ବେଶୀ ଧାନ ଉତ୍ପନ୍ନ କରିବା ହିଁ ହେଲା ଜୀବନର ମୂଳ ବ୍ରତ ।

ଦେଶରେ ଚାଣ୍ଡାଳମାନଙ୍କ ପରି ନାରୀମାନେ ମଧ ଅବହେଳିତ ଥିଲେ । **ଚଣ୍ଡୀ ପୁରାଣ**ର ପ୍ରସଙ୍ଗ ଅନୁଯାୟୀ ନାରୀମାନେ ଦେବୀ ରୂପରେ ଯୁଦ୍ଧକ୍ଷେତ୍ରରେ ପୁରୁଷ ମାନଙ୍କ ସହ ସଂଗ୍ରାମ କରୁଥିଲେ ହେଁ, ଏହା କେବଳ କଥାର ଏକ ଅଂଶ ଥିଲା । କବିଙ୍କର ପ୍ରକୃତ ଲକ୍ଷ୍ୟ ଏଥିରେ ନିହିତ ନ ଥିଲା । କବି ସେଥିପାଇଁ ଦେବୀମାନଙ୍କ ମାହାତ୍ମ୍ୟ ଓ ନାରୀ ମହିମାକୁ ସ୍ୱତନ୍ତ୍ର କରି ଦେଖାଇଲେ । ଦେବୀଙ୍କ ମହାତ୍ମ୍ୟ ପ୍ରଚାର କଲାବେଳେ ସେ କହିଲେ-

କ୍ଷଣକେ ମୋହନୀ ସେ କ୍ଷଣକେ କାମସେଣା
ମୋହ ଫାଶ ଲଗାଇ ସେ କରନ୍ତି ଅତି ବଣା ।
ଅସୁର ବଳ ସଇନି ସେ ନାନା ଅବସ୍ଥା
କହିଲେ ନ ସରଇ ସେ ଦେବୀଙ୍କର କଥା । ପ.ସଂ -୨୪୭୭-୭୮

ଅନ୍ୟ ସ୍ଥଳରେ ମଧ ସେହିକଥା -

ହୋ ବୁଧଜନେ କ୍ଷଣେ କ୍ଷଣକେ ସେ ଶତେ ରୂପ ଧରନ୍ତି ଯେବଣ ଦେବୀ
ମୁହିଂ ତାହା କେତେ ଲେଖନ କରିବି । ପ. ସଂ -୨୬୨୪

ଦେବୀମାନଙ୍କୁ ସମାଜରେ ବିଭିନ୍ନ ଭାବେ ସମ୍ମାନ ପ୍ରଦର୍ଶିତ ହେଉଥିଲେ ହେଁ, ନାରୀମାନଙ୍କୁ ପାମରୀ, ଦୁରାନ୍ତରୀ, ସ୍ତିରୀ ମାତ୍ର ଛାର, ମୋଢ଼ୀ ଓ ନାଗରୀ କହି ଲୋକେ ହୀନ ଦୃଷ୍ଟିରେ ଦେଖୁଥିଲେ । ନାରୀମାନଙ୍କୁ 'ସ୍ତିରି ଲିଙ୍ଗ' କହିବା ଭିତରେ ମଧ ନାରୀ ଜାତି ପ୍ରତି ସେହି ଅନାଦରତା ପ୍ରତିଫଳିତ ହୁଏ । ଅନ୍ଧକ ମନ୍ତ୍ରୀ ମହିଷାସୁରକୁ ପରାମର୍ଶ ଦେଲାବେଳେ ସେଥିପାଇଁ କହିଥିଲା -

ଅନ୍ଧେକ ବୋଇଲା ହୋ ତୁ କହିଲେ ନ ଜାଣି
ସ୍ତିରୀ ଲିଙ୍ଗ ବୋଲି ସେ କହୁ ପୁଣି ପୁଣି । ପ. ସଂ - ୩୮୨୮

ପୁରୁଷମାନେ ଅତ୍ୟନ୍ତ ମତ୍ତ ଗର୍ବରେ ସ୍ତ୍ରୀମାନଙ୍କୁ ହୀନ ଓ ଛାର କହୁଥିଲେ ହେଁ,

ସେମାନେ ପ୍ରକୃତରେ ଅବହେଳାର ପାତ୍ର ନୁହନ୍ତି । ନାରୀ ଜାତିକୁ ଘୃଣାକୁ କରୁଥିବା ଅଜ୍ଞାନୀ ଓ ଦୁଷ୍ଟ ଲୋକଙ୍କୁ ସତର୍କ କରି ସେଥିପାଇଁ ଚଣ୍ଡୀ କହିଛନ୍ତି -

ନାରାୟଣୀ ବୋଇଲେ ଶୁଣ ହେ ଦେବଅରି
ଆମ୍ଭେ ରେ ସ୍ତିରୀ ଉତ୍ତମି ନୋହୁରେ ପାମେରୀ ।' ପ.ସଂ-୨୮୩୭

ସାରଳା ଦାସ ଯେ କେବଳ ନାରୀମାନଙ୍କର ମହିମା ଗାନ କରିଥିଲେ, ତାହା ନୁହେଁ ଭାରତରେ ରଚିତ ସବୁ ପୁରାଣରେ ନାରୀମାନଙ୍କ ପାତିବ୍ରତ୍ୟ ଓ ନାରୀ ପୁରୁଷର ସମାନାଧିକାର ପ୍ରଚାରିତ ହୋଇଥିଲା । ଲୋପାମୁଦ୍ରା, ଅରୁନ୍ଧତୀ, ସାବିତ୍ରୀ, ଶାଣ୍ଡିଲ୍ୟା, ସତୀ, ଲକ୍ଷ୍ମୀ ପ୍ରଭୃତି ନାରୀ ହେଲେ ହିନ୍ଦୁ ସମାଜର ଭୂଷଣ । ଏକମାତ୍ର ପୁରାଣ ହିଁ ଗାର୍ଗୀ, ମୈତ୍ରୀ ପ୍ରଭୃତି ଉପନିଷଦୀୟ ଯୁଗର ନାରୀମାନଙ୍କୁ ସ୍ୱୀକୃତି ଦେଇ ନାରୀ ପୁରୁଷର ସମାନଧିକାରର ଆଦର୍ଶକୁ ପ୍ରଚାର କରିଥିଲା । ସାରଳା ଦାସ ନାରୀମାନଙ୍କ ଗୁଣ ଓ ମହିମାକୁ କେବଳ ଆଦର୍ଶ ରୂପେ ନ ରଖି କର୍ମ ଜଗତରେ ସେମାନଙ୍କୁ ପ୍ରତିଷ୍ଠିତ କରିଥିଲେ ।

ପୁରାଣ ସମ୍ବନ୍ଧରେ ମତ ଦେଇ ସ୍ୱାମୀ ବିବେକାନନ୍ଦ କହିଥିଲେ, ''ଆଜିକାଲିର ବିଶୁଦ୍ଧ ପ୍ରଣାଳୀବଦ୍ଧ ଗଣିତ ପରି ସଠିକ ସୁସଂଯତ ଭାଷା ଆଉ ପ୍ରାଚୀନ ଲୋକଙ୍କ ଭାଷା ମଧ୍ୟରେ ପ୍ରଭେଦ କେବଳ ମାତ୍ରାର ଉଚ୍ଚତା-ନିମ୍ନତା । ଏ ସବୁ ଗଳ୍ପର ଅନ୍ତରାଳରେ ଏକ ମହତ ସତ୍ୟ ବିଦ୍ୟମାନ ଏବଂ ପୂର୍ବ ପୁରୁଷମାନେ ଏହି ସତ୍ୟକୁ ପ୍ରକାଶ କରିବାକୁ ଚେଷ୍ଟା କରୁଥିଲେ । ଅନେକ ସମୟରେ ଏହି ସବୁ ପ୍ରାଚୀନ ଗଳ୍ପ ମଧ୍ୟରେ ମହାମୂଲ୍ୟ ସତ୍ୟ ନିହିତ ଥାଏ ଏବଂ ଦୁଃଖର ସହିତ କହିବାକୁ ପଡୁଛି, ଆଧୁନିକ ବିଦ୍ୱାନମାନଙ୍କ ସୁନ୍ଦର ମାର୍ଜିତ ଭାଷା ମଧ୍ୟରେ ଅନେକ ସମୟରେ କେବଳ ଅସାର ଜିନିଷ ମିଳିଥାଏ । ଅତଏବ ପୌରାଣିକ କାହାଣୀ ଦ୍ୱାରା ଆବୃତ କହି ଏବଂ ଆଧୁନିକ ଯୁଗର ଅମୁକ ମହାଶୟ କି ସମୁକ ମହାଶୟର ମନକୁ ପାଇଲା ନାହିଁ ବୋଲି, ସବୁ ପୁରୁଣା ଜିନିଷକୁ ଫିଙ୍ଗି ଦେବା ଠିକ୍ ନୁହେଁ ।''

ବିବେକାନନ୍ଦଙ୍କ ବାଣୀରେ କେତୋଟି କଥା ବିଶେଷ ଭାବେ ଲକ୍ଷଣୀୟ । ପୁରାଣ ମାପିଚୁପି କଥା କୁହେ ନାହିଁ ପୁଣି ଯାହା କୁହେ ସ୍ପଷ୍ଟ ଭାବେ ନ କହି ଆବରଣ ଦେଇ କୁହେ । ଏହା ସତ୍ତ୍ୱେ ରବୀନ୍ଦ୍ରନାଥଙ୍କ ଭାଷାରେ ଏଥିରେ ଅଛି, ପ୍ରାଚୀନ ଯୁଗର ଇତିହାସ ଓ ଆଦର୍ଶ ।

ସାରଳା ଦାସଙ୍କ **ଚଣ୍ଡୀପୁରାଣରୁ** ଏହିପରି ଗୋଟିଏ କଥାର ଉଦାହରଣ ଦିଆଯାଇପାରେ । କଥାଟି ହେଲା, ଦୁର୍ଗାଙ୍କ ସମ୍ମୁଖରେ ପୃଥିବୀ ଦେବୀଙ୍କର ଦୁଃଖ ନିବେଦନ । ପୃଥିବୀ ହେଲା ସଜ୍ଜନ ଓ ଦୁର୍ଜନଙ୍କ ଲୀଳା ସ୍ଥଳୀ । ଦୁର୍ଜନମାନଙ୍କ ପାଦ ଭାରାରେ ଯେତେବେଳେ ପୃଥିବୀ ଭାରାକ୍ରାନ୍ତ ହୁଏ ସେତେବେଳେ ପୃଥିବୀର ବିକାର ଜାତ ହେବା ସଙ୍ଗେ ସଙ୍ଗେ ଏହା ଉପରେ ବାସ କରୁଥିବା ସମସ୍ତ ପ୍ରାଣୀଙ୍କର ଅଣହିତ ହୁଏ । ଦେଶରେ ରୋଗ, ପୀଡା ବୃଦ୍ଧିପାଏ । ଲୋକମାନେ ବ୍ୟାଧିଗ୍ରସ୍ତ ହୋଇ ଅଳ୍ପ ଦିନେ ମୃତ୍ୟୁ ବରଣ କରନ୍ତି । କେବଳ ସେତିକି ନୁହେଁ, ପଦ, ମନ୍ତ୍ର, ଔଷଧି କାଟେ ନାହିଁ । ଖାଇବାକୁ ଇଚ୍ଛା ହୁଏ ନାହିଁ । ବନ୍ଧୁ

ବାନ୍ଧବଙ୍କ ଠାରୁ ସ୍ନେହ କମିଯାଏ । ଶାସ୍ତ୍ର, ସହିଂତା ପାଠରେ ମନ ଲାଗେ ନାହିଁ । ଯେତେବେଳେ ଦେଶରେ ଏହିପରି ଏକ ଦୁର୍ଦ୍ଦିନ ଆସେ, ସେତେବେଳେ ଲୋକେ ଭଲମନ୍ଦ ବିଚାର ନ କରି, ନିଜ ନିଜ ମଧରେ ହଣାହଣି ହୋଇ ମରନ୍ତି । ରୋଗ ଓ ପ୍ରତିକାର ପାଇଁ ମେଷ, ଛାଗଳ ବଳି ଦିଅନ୍ତି । ସେହି ସବୁ ରକ୍ତ ପୃଥିବୀ ଉପରେ ପତିତ ହେଲେ, ପୃଥିବୀ ଶାନ୍ତି ଲାଭ କରେ । ଲୋକେ ସୁଖରେ ରହନ୍ତି । ସାରଳା ଦାସଙ୍କ ଏହି ବର୍ଣ୍ଣନା ଆପାତତଃ ସମାଜରେ ପ୍ରଚଳିତ ଥିବା ବଳି ପ୍ରଥାର ସପକ୍ଷରେ ପ୍ରଦତ୍ତ ଏକ ଭାଷଣ ପରି ଜଣାଯାଉଥିଲେ ହେଁ, ଏହାଥିଲା ଅସୁରଙ୍କ ବଧ ପାଇଁ ପୃଥିବୀ ଦେବୀଙ୍କ ନିବେଦନ ।

ଅସୁରମାନେ ବ୍ରହ୍ମାଙ୍କଠାରୁ ଅମର ବର ପାଇଥିଲେ । ଫଳରେ ଦେଶରୁ ଜରା, ରୋଗ, ପୀଡା ଲୋପ ପାଇଗଲା । ଆୟୁ ବୃଦ୍ଧି ପାଇବା ଫଳରେ ସେମାନଙ୍କ ପଦ ଭାରରେ ପୃଥିବୀ ପ୍ରପୀଡିତ ହେଲା । ଏହାର ନିରାକରଣ ଏକମାତ୍ର ଉପାୟ ହେଲା ଅସୁର କୁଳର ବିନାଶ ।

ସାରଳା ଦାସ ଅସୁର କହିଲେ ମୁସଲମାନଙ୍କୁ ହିଁ ବୁଝୁଥିଲେ । ପୁରାଣର ବର୍ଣ୍ଣନାର ଭିତରେ ତାଙ୍କ ସମୟର ଇତିହାସ ଲୁକ୍‌କାୟିତ ଥିଲା । ଯଦି କୁହାଯାଏ ଦେଶରେ ଅତ୍ୟାଚାର ଓ ଲୁଣ୍ଠନ ବୃଦ୍ଧି ପାଇବା ଫଳରେ ସାଧାରଣ ଲୋକେ ଭଲ କରି ଗଣ୍ଡେ ଖାଇବାକୁ ପାଇ ନ ଥିଲେ । ଦେଶରୁ ସୁଖ ଓ ଶାନ୍ତି ଲୋପ ପାଇ ଯାଇଥିଲା, ଖାଦ୍ୟ ଓ ବାସ ଗୃହର ଅଭାବରୁ ଲୋକେ ରୋଗ, ଶୋକ ଓ ପୀଡାରେ ପ୍ରପୀଡିତ ହୋଇଥିଲେ, ଏବଂ ସେତେବେଳେ କବି ସାରଳା ଦାସ କହିଥିଲେ ଏ ସବୁରୁ ରକ୍ଷା ପାଇବାକୁ ହେଲେ କେବଳ ମେଷ , ଛାଗଳ ବଳି, ଦେଲେ ଚଳିବ ନାହିଁ , ଚଣ୍ଡୀଙ୍କ ସମ୍ମୁଖରେ ନରବଳି ଆବଶ୍ୟକ, ଏହା ପୁଣି ସାଧାରଣ ନରବଳି ନୁହେଁ, ଦୁର୍ଜନ ନରମାନଙ୍କର ବଳି, ତେବେ ସତ୍ୟର ଅପଲାପ ହେବ ନାହିଁ । ସାରଳା ଦାସ ପୁରାଣ କହିବା ଭିତରେ, ଇତିହାସକୁ ଯେ ଲିପିବଦ୍ଧ କରୁଥିଲେ ଏବଂ ଦେଶବାସୀଙ୍କୁ ବିଭିନ୍ନ ଦୃଷ୍ଟାନ୍ତ ଦେଇ ଜାଗ୍ରତ କରିବାକୁ ଚାହିଁଥିଲେ ଏହି ଘଟଣା ହେଉଛି, ତାହାର ଅନ୍ୟତମ ପ୍ରମାଣ । ପୁରାଣର ସବୁଦିନେ ଲକ୍ଷ୍ୟ ହେଲା ଦେଶବାସୀଙ୍କୁ ବିଶ୍ୱଭାତୃତ୍ୱ, ସ୍ୱଦେଶ ପ୍ରେମ, ସମାଜର ସ୍ୱାର୍ଥରକ୍ଷା, ସମାଜବଦ୍ଧ ଜୀବର କଲ୍ୟାଣ, ସମାଜରେ ନାରୀ ଓ ଶୂଦ୍ରର ଅଧିକାର, ମହାମାନବତା, ନାରୀ-ପୁରୁଷର ସମାନାଧିକାର, ଭକ୍ତି, କର୍ମ ଓ ଜ୍ଞାନ ମାଧ୍ୟମରେ ସତ୍ୟଧର୍ମର ପ୍ରତିଷ୍ଠା, ଜାତିଭେଦ ପ୍ରଥାର ବିଲୋପ ପ୍ରଭୃତି ସମ୍ପର୍କରେ ସଚେତନ କରିଦେବା । ଏହିସବୁ ଉଦ୍ଦେଶ୍ୟ ନେଇ ପୁରାଣ ସବୁରେ ବହୁ ଉପାଖ୍ୟାନ ଗ୍ରଥିତ ହେଲା । ମୂଳ କଥା ହେଲା ସଂସାରରେ ସବୁବେଳେ ଧର୍ମ ଓ ଅଧର୍ମର, ସତ୍ୟ ଓ ଅସତ୍ୟର, ଅମୃତ ଓ ମୃତ୍ୟୁର ସଂଘର୍ଷ ଲାଗି ରହିଛି । ଅଧର୍ମ ଓ ଅସତ୍ୟ ସବୁବେଳେ ମନୁଷ୍ୟକୁ ଆସକ୍ତି ଆଡକୁ, ଭୋଗ ଆଡକୁ । ଲାଭ ଏବଂ ଲୋଭ ଆଡକୁ ଟାଣୁଛି । ସେଥିରୁ ମାନବ ସମାଜରେ ଆସିଲା ଅଶାନ୍ତି ଓ ମୃତ୍ୟୁ । ଜୀବର ମୃତ୍ୟୁ ନିଶ୍ଚିତ ହେଲେ ମଧ୍ୟ ତା'ର ଲକ୍ଷ୍ୟ ମୃତ୍ୟୁ ଆଡକୁ ନୁହେଁ, ଅମୃତ ଆଡକୁ ସେଥିପାଇଁ ସେ ଚାହେଁ, ଦୟା, ଶୌଚ, କ୍ଷମା, ସନ୍ତୋଷ, ଓ ବିବେକର ଅଧିକାରୀ

ହେବାପାଇଁ । ପୁରାଣ ସେଥିପାଇଁ ପ୍ରଚାର କରେ ବହୁ କୀର୍ତ୍ତିମାନ ପୁରୁଷଙ୍କର ଚରିତ୍ର । ଯେଉଁମାନେ କାମ, କ୍ରୋଧ ଓ ଦୁଷ୍କର୍ମରୁ ନିବୃତ୍ତ ହୋଇ, ନର୍କ ପଥ ତ୍ୟାଗ କରି ସଦାଚାର, ସତକର୍ମ ଓ ଶୀଳତା ବଳରେ ସ୍ୱର୍ଗ ଲୋକର ସନ୍ଧାନ କରିଛନ୍ତି, ସେହିମାନେ ହେଲେ ପୁରାଣ କଥାର ଆଦର୍ଶ । ପୁରାଣକାର ସାରଳା ଦାସ ପୁରାଣର ଏହି ମହାନ ପରମ୍ପରାର ଉପଯୁକ୍ତ ଦାୟାଦ ଥିଲେ । ଦେଶରୁ ଜାତି-ପ୍ରଥାକୁ ବିଲୋପ କରି, ନାରୀମାନଙ୍କୁ ପୁରୁଷ ସହିତ ସମାନ ଅଧିକାର ଦେଇ, ରୋଗ, ଶୋକ ଓ ପୀଡାରୁ ଦେଶକୁ ମୁକ୍ତ କରି ଏକ ଧନଧାନ୍ୟପୂର୍ଣ୍ଣ ଉନ୍ନତ ଓ ସମୃଦ୍ଧ ଦେଶ ଦେଖିବାହିଁ ଥିଲା ତାଙ୍କର କାମ୍ୟ । **ଚଣ୍ଡୀପୁରାଣ**ର ବିଭିନ୍ନ ଚରିତ୍ର ଓ ଉପାଖ୍ୟାନ ମଧ୍ୟରେ କବିଙ୍କର ଏହି ଆଦର୍ଶକୁ ଦେଖି ହୁଏ ।

ଲୋକ ମଙ୍ଗଳକୁ ଆଖିରେ ରଖି **ଚଣ୍ଡୀପୁରାଣ** ରଚିତ ହୋଇଥିବାରୁ କବି ଏଥିରେ ବହୁ ଗୁରୁ ଗମ୍ଭୀର ଦାର୍ଶନିକ ତତ୍ତ୍ୱ କୁ ଅତି ସହଜ ଓ ସାଧାରଣ ଭାଷାରେ ପ୍ରକାଶ କରିଛନ୍ତି । ଜଗନ୍ନାଥ ଦାସଙ୍କ **ଭାଗବତ**ର ବାଣୀପରି ଏହା ସାଧାରଣ ଜୀବନ-ଯାପନର ପ୍ରଦର୍ଶକ ନ ହେଲେ ବି, ଅର୍ଥାତ ଲୋକେ ଏହି ସବୁ ବାଣୀକୁ କର୍ମ କ୍ଷେତ୍ରରେ **ଚଣ୍ଡୀ ପୁରାଣ**ରୁ ଉଦ୍ଧାର ନ କରୁଥିଲେ ବି , ଏ ସବୁ ଯେ ସମାଜର ଅତ୍ୟନ୍ତ ପରିଚିତ ବାଣୀ ଏଥିରେ ସନ୍ଦେ ହ ନାହିଁ । ଉଦାହରଣ ରୂପେ, 'ହରାଇଣ ବୁଦ୍ଧି ଶିଖିଲି '(ପ.ସଂ-୩୮୪୯), 'ନାଶନ୍ତ କାଳକୁ ଧର୍ମ ଛାଡଇ' (ପ.ସଂ-୧୧୭୦), 'ଜାତ ହୋଇଲେ ଅବଶ୍ୟ ମୃତ୍ୟୁ ଅଛି ', (ପ. ସଂ-୨୭୯୦) 'ମିଛରୁ ପାପ ନାହିଂ' (ପ. ସଂ-୨୦୨୨) ପ୍ରଭୃତିକୁ ଦେଖା ଯାଇପାରେ । ଏସବୁ ସଂସ୍କୃତ ସାହିତ୍ୟରେ ବି ପ୍ରଚଳିତ । ପ୍ରାୟ ସବୁ ଲୋକଙ୍କ ମୁଖରେ ଏ ସବୁକୁ ଶୁଣିବାକୁ ମିଳିଥାଏ । ସାରଳା ଦାସ ପ୍ରସଙ୍ଗ ସହିତ ଏ ସବୁକୁ ଏପରି ମିଶାଇ ଦେଇଛନ୍ତି ଯେ, ପ୍ରସଙ୍ଗ ଭାବପୂର୍ଣ୍ଣ ହୋଇ ଯାଇଛି ।

ସଂସାରର ନଶ୍ୱରତା ପ୍ରତି ଲୋକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ଭାରତୀୟ ଦର୍ଶନର ଏକ ସ୍ୱତନ୍ତ୍ର ବିଭାବ । ଏହା ଆଉ ଦର୍ଶନ ଶାସ୍ତ୍ର ମଧ୍ୟରେ ଆବଦ୍ଧ ହୋଇ ରହିପାରି ନାହିଁ । ଭାରତର ପ୍ରତ୍ୟେକ ଲୋକ ଏ ବିଷୟରେ ସଚେତନ । ସାରଳା ଦାସ ଅଦ୍ଭୁତ ବିଶ୍ୱସୃଷ୍ଟିର ସ୍ୱରୂପ ଉଦ୍‌ଘାଟନ କରି କହିଛନ୍ତି -

ଆହୋ ! ସଂସାର ମାଙ୍କ ସେ ଅଦ୍‌ଭୁତେ ରଞ୍ଜନା
ପାପ ପୁଣ୍ୟ ଯାହା କରଇ ସେହି ରହଇ ସିନା
ଯହୁ ଆସିଥିଲେ ତହିଂକି ବୋଲି ଗଲେ
ଜଳବିନ୍ଦୁ ପ୍ରାଏକ ରୂପ ଦେଖାଇଲେ । ପ. ସଂ -୨୧୩୧

ସମ୍ପଦ କାହାରି ନିକଟରେ ଚିରଦିନ ରହେ ନାହିଁ । 'ଆଜି ଯେ ରାଜେନ୍ଦ୍ରା ସନେ କାଲି ସେ ଫକୀର ।' ଆଜି ଯେଉଁ ଜାତି ଉନ୍ନତିର ଚରମ ସୀମାରେ ଉପନୀତ, କାଲି ସେହି ଜାତି ଦୁର୍ଦ୍ଦଶାଗ୍ରସ୍ତ ହୋଇ ବହୁ ବିପଦର ସମ୍ମୁଖୀନ ହୁଏ । ସଂସାରର ଏହି ଚିରନ୍ତନ ସତ୍ୟକୁ ରୂପ

ଦେବାକୁ ଯାଇ ସାରଳା ଦାସ ଲେଖିଛନ୍ତି -

ଆହୋ ସର୍ବଦା ପ୍ରାଣୀଙ୍କର ନୋହଇ ସମ୍ପଦ
ଯେ ବଢ଼ଇ ସେ ଛିଡଇ ପଡଇ ପରମାଦ । ପ.ସଂ-୨୮୨୫

ସମାଜ କେତେକ ନୀତି ନିୟମ ଉପରେ ପ୍ରତିଷ୍ଠିତ । ଗୁରୁଜନମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଏହାର ଏକ ବୈଶିଷ୍ଟ୍ୟ । ସାଧାରଣତଃ ଅଜ୍ଞାନୀମାନେ ହିଁ ଏହି ଚିରନ୍ତନ ନୀତିକୁ ଲଂଘନ କରିଥାନ୍ତି । ସାରଳା ଦାସ ଚଣ୍ଡମୁଣ୍ଡଙ୍କୁ ଚେତାବନୀ ଶୁଣାଇ କହିଛନ୍ତି -

ରାଜାଙ୍କର ଭାରିଯା ତୁମ୍ଭର ଗୁରୁପତ୍ନୀ
ମହାଗୁରୁ ହରି ଲୋଡ ଏଡେକ ଅଜ୍ଞାନୀ । ପ. ସଂ - ୨୧୬୦

ହିନ୍ଦୁ ସମାଜରେ ନାରୀମାନେ ବିଶେଷଭାବେ ସମ୍ମାନିତା । ନାରୀ ହତ୍ୟାକୁ ଏକ ମହାପାପ ମଧ୍ୟରେ ପରିଗଣନା କରାଯାଇଥାଏ । ଏହା ହେଉଛି ସାଧାରଣ ନାରୀଙ୍କ କଥା । ସବୁ ନାରୀ ସମାନ ନୁହନ୍ତି । ସେଥିରେ ଦୁରାଚାରୀ, ପାମର ନାରୀମାନେ ବି ଅଛନ୍ତି । ଏପରି ନାରୀଙ୍କୁ ଦଣ୍ଡ ଦେଇ ସମାଜକୁ ଶୃଙ୍ଖଳିତ କରାଯାଇ ପାରେ । କିନ୍ତୁ ତାହା ନୁହେଁ । ନାରୀ ଯେ କୌଣସି ପରିସ୍ଥିତିରେ ଥିଲେ ବି ଅବଧ୍ୟ । ସାରଳା ଦାସ କହିଛନ୍ତି -

ମାରନ୍ତେଣ ସ୍ତିରୀ ହତ୍ୟା ଜୀବନ୍ତେ ନାହିଁ ଯଶ । ପ.ସଂ-୨୧୮୧

ସାରଳା ଦାସ ସବୁବେଳେ ଆଚରଣ ଉପରେ ଗୁରୁତ୍ୱ ଦେଉଥିଲେ । ମନୁଷ୍ୟ ଶ୍ରେଷ୍ଠ ଜାତିରେ ଜନ୍ମ ହେଲେ, ଶ୍ରେଷ୍ଠ ହୁଏ ନାହିଁ । ସମାଜରେ ତା ପାଇଁ ନିର୍ଦ୍ଦିଷ୍ଟ କର୍ମକୁ ନ କଲେ ସେ ହୁଏ ନିନ୍ଦିତ । ବୁଦ୍ଧଦେବ ମଧ୍ୟ ତାଙ୍କ ଶିଷ୍ୟଙ୍କୁ ସମ୍ବୋଧନ କରି କହିଥିଲେ, 'ଜାତିମାଂ ପୁଚ୍ଛ ଚରଣଂ ପୁଚ୍ଛ' । ସାରଳା ଦାସ କହିଛନ୍ତି-

ପିତା ହେଇ ଯେ କୁଟୁମ୍ବ ନ ସମ୍ଭାଳଇ
ତାହାକୁ ବଧ୍ୟ କଲେ ଦୋଷ ନାହିଂ ସର୍ବକାଳହି । ପ. ସଂ - ୧୩୬୮

**ଜଗମୋହନ ରାମାୟଣ**ରେ ଲକ୍ଷ୍ମଣ ମଧ୍ୟ ତାଙ୍କ ପିତା ଦଶରଥଙ୍କର ଅତ୍ୟଧିକ କାମବାସନା ପ୍ରତି କଟାକ୍ଷ କରି ତାଙ୍କୁ 'ଚାଣ୍ଡାଳ' କହିବାକୁ କୁଣ୍ଠା ପ୍ରକାଶ କରି ନ ଥିଲେ ।

ବୀରତ୍ୱ ହେଉଛି, କ୍ଷତ୍ରିୟ କୁଳର ପ୍ରକୃତ ଅଭିମାନ । ସଂଗ୍ରାମ କରି ମରିବା ହେଲା, ଏହି ଜାତିର ଧର୍ମ । ଯୁଦ୍ଧକୁ ଡରି ଶରଣ ପଶିବାକୁ କ୍ଷତ୍ରିୟ କେବେହେଲେ ପ୍ରୋତ୍ସାହନ ଦିଏ ନାହିଁ । ମହିଷାସୁର ଯୁଦ୍ଧକ୍ଷେତ୍ରରେ ପରାସ୍ତ ହେଲେ ମଧ୍ୟ 'ନିସତ' ହୋଇ ଶରଣ ପଶିବାକୁ ଇଚ୍ଛା କରି ନାହିଁ । ସେତେବେଳେ ସାରଳା ଦାସ କହିଛନ୍ତି -

ନିସତ ହୋଇକରି କରିବାକୁ କିସ
ଛତ୍ରି କୁଳକୁ ସେ ଅଟଇ ଉପହାସ । ପ. ସଂ-୧୪୨୪

ସାରଳା ଦାସ ସବୁବେଳେ ତାଙ୍କ ପ୍ରିୟ ଦେଶବାସୀଙ୍କୁ କାମବାସନାରୁ ଦୂରରେ ରହିବା ପାଇଁ

ସଚେତନ କରିଛନ୍ତି, ତାଙ୍କ **ମହାଭାରତ**ରେ ପୁଣି **ଚଣ୍ଡୀ ପୁରାଣ**ରେ । ଏଥିପାଇଁ **ଚଣ୍ଡୀ ପୁରାଣ**ରେ ସେ ସଂସ୍କୃତରେ ନଥିବା ବହୁ ଉପାଖ୍ୟାନର ସଂଯୋଜନ କରିଛନ୍ତି । ସେ ସବୁ ଉପାଖ୍ୟାନରେ ସେ କେବଳ ଗୋଟିଏ ତତ୍ତ୍ୱ ଉପରେ ଗୁରୁତ୍ୱ ଦେଇଛନ୍ତି । ତାହା ହେଲା-

ପରସ୍ତିରୀ ଲୁବ୍ଧେ ବହୁତ କଷ୍ଟପାଇ ପ.ସଂ-୧୭୧୬

ଅନ୍ୟସ୍ଥଳରେ ପଣ୍ଡିତମାନଙ୍କୁ ସମ୍ବୋଧନ କରି କବି କହିଛନ୍ତି -

ତୈଲୋକ୍ୟଂ ଯେବଣ ଶମ୍ଭୁ ନିଶମ୍ଭୁ ସାଧି
ସେ ନାଶ ଗଲେ ଯେ ସ୍ତିରୀ ରତ୍ନ ବୁଦ୍ଧି ।
ହେ ପଣ୍ଡିତ ଜନେ ବିଚାର କର ହୃଦେ
ଚିର ଅବଷ୍ୟ କ୍ଷଏ ଯାଇଟି ପରସ୍ତିରୀ ଲୁବ୍ଧେ୍ୟ । -୨୧୦୧-୨୧୦୨

କାମନାରୁ ଲୋଭ, ଲୋଭରୁ ପାପ, ଓ ପାପରୁ ମୃତ୍ୟୁ ହୁଏ । ମଣିଷ ମନରେ କାମନା ପ୍ରତି ଆସକ୍ତି ଯେତିକି ବୃଦ୍ଧି ପାଏ , ମନୁଷ୍ୟ ଅମରତ୍ୱ ଠାରୁ ସେତିକି ଦୂରେଇ ଯାଏ । କେବଳ ସେତିକି ନୁହେଁ, କାମନା ସଙ୍ଗେ ମନୁଷ୍ୟର ଚିନ୍ତା ବଢେ । ମନୁଷ୍ୟ ଜୀବନର ଏହି ରହସ୍ୟକୁ ପ୍ରକାଶ କରି ସାରଳା ଦାସ କହିଛନ୍ତି-

ପୁଣି ବୋଇଲା ମୋହର ପାପ ଆତ୍ମା ଥିଲେ
ଦିନେ ଦିନେ ଅନେକ ଚିନ୍ତା ହେଉଥିବ ଭଲେ ॥ ପ.ସଂ-୪୦୩୩

ସାରଳା ଦାସଙ୍କ ନୀତି ବଚନର ସାର କଥା ହେଉଛି, ପାପକର୍ମରୁ ଦୂରରେ ରୁହ, ମିଛ କଥା କୁହ ନାହିଁ । ଏ ସଂସାର ସତ୍ୟ ଉପରେ ପ୍ରତିଷ୍ଠିତ । ଅଜ୍ଞାନତାକୁ ଦୂରକରି ଅହଂ ଗୁଣକୁ ବିନାଶ କରି, କର୍ମକୁ ଆଦରି, 'ଦଇବ କହିଲା' କଥାକୁ ମନରେ ରଖି, ଦାନ ଧର୍ମରେ କାଳାତିପାତ କର । ଏ ସବୁ ବିଧିବିଧାନକୁ ଜଗିରଖି ଚଳିଲେ ମଧ୍ୟ ଧର୍ମ ଛାଡିଲେ କେହିରକ୍ଷା କରି ପାରିବେ ନାହିଁ । ମଣିଷର ଶେଷବେଳ ଉପସ୍ଥିତ ହେଲେ ତାର ମତିଭ୍ରମ ହୁଏ ଓ ସେତେବେଳେ ତାକୁ ଧର୍ମ ଛାଡେ । ସାରଳା ଦାସ କହିଛନ୍ତି -

ନାଶନ୍ତ କାଳକୁ ଯେ ଛାଡିଲୁ ସର୍ବଧର୍ମ
ସେ କାଳକୁ ଧର୍ମ ଛାଡଇ ପ୍ରାଣୀ ହୋନ୍ତି ମତିଭ୍ରମ । ପ.ସଂ ୧୧୭୦.

ନୀତି ବଚନରେ ସାରଳା ଦାସ ଚଣ୍ଡୀ ପୁରାଣକୁ ଭାରାକ୍ରାନ୍ତ କରି ନାହାନ୍ତି । ପ୍ରସଙ୍ଗ କ୍ରମେ ପଦେ ଅଧେ ନୀତି ବାକ୍ୟ ଶୁଣାଇ ସେ ପୁଣି କଥା କହିବାକୁ ଆରମ୍ଭ କରିଛନ୍ତି । ପୁଣି ବଡ ବଡ ଦର୍ଶନ ତତ୍ତ୍ୱ ନ ଶୁଣାଇ, ଯାହା ସବୁଦିନେ କାମରେ ଲାଗିବ, ସେହିପରି ନୀତି କଥା ସବୁକୁ କହି, ସମାଜରେ ଜଣେ ଦାର୍ଶନିକ ଭାବରେ ନୁହେଁ, ଜଣେ ସାଧାରଣ ସାମାଜିକ ବ୍ୟକ୍ତିଭାବେ ନିଜକୁ ପ୍ରତିଷ୍ଠିତ କରିଛନ୍ତି ।

## ସାଂସ୍କୃତିକ ଚେତନା

ଉତ୍କଳୀୟ ସଂସ୍କୃତିର ମୂଳ ଉପାଦାନ ହେଉଛି, କଳା ପ୍ରେମ । ପ୍ରସ୍ତର ଗାତ୍ରରେ କମନୀୟ ଚିତ୍ର ଅଙ୍କନ କରି ସେମାନେ ସଂସାରରେ ଯଶସ୍ୱୀ ହୋଇ ପାରିଥିଲେ । ଧର୍ମ, ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ କଳାରେ ମଧ୍ୟ ସେମାନଙ୍କର କୃତିତ୍ୱ କୌଣସି ଦିଗରୁ ଊଣା ନଥିଲା । ସାହିତ୍ୟରେ ଯେତେବେଳେ ଯେଉଁ ପ୍ରବାହ ଆସି ଭାରତ ଭୂମିକୁ ପ୍ଳାବିତ କରିଥିଲା, ସେତେବେଳେ ସେମାନେ ସେଥିରେ ଯେ କେବଳ ସକ୍ରିୟ ସହଯୋଗ କରିଥିଲେ, ତାହା ନୁହେଁ, ନିଜର ସ୍ୱକୀୟତା ପ୍ରତିପାଦନ କରିପାରି ଥିଲେ । ଓଡିଶା ଭୂମିରେ ଏହି ସାଧନାର ମୂଳ ଉତ୍ସ ହେଲେ ସାରଳା ଦାସ । ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶର ବନ୍ଧନରୁ ଓଡିଆ ଭାଷାକୁ ମୁକ୍ତ କରି, ଓଡିଆ ସାହିତ୍ୟର ସେ ଯେଉଁ ବିଶାଳ ସୌଧ ନିର୍ମାଣ କଲେ, ତାହା ହିଁ ପରବର୍ତ୍ତୀ ଯୁଗରେ ହେଲା ଓଡିଆ କବିମାନଙ୍କର ଆଦର୍ଶ ।

ସାରଳା ଦାସ ଥିଲେ ଓଡିଶାର ସୂର୍ଯ୍ୟବଂଶୀୟ ସ୍ୱାଧୀନ ନରପତି କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବଙ୍କ ସମକାଳୀନ କବି । ସେତେବେଳକୁ ମୁସଲମାନ ଶାସକମାନେ ସମସ୍ତ ଭାରତବର୍ଷରେ ନିଜର ଆଧିପତ୍ୟ ଦୃଢ଼ କରି ସାରିଥିଲେ । ଏକ ବିପରୀତ ମୁଖୀ ସଂସ୍କୃତିର ସଂଘର୍ଷରେ ଆସି ଭାରତୀୟ ହିନ୍ଦୁ ସଂସ୍କୃତିରେ ପ୍ରତିକ୍ରିୟା ସୃଷ୍ଟି ହେଉଥିଲା । ସାରଳା ଦାସ ନିଜକୁ ମୂର୍ଖ, ଅପଣ୍ଡିତ, ଅସାଧକ ଓ ଅପାଠକ କହୁଥିଲେ ହେଁ, ଦେଶର ସଂସ୍କୃତି ପ୍ରତି ଆସିଥିବା ବିପଦ ପ୍ରତି ସଚେତନ ଥିଲେ । ଦେଶ ଓ ଜାତିକୁ ମୁସଲମାନ ସଂସ୍କୃତି ଆକ୍ରମଣରୁ ରକ୍ଷା କରିବା ପାଇଁ ସେ ସତତ ପ୍ରଯତ୍ନଶୀଳ ଥିଲେ । ଏସବୁ ସତ୍ତ୍ୱେ ସେ ଥିଲେ ଜଣେ ସାଧାରଣ ମାନବ । କୌଣସି ବ୍ୟକ୍ତି ତା'ର ସୀମିତ ଶକ୍ତି ଦ୍ୱାରା ଏହି ଆକ୍ରମଣକୁ ପ୍ରତିରୋଧ ବା ପରାହତ କରିବା ସମ୍ଭବ ନ ଥିଲା । ସେଥିପାଇଁ ସେ ଦୈବୀ ଶକ୍ତିର ସାହାଯ୍ୟ ଲୋଡିଥିଲେ । ସେ ଯେତେବେଳେ ନିଜକୁ 'ଶାରଳା ଦେବୀଙ୍କ ସୁତ' କହୁଥିଲେ, ସେତେବେଳେ ତାଙ୍କ ଉକ୍ତିରେ ଏକ ନୂଆ ଶକ୍ତି ସଞ୍ଚାରିତ ହେଉଥିଲା । ହିନ୍ଦୁମାନେ ତାଙ୍କୁ 'ଦେବୀ ସୁତ' ଭାବେ ଗ୍ରହଣ କରି ତାଙ୍କର ପ୍ରତ୍ୟେକ ବାଣୀକୁ ଦେବ ବାଣୀ ରୂପେ ଗ୍ରହଣ କରୁଥିଲେ, ଏବଂ ବିରୋଧୀମାନେ ମଧ୍ୟ ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ସାହସ କରୁ ନ ଥିଲେ । ଏହିପରି ଏକ ପରିବେଶ ସୃଷ୍ଟି କରି ସେ ରଚନା କଲେ ତାଙ୍କର **ଚଣ୍ଡୀ ପୁରାଣ** ।

ମହିଷାସୁର ବଧ ପାଇଁ ଚଣ୍ଡୀଙ୍କର ଆବିର୍ଭାବ ଏକ ପୁରାଣ କଥା । କିନ୍ତୁ ହିନ୍ଦୁ ଜାତିର ବିଶ୍ୱାସ ଅନୁଯାୟୀ, ଏ ଦେଶକୁ ଓ ଏ ଜାତିକୁ ଯେତେବେଳେ ବିପଦ ଆସେ, ଯେତେବେଳେ ଏ ଦେଶରେ ଭ୍ରଷ୍ଟାଚାର ବ୍ୟାପ୍ତ ହୁଏ, ସେତେବେଳେ ଏ ଦେଶର ପାଳନକର୍ତ୍ତା ବିଷ୍ଣୁ ଦେବ ବା ଦେବୀ ରୂପରେ ଅବତାର ଗ୍ରହଣ କରନ୍ତି ଦେଶର ଶତ୍ରୁଙ୍କୁ ବିନାଶ କରିବା ପାଇଁ । ହିନ୍ଦୁଧର୍ମର ଏହି ମୂଳ ତତ୍ତ୍ୱଟି ହିନ୍ଦୁ ଜାତିକୁ ସବୁବେଳେ ସଙ୍କଟ କାଳରେ ମୁକ୍ତି ପାଇବାର ସାହସ ଦେଇ ଆସିଛି ।

ସାରଳା ଦାସଙ୍କ **ଚଣ୍ଡୀ ପୁରାଣ**ରେ ହିନ୍ଦୁ ସଂସ୍କୃତିର ଏହି ମୂଳ ତତ୍ତ୍ୱଟି ଅତି ଜୀବନ୍ତ ଭାବେ ପ୍ରକାଶିତ । ଚଣ୍ଡୀ ଏକ ଅପରାଜେୟ ଶକ୍ତି । ନିଜ ଶରୀରରୁ ଶତ ସହସ୍ର ଦେବୀ ମୂର୍ତ୍ତି ସୃଷ୍ଟି କରି ସେ ସଂଗ୍ରାମ ଭୂମିରେ ଝାସ ଦେଲେ । ସାରଳା ଦାସଙ୍କ **ଚଣ୍ଡୀ ପୁ**ରାଣର ଏହି ଅଂଶଟି ପାଠକଙ୍କୁ ଚମତ୍କୃତ କରେ । ବିଭିନ୍ନ ପ୍ରକାର ବାହାନ, ବିଭିନ୍ନ ପ୍ରକାର ଅସ୍ତ୍ର, ବିଭିନ୍ନ ରୂପ ଓ ବିଭିନ୍ନ ପ୍ରକାରର ନାମ ନେଇ ସେମାନେ ଯେତେବେଳେ ରଣଭୂମିରେ ପ୍ରବେଶ କଲେ, ସେତେବେଳେ ଜଣାଗଲା, ସତେ ଯେପରି ଭାରତବର୍ଷର ପ୍ରତ୍ୟେକ ପ୍ରସିଦ୍ଧ ଦେବୀ ପୀଠର ଆରାଧ୍ୟ ଦେବୀମାନଙ୍କ ନେତୃତ୍ୱରେ ଭାରତର ଗ୍ରାମଦେବତୀମାନେ ନିଜ ନିଜର ପୀଠସ୍ଥାନ ପରିତ୍ୟାଗ କରି ଯୁଦ୍ଧପାଇଁ ଏକତ୍ର ହୋଇଗଲେ । ଏଥିରେ ଏକାବେଳେକେ ଦୁଇଟି କାମ ହୋଇଗଲା । ଭକ୍ତ କବି ସାରଳା ଦାସ ଦେବୀଙ୍କର ସହସ୍ର ନାମ ଉଚ୍ଚାରଣ କରିବାର ସୌଭାଗ୍ୟ ପ୍ରାପ୍ତ ହେଲେ, ଏବଂ ରଣଭୂମି ମଧ୍ୟ ଲକ୍ଷେ କୋଟି ମର୍ଦ୍ଦିତ ଅଗଣିତା ପରାୟୁଧ, ଚଣ୍ଡୀ, ଚାମଣ୍ଡା, ଯୋଗ୍ନୀ, ପିଚାସୁଣୀ ଓ ଡାକେଣୀଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇଗଲା ।

ଚଣ୍ଡୀଙ୍କ ସଂପର୍କରେ ହିନ୍ଦୁମାନଙ୍କର ଧାରଣା କେବଳ ଅଦ୍ଭୁତ ନୁହେଁ, ବିକଟାଳ ମଧ୍ୟ । ଶତ୍ରୁକୁ ଧ୍ୱଂସ କରିବା ପାଇଁ ସଂସାରରେ ଯେତେପ୍ରକାର ଭୟଙ୍କର କଳ୍ପନା ହୋଇପାରେ, ସବୁ ଚଣ୍ଡୀଙ୍କଠାରେ ସମ୍ଭବ । ସେମାନେ ଯେତେ ଖାଇଲେ ମଧ ସେମାନଙ୍କ ପେଟ ପୂରେ ନାହିଁ । ସେମାନେ ଅସୁରମାନଙ୍କୁ ଗୋଟା ଗୋଟା ପୁଣି ଜୀଅନ୍ତା ଗିଳି ପକାନ୍ତି । ସେମାନଙ୍କ୍ ଯୋଜନ ଲୟା ବାହୁକୁ ପ୍ରସାରିତ କରି ସେମାନେ ଏକାବେଳେକେ ଦଶ, ବିଂଶ, ତିରିଶ ଦରାଣ୍ଡି ଧରି, ଖଣ୍ଡ ଖଣ୍ଡ କରି କାମୋଡି, ଚୋବାଇ ଖାଆନ୍ତି । ସେମାନଙ୍କ ସେହି ଭୀଷଣ ରୂପର ବର୍ଣ୍ଣନା କରି ସାରଳା ଦାସ ଲେଖିଛନ୍ତି -

ଟହ ଟହ ହାସ୍ୟେ ସେ ମତୁଆଳ ନାଟ ଖଣ୍ଡି
ହୁଂ ହୁଂ ଗରଜନ କୁହୁ କୁହୁ ରଡି ।
ରଟ ରଟ ମଟ ମଟ ବାଜନ୍ତି ହସ୍ତ ଖଣ୍ଡା
ରେ ରେ କାର ଶବଦେ ଡାକନ୍ତି ଚାମଣ୍ଡା ।      ପ. ସଂ - ୨୫୯୬-୯୭

ଚଣ୍ଡୀମାନେ ଯେ କେବଳ 'ରୋଧିର ବଦନ', ଘୋର ଅନ୍ଧାର ରୂପ ଧରି କିଳିକିଳା ଶବ୍ଦ କରି, ଅଷ୍ଟବକ୍ର ନାଟ ନାଚି, ଖେମଟା ଗୀତ ଗାଇ, ଅକଳିତ ସମୋଦ୍ର ପେଟଧରି ରଣଭୂମିରେ ପ୍ରବେଶ କରିଥିଲେ ତାହା ନୁହେଁ, ଯୁଦ୍ଧଭୂମିରେ ସେମାନେ ଯେଉଁଭାବେ ଅସୁରମାନଙ୍କୁ ବିନାଶ କରୁଥିଲେ, ତାହା ମଧ୍ୟ ଅତ୍ୟନ୍ତ ଭୟଙ୍କର ଥିଲା । କବିଙ୍କ ବର୍ଣ୍ଣନା ମଧରୁ ଉଦାହରଣ ପାଇଁ କେବଳ ଗୋଟିଏ ଦୃଶ୍ୟ ଦେଖାଯାଇ ପାରେ । କବି କହିଛନ୍ତି -

ମୁଣ୍ଡ ମୋଡିଧରି ଯେ କାମୋଡନ୍ତି ହିଆ
ଗିଳନ୍ତି ଗୋଡ କାହାର ଲମ୍ବିଥାଇ ବାହା
ଶରୀରଯାକ ଗିଳିଣ ଦିଶୁଥାଇଂ ମୁଣ୍ଡ
ଗର୍ଭୁ ବାହାର ହୋଇ ଲମ୍ବୁଥାଇ ତୁଣ୍ଡ ।

ମଧ୍ୟ କଙ୍କାଳ ଖଣ୍ଡେ ଦନ୍ତେ ଥାଇ ଧରି
ମୁଣ୍ଡ ପେଟ କେ ଗୋଡ ଦୁଇ ବାହାର କରି ।
ମୁଣ୍ଡ ମୋଡିଣ କେ କାଖେ ଚାପି
ରୋଧିର ବଦନେ କେ ଅନ୍ଧାର ଘୋର ରୂପୀ ।          ପ. ସଂ-୨୬୦୦-୨୬୦୪

କବିଙ୍କର ଏହି ସବୁ ବର୍ଣ୍ଣନା ମଧରେ ପୁରାଣ ଲେଖି କବିତ୍ୱ ଶକ୍ତି ପ୍ରଦର୍ଶନ କରିବାର ଉଦ୍ଦେଶ୍ୟ ଯେ ନ ଥିଲା ତାହା ନୁହେଁ କିନ୍ତୁ ଏହି ବର୍ଣ୍ଣନା ଏକ ସଙ୍କଟଗ୍ରସ୍ତ ଜାତି ସମ୍ମୁଖରେ ଯେଉଁ ଆଶା ଓ ଭରସାର ବାଣୀ ଶୁଣାଇଥିଲା, ତାହା ମଧ ଭୁଲିବାର ନୁହେଁ । ଅବତାରବାଦରେ ବିଶ୍ୱାସ କରୁଥିବା ହିନ୍ଦୁଜାତି ଯେତେବେଳେ କଳ୍ପନା ଚକ୍ଷୁରେ ଥରେ ଦେଖି ନେଉଥିଲା ଯେ ଭଗବାନ ଏହି ରୂପରେ ଜନ୍ମ ଗ୍ରହଣ କରି ଅତୀତରେ ଅସୁର ବିନାଶ କରିଥିଲେ ଏବଂ ଭବିଷ୍ୟତରେ ମଧ କରିବେ, ସେତେବେଳେ ତା'ର ଅଶ୍ରୁ ସଜଳ ଶିର ସ୍ୱତଃ ଦୁର୍ଗାଙ୍କ ଚରଣ ତଳେ ଅବନତ ହୋଇ ଯାଇଥିଲା, ଏବଂ ସେ କବିଙ୍କ ସହିତ କଣ୍ଠ ମିଳାଇ ଗାଇଥିଲା -

ଚଣ୍ଡିକା ଶାହାସ୍ର ଲଏ କର ବାବୁ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ଅଛି ସବୁ ।
ଧନ ସନ୍ତାନ ବର୍ଦ୍ଧିତ ଦିଅନ୍ତି ମହାମାଏ ।
ବଦୟନ୍ତି ସାରୋଳ ଦାସ କରନ୍ତି ଜଏ ଜଏ ।          ପ. ସଂ -୨୬୦୭-୮

ହିନ୍ଦୁ ସଂସ୍କୃତିରେ ଅବତାର ବାଦ ପରି ମୂର୍ତ୍ତିପୂଜା ଅନ୍ୟ ଏକ ବୈଶିଷ୍ଟ୍ୟ । ମୁସଲମାନମାନେ ଯେତେବେଳେ ଏ ଦେଶରେ ପ୍ରବେଶ କଲେ, ସେମାନେ ସେତେବେଳେ ହିନ୍ଦୁଧର୍ମକୁ ଲୋପ କରିବା ପାଇଁ ମେଢ଼, ମଣ୍ଡପ, ଦେଉଳ, ଜଗତୀ ଭାଙ୍ଗି ମୂର୍ତ୍ତି ସବୁକୁ ନଷ୍ଟ କଲେ । ଫଳରେ ଦେଶର ଅଗଣିତ ଦେବ ଦେବୀ ମୂର୍ତ୍ତି ଖଣ୍ଡ ବିଖଣ୍ଡିତ ହୋଇଗଲା । ହିନ୍ଦୁ ଧର୍ମର ସ୍ମୃତିକାରମାନେ ପୂର୍ବରୁ ଅକ୍ଷୁର୍ଣ୍ଣ ମୂର୍ତ୍ତି ପୂଜା କରିବାର ବ୍ୟବସ୍ଥା ରଖିଥିଲେ । ସେହି ବ୍ୟବସ୍ଥା ଅନୁଯାୟୀ ବହୁ ଦେବ ଦେବୀ ଅପୂଜା ରହିବାର କଥା । ସାରଳା ଦାସ ମହିଷାସୁର ଉପାଖ୍ୟାନ ସହ ଦେଶରେ ଘଟୁଥିବା ଏହି ଘଟଣାକୁ ମିଶାଇ ତାଙ୍କ ପୁରାଣରେ ବର୍ଣ୍ଣନା କରିଥିବା ଆଗରୁ କୁହାଯାଇଛି । **ଚଣ୍ଡୀ ପୁରାଣ**ରେ କୁହାଗଲା ମହିଷାସୁରକୁ ବଧ କରିବା ପାଇଁ ଲକ୍ଷ କୋଟି ଦେବୀ ତାକୁ ମାଡି ବସିଥିଲେ । ମହିଷାସୁର ସେମାନଙ୍କୁ ସିଞ୍ଚାଡି ଦେବାରୁ ସେମାନେ ଦୂର ଦୂରାନ୍ତରରେ ଛିଡିକି ପଡିଗଲେ । ଫଳରେ କାହାର ହାତ ଭାଙ୍ଗିଲା ତ କାହାର ଗୋଡ । କିଏ କଣା ହେଲ ତ କିଏ କୁଜା ହୋଇଗଲା । ଏପରି ଏକ ସଙ୍କଟ ବେଳେ ସଂସ୍କୃତି ସଚେତନ କବି ସାରଳା ଦାସ ହିନ୍ଦୁ ଧର୍ମର ପ୍ରବକ୍ତା ଭାବେ ଏକ ନୂଆ ବ୍ୟବସ୍ଥାର ପ୍ରଚଳନ କଲେ ।

ଯେବଣ ଦେବୀମାନେ ରହିଲେ ଯେବଣ ସ୍ଥାନେ
ଉଠି ନ ପାରିଲେ ସେ କର ଚରଣ ଭଗ୍ନେ ।
ଛୋଟିକାଣୀ କୁଜି ଅପାରଗ କୁମ୍ଭା

ପଞ୍ଜରା ଭଗନ ହୋଇ ଦିଶନ୍ତି ବିରୂପା
ଯେ ଯେଉଁଠାରେ ପଡିଲେ ହୋ ପରୀକ୍ଷ ରାଜା
ସବୁ ପାଷାଣ ହୋଇ ଘେନିଲେ ତହିଂ ପୂଜା -୪୨୦୪-୪୨୦୬

ହିନ୍ଦୁ ସଂସ୍କୃତିର ପୁଣି ଗୋଟିଏ କଥା । ସ୍ମୃତିକାରମାନେ ସ୍ତ୍ରୀର ତିନି ଦଶା, ଅର୍ଥାତ ସ୍ତ୍ରୀ ବାଲ୍ୟ କାଳରେ ପିତାର, ଯୌବନ ବେଳେ ସ୍ୱାମୀର ଓ ବୃଦ୍ଧାବସ୍ଥାରେ ପୁତ୍ରର ଅଧୀନ ହୋଇଥାଏ । ସାରଳା ଦାସ ଙ୍କ **ଚଣ୍ଡୀ ପୁରାଣ**ରେ ମଧ୍ୟ କୁହାଯାଇଛି, 'ମା ଗୋ କର୍ମ ଶାହାସ୍ତ୍ରେ ଯେ ସ୍ତିରୀଙ୍କି ତିନି ଦଶା ।' ଚଣ୍ଡ ମୁଣ୍ଡ ଦୁର୍ଗାଙ୍କ ସମ୍ମୁଖରେ ସ୍ତୁତିବାକ୍ୟ ଉଦ୍ଧାର କରି ମହିଷାସୁରର ଭାବିନୀ ହେବା ପାଇଁ ଅନୁରୋଧ କରିଥିଲେ ହେଁ ଦୁର୍ଗା ଏଥିରେ ସମ୍ମତ ହୋଇ ପାରି ନଥିଲେ । ସତେ ଯେପରି କାହାର ଅଧୀନରେ ରହିବା ପାଇଁ ସେ ସମ୍ପୂର୍ଣ୍ଣ ଅନିଚ୍ଛୁକ । ପୁଣି ଅନ୍ୟ ଏକ ପ୍ରସଙ୍ଗରେ ସ୍ତ୍ରୀର ତିନି ଦଶାର ଅନ୍ୟ ପ୍ରକାର ବ୍ୟାଖ୍ୟା କରାଯାଇଛି । ସେଥିରେ କୁହାଯାଇଛି, ନାରୀ ମାତା ରୂପରେ ମନୁଷ୍ୟକୁ ଜନ୍ମଦିଏ, ଭାର୍ଯ୍ୟା ରୂପରେ ରତି ଦାନ କରେ, ଏବଂ ଅନ୍ତ କାଳରେ କାଳିକା ରୂପ ଧାରଣ କରି ମନୁଷ୍ୟକୁ ବିନାଶ କରେ । ସେତେବେଳେ ସ୍ତ୍ରୀ ଆଉ ଦୁର୍ବଳା ନୁହେଁ, ମୋତୀ ନୁହେଁ କି ପାମରୀ ନୁହେଁ, ସେ ସମସ୍ତଙ୍କର ପୂଜ୍ୟା ହୋଇଯାଏ । ସେ ହୁଏ ସୃଷ୍ଟି ସ୍ଥିତି ଓ ପ୍ରଳୟର କାରଣ । ନାରୀ ଜାତିକୁ ସମ୍ମାନ ଦେବା ମୂଳରେ ହିନ୍ଦୁ ଧର୍ମ ତଥା ସଂସ୍କୃତିକୁ ରକ୍ଷା କରିବା ମନୋଭାବ ହିଁ ପ୍ରକାଶିତ ହୋଇଥିଲା ।

ସାଂସ୍କୃତିକ ଚେତନା କହିଲେ କେବଳ ଧର୍ମ ନୁହେଁ, ସାହିତ୍ୟ ଏହାର ଅନ୍ତର୍ଭୁକ୍ତ । **ଚଣ୍ଡୀ ପୁରାଣ** ମୁଖ୍ୟତଃ ଧର୍ମଭିତ୍ତିକ ହୋଇଥିବାରୁ କବି ଏଥିରେ ଚଣ୍ଡୀ ତଥା ବିଭିନ୍ନ ଦେବତାଙ୍କର ମାହାତ୍ମ୍ୟ, ସ୍ତୁତି, ବନ୍ଦନା, ରୂପ, ବାହାନ, ଗୁଣ, କୀର୍ତ୍ତି, ଶକ୍ତି ଓ ଅଲୌକିକତାର ପ୍ରଚାର କରିବା ସ୍ୱାଭାବିକ ଥିଲା, ପୁଣି ଏହା ଏକ ଭୟାବହ ଯୁଦ୍ଧ କାହାଣୀକୁ ରୂପ ଦାନ କରିଥିବାରୁ, କବି ଏଥିରେ ବୀର, ରୌଦ୍ର, ଭୟାନକ, ବୀଭତ୍ସ ଓ କରୁଣ ରସର ବ୍ୟଞ୍ଜନା ମଧ୍ୟ କରିଥିଲେ । କିନ୍ତୁ ଶୃଙ୍ଗାର ରସ ପାଇଁ ସ୍ୱତନ୍ତ୍ର ସ୍ଥାନର ନିରୂପଣ କରି କବି **ଚଣ୍ଡୀ ପୁରାଣ**ରେ ବିଷୟବସ୍ତୁକୁ ଯେଉଁ ଭାବେ ରୂପାନ୍ତରିତ କରିଛନ୍ତି, ତାହା ବିଶେଷ ଭାବେ ଉଲ୍ଲେଖ ଯୋଗ୍ୟ ।

କବିଙ୍କ ମତରେ ଦେବୀ ନିଜର ଇଚ୍ଛାନୁଯାୟୀ ବିଭିନ୍ନ ରୂପ ପରିଗ୍ରହ କରନ୍ତି । ଏହି ସବୁ ରୂପ ମଧ୍ୟରୁ କବି ତାଙ୍କ **ଚଣ୍ଡୀପୁରାଣ**ରେ କେତେକର ସୂଚନା ଦେଇ କହିଛନ୍ତି -

କ୍ଷଣକେ ମୋହୋନୀ ସେ କ୍ଷଣକେ ଧୀର ମତି
କ୍ଷଣକେ ଅଭଏ କ୍ଷଣକେ ନୃତ୍ୟ ଗୀତ ସେ କରନ୍ତି ।
କ୍ଷଣକେ ସାଧବୀ ସେ କ୍ଷଣକେ ଦିବ୍ୟ ରୂପୀ
କ୍ଷଣକେ ବାଳ ଭାବ କ୍ଷଣକେ ଗଗନ ଖେପି ।
କ୍ଷଣକେ ଜପ ତପ କ୍ଷଣକେ ଦୁଷ୍ଟ ପ୍ରକୃତି
ବିଶ୍ୱ ବିକଟାଳି ସେ କ୍ଷଣକେ ଶାନ୍ତ ମୂର୍ତ୍ତି । ପ. ସଂ -୨୨୭୩-୭୫

ଦେବୀ ତାଙ୍କର ମୋହିନୀ ବା ମାନିନୀ ରୂପରେ ବଧ କଲେ ମହିଷାସୁରର ବହୁ ଅନୁଚରଙ୍କୁ । ଦେବୀଙ୍କର ଏହି ମାନୀନୀ ରୂପର ପରିକଳ୍ପନାରୁ କବି ଶୃଙ୍ଗାର ରସର ଚିତ୍ରଣ ପାଇଁ ଗ୍ରନ୍ଥ ମଧ୍ୟରେ କେତେକ ସ୍ଥାନ ନିରୂପଣ କରିଥିଲେହେଁ, ଏଥିରେ ଶୃଙ୍ଗାର ରସର ପରିଣତି ସମ୍ଭୋଗରେ ନ ହୋଇ ଅସୁର ବିନାଶରେ ପରିପୂର୍ଣ୍ଣ ହୋଇଛି । ତେଣୁ ଏହା ଆଦୌ ଶୃଙ୍ଗାର ରସ ନୁହେଁ । ଏହା ସତ୍ତ୍ୱେ ଏଥିରେ ପ୍ରଦତ୍ତ ବର୍ଣ୍ଣନାରୁ ଶୃଙ୍ଗାର ରସର ଆଭାସ ମିଳେ । କବି କିନ୍ତୁ ଏହାକୁ ଶୃଙ୍ଗାର ରସ, ରତି ରସ, ଓ ମଦନ ରସ କହିଛନ୍ତି ।

**ପତି ପତ୍ନୀ ଭାବ:** ବିଡ୍ଡୁଳାକ୍ଷ ଭଗବତୀ ପ୍ରସଙ୍ଗରେ ଯଉବନ ବତୀ ଅଭେଦ ରୂପ ଓ 'କାମେନୀ ନବଯୁବା' ଭଗବତୀ ରୂପ ଦେଖି ବିଡ୍ଡୁଳାକ୍ଷ କାମାନଳେ ନିମଜ୍ଜିତ ହେଲା । ନିଜର ବିନମ୍ରତା ଓ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ ଭାବ ପ୍ରକାଶ କରିବା ପାଇଁ ସେ ହସ୍ତରୁ 'ଶହସ୍ର ପକାଇ' ଦନ୍ତେ ତିରଣ ରଖି ତାର ହସ୍ତ ଧରି କହିଲା, ରେ ପ୍ରାଣ ବନ୍ଧୁ ରଖ ମୋର ପ୍ରାଣ । ଅଭିସାର ସ୍ଥାନ ରୂପେ ସେମାନେ ଲକ୍ଷ୍ମୀଭଦ୍ରା ନଦୀ ତୀରେ ଗହଳ ମାଧେବୀ ଲତାକୁ ସ୍ଥିର କରି ପତି ପତ୍ନି ପ୍ରାଏକ ହାଥ ଧରାଧରି ହୋଇ ଅପସରି ଗଲେ । ସମ୍ଭୋଗ ଶୃଙ୍ଗାରରୁ 'ହାସ୍ୟ' ରସ ଆକର୍ଷଣ, କୋଳାଗ୍ରତ, ଚୁମ୍ୱନ ଓ ଆଲିଙ୍ଗନ (ଭିଡିଲେ ବକ୍ଷସ୍ଥଳ) ପ୍ରଭୃତିର ଉଲ୍ଲେଖ କରାଯାଇଥିଲେ ହେଁ, ପରିଣାମ ହେଲା-

ଯେବଣ ବିଡ୍ଡୁଳାକ୍ଷ ଜିଣିଲା ଯମଦଣ୍ଡ
ଶୃଙ୍ଗାର ରସେ ସେ ହୋଇଲା ଖଣ୍ଡ ଖଣ୍ଡ । ପ. ସଂ - ୨୩୩୯

ଚାମରବେମୋଳ ପ୍ରସଙ୍ଗରେ ବର କନ୍ୟାଙ୍କ କଥା କୁହାଯାଇଛି । ବର ସମ୍ମୁଖକୁ କନ୍ୟା ଆସିଛି ଅଳଙ୍କାର ଓ ଆଭରଣରେ ସଜ୍ଜିତା ହୋଇ । ସାରଳା ଦାସ ଲେଖିଛନ୍ତି -

ତଇଲୋକ୍ୟ ମୋହୋନୀ ସେ କାମେଣ କାମାକ୍ଷୀ
ଦେଖିଣ ଚାମର ବେମୋଳଙ୍କର ନଫୁରଇ କିଛି ।
ଅନେକ ଅଲଙ୍କାର ଅଙ୍ଗେଣ ଆଭରଣ
ନାନା ବର୍ଣ୍ଣେ କୁସୁମେ ଖୋପା ପରିହରଣ ।
କାମେନୀ କାମବତୀ ହୋଇଛନ୍ତି ଗୋପ୍ୟ
ବେଶହୀନେ ସଂସାର ମୋହି ପାରନ୍ତି ସରୂପ ।

ଦୁହିତା ଦାନ ପରେ ଯତ୍ନରେ ପ୍ରତିପାଳିବା ପାଇଁ ଉପଦେଶ ରହିଛି। ସେହି ଲକ୍ଷ ଭଦ୍ରାନଦୀ ତଟ ଥିଲେ ବି କବି ଏହା ଉପରେ ଗୁରୁତ୍ୱ ଦେଇ ନ ଥିଲେ । ରାତ୍ରି ହେଲେ ମିଳନ ହେବ । ସେଥିପାଇଁ ଦିନସାରା ଅନେକ ସାନନ୍ଦରେ ଅସୁର ଦ୍ୱୟ ମଦିରା ପାନ କରିଥିଲେ । 'ନାନା କଉତୁକ' 'ଅନେକ ପରିହାସ' ମତ୍ତ, ରସ, ରଙ୍ଗ 'ଖେଳ ଓ ମଦନ ରସଭୋଳେ' ଦିନ କଟିଗଲା । କାଦମ୍ୱରୀ ପାନ କରି ଦୈତ୍ୟଙ୍କର ଶରୀର ଅସାଷ୍ଟମ ହୋଇଗଲା । ତେଣୁ କେବଳ କଥାରେ ରହିଗଲା, 'ଆରେ ପ୍ରାଣବଲ୍ଲଭୀ' କୋଳାଗ୍ରତ କର । କବି କହିଛନ୍ତି -

ମଦିରା ପାନେ ଯେ ପଡିଅଛନ୍ତି ଦୁରାପାତେ
କିଛି ହିଁ ନୁହନ୍ତି ସେ ନୁଆରିଲେ ଦଇତେ । ପ. ସଂ - ୨୧୫୨

ପତି ପତ୍ନୀ ଭାବନାର ତୃତୀୟ ଦୃଶ୍ୟଟି ମିଳେ ଈଶ୍ୱର ପାର୍ବତୀଙ୍କ ମିଳନରେ । ଏଠି କିନ୍ତୁ ପତି ପତ୍ନୀର ହାତ ନ ଧରି ପତ୍ନୀ ଧରିଛି ପତିର ହାତ । ପତ୍ନୀ ପୁଣି ଜୟମାଳା ଦେଇ ପତିକୁ ବରଣ କଲା । ଉଭୟଙ୍କର ବେଶ ସମାନ । ଦୁର୍ଗାଏ ବୋଇଲେ ତୁହି ଉଲଗ୍ନ ମୁହିଂ ବିବସନ ଶାହୀ । ଏହା ପରେ ସେମାନେ ପରସ୍ପରକୁ ପ୍ରଭୁ ଭାରିଯା ପ୍ରାଏ ହୋଇଲେ ତୁହାଂଚୋହିଂ । ଏହି ପବିତ୍ର ନିର୍ମଳ ଅପୂର୍ବ ମିଳନର ଦୃଶ୍ୟ ଉପସ୍ଥାପିତ କରି କବି ଲେଖିଛନ୍ତି -

ଆନନ୍ଦେ ସଦାଶିବ ଧଇଲେ ତାହାଙ୍କୁ ଯାଇ କୋଳେ
ଭୁଜେଣ ଭିଡି ସେ ଚାପିଲେ ବକ୍ଷସ୍ଥଳେ ।
ଜଟା ମେଲିଣ ସେ ଦେଲେ ଦେବରାଏ
ଅଦୃଶ ହୋଇଲା ସେ ଦେବୀଙ୍କର କାଏ ।
ଏକାମାତ୍ର ଦିଶିଲା ଚନ୍ଦ୍ର ବଦନ ଗୋଟି
ଭୁଜେଣ ଭିଡିଣ କୋଳ କଲେକ ଧୂର୍ଜଟୀ । ପ.ସଂ -୪୩୮୮-୯୦

ଶିବ ଓ ପାର୍ବତୀଙ୍କର ଅର୍ଦ୍ଧନାରୀଶ୍ୱର କଳ୍ପନା ସାରଳା ଦାସଙ୍କ କବିତ୍ୱର ସ୍ପର୍ଶରେ ଶିବ ଓ ପାର୍ବତୀଙ୍କ ଯୁଗଳ ରୂପର ଯେଉଁ ଅପୂର୍ବ ଶୋଭା ସୃଷ୍ଟି କଲା, ତାହା କେବଳ ସାରଳା ଦାସଙ୍କ ଲେଖନୀରେ ହିଁ ସମ୍ଭବ । ଯେଉଁ ଶିବ ତାହାଙ୍କ ଜଟିଳ ଜଟା ମଧ୍ୟରେ ଗଙ୍ଗାକୁ ଲୁକ୍କାୟିତ କରି ରଖିଥିଲେ, ସେ ପୁଣି ପାର୍ବତୀଙ୍କୁ ଜଟାରେ ଆବୃତ କରି ତାଙ୍କ ଲୋକଲଜ୍ଜାକୁ ନିବାରଣ କଲେ ।

**ପ୍ରିୟାଭାବ:** ଶମ୍ଭୁ ନିଶମ୍ଭୁ ବଧ ପ୍ରସଙ୍ଗରେ ପତି ପତ୍ନୀ ଭାବ ସ୍ଥାନରେ ଅଛି ପରକୀୟା ପ୍ରିୟାଭାବ । ପୁରୁଷକୁ ଉଚ୍ଚାଟ କରିବା ପାଇଁ କବି ଉଦ୍ଦୀପନ ବିଭାବ ଉପରେ ଗୁରୁତ୍ୱ ଦେଇଛନ୍ତି । ଶମ୍ଭୁ ନିଶମ୍ଭୁ ଯେତେବେଳେ ରତ୍ନଗିରି ପାଖରେ ପହଞ୍ଚୁଛନ୍ତି, ସେତେବେଳେ ବନର ଅପୂର୍ବ ଶୋଭା ବିଶେଷ ଭାବେ ଲକ୍ଷଣୀୟ । କବି ଲେଖିଛନ୍ତି -

ଦେଖନ୍ତି ବନ ଗହନ ଯେ ସବୁ ହିଂ ଅପରୂବ
ଭାଷନ୍ତି କୋକିଳ ମତ୍ତଗର୍ବେ ଜୀବ ।
ଗନ୍ଧ ଆମୋଦଇ ମଳୟ ଶୀତଳ

ବସନ୍ତ ଋତୁର ଏହି ଅପୂର୍ବ ଲୀଳା ମଧ୍ୟରେ ଶମ୍ଭୁ ନିଶମ୍ଭୁ ଅପୂର୍ବ ଅଭୟା ନାରୀକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଲାଜ ଭୟ ସଙ୍କୋଚ ତ୍ୟାଗକରି ପର୍ବତ ଉପରକୁ ଚଢିଗଲେ ।

ପୃଥିବୀର ଅପୂର୍ବ ଶୋଭା ମଧ୍ୟରେ ଯେଉଁ ନାରୀ ମୂର୍ତ୍ତିକୁ ଦେଖି ସେମାନେ ବଶୀଭୂତ ହୋଇଥିଲେ ସାରଳା ଦାସଙ୍କ ଭାଷାରେ ସେ ଥିଲେ 'ପୃଥିବୀକି ଅଳଙ୍କାର' ଅମୂଲ୍ୟ ରତ୍ନକାନ୍ତି । ସେହି ମୋହିନୀ ତଥା ମାନୀନୀ ନାରୀର ରୂପ ବର୍ଣ୍ଣନା କରି ସାରଳା ଦାସ ଲେଖିଛନ୍ତି -

ଝିନ ବସନ ପରିହରଣ ହେଠବଦନ ବାଳୀ
ପଞ୍ଚମନ ଦର୍ପଧ୍ୱଂସନୀ ସେ ନ ଚାହିଁଲା ତୋଳି ।
ମଉନବ୍ରତ ହୋଇ ସେ ନ ଦିଅଇ ସମାପି
ଅସୁର କୁଳକୁ ସେ କାଳ ବନ୍ଧନ ଫାଶି ।

ଦୁର୍ଗାଙ୍କ ପ୍ରତି ଆକୃଷ୍ଟ ହେବା ପରେ ଶମ୍ଭୁ ନିଶୁମ୍ଭ ତାଙ୍କର ସବିଶେଷ ବିବରଣୀ ଜାଣିବା ପାଇଁ ଚାହିଁଥିଲେ । ଦୁର୍ଗା ମଧ୍ୟ ନିଃସଙ୍କୋଚ ଭାବେ ନିଜର କୁଳ, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର କଥା କହିଗଲେ । ସେମାନଙ୍କଠାରୁ ସବୁ ଶୁଣିସାରିବା ପରେ ଦୁର୍ଗା ସେମାନଙ୍କୁ ବିବାହ ହେବା ପ୍ରସ୍ତାବ ଆଗତ କଲେ । ନାରୀ ରୂପ ମୁଗ୍ଧ ପୁରୁଷ ପାଖରେ ଏହାଠାରୁ ବଳି ପ୍ରିୟ କଥା ଆଉ କ'ଣ ବା ହୋଇପାରେ ? ସେତିକିବେଳେ ସାରଳା ଦାସ ସାମାଜିକ ଚଳଣିରୁ ପଦେ କହିଦେଇ ଦୁର୍ଗାଙ୍କ ପ୍ରକୃତିରେ ସ୍ୱାତନ୍ତ୍ର୍ୟ ସୃଷ୍ଟି କଲେ । ସମାଜରେ ବିବାହବେଳେ ସାଧାରଣତଃ ଧନ ଦ୍ରବ୍ୟରେ ଇଚ୍ଛାମତ ବର ମିଳେ ନାହିଁ । ଏହା ହେଉଛି ହୃଦୟର କଥା ପ୍ରେମର କଥା । ଦୁର୍ଗାଙ୍କର ବିଶେଷ ଆଗ୍ରହ ନୃତ୍ୟରେ । ତେଣୁ ନୃତ୍ୟ ଜାଣିଥିବା ବ୍ୟକ୍ତିହିଁ ହେବ ତାଙ୍କର ଇଚ୍ଛାମତ ସ୍ୱାମୀ । ଶମ୍ଭୁ ନିଶମ୍ଭୁ ଦୁର୍ଗାଙ୍କଠାରୁ ସବୁ ଶୁଣି ତାଙ୍କ ସମ୍ମୁଖରେ ସେମାନଙ୍କ ନୃତ୍ୟ ଜ୍ଞାନର ପ୍ରଦର୍ଶନ କରି ନୃତ୍ୟ କରିବାକୁ ଆରମ୍ଭ କଲେ । ସେମାନେ ନୃତ୍ୟ କଲାବେଳେ ଦୁର୍ଗା ଟିକେ ଟିକେ ହସି ଦେଉଥିଲେ । ଦୁର୍ଗାଙ୍କ ହସରେ ସେମାନେ ଦ୍ୱିଗୁଣ ଉତ୍ସାହିତ ହୋଇ ମରଗଜ ଖାଇକୁ ନ ମାନିବା ପରି ଆହୁରି ଜୋରରେ ନୃତ୍ୟ କରିବାକୁ ଲାଗିଲେ । ସେମାନଙ୍କ ବିହ୍ୱଳତାର ସୁଯୋଗ ନେଇ ଦୁର୍ଗା ସେମାନଙ୍କୁ ପରସ୍ପରର ମସ୍ତକରେ ହସ୍ତଦେଇ ନୃତ୍ୟ କରିବାକୁ ନିର୍ଦ୍ଦେଶ ଦେଲେ । ତାହା ହିଁ ହେଲା । ସେମାନେ ଆଉ ବ୍ରହ୍ମାଙ୍କ କଥା ସ୍ମରଣ କରି ନ ପାରି ମୃତ୍ୟୁବରଣ କଲେ । ଅତିଶୟ କାମ ଲୋଲୁପତାର ଏହା ହିଁ ହେଲା ପରିଣାମ । ସାରଳା ଦାସ ମଧ୍ୟ କହିଲେ ମଣିଷର ଶେଷବେଳ ଉପସ୍ଥିତ ହେଲାବେଳେ, ସେ ଆଉ ଭଲ ମନ୍ଦ ବିଚାର କରିପାରେ ନାହିଁ ।

ନାରୀ ରୂପରେ ଆସକ୍ତ ହେବାର ଆଉ ଏକ ଚିତ୍ର ମିଳେ କାନ୍ତିମାଳା ଓ ଉଗ୍ରତାରା ଉପାଖ୍ୟାନରେ । ଅନ୍ୟ ନାରୀଙ୍କ ପରି ଉଗ୍ରତାରା ମଧ୍ୟ ମୋହୋନୀ କାମସେଣୀ ହେଲେ ବି ତାଙ୍କ ଶରୀରଥିଲା ବିଜୁଳି ତେଜପ୍ରାଏ । ତେଣୁ ତାଙ୍କ ପ୍ରଥମ ଦର୍ଶନରେ ହିଁ କାନ୍ତିମାଳା ଆତ୍ମାକୁ ଅଣକଚେ ସେ ପଡିଲାକ ମହୀ । ନାରୀ ରୂପରେ ତା'ର ପଞ୍ଚଆତ୍ମା ବଶ ହୋଇଯିବା ପରେ ତାର ପାଟିରୁ କେବଳ ଗୋଟିଏ କଥା ବିଭିନ୍ନ ରୂପରେ ଆତ୍ମପ୍ରକାଶ କଲା । ତାହା ହେଲା ମଦନ ସାଗରୁ ରକ୍ଷାକର ମହାତ୍ମା । ସେମାନେ 'ଦଶ ଲୁହ ମୁଖେ ଭରି', ଚରଣ ତଳେ ପଡି କେବଳ ସୁରତି ସୁଖ ଆଶା କରିଥିଲେ ।

କାନ୍ତମାଳାର କାମ ବିହ୍ୱଳ ଭାବ ଦେଖି ଉଗ୍ରତାରା ଗୋଟିଏ ସର୍ତ୍ତ ରଖିଥିଲେ । ସର୍ତ୍ତ ହେଲା ତାଙ୍କ ବ୍ରତ ପାଳନ କଥା । ବ୍ରତଟି କିନ୍ତୁ ଅଦ୍ଭୁତ ଥିଲା -

ଉଗ୍ରତାରା ବୋଇଲା ମୋତେ କାନ୍ଧରେ ବସାଇଂ
ଲଜ୍ୟା ଉପେକ୍ଷିଣ ମୋତେ ମନ୍ଦିରକୁ ପାରଇ ନେଇ
ପୁରୁଷ କୁଳ ଯେ ଉପେକ୍ଷା କରଇ ଲଜ୍ଜା
ତେବେ ସେ ତାହାର ମୁଁ ହୋଇବି ଭାରିଯା । ପ. ସଂ - ୨୪୧୫-୧୬

ପୁରୁଷ କୁଳର ଲାଜ ଛାଡି, ନାରୀକୁ କାନ୍ଧରେ ବସାଇ ପ୍ରୀତି ପାଳିବାର ଏହି ଯେଉଁ ପରମ୍ପରା ସୃଷ୍ଟି ହେଲା, ତାହା ରାଧାକୃଷ୍ଣ ବା ବୃନ୍ଦାବତୀ-କୃଷ୍ଣ ଉପାଖ୍ୟାନରେ ଦେଖିବାକୁ ମିଳିଲା ପରବର୍ତ୍ତୀ ଯୁଗରେ । ପୁରୁଷର ପରାକ୍ରମ ଓ ସାମର୍ଥ୍ୟକୁ ଲୋପ କରି ପ୍ରୀତି ସମ୍ପାଦନରେ ନାରୀର ପ୍ରାଧାନ୍ୟ ସ୍ୱୀକାର କରି, ସାରଳା ଦାସ ନିଜର ଯୁଗ ପ୍ରତି ଯେଉଁ ଉପହାସ କରିଗଲେ, ତାହାହିଁ ଦେଖିବାର କଥା । ପୁରୁଷମାନଙ୍କୁ, ଦଣ୍ଡଡି ଲାଗି ଯେହ୍ନେ ଗମଇ ବଇଲେ' କହିବା ବେଳେ ତାଙ୍କର କଟୁ ପରିହାସ ହିଁ ଧ୍ୱନିତ ହୋଇଥାଏ ।

ଏହା ସତ୍ତ୍ୱେ ନାରୀ ଜାତିର ଅବମାନନାକୁ ମଧ୍ୟ ସାରଳା ଦାସ ସହ୍ୟ କରି ପାରୁ ନଥିଲେ । ସମାଜରେ ପୁରୁଷ ପରି ନାରୀ ମଧ୍ୟ ସମ୍ମାନୀୟା । ସମାଜ ସୃଷ୍ଟି ପାଇଁ ପୁରୁଷ ପରି ନାରୀର ମଧ୍ୟ ଗୁରୁ ଦାୟିତ୍ୱ ରହିଛି । ସାରଳା ଦାସ ଏହା ଘୋଷଣା କଲେ କାଳ ବିମୋଚନ ଓ ନାରାୟଣୀ ଉପାଖ୍ୟାନରେ । ସାରଳା ଦାସ ପୁରୁଷ ଓ ନାରୀର ସଂପର୍କକୁ ବିଭିନ୍ନ ପର୍ଯ୍ୟାୟରେ ରଖି ବିଚାର କରିବାର ଏକ ସ୍ୱତନ୍ତ୍ର ପରଂପରା ସୃଷ୍ଟି କଲେ । ଶୃଙ୍ଗାର ରସକୁ ସାଂସ୍କୃତିକ ଦୃଷ୍ଟିକୋଣରୁ ବିଭିନ୍ନ ପରିସ୍ଥିତି ମଧ୍ୟରେ ସେ ଯେପରି ବିଚାର କରିଥିଲେ, ତାହା ପରବର୍ତ୍ତୀ ଯୁଗରେ ଶୁଦ୍ଧ ଶୃଙ୍ଗାର ରସର ବିବେଚନା ମଧ୍ୟରେ ଉଭେଇ ଗଲା ।

**ନୃତ୍ୟ ସଙ୍ଗୀତ ଓ ବାଦ୍ୟ :** ସାରଳା ଦାସଙ୍କ ସାଂସ୍କୃତିକ ଚେତନା ବିଚାର କଲାବେଳେ ତାଙ୍କ ବାଦ୍ୟ ତଥା ନୃତ୍ୟ ଜ୍ଞାନ ପାଠକକୁ ଚମତ୍କୃତ କରେ । ବିଶେଷ କରି **ଚଣ୍ଡୀ ପୁରାଣ**ରେ ସେ ଦେଲେ ଦୁଇଟି ପୁରୁଷ ନୃତ୍ୟ ଓ ଗୋଟିଏ ନାରୀ ନୃତ୍ୟ । ଶମ୍ଭୁ ଓ ନିଶମ୍ଭୁଙ୍କ ନୃତ୍ୟ ବର୍ଣ୍ଣନା କଲାବେଳେ ସେ ଏକୋଇଶ ମୂର୍ଚ୍ଛନା, ପଞ୍ଚତାଳ, ଭରହ ରସ , ତାଣ୍ଡବ ନୃତ୍ୟ, ଆକ୍ରମଣ, ଆରମ୍ଭ ଚଞ୍ଚପୁଟ, ଚାଞ୍ଚପୁଟ, ତରାଣା, ରକ୍ଷଣା, ଧୋଆ, ମଠା ପଡିତାଳ, ଆଡତାଳ, ଝୁମ୍ପା, ପ୍ରବନ୍ଧ,ଶୃଙ୍ଗାର, କାରୁଣ୍ୟ ପ୍ରଭୃତିର ଉଲ୍ଲେଖ କରି ସେ ନିଜ ସଂଗୀତ ଓ ନୃତ୍ୟ ଜ୍ଞାନର ପରିଚୟ ଦେବା ସଙ୍ଗେ ସଙ୍ଗେ ଓଡିଶାରେ ନୃତ୍ୟ ଓ ସଂଗୀତ ଚର୍ଚ୍ଚାର ସୂଚନା ଦେଇଥିଲେ । ସେହିପରି ଦେବୀଙ୍କ ମଙ୍ଗୋଆଳ ନାଚ ଖଣ୍ଡି ବର୍ଣ୍ଣନା କଲାବେଳେ ସେ ଡିମ୍ବିରୁ, ଓ ଖେମଟାର ଉଲ୍ଲେଖ କଲେ । ଏ ସବୁ ନୃତ୍ୟ ବର୍ଣ୍ଣନାରେ କବିଙ୍କ ଉପରେ ନୃତ୍ୟ ପରଂପରାର ପ୍ରଭାବ ଲକ୍ଷ୍ୟ କରାଯାଇପାରେ ।

ନୃତ୍ୟ, ସଂଗୀତ, ବାଦ୍ୟ, ଖାଦ୍ୟ, ଧର୍ମ, ପୋଷାକ, ଅବସର ବିନୋଦନ ଆଖେଟ, ଚାଲିଚଳଣି, ଆଚାର ବ୍ୟବହାର, କଥା-ବାର୍ତ୍ତା, ଆଶା-ନିରାଶା, ବିଶ୍ୱାସ-ଅବିଶ୍ୱାସ ପ୍ରଭୃତି ସମାଜ ଓ ସଭ୍ୟତାର ବିଭିନ୍ନ ଉପାଦାନ ମଧ୍ୟରେ ସଂସ୍କୃତିର ସ୍ୱରୂପ ଲୁକ୍କାୟିତ ଥାଏ । ସାରଳା

ଦାସଙ୍କ ପ୍ରତ୍ୟେକ ବର୍ଣ୍ଣନାରୁ ଏକ ସୁରୁଚି ସମ୍ପନ୍ନ ସୁସଭ୍ୟ ସୁସଂସ୍କୃତ ଜାତିର ପରିଚୟ ମିଳେ । ସାରଳା ଦାସ ତାଙ୍କର ତଥା ଚରିତ୍ର ସବୁର ମନ , ବଚନ ଓ କର୍ତ୍ତବ୍ୟର ଯେଉଁ ସୁସଂଯତ ଚିତ୍ର ପ୍ରଦାନ କରିଛନ୍ତି, ତାହା ଅତ୍ୟନ୍ତ ମୂଲ୍ୟବାନ । ସେମାନେ ଅସୁର ଜାତିର ହୁଅନ୍ତୁ କି ସୁର ଜାତିର ହୁଅନ୍ତୁ ପ୍ରତ୍ୟେକ ନିଜ ନିଜ କର୍ମକ୍ଷେତ୍ରରେ ଉତ୍କୃଷ୍ଟ ନୀତିବୋଧର ପରିଚୟ ଦେଇଥିଲେ । ସେମାନଙ୍କ କଥାବାର୍ତ୍ତା ତର୍କ ସଂଗତ ଥିଲା । ପ୍ରତ୍ୟେକ ନିଜ ନିଜ ଧର୍ମପଥରେ ପରିଚାଳିତ ହେଉଥିଲେ । ଅତ୍ୟଧିକ କାମଲିପ୍ସା ଏବଂ ଦୈବୀଶକ୍ତିର ଅବମାନନା ମହିଷାସୁର ବଧର ମୂଳ କାରଣ ହେଲେବି, ଏ ସବୁରେ ବୀଭତ୍ସତା କିମ୍ବା ଉଚ୍ଛୃଙ୍ଖଳତା ଦେଖିବାକୁ ମିଳେ ନାହିଁ । ସାରଳା ଦାସ ଦୁଇ ବିରୋଧୀ ଶକ୍ତିର ସଂଘର୍ଷର ବର୍ଣ୍ଣନା ତାଙ୍କ ଗ୍ରନ୍ଥରେ ପ୍ରଦାନ କରିଥିଲେ ହେଁ, ମହାନ ଆଦର୍ଶ ବୋଧହିଁ ଥିଲା ତାଙ୍କ ରଚନା ସୃଷ୍ଟିର ଆତ୍ମା । ବରଂ ଏଥିରେ ସୃଷ୍ଟିକର୍ତ୍ତା ବ୍ରହ୍ମା ଭକ୍ତିରେ ଭୋଳ ହୋଇ ବିଶ୍ୱ ସୃଷ୍ଟି ନିୟମର ବିରୋଧ କରି ଅସୁରମାନଙ୍କୁ ଅମର ବର ପ୍ରଦାନ କରିଛନ୍ତି, ଇନ୍ଦ୍ର ଅତିଶୟ କ୍ରୋଧିତ ହୋଇ ଦୂତଙ୍କୁ ବଧ କରିଛନ୍ତି, ପୁଣି ଦେବୀମାନେ ସେମାନଙ୍କର ମୋହିନୀ ରୂପରେ ଅସୁରମାନଙ୍କୁ ଆକର୍ଷଣ କରି ପ୍ରୀତିଦାନ ପରିବର୍ତ୍ତେ ବିଶ୍ୱାସଘାତ କରି ସେମାନଙ୍କୁ ବଧ କରିଛନ୍ତି । କିନ୍ତୁ, ଅସୁରମାନେ ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କ ଉନ୍ନତ କର୍ତ୍ତବ୍ୟବୋଧ ଦ୍ୱାରା ପରିଚାଳିତ । ଇନ୍ଦ୍ରପଦ ଅଧିକାର, ସ୍ୱର୍ଗ ରାଜ୍ୟ ଆକ୍ରମଣ ବା ସ୍ୱର୍ଗ ବେଶ୍ୟାଙ୍କର ଉପଭୋଗକୁ ଆପାତତଃ ସେମାନଙ୍କ ଚରିତ୍ରର ଦୋଷ ରୂପେ ଗ୍ରହଣ କରାଯାଇପାରେ, କିନ୍ତୁ ଅସୁର ଜାତିର ଶକ୍ତି ଓ ପରାକ୍ରମର ବର୍ଣ୍ଣନା ଦୃଷ୍ଟିରୁ ଏ ସବୁ ନିନ୍ଦନୀୟ ନୁହେଁ । ଏହିପରି ଭାବେ ବିଚାର କଲେ ସାରଳା ଦାସଙ୍କ ସାଂସ୍କୃତିକ, ସାମାଜିକ ଓ ରାଜନୈତିକ ଚେତନା ତାଙ୍କୁ ଯଥାର୍ଥରେ ସାରଳା ଦେବୀଙ୍କ ସୁତ ଭାବେ ପ୍ରତିଷ୍ଠିତ କରି ପାରିଥିଲା ।

## ସାମ୍ପ୍ରଦାୟିକତା ଦୃଷ୍ଟିରୁ ଚଣ୍ଡୀପୁରାଣ - ଏହା ଶାକ୍ତ ପୁରାଣ ନୁହେଁ

ସାରଳା ଦାସଙ୍କ **ଚଣ୍ଡୀପୁରାଣକୁ** ସାଧାରଣତଃ ଏକ ଶାକ୍ତ ପୁରାଣ ରୂପେ ଗ୍ରହଣ କରାଯାଇଥାଏ । କବି ଯଦି ଏହି ଗ୍ରନ୍ଥକୁ କେବଳ ଭାଗବତ କହିଥାନ୍ତେ, ତାହାଲେ ଏହାକୁ ଦେବୀ ଭାଗବତ କହିବାରେ ଅସୁବିଧା ନ ଥିଲା ଏବଂ ଏହା ହୋଇଥାନ୍ତା ଏକ ଶାକ୍ତ ପୁରାଣ । କିନ୍ତୁ କବି ଏହାକୁ ବାରମ୍ବାର ହରିବଂଶ ଓ ବିଷ୍ଣୁପୁରାଣ କହିବା ସଙ୍ଗେ ସଙ୍ଗେ ଦେବୀଙ୍କୁ ମାଳତୀ ପରି ବିଷ୍ଣୁଙ୍କର ଏକ ଅବତାର ରୂପେ ଗ୍ରହଣ କରିଥିବାରୁ, ଏହି ଗ୍ରନ୍ଥ ଯେ ଶାକ୍ତ ପୁରାଣ ନୁହେଁ ଏହା ହିଁ ପ୍ରମାଣିତ ହୁଏ । ବିଶେଷ କରି କବି ଦେବୀ ଭକ୍ତ ହେଲେ ହେଁ, ଏବଂ ଦେବୀଙ୍କର ଶ୍ରେଷ୍ଠତା ପ୍ରଚାର କରିବା ପାଇଁ ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଦେବୀଙ୍କର ସ୍ତୁତି ଓ ବନ୍ଦନା ସଂଯୋଜନା କରିଥିଲେ , ଅନ୍ୟ ଦେବତା ବିଶେଷ କରି ବିଷ୍ଣୁଙ୍କ ନିନ୍ଦା କୌଣସି ସ୍ଥାନରେ କରି ନାହାନ୍ତି । ଲକ୍ଷ୍ୟ କରିବାର କଥା, ଗ୍ରନ୍ଥ ମଧ୍ୟରେ ବ୍ରହ୍ମା, ଇନ୍ଦ୍ର ଓ ଶିବ ପ୍ରଭୃତି ହିନ୍ଦୁ ଧର୍ମର ବିଶିଷ୍ଟ ଦେବତା ଦେବୀଙ୍କର ସ୍ତୁତି କରିଥିଲେ ହେଁ, ଏବଂ ବିଷ୍ଣୁ ସେଠାରେ ଉପସ୍ଥିତ ଥିଲେ ହେଁ, ସେ ନିଜେ

ଦେବୀଙ୍କୁ ସ୍ତୁତି ନ କରି, ଏଥିପାଇଁ ବ୍ରହ୍ମାଙ୍କୁ ଅନୁରୋଧ କରିଛନ୍ତି । ଏହିସବୁ ଦୃଷ୍ଟିରୁ ବିଚାର କଲେ, ଜଣାଯାଏ, କବି ସାରଳା ଦାସ ଅତି ସଚେତନ ଭାବେ ଦୁର୍ଗାଙ୍କୁ ବିଷ୍ଣୁଙ୍କର ଏକ ଅବତାର ରୂପେ ଚିତ୍ରଣ କରିବାକୁ ଚାହିଁଥିଲେ । ତେଣୁ ଗ୍ରନ୍ଥର ନାମ 'ଚଣ୍ଡୀ ପୁରାଣ' ହେଲେ ହେଁ, ଏହା ବିଷ୍ଣୁଙ୍କ ଅବତାର ଚଣ୍ଡୀଙ୍କର ପୁରାଣ । ଏହା ସତ୍ତ୍ୱେ ଏଥିରେ ଦେବୀଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିବାରେ ପୁଣି ଦେବୀ ଭକ୍ତମାନଙ୍କର ମଙ୍ଗଳ କାମନା କରିବାରେ କବି କୌଣସି ସ୍ଥାନରେ କୁଣ୍ଠା ପ୍ରକାଶ କରି ନାହାନ୍ତି । ବିଷ୍ଣୁଙ୍କ ନାରୀ ରୂପର ସୂଚନା ଦେଇ କହିଛନ୍ତି,

ବ୍ରହ୍ମାଏ ବୋଇଲେ ବିଷ୍ଣୁର ଅନେକ ଅଟଇ ମାୟା
ସ୍ତିରୀ ପୁରୁଷରେ ବିକାଶେ ତାର କାୟା ପ. ସଂ-୨୦୨୪

ଚଣ୍ଡୀଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ କବି ସତତ ଚେଷ୍ଟିତ ଥିଲେ ହେଁ, ଏଥିରେ 'ଶାକ୍ତ ମତ'ର ବାମ ମାର୍ଗୀ ଶାଖା ଏବଂ ତାନ୍ତ୍ରିକମାନଙ୍କର ପ୍ରଭାବ ପରିଲକ୍ଷିତ ହୁଏ ନାହିଁ । 'ଶାକ୍ତ ମତ'ର ବାମ ମାର୍ଗୀ ତଥା ତାନ୍ତ୍ରିକମାନଙ୍କର ମୁଖ୍ୟ ପ୍ରବୃତ୍ତିକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ ।

୧ । ଦେବୀଙ୍କ ପ୍ରତି ଇଷ୍ଟ ଭାବନା ।

୨ । ମୈଥୁନ ।

୩ । ଶସ୍ତ୍ର ପୂଜା ।

୪ । ମଦିରା ତଥା ଅନ୍ୟ ମାଦକ ପଦାର୍ଥର ସେବନ ।

୫ । ମାଂସ ଭକ୍ଷଣ ।

ତାନ୍ତ୍ରିକମାନେ ସାଧନାର ପ୍ରକୃଷ୍ଟ ମାର୍ଗରୂପେ ଏସବୁକୁ ଗ୍ରହଣ କରୁଥିବା ବେଳେ, ସାରଳା ଦାସ ଏ ସବୁ ମଧ୍ୟରୁ ଶସ୍ତ୍ର ପୂଜାକୁ ପ୍ରାୟ ପରିତ୍ୟାଗ କରିଛନ୍ତି । କେବଳ ଜୟଚଣ୍ଡୀଙ୍କର ବନ୍ଦନା କଲାବେଳେ ଖଡଗ ବର୍ଗର ଲୋକଙ୍କୁ ଉଲ୍ଲେଖ କରି କହିଛନ୍ତି -

ଆହୋ ଖଡଗ ବର୍ଗ ଲୋକେ ଜୟଚଣ୍ଡୀ ସୁମରି ହୃଦେ
ରଣେ ଜୟ ହୋଉ ଜୟଚଣ୍ଡୀର ପ୍ରସାଦେ । ପ. ସଂ - ୩୧୫୬

**ଚଣ୍ଡୀ ପୁରାଣ**ରେ ମୈଥୁନ କୌଣସି ସ୍ଥାନରେ ସାଧନାର ମାର୍ଗଭାବେ ବର୍ଣ୍ଣିତ ନୁହେଁ । ପୁଣି କବି ମୈଥୁନ ପାଇଁ ପରିବେଶ ସୃଷ୍ଟି କରିଥିଲେହେଁ, ସମ୍ଭୋଗ ବର୍ଣ୍ଣନାକୁ ଗ୍ରନ୍ଥ ମଧ୍ୟରୁ ସମ୍ପୂର୍ଣ୍ଣ ପରିହାର କରିଥିଲେ ଏବଂ କାମ ବାସନା ଯେ ଅନିଷ୍ଟକାରକ ଏହା ହିଁ ଥିଲା ତାଙ୍କର ଦୃଢମତ । ସେଥିପାଇଁ ତାଙ୍କ ଗ୍ରନ୍ଥରେ ଅତ୍ୟଧିକ କାମ ବାସନାକୁ ବିନାଶର ମୂଳ ହେତୁ ରୂପେ ଘୋଷଣା କରାଯାଇଛି ।

ତ୍ରିଲୋକ୍ୟରେ ଯେଉଁ ବୀରଙ୍କୁ ନାହିଁ ମୃତ୍ୟୁ
କାମ ଲୁବ୍ଧେ ବୀରେ ବୁଡାଇଲେ ହେତୁ । ପ. ସଂ - ୨୦୮୦

ଗ୍ରନ୍ଥ ମଧ୍ୟରେ ବିଭିନ୍ନ ଅସୁର ଓ ଦେବୀ ଦୁର୍ଗା ମଦିରାପାନ କରୁଥିବା ଦେଖିବାକୁ ମିଳେ । ଏହା କିନ୍ତୁ ସାଧନାର ମାର୍ଗ ନୁହେଁ । ପୁଣି କବିଙ୍କ ମତରେ ଅତ୍ୟଧିକ ମଦିରା ପାନ କଲେ ମନୁଷ୍ୟର ବୁଦ୍ଧି ଲୋପ ହୁଏ, ଏବଂ ମନୁଷ୍ୟ କୌଣସି କାର୍ଯ୍ୟ କରିବାକୁ ଅକ୍ଷମ ହୋଇଯାଏ ।

**ଚଣ୍ଡୀ ପୁରାଣ**ରେ ମାଂସ ଭକ୍ଷଣର କେତେକ ଉଲ୍ଲେଖ ମିଳେ । ଦେବୀମାନେ ରକ୍ତପାନ କରୁଥିଲେ ଏବଂ ମାଂସ ଭକ୍ଷଣ କରୁଥିଲେ । କବି ମଧ୍ୟ ପ୍ରସଙ୍ଗ କ୍ରମେ ସମାଜରେ ମାଂସ ଭୋଜନର କେତେକ ଉଲ୍ଲେଖ କରିଛନ୍ତି । ମାଂସକୁ ଖଣ୍ଡି ଖଣ୍ଡି କରି କାଟିବା, ମାଂସ ଭାଜି ଖାଇବା, ପୁଣି ମାଂସରେ ଲୁଣ ପକାଇ ଏହାକୁ ନରମ କରିବା ପ୍ରଭୃତିକୁ ଗ୍ରହଣ କରାଯାଇପାରେ । ଏସବୁ ଉଲ୍ଲେଖ ସତ୍ତ୍ୱେ କବି ଏହାକୁ କୌଣସି ସ୍ଥାନରେ ସାଧନାର ମାର୍ଗରୂପେ ଗ୍ରହଣ କରି ନ ଥିଲେ ।

ସାମ୍ପ୍ରଦାୟିକତାର ସଂକୀର୍ଣ୍ଣତା ମହାନ କବି ସାରଳାଦାସଙ୍କୁ ଶୃଙ୍ଖଳିତ କରି ପାରି ନ ଥିଲା । ସେ 'ସାରଳା ଦେବୀଙ୍କ ସୁତ' ଥିଲେ । ସେଥିପାଇଁ ମାତୃ ହୃଦୟର ଉଦାରତା ତଥା ମହନୀୟତା ହିଁ ଥିଲା, ତାଙ୍କ ଜୀବନର ଆଦର୍ଶ । ସବୁ ପୁରାଣ ପରି ସେ ତାଙ୍କର ଇଷ୍ଟ ସାରଳା ଦେବୀଙ୍କୁ ବିଭିନ୍ନ ରୂପରେ ବର୍ଣ୍ଣନା କରିଥିଲେ ହେଁ, ଅନ୍ୟ ଦେବତାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ସେ ସମନ୍ୱୟ ଭାବନାକୁ ଜାତି ମଧ୍ୟରେ ପ୍ରଚାର କରିଥିଲେ । ଏହା ହିଁ ଥିଲା ତାଙ୍କର ଦେଶ ତଥା ଜାତି ପାଇଁ ମହାନ ଅର୍ଘ୍ୟ ।

('ପ.ସଂ' ଦ୍ୱାରା ସଂପାଦିତ ଗ୍ରନ୍ଥ 'ଚଣ୍ଡୀ ପୁରାଣର'ର ପଦ ସଂଖ୍ୟା,
ଓ 'ପୃ' ଦ୍ୱାରା ପଦ ସଂଖ୍ୟା ସୂଚିତ ।)



# ତୃତୀୟ ପରିଚ୍ଛେଦ

## ମୁଖବନ୍ଧ ୩

ପଞ୍ଚଦଶ ଶତାବ୍ଦୀ ଓଡ଼ିଆ ସାହିତ୍ୟ ପାଇଁ ଏକ ସୁବର୍ଣ୍ଣଯୁଗ । ଏହି ଶତାବ୍ଦୀରେ ଓଡିଶାରେ ଦୁଇଜଣ କୃତୀ ସନ୍ତାନ ଜନ୍ମ ଗ୍ରହଣ କରିଥିଲେ । ଜଣେ ଓଡ଼ିଶାର ଦିଗ୍‌ବିଜୟୀ ସମ୍ରାଟ କପିଳେନ୍ଦ୍ର ଦେବ ଓ ଅନ୍ୟ ଜଣକ ଶୂଦ୍ରମୁନି ସାରଳା ଦାସ । ଗଙ୍ଗବଂଶୀୟ ସମ୍ରାଟମାନେ ଓଡ଼ିଶାକୁ ଜୟ କରି ଓଡ଼ିଶାରେ ପୁରୀ, କୋଣାର୍କ ସଦୃଶ ଉତ୍ତୁଙ୍ଗ ମନ୍ଦିର ନିର୍ମାଣ କରି ସେମାନଙ୍କର ଅକ୍ଷୟକୀର୍ତ୍ତି ପ୍ରତିଷ୍ଠା କରିଯାଇଥିଲେ ହେଁ ସେମାନେ ମୂଳତଃ ଓଡ଼ିଆ ନ ଥିଲେ । ସେଥିପାଇଁ ପ୍ରାୟ ଦଶମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ଅପଭ୍ରଂଶ କବଳରୁ ନିଜକୁ ମୁକ୍ତ କରିସାରିଥିଲେ ହେଁ, ପ୍ରୋତ୍ସାହନ ଅଭାବରୁ ସାହିତ୍ୟ ସୃଷ୍ଟି ସମ୍ଭବ ହୋଇ ପାରି ନ ଥିଲା । ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଶିଳାଲେଖ ସବୁରେ ମଧ୍ୟ ତେଲୁଗୁଭାଷା ସହିତ ଓଡ଼ିଆ ସ୍ଥାନ ପାଉଥିଲା । ଏ ଦେଶରେ ତେଲୁଗୁ ଭାଷାର ରାଜତ୍ୱ ଥିଲା । ପୁରୀ ଓ ଭୁବନେଶ୍ୱରର ତେଲୁଗୁ ଭାଷାରେ ଲିଖିତ ଅସଂଖ୍ୟ ଶିଳାଲେଖ ଏହାର ପ୍ରମାଣ । ଗଙ୍ଗବଂଶର ଅବସାନ ପରେ ସୂର୍ଯ୍ୟବଂଶୀୟ କପିଳେନ୍ଦ୍ରଦେବ ହେଲେ ଏ ଦେଶର ଭାଗ୍ୟବିଧାତା । ସାଧାରଣ ରାଉତ ଭାବେ ଜୀବନ ଆରମ୍ଭ କରି ନିଜର ତୀକ୍ଷ୍ଣ ବୁଦ୍ଧି ଓ ବିଚକ୍ଷଣତା ବଳରେ ଗଙ୍ଗାଠାରୁ କୃଷ୍ଣା ପର୍ଯ୍ୟନ୍ତ ବିଶାଳ ଭୂଖଣ୍ଡର ଅଧିକାରୀ ହୋଇ ନିଜକୁ ବୀର ଶ୍ରୀ ଗଜପତି ଗୌଡେଶ୍ୱର ନବକୋଟୀ କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ବୀରାଧିବୀରବର ପ୍ରଭୃତି ଉପାଧିରେ ଭୂଷିତ କରି ଓଡ଼ିଆ ଜାତିର ବୀରତ୍ୱକୁ ଭାରତରେ ପ୍ରତିଷ୍ଠିତ କଲାପରି ତାଙ୍କରି ରାଜତ୍ୱ କାଳରେ ମହାକବି ଶୂଦ୍ରମୁନି ସାରଳା ଦାସ କୃଷିକାରୀ ଭାବେ ଜୀବନ ଆରମ୍ଭ କରି ମହାଭାରତ, ରାମାୟଣ ଓ ଚଣ୍ଡୀ ଭାଗବତ ପରି ସଂସ୍କୃତ ସାହିତ୍ୟର ମହାନ୍ ଗ୍ରନ୍ଥତ୍ରୟକୁ ଓଡ଼ିଆ ଭାଷାରେ ରୂପାନ୍ତରିତ କରି ଓଡିଆ ଭାଷାର ମହତ୍ତ୍ୱ ବୃଦ୍ଧି କରିଥିଲେ । କପିଳେନ୍ଦ୍ର ଦେବ ଓ ସାରଳା ଦାସ ଉଭୟଙ୍କ ପ୍ରଚେଷ୍ଟାରେ ଓଡ଼ିଆ ଜାତି ତଥା ଓଡ଼ିଆ ଭାଷା ଭାରତବର୍ଷରେ ନିଜର ପ୍ରତିଷ୍ଠା ପ୍ରତିଷ୍ଠିତ କରିପାରି ଥିଲେ ହେଁ, କପିଳେନ୍ଦ୍ରଙ୍କ ପରେ ତାଙ୍କ ବିଶାଳ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଗଲା, ଅଥଚ ସାରଳା ଦାସଙ୍କ ପରେ ତାଙ୍କ ରଚିତ ଗ୍ରନ୍ଥସବୁର ମହିମା ଦକ୍ଷିଣରେ ତେଲୁଗୁ ଓ ଉତ୍ତରରେ ବଙ୍ଗ ଭାଷାକୁ ପ୍ରଭାବିତ କଲା । କପିଳେନ୍ଦ୍ର ଦେବଙ୍କ କୀର୍ତ୍ତିରାଜି ଧୀରେ ଧୀରେ ଓଡ଼ିଶାରୁ ଲୁପ୍ତ ହେବାକୁ ଆରମ୍ଭ କରିଛି, ଅଥଚ ସାରଳା ଦାସଙ୍କ ଅକ୍ଷୟକୀର୍ତ୍ତି ଚିରଦିନ ଅମ୍ଳାନ । ଯୁଗ ଯେତିକି ବଦଳୁଛି, ସାରଳା ଦାସଙ୍କ ଗ୍ରନ୍ଥରାଜିର ତର୍ଜମା ସେତିକି ନୂଆ

ହେଉଛି । ସେ ଯେ ଜଣେ କାଳଜୟୀ ମହାକବି ଥିଲେ ଏବଂ ସୀମାହୀନ ମନୀଷା ଅଧିକାରୀ ଥିଲେ, ଏହାର ପ୍ରମାଣ ହେଲା ତାଙ୍କର ଗ୍ରନ୍ଥରାଜି ।

ସାରଳା ଦାସଙ୍କ ପୂର୍ବରୁ ସିଦ୍ଧ, ନାଥ ଓ ଧର୍ମ ସମ୍ପ୍ରଦାୟର କ୍ଷୁଦ୍ର କ୍ଷୁଦ୍ର ରଚନା, ଲୋକଗୀତ, ଲୋକକଥା, ଡାକ ଋଷିବଚନ, ଢଗଢମାଳି, ପ୍ରବଚନ, ପ୍ରହେଳିକା, ଗୁଣିଗାରେଡିର ଅସ୍ପଷ୍ଟ ଓ ଅର୍ଥହୀନ ପଦ ଓଡିଆ ଭାଷାର ଆଦିରୂପ ଗଠନରେ ସାହାଯ୍ୟ କରିଥିଲେ ହେଁ, ସାରଳା ଦାସ ହିଁ ଥିଲେ ପ୍ରାଚୀନ ଓଡିଆ ସାହିତ୍ୟର ଆଦି ମହାକବି । ଓଡ଼ିଆ ସାହିତ୍ୟ ବାଳ ରବିର କୋମଳ କିରଣ ସ୍ପର୍ଶରେ ଆହ୍ଲାଦିତ ନ ହୋଇ ଏକାବେଳେକେ ମଧ୍ୟାହ୍ନ ରବିର ପ୍ରଚଣ୍ଡ କିରଣରେ ଉଦ୍ଭାସିତ ହୋଇଉଠି ଥିଲା । ବିକାଶ ପଥରେ ଗତି ନ କରି ପରିଣତ ଅବସ୍ଥାରୁ ହିଁ ଏହାର ଆରମ୍ଭ ହେଲା । ସାରଳା ଦାସ ଭାଷା ଭାବ ଓ କଥା ଯୋଜନାରେ ଯେଉଁ ଆଦର୍ଶର ମୂଳଭିତ୍ତି ସ୍ଥାପନ କଲେ, ତାହା କେବଳ ସେହି ଯୁଗ ପାଇଁ ଉଦ୍ଦିଷ୍ଟ ନ ଥିଲା, ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟର ନୂତନ ନୂତନ ଅଟ୍ଟାଳିକା ନିର୍ମାଣ ପାଇଁ ତାହାହିଁ ଥିଲା ପ୍ରକୃଷ୍ଟ ଭିତ୍ତିଭୂମି ।

ସାରଳା ଦାସଙ୍କ ବେଳକୁ ସଂସ୍କୃତ ସାହିତ୍ୟର ଅବସାନ କାଳ ଆରମ୍ଭ ହୋଇସାରି ଥିଲା । ବେଦ, ପୁରାଣ, କାବ୍ୟ, ନାଟକ ଓ ଅନ୍ୟାନ୍ୟ କ୍ଷେତ୍ରରେ ସଂସ୍କୃତ ସାହିତ୍ୟ ଏପରି ଚରମ ସୀମାରେ ଉପନୀତ ହୋଇସାରି ଥିଲା ଯେ ଏହାକୁ ଅତିକ୍ରମ କରିବା ପାଇଁ ଲେଖକମାନେ ସାହସ କରୁ ନ ଥିଲେ । ସେଥିପାଇଁ ସେ ସବୁର ଟୀକା, ବ୍ୟାଖ୍ୟା ଓ ଅନୁକୃତି ପ୍ରସ୍ତୁତ କରିବାରେ ସେମାନେ ନିଜର ସମୟ ନିୟୋଜିତ କରୁଥିଲେ । ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷା ମଧ୍ୟ ବିଲୟ ପଥରେ ଗତି କରିବାକୁ ଆରମ୍ଭ କରିଦେଇ ଥିଲା । ଏସବୁ ଭାଷା ସ୍ଥାନରେ ସମସ୍ତ ଭାରତବର୍ଷରେ ଚଳନ୍ତି କଥିତ ଭାଷାକୁ ସାହିତ୍ୟିକ ଭାଷାର ମର୍ଯ୍ୟାଦା ଦେବା ପାଇଁ ଏକ ନୂଆ ଜାଗରଣ ଆରମ୍ଭ ହୋଇଥିଲା । ଲେଖକମାନେ ପ୍ରାକୃତ ନାଁ ଦେଇ ଦେଶୀ ଭାଷାକୁ ହିଁ ବିଶେଷ ଗୁରୁତ୍ୱ ପ୍ରଦାନ କରୁଥିଲେ । ଓଡିଶାର ଗଜପତି କପିଳେନ୍ଦ୍ର ଦେବ ନିଜ ରଚିତ **ପରଶୁରାମ ବ୍ୟାୟୋଗ** ଶୀର୍ଷକ ସଂସ୍କୃତ ନାଟିକାରେ ପ୍ରାକୃତ ସ୍ଥାନରେ ଓଡ଼ିଆ ଭାଷା ରଚିତ ଏକ ସଙ୍ଗୀତକୁ ସ୍ଥାନ ଦେଇ ଏବଂ ନିଜ ପ୍ରଦତ୍ତ ରାଜାଦେଶ ସବୁରେ ଓଡ଼ିଆ ଭାଷାକୁ ଗୁରୁତ୍ୱ ପ୍ରଦାନ କରି ଓଡିଆ ଭାଷାର ମହତ୍ତ୍ୱ ପ୍ରତି ଦେଶବାସୀଙ୍କର ଦୃଷ୍ଟି ଆକୃଷ୍ଟ କରିଥିଲେ । ଏହା ଫଳରେ ଦେଶରେ ଯେଉଁ ନୂଆ ଜାଗରଣ ସୃଷ୍ଟି ହେଲା, ସାରଳା ଦାସ ହେଲେ ଏହାରି ପରିଣତି ।

ସାରଳା ଦାସ ରାମାୟଣ, ଭାଗବତ ଓ ମହାଭାରତ ରଚନା କରି ଥିଲେ ହେଁ, **ମହାଭାରତ** ହିଁ ଥିଲା ତାଙ୍କର ଶ୍ରେଷ୍ଠ ଗ୍ରନ୍ଥ । ସଂସ୍କୃତରେ 'ମହାଭାରତ'କୁ ଇତିହାସ

କୁହାଯାଏ । ଓଡିଆରେ ଏହା ହେଲା, ପୁରାଣ । ସାରଳା ଦାସ ଏହାକୁ ଯେ କେବଳ ପୁରାଣ ରୂପ ପ୍ରଦାନ କଲେ, ତାହା ନୁହେଁ, ଅଷ୍ଟାଦଶ ପୁରାଣଠାରୁ ଏହାର ଶ୍ରେଷ୍ଠତା ତଥା ମହନୀୟତା ମଧ ପ୍ରଚାର କରିଥିଲେ । ଆଦିପର୍ବରେ କବି ଏହାର ସୂଚନା ଦେଇ ଲେଖିଛନ୍ତି -

ଶୁଣ ହୋ ବଇବସୁତ ମନୁ ଆଦ୍ୟ ଯେ ଚରିତ
ଦେବତାମାନେ ହାଦେ ରଚିଲେ ସର୍ବ ଗ୍ରନ୍ଥ ।
ତୁଳାଦଣ୍ଡ କଲେ ଦ୍ୱାଦଶ ଯୋଜନ କାଠି
ତିନି ତିନି ଯୋଜନ କଲେ ବେନି କର୍ଣ୍ଣ କୋଟି ।
ବିଷ୍ଣୁ ଅନନ୍ତ କୋଟିବ୍ରହ୍ମାଣ୍ଡ ଅନନ୍ତ କୋଟି
ସବୁ ପୂରୋଇଲେ ନେଇ ତୁଳଦଣ୍ଡ କାଠି ।
ଅଷ୍ଟାଦଶ ପୁରାଣ ପଞ୍ଚବିଂଶ ଲକ୍ଷ
ରାମାୟଣ ଚଣ୍ଡୀଯୁଦ୍ଧ ସମସ୍ତ ପୁରାଣ ପ୍ରତକ୍ଷ ।
ବିଷ୍ଣୁ ପୁରାଣ ରାଜା ମାରକଣ୍ଡ ପୁରାଣ ପାତର
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।
ଯେ ଚାରି ପୁରାଣ ମୁଖ୍ୟ କରିଣ ସମସ୍ତ ପୁରାଣ
ଯେମନ୍ତ ବସାଇଲେ ନେଇ ତୁଳାଦଣ୍ଡ କଡିକେଣ ।
ଆରକେ କଛେ ଭାରଥ ଅଷ୍ଟାଦଶ ଥୋଇଲେ
ସମସ୍ତ ପୁରାଣୁଂ ଯେ ମହାଗରୁ ହୋଇଲେ ।
ଯେ ଭାରଥ ଯହୁଂ ହୋଇଲା ମହାଭାରା
ତହୁଂ ମହାଭାରଥ ନାମ ଦେଲେ କଶ୍ୟପ ଅଙ୍ଗିରା ।
ଯେଣୁ କରି ହୋଇଲା ମହାଭାରଥ ନାମ
ତୁଳନ୍ତେ ହୋଇଲା ଯେ ମହା ଅସମ୍ଭବ । (୧)

ସାରଳା ମହାଭାରତର ଏହି ଦୀର୍ଘ ଉଦ୍ଧୃତାଂଶରୁ କେତେକ ଗୁରୁତ୍ୱ ପୂର୍ଣ୍ଣ ତଥ୍ୟ ଜାଣିହୁଏ । କବି ପ୍ରଥମେ ଅଷ୍ଟାଦଶ ପୁରାଣ କଥା କହିବା ପରେ ରାମାୟଣ ଓ ଚଣ୍ଡୀ ଯୁଦ୍ଧ କଥା କହିଛନ୍ତି । ଏତେବେଳକୁ ସେ ହୁଏତ **ରାମାୟଣ** ଲେଖିସାରିଥିଲେ, 'ଚଣ୍ଡୀ

---

୧। ଦ୍ରଷ୍ଟବ୍ୟ - ଡକ୍ଟର କୃଷ୍ଣଚରଣ ସାହୁ ସଂପାଦିତ **ମହାଭାରତ ଆଦି ପର୍ବ** ପୃ - ୬ -୭

ଯୁଦ୍ଧ' ତାଙ୍କ କଳ୍ପନାରେ ହିଁ ଥିଲା । ଯେଉଁ ଚାରୋଟି ପୁରାଣକୁ ରାଜା, ମନ୍ତ୍ରୀ, ପାତ୍ର ଓ ଡଗରର ଆଖ୍ୟା ଦେଲେ ସେଥିରେ ଅଷ୍ଟାଦଶ ପୁରାଣର ସଂକ୍ଷିପ୍ତ ରୂପ ରହିଗଲା । ଯେଉଁ ସବୁ ପୁରାଣ ସତ୍ତ୍ୱ ଗୁଣ ବିଶିଷ୍ଟ ସେ ସବୁ 'ବିଷ୍ଣୁ ପୁରାଣ' । ଏହି ପର୍ଯ୍ୟାୟରେ (୧) ବିଷ୍ଣୁ, (୨) ନାରଦୀୟ, (୩) ଭାଗବତ, (୪) ଗରୁଡ, (୫) ପଦ୍ମ ଓ (୬) ବରାହ । ଯେଉଁ ସବୁ ପୁରାଣ ତମ ଗୁଣ ବିଶିଷ୍ଟ ସେ ସବୁ 'ଶିବ ପୁରାଣ' । ଏହି ବିଭାଗରେ (୧) ମତ୍ସ୍ୟ, (୨) କୂର୍ମ, (୩) ଲିଙ୍ଗ, (୪) ଶିବ, (୫) ସ୍କନ୍ଦ ଓ (୬) ଅଗ୍ନି । ଯେଉଁ ସବୁ ପୁରାଣ ରଜଗୁଣ ବିଶିଷ୍ଟ ସେ ସବୁ 'ବ୍ରହ୍ମାଙ୍କ ପୁରାଣ' । ଏଥିରେ (୧) ବ୍ରହ୍ମ, (୨) ବ୍ରହ୍ମାଣ୍ଡ, (୩) ବ୍ରହ୍ମ-ବୈବର୍ତ୍ତ, (୪) ମାର୍କଣ୍ଡେୟ, (୫) ଭବିଷ୍ୟ ଓ (୬) ବାମନ । ଏଥିରେ ଥିବା ମାରକଣ୍ଡ ବ୍ରହ୍ମାଙ୍କୁ ହିଁ ବୁଝାଇଥାଏ । ଡଗର ବା 'ନାରଦ ପୁରାଣ' ସଂସ୍କୃତରେ ବିଭାଜନ ଅନୁଯାୟୀ ଏକ ଉପପୁରାଣ ।

ମହାଭାରତକୁ ଓଜନ କରି ଏହାର ଗୁରୁତ୍ୱ ଜାଣିବା କଥା ସଂସ୍କୃତ ମହାଭାରତରୁ ଗୃହୀତ । ସେଥିରେ କିନ୍ତୁ ମହାଭାରତକୁ ବେଦ ସହିତ ତୁଳନା କରାଯାଇଥିଲା । ତଦନୁଯାୟୀ ଏକଦା ଦେବତାମାନେ ତୁଳାଦଣ୍ଡର ଗୋଟିଏ ପାଖରେ ମହାଭାରତକୁ ରଖି ଅନ୍ୟ ପାଖରେ ବେଦ ସବୁକୁ ଥୋଇ ଓଜନ କରିବାରୁ ମହାଭରତର ଓଜନ ଅଧିକ ହୋଇଥିଲା ।

ପୁରା କିଲ ସୁରୈଃ ସର୍ବୈଃ ସମେତ୍ୟ ତୁଲୟା ଧୃତମ
ଚତୁର୍ଭିଃ ସର୍ବସ୍ୟେଭ୍ୟୋଃ ବେଦେଭ୍ୟୋଃ ହ୍ୟଧିକଂ ଯଦା
ତଦା ପ୍ରଭୃତି ଲୋକେସ୍ମିନ୍ ମହାଭାରତ ମୁଖତେ
ମହତ୍ତ୍ୱେ ଚ ଗୁରୁତ୍ୱେ ଚ ଧ୍ରିୟମାନଂ ଯଶୋଧିକମ
ମହତ୍ତ୍ୱାଦ ଭାରବତ୍ତ୍ୱାଚ ଚ ମହାଭାରତ ମୁଚ୍ୟତେ ।
(ଶ୍ଳୋକ ୨୬୯-୨୭୧, ଅଧ୍ୟାୟ ୧, ଆଦିପର୍ବ ମହାଭାରତ)

ସଂସ୍କୃତ ମହାଭାରତ ପୂର୍ବରୁ କେବଳ ବେଦ ସବୁ ରଚିତ ହୋଇଥିଲା । ସେଥିପାଇଁ ଦେବତାମାନେ ବେଦ ସହ ତୁଳନା କଲେ । ଅଥଚ ସାରଳା ଦାସ ତାଙ୍କ ମହାଭାରତ ରଚନା କଲାବେଳକୁ ଅଷ୍ଟାଦଶ ପୁରାଣର ପ୍ରସିଦ୍ଧି ଥିବା ହେତୁ ସାରଳା ଦାସ ବେଦ ସ୍ଥାନରେ ରଖିଲେ ପୁରାଣ ସବୁକୁ ।

ମହାଭାରତ ଯେ କେବଳ ବେଦ ବା ଅଷ୍ଟାଦଶ ପୁରାଣରୁ ଓଜନ, ମହତ୍ତ୍ୱ, ଗୁରୁତ୍ୱ ଓ ଯଶରେ ଅଧିକ ଥିଲା ତାହା ନୁହେଁ, ବିଶ୍ୱ ସାହିତ୍ୟରେ ବିଶାଳକାୟ ଗ୍ରନ୍ଥ ଭାବେ ପ୍ରସିଦ୍ଧି ଲାଭ କରିଥିବା ହୋମରଙ୍କ **ଇଲିଆଡ ଓ ଓଡିଶି** ଏହି ଉଭୟ ଗ୍ରନ୍ଥଠାରୁ ଏହା ଆକାରରେ ପ୍ରାୟ ଦୁଇ ଗୁଣ । ଏହି ଗ୍ରନ୍ଥର ମହନୀୟତା ନିମ୍ନ ଶ୍ଳୋକରେ ଦେଖାଯାଇପାରେ -

ଯଥା ସମୁଦ୍ରୋ ଭଗବନ
ଯଥା ଚ ହିମବାନ ଗିରିଃ

ଖ୍ୟାତାଭୁଭୌ ରତ୍ନନିଧି
ତଥା ଭାରତମୁଖତେ ।

**ପୁରାଣର ପଞ୍ଚଲକ୍ଷଣ ଓ ସାରଳା ମହାଭାରତ:** ସଂସ୍କୃତରେ ପୁରାଣର ପଞ୍ଚଲକ୍ଷଣ ହେଲା-(୧) ସର୍ଗ (ସୃଷ୍ଟି-ପ୍ରକ୍ରିୟା), (୨) ପ୍ରତିସର୍ଗ, (ପ୍ରଳୟ ଓ ସୃଷ୍ଟି), (୩) ବଂଶ (ବଂଶ ପରମ୍ପରା), (୪) ମନ୍ୱନ୍ତର (ମନୁଙ୍କର ବିଭିନ୍ନ ଯୁଗ), (୫) ବଂଶାନୁଚରିତ (ଭାରତର ପ୍ରାଚୀନ ବଂଶ ବିଶେଷକରି ସୂର୍ଯ୍ୟବଂଶ ଓ ସୋମବଂଶର ଇତିହାସ) । ସଂସ୍କୃତ ପୁରାଣ ସବୁରେ ଏ ପାଞ୍ଚୋଟି ଲକ୍ଷଣ ସହିତ ଅନ୍ୟ ବହୁ ଲକ୍ଷଣ ଦେଖିବାକୁ ମିଳେ । ଭାଗବତରେ ଆଉ ଅଧିକ ପାଞ୍ଚୋଟି ଲକ୍ଷଣ (ବୃତ୍ତି, ରକ୍ଷା, ମୁକ୍ତି, ହେତୁ ଓ ଅପାଶ୍ରୟ) ଯୋଗ କରାଗଲା । ଅନ୍ୟ ପୁରାଣରେ ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ପୁରାଣର ଆଦର୍ଶ ବୋଲି କୁହାଗଲା ।

ଏହିସବୁ ଲକ୍ଷଣ ସହିତ ପୁରାଣକାରମାନେ ନିଜ ନିଜର ଧର୍ମମତ, ଆରାଧ୍ୟ ଦେବତାଙ୍କ ମାହାତ୍ମ୍ୟ ପୁଣି ବହୁ ଦେବତାବାଦର ପ୍ରଚାର କଲେ । ସ୍ମୃତି ଗ୍ରନ୍ଥ ସବୁରୁ ତୀର୍ଥ, ବ୍ରତ, ଦାନର ମାହାତ୍ମ୍ୟ, ପାପ ଓ ପୁଣ୍ୟର ବିଚାର; କାମଶାସ୍ତ୍ରରୁ ସ୍ତ୍ରୀ ପୁରୁଷ ଲକ୍ଷଣ, ସମାଜରୁ ଆଚାର ବ୍ୟବାର - ଏହିପରି ବହୁ ଉପାଦେୟ ତତ୍ତ୍ୱର ସମାବେଶ କରି ସେମାନେ ପୁରାଣର ମହନୀୟତା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଏହାକୁ ଏକ ବିଶ୍ୱକୋଷରେ ପରିଣତ କରି ଦେଲେ । 'ଯାହା ନାହିଁ ଭାରତେ ତାହା ନାହିଁ ଭାରତେ' ଏହାହିଁ ହେଲା ସେମାନଙ୍କ ପୁରାଣ ଲେଖାର ଆଦର୍ଶ ।

ସାରଳା ଦାସ ଥିଲେ ଏହି ମହାନ୍ ପରମ୍ପରାର ଉତ୍ତର ପୁରୁଷ । ସାଧାରଣ ଲୋକେ ମଧ୍ୟ ଏହି ବିଶ୍ୱାସ ଉପରେ ଆସ୍ଥା ରଖିଥିଲେ ।

ଯେତେକ ବେଦ ପୁରାଣ ବଖାଣି
ତହୁଂ ଅଧିକ ତ କେହି ନ ଜାଣି । (ଅଚ୍ୟୁତଙ୍କ **ଚାରିଖାନି**)

ସେଥିପାଇଁ ସାରଳା ଦାସ ତାଙ୍କ **ମହାଭାରତ**ରେ ପୁରାଣର ସବୁ ଲକ୍ଷଣକୁ ଗ୍ରହଣ କରିନେଇ ଥିଲେ । ବିଶ୍ୱର ସୃଷ୍ଟି-ପ୍ରକ୍ରିୟା (ସର୍ଗ)ରୁ ଗ୍ରନ୍ଥର ଆରମ୍ଭ କରି ସେଥିରେ ପ୍ରଳୟର (ପ୍ରତିସର୍ଗ)କୁ ଯୋଗ କରି, ପ୍ରତ୍ୟେକ ବିଶିଷ୍ଟ ବ୍ୟକ୍ତିଙ୍କ ବଂଶ ପରମ୍ପରା ଉପରେ ଗୁରୁତ୍ୱ ଦେଇ, ବିଭିନ୍ନ ମନୁଙ୍କର ବିଭିନ୍ନ ଯୁଗର ନାମୋଲ୍ଲେଖ କରି, ସୋମବଂଶର ବିସ୍ତୃତ ପରିଚୟ ଦେଇ, ସେ ତାଙ୍କ **ମହାଭାରତ**ର ରୂପରେଖ ପ୍ରସ୍ତୁତ କଲେ । କଥା ମଧ୍ୟରେ ବିଭିନ୍ନ ତୀର୍ଥର ମାହାତ୍ମ୍ୟ, ବିଭିନ୍ନ ପର୍ବ, ଓଷା ଓ ବ୍ରତର କାହାଣୀ, ଦାନ ମାହାତ୍ମ୍ୟ, ପାପ ଓ ପୁଣ୍ୟର ବିଚାର, ସମାଜର ବେଶଭୂଷା, ଆଚାର-ବ୍ୟବହାର, ଖାଦ୍ୟପେୟ, ବିଧିବିଧାନ, ସଂସ୍କାର-କୁସଂସ୍କାର, ନୀତି-ନିୟମ, ପୁରାଣ ପାଠର ଆବଶ୍ୟକତା ତଥା

ମାହାତ୍ମ୍ୟ ପ୍ରଭୃତି ବହୁ କଥାର ସମାବେଶ କରି ତାଙ୍କ **ମହାଭାରତ**କୁ ଓଡ଼ିଶାର ଆଦି ତଥା ମହାପୁରାଣରେ ପରିଣତ କଲେ ।

**ସଂସ୍କୃତ ମହାଭାରତର ବିକାଶ ପଥରେ ସାରଳା ମହାଭାରତ :** ବ୍ୟାସ ରଚିତ ଗ୍ରନ୍ଥର ନାମ ଥିଲା 'ଜୟ' । ମହାଭାରତର ଆଦି ପର୍ବରୁ ହିଁ ଏହାର ସୂଚନା ମିଳିଥାଏ । ସେଥିରେ କୁହାଯାଇଛି-

ନାରାୟଣଂ ନମସ୍କୃତ୍ୟ
ନରଂ ଚୈବ ନରୋତ୍ତମମ୍
ଦେବୀ ସରସ୍ୱତୀମ୍ ଚୈବ
ତତୋ ଜୟମୁଦୀରୟେତ ।

ବୈଶମ୍ପାୟନ ଜନ୍ମେଜୟଙ୍କ ସର୍ପଯଜ୍ଞ କାଳରେ ଏହାର ଆବୃତ୍ତି କରିଥିଲେ । ଏହି ସମୟରେ ଜନ୍ମେଜୟଙ୍କ ଅନୁରୋଧକ୍ରମେ ବୈଶମ୍ପାୟନ ଏଥିରେ କେତେକ ଅଧିକ ଉପାଖ୍ୟାନ ଯୋଗ କଲେ । ଏହାପରେ ଏହାର ନାମ ହେଲା 'ଭାରତ ସଂହିତା' । ଆଠ ହଜାର ଆଠଶହ ଶ୍ଳୋକରୁ ଏହା ଚବିଶ ହଜାର ଶ୍ଳୋକକୁ ବୃଦ୍ଧି ପାଇଲା ।

ସୂତ ଯେତେବେଳେ ଏହାକୁ ନୈମିଷାରଣ୍ୟରେ ଶୌନକ ଆଦି ଋଷିମାନଙ୍କୁ ଶୁଣାଇଲେ, ସେତେବେଳେ ସେ ଏଥିରେ ଆହୁରି କେତେକ ଉପାଖ୍ୟାନର ସଂଯୋଜନା କଲେ । ସେତେବେଳେ ଏହା ଏକଲକ୍ଷ ଶ୍ଳୋକରେ ପରିଣତ ହୋଇ **ମହାଭାରତ** ନାମ ପରିଗ୍ରହ କଲା । ଆଦି ପର୍ବର ପ୍ରଥମ ଅଧ୍ୟାୟରୁ ମହାଭାରତ ବିକାଶ-କ୍ରମର ଏହି ଇତିହାସ ମିଳିଥିଲେ ହେଁ ପାଶ୍ଚାତ୍ୟ ଆଲୋଚକମାନେ ଏଥିରେ ଦଶଥର ସଂଯୋଜନା କରାଯାଇଥିବା ଅନୁମାନ କରିଛନ୍ତି । ଏହି ସବୁ ପ୍ରକ୍ଷେପ ଫଳରେ ମହାଭାରତରେ ବହୁ ପ୍ରକାର ଧର୍ମଧାରଣା, ବହୁ ପ୍ରକାରର ଉପାସ୍ୟ ଦେବତା ଏବଂ ପରସ୍ପର ବିରୋଧୀ ବହୁ ମତବାଦ ସ୍ଥାନ ପାଇଥିଲା । ଏହାର ମୁଖ୍ୟ ନାୟକ ଶ୍ରୀକୃଷ୍ଣଙ୍କ ଚରିତ୍ର ମଧ୍ୟ ପରିବର୍ତ୍ତିତ ହୋଇଗଲା ଏବଂ ଭାଷା ଓ କବିତ୍ୱରେ ଅସମାନତା ପରିଦୃଷ୍ଟ ହେଲା ।

ସାରଳା ଦାସ ସଂସ୍କୃତ **ମହାଭାରତ** ଏହି ଦୀର୍ଘ ଇତିହାସ ସହିତ ପରିଚିତ ଥିଲେ ବୋଲି ସ୍ୱୀକାର କରି ହୁଏନାହିଁ । କାରଣ ଏସବୁ ଜାଣିହୁଏ ଏହି ଶତାବ୍ଦୀରେ । ଦୀର୍ଘ ଦେଢଶ ବର୍ଷଧରି ପାଶ୍ଚାତ୍ୟ ତଥା ପ୍ରାଚ୍ୟ ବିଦ୍ୱାନ୍ ମାନଙ୍କର ଅକ୍ଳାନ୍ତ ଅଧ୍ୟବସାୟ ଓ ଅଧ୍ୟୟନରୁ ଏହି ବିକାଶ-କ୍ରମ ଉଦ୍‌ଘାଟିତ ହୁଏ । ତେବେ ଏକଥା ସତ ଯେ ସଂସ୍କୃତ ମହାଭାରତର କଥାବସ୍ତୁ କେବଳ ଗ୍ରନ୍ଥର ଶାସ୍ତ୍ରୀୟ ରୂପରେ ଆବଦ୍ଧ ନ ହୋଇ, ବହୁ ରୂପରେ, ବହୁ ଧାରାରେ ଲୋକ ସମାଜରେ ପ୍ରଚଳିତ ଥିଲା । ପ୍ରତ୍ୟେକ ଦିନ ଏଥିରେ ନୂଆ ଉପାଖ୍ୟାନ ସଂଯୋଜିତ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଉପାଖ୍ୟାନର ଏପରିକି

ପ୍ରତ୍ୟେକ ନାମର ନୂଆ ଅର୍ଥ ପ୍ରକାଶ ପାଉଥିଲା । ସାରଳା ଦାସ ସଂସ୍କୃତ ମହାଭାରତକୁ ଦେବୀ ମଣ୍ଡପରୁ ଶୁଣିବା ସହିତ ଲୋକରେ ପ୍ରଚାରିତ ମହାଭାରତ ସଂପର୍କିତ ନୂଆ ନୂଆ ଉପାଖ୍ୟାନକୁ ମଧ ଶୁଣୁଥିଲେ । ସେ ତାଙ୍କ ମହାଭାରତକୁ ଓଡ଼ିଶାର ଗାଁ ଗହଳିରେ ବାସ କରୁଥିବା ସାଧାରଣ ଲୋକଙ୍କ ପାଇଁ ଲେଖୁଥିବାରୁ ମହାଭାରତର ଶାସ୍ତ୍ରୀୟ ରୂପ ଅପେକ୍ଷା ଲୋକରେ ପ୍ରଚଳିତ ରୂପକୁ ବିଶେଷ ସମ୍ମାନ ଦେବା ସ୍ୱାଭାବିକ ଥିଲା । ପୁଣି କଥାକୁ ଆହୁରି ରସିଆ ଓ ମନମତାଣିଆ କରିବା ପାଇଁ ସେ ନିଜ ମନରୁ ଆଉ ଗୋଟିଏ ଦୁଇଟି କଥା ଯୋଡ଼ିବା ଅସମ୍ଭବ ନ ଥିଲା । ଏହିପରି ଭାବେ ତାଙ୍କ ମହାଭାରତ ସଂସ୍କୃତ **ମହାଭାରତର** ଅନୁବାଦ ନୁହେଁ, ଅନୁସରଣ ବି ନୁହେଁ - ଏହା ସ୍ୱତନ୍ତ୍ର ନୂତନ ଏକ ମହାଭାରତ । ସଂସ୍କୃତ ମହାଭାରତର ପଞ୍ଚଦଶ ଶତାବ୍ଦୀୟ ଓଡ଼ିଆ ସଂସ୍କରଣ । କଥା ଓ ଚରିତ୍ର-ଉଭୟର ନୂଆ ଅବତାର । ସେ ପୁଣି ପଣ୍ଡିତାଇ ପ୍ରକାଶ ନୁହେଁ, ଗ୍ରାମ୍ୟ ରୂପ । ସଂସ୍କୃତ ଓ ଓଡ଼ିଆ ମହାଭାରତର ଏହି ପାର୍ଥକ୍ୟକୁ ଭଲଭାବେ ଜାଣିବା ପାଇଁ ନିମ୍ନରେ ସାରଳା ଦାସଙ୍କ ପର୍ବ ଯୋଜନା ତଥା ସ୍ୱର୍ଗାରୋହଣ ପର୍ବରୁ କେତେକ କଥାର ବିଶ୍ଳେଷଣ କରାଯାଇଛି ।

**ପର୍ବ ଯୋଜନା :** ମହାଭାରତର ପର୍ବ ଯୋଜନାରୁ ସାରଳା ଦାସଙ୍କ ପାର୍ଥକ୍ୟ ଜାଣି ହୁଏ । ସଂସ୍କୃତ ମହାଭାରତରେ ୧୮ଟି ପର୍ବ ଓ ୧୦୦ଟି ଉପପର୍ବ ଥିଲା । ସାରଳା ଦାସ ଉପପର୍ବ ବିଭାଗକୁ ଗ୍ରହଣ କଲେ ନାହିଁ ।

ସଂସ୍କୃତ ମହାଭାରତର ପର୍ବ ସବୁ ହେଲା ୧-ଆଦିପର୍ବ, ୨-ସଭାପର୍ବ, ୩-ବନ ବା ଆରଣ୍ୟକ ପର୍ବ, ୪-ବିରାଟ ପର୍ବ, ୫-ଉଦ୍‌ଯୋଗ ପର୍ବ, ୬-ଭୀଷ୍ମ ପର୍ବ, ୭-ଦ୍ରୋଣପର୍ବ, ୮-କର୍ଣ୍ଣପର୍ବ, ୯-ଶଲ୍ୟପର୍ବ, ୧୦-ସୌପ୍ତିକ ପର୍ବ, ୧୧-ସ୍ତ୍ରୀ ପର୍ବ, ୧୨-ଶାନ୍ତିପର୍ବ, ୧୩-ଅନୁଶାସନ ପର୍ବ, ୧୪-ଅଶ୍ୱମେଧିକ ପର୍ବ, ୧୫-ଆଶ୍ରମବାସିକ ପର୍ବ, ୧୬-ମୌଷଳ ପର୍ବ, ୧୭-ମହାପ୍ରସ୍ଥାନିକ ପର୍ବ, ୧୮-ସ୍ୱର୍ଗାରୋହଣ ପର୍ବ ।

ସାରଳାଦାସ ପର୍ବ ସଂଖ୍ୟା ୧୮ ରଖିଥିଲେ ହେଁ ନାମକରଣରେ କେତେକ ପରିବର୍ତ୍ତନ କଲେ । ସଂସ୍କୃତର ଆଦି ଓ ସଭା ପର୍ବ ମଝିରେ ସେ ରଖିଲେ ମଧପର୍ବ ।

ସାରଳା ଦାସ ଆଦିପର୍ବକୁ ଦୁଇ ବିଭାଗ କରି ଆଦି ଓ ମଧ୍ୟପର୍ବର ସୃଷ୍ଟି କରିଛନ୍ତି । ସଭା ପର୍ବ, ବନ, ବିରାଟ, ଉଦଯୋଗ, ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ ପର୍ବରେ ସେ ମୂଳ ଗ୍ରନ୍ଥର ବିଷୟବସ୍ତୁକୁ ଅନୁସରଣ କରିଛନ୍ତି । ଶଲ୍ୟପର୍ବରେ ଶଲ୍ୟଙ୍କ ସେନାପତିତ୍ୱ ଓ ଯୁଦ୍ଧ ସହିତ ସଂସ୍କୃତରେ ଆଉ ଦୁଇଟି ଉପପର୍ବ ଦେଖିବାକୁ ମିଳେ । ତାହା ହେଲା ହ୍ରଦ ପ୍ରବେଶ ଓ ଗଦା । ସାରଳା ଦାସ ଏହି ଦୁଇ ଉପପର୍ବକୁ ନେଇ ଏକ ସ୍ୱତନ୍ତ୍ର ଗଦା ପର୍ବର ସୃଷ୍ଟି କରିଛନ୍ତି । କାଇଁଶିକା ବା ଐଷିକ ପର୍ବର ନାମ ସଂସ୍କୃତରେ ଦେଖିବାକୁ ମିଳେ ନାହିଁ । ସଂସ୍କୃତରେ ଶଲ୍ୟ ପର୍ବ ପରେ ସୌପ୍ତିକ ପର୍ବ ।

ସାରଳା ଦାସଙ୍କ ସ୍ତ୍ରୀ ପର୍ବ ସଂସ୍କୃତରେ ନାରୀ ପର୍ବ । କୌଣସି କୌଣସି ପୋଥିରେ ସ୍ତ୍ରୀ ପର୍ବକୁ ଶୋକ ପର୍ବ ନାମ ପ୍ରଦାନ କରାଯାଇଛି ।

ସଂସ୍କୃତ ପରି ଓଡ଼ିଆରେ ମଧ ଶାନ୍ତି ପର୍ବ ଦେଖିବାକୁ ମିଳେ । ସାରଳା ଦାସଙ୍କ ଅଶ୍ୱମେଧ ପର୍ବ ସଂସ୍କୃତରେ ହେଲା ଅଶ୍ୱମେଧିକ ବା ଅଶ୍ୱମେଧ ପର୍ବ । ସଂସ୍କୃତ ଆଶ୍ରମବାସିକ ପର୍ବ ଓଡିଆରେ ଆଶ୍ରମିକ ପର୍ବ ଏବଂ ମୌଷଳ ପର୍ବ ହେଲା ମୂଷଳୀ ପର୍ବ । ଏହି ମୂଷଳୀ ପର୍ବରେ ଶ୍ରୀକୃଷ୍ଣଙ୍କ ମହାପ୍ରସ୍ଥାନ ପ୍ରସଙ୍ଗରେ ଅବତାରଣା କରାଯାଇଛି ।

ସାରଳା ଓ ସଂସ୍କୃତର ସ୍ୱର୍ଗାରୋହଣର ବିଷୟ ବସ୍ତୁରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏନାହିଁ ।

ସଂସ୍କୃତ ଓ ସାରଳା ମହାଭାରତର ପର୍ବ ତୁଳନାରୁ ଜଣାଯାଏ ଯେ ସଂସ୍କୃତର ଥିବା ସୌପ୍ତିକ, ଅନୁଶାସନିକ ଓ ମହାପ୍ରାସ୍ଥାନିକ ପର୍ବର ନାମକୁ ସାରଳା ଦାସ ଗ୍ରହଣ ନକରି ମଧପର୍ବ, ଗଦାପର୍ବ ଓ କାଇଁଶିକା ପର୍ବ ଏହି ତିନୋଟି ନୂତନ ପର୍ବର ସଂଯୋଜନା କରିଛନ୍ତି ।

**ସାରଳା ଦାସଙ୍କ ଜୀବନଗାଥା ଓ ଆବିର୍ଭାବ କାଳ :** ସାରଳା ଦାସ ତିନୋଟି ବିଶାଳକାୟ ଗ୍ରନ୍ଥ ରଚନା କରିଥିଲେ ହେଁ, ନିଜର ପିତା, ମାତାଙ୍କ ସମ୍ପର୍କରେ କୌଣସି ସୂଚନା ଦେଇ ନାହାନ୍ତି । ତେବେ ପରଶୁରାମ ନାମରେ ତାଙ୍କର ଜଣେ ଭାଇ ଥିବାର ଉଲ୍ଲେଖ ମିଳିଥାଏ । ସୌଭାଗ୍ୟକ୍ରମେ ତାଙ୍କ ଆରାଧ୍ୟା ଦେବୀ ସାରଳାଙ୍କ ପୀଠସ୍ଥଳୀରେ ସେ ଜନ୍ମ ଗ୍ରହଣ କରିଥିବାରୁ, ଗ୍ରନ୍ଥ ମଧ୍ୟରେ ଝଙ୍କଡ, ଜଙ୍ଘେରପୁର ବା କନକାବତୀ ପାଟଣାର ଉଲ୍ଲେଖ କେତେକ ସ୍ଥାନରେ ଦେଖିବାକୁ ମିଳେ । ଆଦିପର୍ବରେ କୁହାଯାଇଛି-

ଶ୍ରୀନୀଳ ସୁନ୍ଦର ଗିରି ଉତ୍ତର କଛାଡେ
ସାର ଭୂମି ଭ୍ରଥ ଖଣ୍ଡ ପୂର୍ବ ଦିଗ ଈଶାନ୍ୟ ଆଡେ
ଚନ୍ଦ୍ରଭାଗା ନାମେଣ ଯେକଇ ନଦୀ ଗୋଟି
ବୃଦ୍ଧମାତା ଗଙ୍ଗାଉ ସେ ମଉଦଧିରେ ଯାଇଂ ଫୁଟି ।
ସେ ନଦୀରେ ପ୍ରଶୁରାମ ଘାଟଇ
କନକାବତୀ ନାମେ ପାଟଣା ପ୍ରକାଶଇ
ତହିଂର ଅନୁଜ ସେ ସାରୋଳ ନାମେ ଗ୍ରାମେ
ବିଜେ ମାହେଶ୍ୱରୀ ସାରୋଳ ଚଣ୍ଡୀ ନାମେ ।

x x x

ଶ୍ରୀସାରୋଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁହିଁ ସାରୋଳା ଦାସ କବି ।

(ଆଦିପର୍ବ-ପୃ୫)

ନିଜକୁ ସାରୋଳ ଦେବୀଙ୍କ ସୁତ ବୋଲି ସର୍ବ ସମକ୍ଷରେ ଘୋଷଣା କରିଥିବାରୁ ନିଜ ପିତାମାତାଙ୍କ ନାମ ନ କହିବାହିଁ କବିଙ୍କ ପକ୍ଷରେ ସ୍ୱାଭାବିକ ଥିଲା । କବି ବାଲ୍ୟକାଳରେ ସିଦ୍ଧେଶ୍ୱର ନାମରେ ପରିଚିତ ଥିବା କିମ୍ବଦନ୍ତୀରୁ ଜଣାଯାଏ । ତାଙ୍କ ରଚିତ ବିଲଙ୍କା ଓ ବିଚିତ୍ର ରାମାୟଣରେ ସାରଳା ଦାସ ନାମ ସ୍ଥାନରେ ସିଦ୍ଧେଶ୍ୱର ନାମହିଁ ମିଳିଥାଏ । ଅନୁସନ୍ଧାନରୁ ତାଙ୍କ କୌଳିକ ସାଙ୍ଗିଆ 'ପରିଡ଼ା' ଥିବା କୁହାଯାଏ ।

**ପୂର୍ବଜନ୍ମ କଥା :** ସାରଳା ଦାସ ଏ ଜନ୍ମରେ 'ସାରୋଳା ଦେବୀଙ୍କ ସୁତ' ଥିଲେ ହେଁ, ପୂର୍ବଜନ୍ମରେ ଥିଲେ ଶିବଙ୍କ ଦ୍ୱାରପାଳ ନନ୍ଦିକେଶ୍ୱର । ପାର୍ବତୀ ଦୁର୍ଗା ରୂପରେ ମଇଂଷାସୁର ବଧକରିବାକୁ ଗଲାବେଳେ ନନ୍ଦିକେଶ୍ୱରକୁ ସାଙ୍ଗରେ ନେଇଯାଇଥିଲେ । ମଇଂଷାସୁରକୁ ସେ ବଧ କଲେ ଉଲଗ୍ନ ରୂପରେ । ନନ୍ଦିକେଶ୍ୱର ଫେରିଆସି ଶିବଙ୍କ ସମ୍ମୁଖରେ ସେ କଥା କହିବା ବେଳେ ସେଠାରେ ପାର୍ବତୀ ପୁତ୍ର ଗଣପତି ଉପସ୍ଥିତ ଥିଲେ । ନନ୍ଦିକେଶ୍ୱରର ବର୍ଣ୍ଣନାରେ ସେ କୋପାନ୍ୱିତ ହୋଇ ତାଙ୍କୁ ମର୍ତ୍ତ୍ୟରେ ମନୁଷ୍ୟ ରୂପରେ ଜନ୍ମ ଲାଭ କରିବା ପାଇଁ ଅଭିଶାପ ଦେଲେ । ଏହାରି ପରିଣାମ ସ୍ୱରୂପ ସାରଳା ଦାସ ପ୍ରଥମେ କାଳିଦାସ ରୂପରେ, ଦ୍ୱିତୀୟରେ ମହାକାଳିକା ବିଜୟନାମେ ଅଂଶରେ ଓ ତୃତୀୟ ଜନ୍ମରେ ସାରଳା ଦାସ କବି ଭାବେ ଅବତାର ଗ୍ରହଣ କଲେ । ପୁଣି ଆଉ ଏକ ଜନ୍ମ ପରେ କବି ମୁକ୍ତିଲାଭ କରି ସ୍ୱସ୍ଥାନକୁ ଫେରି ଯାଇଥିଲେ । ସ୍ୱର୍ଗାରୋହଣ ପର୍ବରେ ଏହା ଏକ ପ୍ରକ୍ଷିପ୍ତାଂଶ ହେଲେ ହେଁ, ଅନ୍ୟ ପର୍ବରେ ଏହାର ଉଲ୍ଲେଖ ମିଳିଥାଏ । ତେବେ ସେଥିରେ ଚତୁର୍ଥ ଜନ୍ମ କଥା ମିଳେ ନାହିଁ ।

**ଏ ଜନ୍ମର କଥା :** ସାରଳା ଦାସ ଏକ ସାଧାରଣ କୃଷକ ପରିବାରରେ ଜନ୍ମଲାଭ କରି ଥିଲେ ହେଁ, ତାଙ୍କ ଜୀବନ ଏକ ଅଲୌକିକ ଶକ୍ତିଦ୍ୱାରା ପରିଚାଳିତ ହେଉଥିଲା । ତାଙ୍କର ଶିକ୍ଷାଦୀକ୍ଷା ବିଶେଷ ନ ଥିଲା । ଶାସ୍ତ୍ରଜ୍ଞ ପଣ୍ଡିତଙ୍କ ଗୋଷ୍ଠୀ ବା ସୁଜନଙ୍କ ମେଳରେ ବସିବାର ସୌଭାଗ୍ୟ ମଧ୍ୟ ସେ ପାଇ ନ ଥିଲେ । ପଣ୍ଡିତ ମାନଙ୍କ ଶାସ୍ତ୍ର ଅଧ୍ୟୟନ ଓ ଶାସ୍ତ୍ରାର୍ଥ ଶ୍ରବଣ କଲାବେଳେ ସେ ସବୁବେଳେ ନିଜକୁ ମୂର୍ଖ, ଅପଣ୍ଡିତ ଓ ଅଜ୍ଞାନୀ ଭାବେ ଗ୍ରହଣ କରିନେଇ ଥିଲେ । ପଣ୍ଡିତଙ୍କ ଶାସ୍ତ୍ରଚର୍ଚ୍ଚା ସେ ଶୁଣୁଥିଲେ କିନ୍ତୁ ଦୂରରେ ରହି । ଏହିପରି ଶୁଣୁ ଶୁଣୁ ତାଙ୍କର ଅକସ୍ମାତ୍ ମନେହେଲା ସେ ମଧ୍ୟ ନିଜ ମାତୃଭାଷାରେ ଗ୍ରନ୍ଥ ରଚନା କରିପାରିବେ । ସେ ଥିଲେ ଝଙ୍କଡ଼ପୁରବାସିନୀ ସାରଳା ଦେବୀଙ୍କର ଭକ୍ତ । ସେ ଯେତେବେଳେ ଗ୍ରନ୍ଥ ଲେଖିବାକୁ ଆରମ୍ଭ କଲେ, ସେ ଭାବିନେଲେ ଏହା ହେଉଛି ସେହି ଅସୀମ ଶକ୍ତିଦାୟିନୀ, ମୟେଂଷାବଧିନୀ,

ଦାନବକୁଳଧ୍ୱଂସିନୀ ଦେବୀଙ୍କ ଅନୁଗ୍ରହ । ସେ ଶୁଣିପାରିଲେ ଦେବୀଙ୍କର ଅସ୍ପଷ୍ଟ ଧ୍ୱନି । ମନେ ହେଲା ସତେ ଯେପରି ଦେବୀ ତାଙ୍କ ପଛରେ ରହି ତାଙ୍କୁ ସାହସ ଦେଉଛନ୍ତି ଓ କଣ୍ଠରେ ବସି ଗ୍ରନ୍ଥର ପଦ ସବୁକୁ ଡାକି ଦେଉଛନ୍ତି । ଏହିପରି ଏକ ଦୈବୀଶକ୍ତିର ପ୍ରେରଣାରେ ସେ ଲେଖିଚାଲିଲେ ରାମାୟଣ, ମହାଭାରତ ଓ ଚଣ୍ଡୀପୁରାଣ । ଧୀରେ ଧୀରେ ସଂସାରର ବନ୍ଧନରୁ, କର୍ମଜଞ୍ଜାଳରୁ ସେ ମୁକ୍ତି ଲାଭ କରି ଶୂଦ୍ରମୁନି ଭାବେ ପରିଚିତ ହେଲେ । ପଶା, ଜୁଆ, ଶକଟା ଖେଳ ଛାଡି ସେ ଭାଷା ଓ ପଦ ଯୋଜନାର ଖେଳରେ ମତ୍ତ ହୋଇଗଲେ । ସେ ମୂର୍ଖରୁ ହେଲେ ଜ୍ଞାନୀ, ଅପଣ୍ଡିତରୁ ହେଲେ ପଣ୍ଡିତ ଓ କୁଜନରୁ ହେଲେ ସୁଜନ । କବି ସେଥିପାଇଁ କହିଛନ୍ତି -

ତ ଯହୁଁ ସଦୟେ କଲୁସି ମା ଗୋ ମୋତେ
ତେଣୁ କରି ସୁଜନ ମୋତେ ବୋଲନ୍ତି ଜଗତେ ।

ଅନ୍ୟ ସ୍ଥଳରେ କବି କହିଛନ୍ତି -

ସାରୋଳାର ରୂପେ ମୋତେ କହିଲୁ ଯେବଣ ଗ୍ରନ୍ଥ
ତେଣୁ ଜଗତେ ମୋତେ ବୋଲନ୍ତି ପଣ୍ଡିତ ।

ଦେବୀଙ୍କର ଅନୁଗ୍ରହକୁ ଗୁରୁତ୍ୱ ଦେବା ଭାରତବର୍ଷ ପାଇଁ ନୂଆ କଥା ନଥିଲା । କାଳିଦାସଙ୍କଠାରୁ କବୀର ଦାସ ପର୍ଯ୍ୟନ୍ତ ସମସ୍ତେ ଅତି ବିନମ୍ରର ସହ ନିଜକୁ ଅଜ୍ଞ କହି ତାଙ୍କ କବିତ୍ୱ ଶକ୍ତି ଭଗବାନଙ୍କ ଶକ୍ତି ଭାବେ ଚିତ୍ରଣ କରୁଥିଲେ । ଏହା ହିଁ ଥିଲା ଏ ଦେଶର ପରମ୍ପରା ।

କବି ନିଜକୁ ବାରମ୍ବାର ମୂର୍ଖ, ଅପଣ୍ଡିତ ଓ 'ନଜାଣଇ କିଛି' କହୁଥିଲେ ହେଁ ତାଙ୍କ ଗ୍ରନ୍ଥ ରାଜିରୁ ଏହାର ଓଲଟା ଜବାବ ମିଳେ । ଗ୍ରନ୍ଥରାଜି ସ୍ପଷ୍ଟ କଣ୍ଠରେ ଯେ ସେ ଜଣେ ଅସାଧାରଣ ପଣ୍ଡିତ ଥିଲେ ଏହି କଥା ହିଁ କହିଥାଏ । ତାଙ୍କ **ମହାଭାରତ** ବା **ଚଣ୍ଡୀ ପୁରାଣ**ରେ ସେ କେବଳ ସଂସ୍କୃତ ଗ୍ରନ୍ଥକୁ ଅନୁସରଣ କରି ନାହାନ୍ତି । ବରଂ ସଂସ୍କୃତ ଗ୍ରନ୍ଥର ଗୌରବକୁ ନିଜ ପ୍ରାକୃତ ଗ୍ରନ୍ଥ ମଧ୍ୟରେ ଅକ୍ଷୁର୍ଣ୍ଣ ରଖି ଘୋଷଣା କରିଛନ୍ତି 'ଯାହା ନାହିଁ ଭାରତେ ତାହା ନାହିଁ ଭାରତେ' । କେବଳ ସେତିକି ନୁହେଁ ଉପନିଷଦ୍‌ରେ ବିଦ୍ୟାକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି- ପରା ବିଦ୍ୟା ଓ ଅପରା ବିଦ୍ୟା । ଶାସ୍ତ୍ର ଯେଉଁ ବିଦ୍ୟାର ଶିକ୍ଷା ଦିଏ, ତାହା ହେଲା ଅପରା ବିଦ୍ୟା । ଅର୍ଥାତ୍ ସାଧାରଣ ଶାସ୍ତ୍ର ଜ୍ଞାନ । ପରାବିଦ୍ୟା ବା ଶ୍ରେଷ୍ଠ ବିଦ୍ୟା ଏହାଠାରୁ ଅଲଗା । ଶାସ୍ତ୍ରଜ୍ଞାନ ବଳରେ ଭଗବାନଙ୍କୁ ଜାଣିହୁଏ ନାହିଁ । ଯେଉଁ ବିଦ୍ୟା ଦ୍ୱାରା ଭଗବାନଙ୍କ ସ୍ୱରୂପକୁ ମନୁଷ୍ୟ ଚିହ୍ନିବା ପାଇଁ ସମର୍ଥ ହୁଏ, ତାହା ହେଲା ପରା ବିଦ୍ୟା ବା ବ୍ରହ୍ମଜ୍ଞାନ । ସାରଳା ଦାସ ଏହି ବିଦ୍ୟାର ଅଧିକାରୀ ଥିଲେ । ସେ କେବଳ ପଣ୍ଡିତ ନ ଥିଲେ, ସେ ଥିଲେ ସୁଜନ ପଣ୍ଡିତ । ସେଥିପାଇଁ ଅଗୋଚର କଥା ତାଙ୍କ ଚକ୍ଷୁ ସମ୍ମୁଖରେ ଝଲସି ଉଠୁଥିଲା ।

ଯେବେ କରୁଣା କଲେ ମା ଗୋ କହିବି ଭାରଥ
ଅଗୋଚର ଦିଶିଲା ମାତ ମୋତେ ମଧପର୍ବ ଅର୍ଥ ।

କବିଙ୍କ ଏହି ଅଲୌକିକ ଶକ୍ତିକୁ ଦେଖି ଲୋକ ମଧ୍ୟରେ କିମ୍ବଦନ୍ତୀ ପରେ କିମ୍ବଦନ୍ତୀ ସୃଷ୍ଟି ହେଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥ **ସାରଳା ଚରିତ** ରେ ଏହିପରି ଏକ କିମ୍ବଦନ୍ତୀର ଉଲ୍ଲେଖ କରିଛନ୍ତି -''ଶାରଳା ଦାସ ପୂର୍ବପରି ଦିନେ ଗୋଟିଏ ବିଲରେ ହଳ କରୁଥିଲେ । ହଳ କର୍ମରେ ଶ୍ରାନ୍ତି ବୋଧ ହେଲା ବେଳେ ନିଜର ଏବଂ ଗୋରୁ ଦୁଇଟିର ଉତ୍ସାହ ନିମିତ୍ତ ପ୍ରିୟତମ ଚଉତିଶା ଗୀତ ଉଚ୍ଚସ୍ୱରରେ ଗାଇବାକୁ ଲାଗିଲେ । ସେଦିନ ଅତ୍ୟଧିକ ଶ୍ରାନ୍ତିବଶତଃ ଗୀତ ବୋଲୁ ବୋଲୁ ମଧ୍ୟେ ମଧ୍ୟେ ପଦେ ପଦେ ମନେପଡିଲା ନାହିଁ । ସେତେବେଳେ ସେ ଅଗତ୍ୟା ଗୀତରସରୁ ବଞ୍ଚିତ ହୋଇ ଇଷ୍ଟଦେବୀଙ୍କଠାରେ ଧ୍ୟାନ ରଖିଲେ । କଥିତ ଅଛି, ଏହି ଗୀତ ବନ୍ଦ କରନ୍ତେ ହଠାତ୍ ଏକ ନାରୀ ମୂର୍ତ୍ତି ସେଠାରେ ଆବିର୍ଭୂତ ହୋଇ ତାହାଙ୍କୁ ସମ୍ବୋଧନ କରି କହିଲେ,'ଗୀତ ବନ୍ଦ କଲୁ କାହିଁକି ? ବୋଲ ବୋଲ, ଆସିଯିବ ଯେ । ତୋ ଗୀତ ମୋତେ ବଡ ଭଲ ଲାଗେ । ମୋର ଇଚ୍ଛା ତୁ ଯେପରି ମହାଭାରତ ରଚନା କରିବୁ ।' ଏହା କହି ସେ ମୂର୍ତ୍ତି ଅନ୍ତର୍ହିତ ହେଲେ । ଦାସେ ବିସ୍ମିତ ହୋଇ ପୁନର୍ବାର ଗୀତ ଆରମ୍ଭ କରି ସଫଳ କାମ ହେଲେ ।'' ସ୍ୱର୍ଗତ ଶ୍ୟାମ ସୁନ୍ଦର ରାଜଗୁରୁ ଏହିଗଳ୍ପର ଅନ୍ୟ ଏକ ରୂପକୁ **ପ୍ରବନ୍ଧାବଳୀ**ରେ ଉଦ୍ଧାର କରିଛନ୍ତି । ତାଙ୍କ ମତରେ ଏହା ଏକ ପ୍ରକ୍ଷେପ । ସେଥିରେ ଲେଖା ଅଛି -

କୈଳାସବାସୀ ସେ (ଶାରଳା ଦାସ ) ରୂପରେ ଅବତାର
ମୂର୍ଖ ହୋଇ ଜନ୍ମ ହେଲା ଶୂଦ୍ର ଘର ।
ବିରଜା ମଣ୍ଡଳ ଦେଶେ କୃଷି କରୁଥାଇ
ଏକ ଦିନେ ପଦେ ସେ ଟେକିଲା ଗୀତ ଗାଇ
ପଛକୁ ଚାହିଁଲା ଆମ୍ଭେ (ଶାରଳା ଦେବୀ) ବୃଦ୍ଧାସ୍ତିରୀ ରୂପ
ତେଣୁ କରି ଗୀତ ପଦ କଲାକ ସେ ଲୋପ ।

ଏହାପରେ ଦେବୀ ଅତି ବୃଦ୍ଧା ରୂପରେ ଥର ଥର ହୋଇ ହିଡ ଉଠିପାରିଲେ ନାହିଁ । କୃଷିକାର ଆସି ତାଙ୍କୁ କୋଳାଗ୍ରତ କରି ସ୍ଥିର କରି ବସାଇଦେଲା । ତା'ପରେ ଦେବୀ ଯକ୍ଷପୁରକୁ ଅର୍ଥାତ୍ ତାଙ୍କ ଘରକୁ ଯିବା ପାଇଁ ଗଙ୍ଗା ପାରିହେବାକୁ ଇଚ୍ଛା କଲେ । ସାରଳା ତାଙ୍କୁ ନଦୀ ପାର କରାଇ ଦେବାରୁ ସେ ଖୁସି ହୋଇ କହିଲେ-

ଆମ୍ଭେ ବିଚାରିଲୁରେ ହୋଇଲା ତୋର ଜ୍ଞାନ
ଶ୍ରୀ ମହାଭାରତ ଏବେ କରୁ ତୁ ଲେଖନ ।

ଅଧ୍ୟାପକ **ଆର୍ତ୍ତବଲ୍ଲଭଙ୍କ** ସଂପାଦିତ ଗ୍ରନ୍ଥରେ ଏହାର ଆଉ ଏକ ରୂପ ଉପଲବ୍ଧ

ହୁଏ । ସେଥିରେ କିନ୍ତୁ ବିରଜା ମଣ୍ଡଳ ସ୍ଥାନରେ ପ୍ରାଚୀ ନଦୀ ତଟ ଥିବା ଭୂମି କଥା କୁହାଯାଇଛି ।

ଏସବୁ କିମ୍ବଦନ୍ତୀ ହେଲେ ବି ସାରଳା ଦାସଙ୍କ ଉକ୍ତିରୁ ଏହା ବିଶେଷ ନୁହେଁ। ବରଂ ସାରଳା ଦାସଙ୍କ ଉକ୍ତିର ଏସବୁ ଅତିରଞ୍ଜିତ ରୂପ । ସାରକଥା ହେଲା, ଭଗବାନଙ୍କ କୃପା ହେଲେ ପଙ୍ଗୁ ଯେପରି ପର୍ବତ ଲଙ୍ଘନ କରିପାରେ, ସେହିପରି ସାରଳା ଦାସ, ଜଣେ ସାଧାରଣ କୃଷକରୁ ମହାକବିରେ ପରିଣତ ହୋଇପାରିଥିଲେ । 'ସ୍ୱର୍ଗାରୋହଣ ପର୍ବ'ରେ କବି ଅଠର ଖଣ୍ଡ ମହାଭାରତ ଲେଖି ଶେଷ କଲାବେଳେ ତାଙ୍କ ଆରାଧ୍ୟ ଦେବୀଙ୍କ ନିକଟରେ ନିଜର ପ୍ରଣତି ଜଣାଇ କହିଛନ୍ତି-

ହେ ବୁଧଜନେ ଯାବନ୍ତ୍ ପୁଣ୍ୟ ଥିବ ତାବନ୍ତ ଭଜ ହରି
ମହାଘୋର ନର୍କରୁ ସେହି ସେ କରିବ ପାରି ।
ଶ୍ରୀ ନାରାୟଣ ଦେବଙ୍କ ଚରଣେ ଲୟେ ଘେନି
ବଦୟନ୍ତି ସାରୋଳ ଦାସ ଗ୍ରନ୍ଥିକ ଶୂଦ୍ରମୂନି ।
କୃପାଜଳ ନନ୍ଦିନୀ ଯେ ନର୍ମଦା ସରସ୍ୱତୀ
ପଛିମ କୋଶଳେ ଗୋ ହୋଇଲ ଉତପତ୍ତି ।
ସଂସାର ସାଗର ଯେ କଳିକାଳ ଫାଶୀ
ଯାହାର ନାମ ଧରନ୍ତେ ହରଇ ପାପରାଶି ।
ଯେବଣ ମହାଭାରଥ ମୁନିଂକର ପୁଣ୍ୟ ବାକ୍ୟେ
ତାହା ଲେଖନ କରିବାକୁ କିସ ମୋର ଶକ୍ୟେ ।
ନୋହଇ ପଣ୍ଡିତ ମୁଂ ନ ଜାଣଇ ଶାସ୍ତ୍ର ବିଦ୍ୟା
ଜନମେ ଜନମେ ମୁର୍ଖ ମୁହିଁ ନ ଜାଣଇ ପଦ ସିଦ୍ଧା
ଜପ ମନ୍ତ୍ର ଶାସ୍ତ୍ରୀ ମୁଂ ନଜାଣଇ କିଛି
ଯେସନେକ ଆଗ୍ୟାଂ ମୋତେ ଦେଲେକ କାମାକ୍ଷୀ

x x x

ହେ ପଣ୍ଡିତ ଜନେ ପ୍ରସନ୍ନ ହୋଇଲେ ପିଙ୍ଗଳା
ସେ ସର୍ବ ମଙ୍ଗଳା ହୃଦେ ମୋର ହାର ।
ମୁଂ ତାହାର ପୁତ୍ର ହୋଇ ସେ ମେହୋର ମାତ
କର ଅନୁଗ୍ରହ ମୋତେ ତୁଳସାର କାନ୍ତ ।
ସେହି ମାଳା ମୋହାର ଗଳାରେ ଅଛି ଭରି
ଯେବଣ ନାମ ଧରି ସଂସାର ଜନେ ତରି ।

ବାଲୁତ ରୂପ ମୁହିଁ ତାର ପ୍ରତେକ୍ଷ ଦେଖଇ
ସେ ଯାହା କହଇ ତାହା ମୁଁ ଲେଖଇ ।
ସେ ସାରଳା ପ୍ରସନ୍ନେ ହୋଇଲା ମୋର ଜ୍ଞାନ
ଅଷ୍ଟାଦଶ ପର୍ବ ଗ୍ରନ୍ଥ କଲଇଁ ଲେଖନ ।

(ପୃ-୯୫-୯୬) .

**ମହାଭାରତର ରଚନା କାଳ :** ସାରଳା ଦାସଙ୍କ ଆବିର୍ଭାବ କାଳ ସମ୍ପର୍କରେ ଆଦିକାଣ୍ଡରୁ କେବଳ ଗୋଟିଏ ଉଲ୍ଲେଖ ମିଳିଥାଏ । ଓଡିଶାର ରାଷ୍ଟ୍ର ଦେବତା ନୀଳାଚଳ ପତି ଜଗନ୍ନାଥଙ୍କ ବନ୍ଦନା ପରେ ସାରଳା ଦାସ କହିଛନ୍ତି -

**କଳି କାଳ ଧ୍ୱଂସିଣ ଭୋଗେଣ କୋଟି ପୂଜା**
**ପ୍ରଜୟିତେ ଖଟଇଁ ଶ୍ରୀ କପିଳେଶ୍ୱର ମହାରାଜା ।**

**(ଆଦିପର୍ବ, ପୃ-୪)**

କପିଳେଶ୍ୱର ମହାରାଜାଙ୍କୁ ଶ୍ରୀଯୁକ୍ତ ଗୋପିନାଥ ମହାନ୍ତି 'ପ୍ରାଚୀ ମାହାତ୍ମ୍ୟ'ର କପିଳ ସିଂହ କହି ଓ ଆଉ କେତେକ ଅନୁମାନ ବଳରେ ସାରଳାଦାସଙ୍କୁ ନବମ ଶତାବ୍ଦୀର କବି ଭାବେ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ । ଅଥଚ ସାରଳା **ମହାଭାରତ**ରେ ଦଶମରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ଐତିହାସିକ ଘଟଣା ଓ ବ୍ୟକ୍ତିଙ୍କର ଉଲ୍ଲେଖ ମିଳେ । ସେ ସବୁକୁ ଦେଖିଲେ ସାରଳା ଦାସ ଯେ ପଞ୍ଚଦଶ ଶତାବ୍ଦୀର କବି ଥିଲେ, ଏହା ପ୍ରମାଣିତ ହୁଏ । ସାରଳା ଦାସ ପ୍ରସଙ୍ଗକ୍ରମେ ତାଙ୍କ **ମହାଭାରତ**ରେ ଗୋରଖନାଥ (ଦଶମ ଶତାବ୍ଦୀ), ଜ୍ଞାନ ଦେଇ ମାଲୁଣି (ଏକାଦଶ ଶତାବ୍ଦୀ), କର୍ଣ୍ଣାଟକର ରାଜା ରାମଚନ୍ଦ୍ର ଦେବ (ତ୍ରୟୋଦଶ ଶତାବ୍ଦୀ), ବିଜୟନଗର ପ୍ରତିଷ୍ଠାର କିମ୍ବଦନ୍ତୀ (ତ୍ରୟୋଦଶ ଶତାବ୍ଦୀ), ରଣସ୍ତମ୍ଭ ଗଡର ପ୍ରସିଦ୍ଧି (ତ୍ରୟୋଦଶ ଶତାବ୍ଦୀ), ମରହଟ୍ଟ ଦେଶର ଯତି ସୁଜାଣେଶ୍ୱର (ଜ୍ଞାନେଶ୍ୱର) (ଚତୁର୍ଦ୍ଦଶ ଶତାବ୍ଦୀ) ପ୍ରଭୃତିର ଉଲ୍ଲେଖ କରିଛନ୍ତି । ଏହା ବ୍ୟତୀତ ସଭା ପର୍ବରେ ଥିବା ଦାକ୍ଷିଣାତ୍ୟ ଅଭିଯାନରେ ଦେଶ, ରାଜା ଏପରିକି ଅଭିଯାନ ପଥକୁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କପିଳେନ୍ଦ୍ର ଦେବଙ୍କ ଦାକ୍ଷିଣାତ୍ୟ ଅଭିଯାନ ସହ ଯେଉଁଭାବେ ତୁଳନା କରିଛନ୍ତି, ସେଥିରୁ ସାରଳା ମହାଭାରତ ୧୪୬୫ ଖ୍ରୀଷ୍ଟାବ୍ଦ ପରେ ରଚିତ ହୋଇଥିବା ପ୍ରାୟ ପ୍ରମାଣିତ ହୋଇଥାଏ । ଏହି ଅଭିଯାନ କାହାଣୀ ସହ ଯଯାତିଙ୍କ ଓଡଣୀ ଭାରିଜପୁରୁ ଉପାଖ୍ୟାନକୁ ମିଳାଇ ଦେଖିଲେ ଏହା ଆହୁରି ସ୍ପଷ୍ଟ ହୁଏ ଯେ କପିଳେନ୍ଦ୍ରଙ୍କ ଜୀବିତାବସ୍ଥାରେ, ପୁରୁଷୋତ୍ତମ ଦେବ ଯୁବରାଜ ପଦରେ ଅଭିଷିକ୍ତ ହୋଇ ସାରିଥିଲେ । ଐତିହାସିକମାନଙ୍କ ମତରେ ଏହି ସମୟ ହେଲା ୧୫୬୫-୧୫୬୭ ଖ୍ରୀଷ୍ଟାବ୍ଦ । ବ୍ୟାସଦେବ ତାଙ୍କ **ମହାଭାରତ**କୁ ପ୍ରାୟ ତିନି ବର୍ଷରେ ସମାପ୍ତ କରିଥିଲେ । ସେ ଦୃଷ୍ଟିରୁ ସାରଳା ଦାସ ତାଙ୍କ **ମହାଭାରତ**କୁ

ପ୍ରାୟ ୩ ବର୍ଷ ଅର୍ଥାତ୍ ୧୫୬୫ରୁ ୧୫୬୭ ମଧ୍ୟରେ ସମାପ୍ତ କରିଥିବା କୁହାଯାଇ ପାରେ ।

ସାରଳା ଦାସ ପୁରାଣକାର ଥିଲେ,ଐତିହାସିକ ନ ଥିଲେ । ସେ ଇତିହାସର ଘଟଣାସବୁକୁ ପୁରାଣର ଆବରଣ ମଧ୍ୟରେ ପ୍ରକାଶ କରିବା ସ୍ୱାଭାବିକ ଥିଲା । 'ପ୍ରଣମିତେ ଖଟନ୍ତି' ଉଲ୍ଲେଖ ମଧ୍ୟରେ କପିଳେନ୍ଦ୍ର ଦେବଙ୍କ ଜଗନ୍ନାଥଙ୍କ ପ୍ରତି ଥିବା ଭକ୍ତି ଭାବନା, ଶ୍ରଦ୍ଧା ଓ ସମ୍ମାନ ଲୁକ୍‌କାୟିତ । ଚୋଡଗଙ୍ଗ ଦେବ ଓଡିଶାରେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଜଗନ୍ନାଥଙ୍କ ଜୀର୍ଣ୍ଣ ମନ୍ଦିରର ପୁନରୁଦ୍ଧାର କରିଥିଲେ । ଅନଙ୍ଗଭୀମଦେବଙ୍କ ଅମଳରେ ଏହା ସମାପ୍ତ ହୋଇଥିଲା । ଏହି ମନ୍ଦିରର ପ୍ରତିଷ୍ଠା କାଳରେ ଅନଙ୍ଗଭୀମଦେବ ଯେଉଁ ରାଜ-ଘୋଷଣା ପ୍ରଦାନ କରିଥିଲେ, ତାହା ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ । ସେଥିରେ **ମାଦଳା ପାଞ୍ଜି ଅନୁଯାୟୀ** ଅନଙ୍ଗଭୀମଦେବଙ୍କ ଉକ୍ତି ହେଲା-'ଭୋ ମହାରାଜାମାନେ ତୁମ୍ଭେମାନେ ଏହା ଅନ୍ୟଥା ନ କରିବ । ହରିଲାର ତ ପାପ, ଶ୍ରୁତି ସ୍ମୃତି ବଚନମାନଙ୍କ ଶୁଣୁଥିବ । ଏଥକୁ ତୁମ୍ଭେମାନେ ଯେବେ ବଳୀଆରପଣ କରି ଲୋଭ ବଶରେ ହାରିବ, ତେବେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣକୁ ଦ୍ରୋହ କଲାରୁ ଯେ ପାପ ତାହା ହୋଇବ । ମୁଁ ଯାହା ଯେଉଁ ପ୍ରକାରେ ଭିଆଣ କରି ଦେଉଅଛି, ଦେବତା ବ୍ରାହ୍ମଣଙ୍କୁ ଭୋଗ କରାଇ ସେ ପ୍ରକାରେ ପରିପାଳନ କରୁଥିବ ।'' ଅନଙ୍ଗଭୀମଦେମଙ୍କ ପରେ ବହୁ ରାଜା ରାଜତ୍ୱ କରିଥିଲେ । ଅଥଚ ଏହି ଉକ୍ତିର ପ୍ରତିଧ୍ୱନି ଶୁଣିବାକୁ ମିଳେ କପିଳେନ୍ଦ୍ର ଦେବଙ୍କ ଓଡିଆ ଶିଳାଲେଖ ସବୁରେ । ୧୪୬୪ ଖ୍ରୀଷ୍ଟାବ୍ଦରେ ଜୟ ବିଜୟ ଦ୍ୱାରରେ ଖୋଦିତ ଏକ ଶିଳାଲେଖରେ କୁହାଯାଇଛି -

''ଭୋ ଜଗନ୍ନାଥ ! ତୋହୋ ସେବକ ଏମତ ଜଣାଉଛି । ରାଇଜଯାକେ ଏ ସାଆନ୍ତମାନଙ୍କୁ ମୁଇଂ ପାଇକ ରାଉତଙ୍କୁ କରି ବିଭଅ ଧିଲି । ବାଳକାଲୁ ପୋଷି ଆଣିଲି । ଏମାନେ ମୋତେ ସବୁହେ ଛାଡିଲେ । ଏମାନଙ୍କୁ ମୁଇଂ ଯେ ଯାହା ଅନୁରୂପେ ବିହିବି, ନିଗିରିହିବି । ଭୋ ଜଗନ୍ନାଥ, ଏକଥା ମୋହର ଦୋଷ ଅଦୋଷ ବିଚାର ।'' ଜଗନ୍ନାଥ ମନ୍ଦିରର ଜୟ ବିଜୟ ଶିଳାଲେଖର ବାମ ପାର୍ଶ୍ୱରେ ଥିବା ଆଉ ଏକ ଶିଳାଲେଖରେ, 'ପ୍ରଲମ୍ପିତେ ଖଟଇ' ଉକ୍ତିର ପ୍ରତିଧ୍ୱନି ଶୁଣିବାକୁ ମିଳେ । ୧୪୬୬ ଖ୍ରୀଷ୍ଟାବ୍ଦର ଡିସେମ୍ବର ଚଉଦ ତାରିଖରେ ଜଗନ୍ନଥଙ୍କୁ କେତେକ ଅଳଙ୍କାର ପ୍ରଦାନ କରି ଶ୍ରୀ କପିଳେଶ୍ୱର ମହାରାଜାଙ୍କ ଆଦେଶ ହେଲା । ''X X X ଶ୍ରୀ କପିଳେଶ୍ୱର ରାଜା ଏହା ଜଗନ୍ନାଥ ମହାପ୍ରଭୁଙ୍କୁ ଦିଲା । ଏହା ନେମି ବୋଲି ଯେ ମନରେ ଧରଇ ସେ ଶ୍ରୀ ଜଗନ୍ନଥଙ୍କୁ ଦ୍ରୋହ କରଇ ।'' (Dr. K. B Tripathy, The Evolution of Oriya Language and Script', PP 274-275)

'ସ୍ୱର୍ଗାରୋହଣ ପର୍ବ'ରେ ସାରଳା ଦାସଙ୍କ ସମୟ ନିର୍ଦ୍ଧାରଣର ଅନ୍ୟ

ଉପାଖ୍ୟାନଟି ହେଲା ମରହଟ୍ଟ ଦେଶର ସୁଜାଣେଶ୍ୱର ଯତି ପ୍ରସଙ୍ଗ । ସାରଳା ଦାସଙ୍କ ଅନୁଯାୟୀ-

ଯମ ବୋଇଲା ଯେ ମୃତ୍ୟୁ ମଣ୍ଡଳେ ଦେଶ ମରହଟ୍ଟ
ସେ ନଗ୍ର ଭିତରେ ବସଇ ମହା ମହା ହାଟ ।
ଏକଇ ତପୋଧନଙ୍କ ନାମ ସୁଜାଣେଶ୍ୱର ଯତି
ସର୍ବଦା ସଂସାରେ ସେ ଅଟଇ ସତ୍ୟବ୍ରତୀ ।
କନ୍ଥା କଉପୂନୀ ତୁଳସୀ ରୁଦ୍ରାକ୍ଷର ମାଳ
ଅଂଶା ଲେପନ ଯେ ଚର୍ମମଣ୍ଡଳ ।
ଶବର ତହୁଂ ମାଂସ ଘେନି ବିକଇ ହାଟରେ
ପାଞ୍ଚକଡ଼ା ମାଗଇ ମାୟେଂ ସପଣକରେ ।
ସବୁଦିନେ ବାଣିଜ୍ୟ ବ୍ରତ ହେତୁ କଲା
ମାୟେଂସ ବଣିକୁ ସେ ଆନ ନ ଶିଖିଲା ।
କାହାଣ କରେ ପଣେ ଦେବଇ ବଣିଜ
ସତ କହି ଚାରି କାହାଣରେ ଚାରି ପଣ ଅରଜ ।
ଭାରିଜା ପୁତ୍ର ଗୋଟିୟେ ଆପଣେ ତିନି ପ୍ରାଣୀ
ସତ୍ୟହୁଂ ମିଥ୍ୟା କେହି ନ କହନ୍ତି ବାଣୀ ।
ସମୟେକ ପ୍ରାଣତ୍ୟାଗ ସୁଜାଣେଶ୍ୱେର ଯତି
ନକ୍ଷତ୍ର ହୋଇ ବସିଲା କାର୍ତ୍ତିକ ପୁଞ୍ଜିକୃତି । (ପୃ-୨୭)

ଯଜ୍ଞଦେବତା ହରିସାହୁ ବୈଶ୍ୟକୁ ଏହି ଗଳ୍ପ ଶୁଣାଇଥିଲେ ଆପଣାର ନଜ କର୍ମକୁ ସୁଚାରୁ ରୂପେ ନିର୍ବାହ କରିବା ପାଇଁ । ମଣିଷ ଏଣେତେଣେ ମନ ନଦେଇ ନିଜ କାମ ନିଜେ କରିପାରିଲେ ପାପ ଲାଗେ ନାହିଁ ।

ବ୍ରାହ୍ମଣ ପାପ କଲେ କରିବାକୁ ଯାଗ
କ୍ଷତ୍ରୀ ପାପ କଲେ ପଶିବ ରଣଯାଗ ।
ଶୂଦ୍ର ପାପ କଲେ ଉପୁଜାଇବ କୃଷି
ବୈଶ୍ୟ ପାପ କଲେ ମୁକତ ବାଟ ନଦିଶି ।
ଯାହା ସେ ଯମଦେବତା କହିଲେ ସରୂପ
ଆପଣାର ନିଜ କର୍ମେ ଥିଲେ ନ ଲାଗଇ ପାପ । (ପୃ.୨୮)

ସାରଳା ଦାସଙ୍କ ସୁଜାଣେଶ୍ୱର ହେଲେ ମହାରାଷ୍ଟ୍ରର ପ୍ରସିଦ୍ଧ ଯତି ଜ୍ଞାନେଶ୍ୱର ସେ ଅଶେଷ ଅଲୌକିକ ଶକ୍ତିର ଅଧିକାରୀ ଥିଲେ । ତାଙ୍କ ସମ୍ପର୍କରେ ବହୁ କିମ୍ବଦନ୍ତୀ ପ୍ରଚଳିତ । ତାଙ୍କର ଜନ୍ମ ସଂ ୧୩୩୨ ବି ଭାଦ୍ର କୃଷ୍ଣାଷ୍ଟମୀର ମଧ୍ୟରାତ୍ରିରେ ହୋଇଥିଲା । ଯେତେବେଳେ ସେ ୬ ବର୍ଷର ଥିଲେ ସେତେବେଳେ ତାଙ୍କ ପିତାମାତା ଧର୍ମ ମର୍ଯ୍ୟାଦାର ରକ୍ଷା ପାଇଁ ତ୍ରିବେଣୀ ସଙ୍ଗମରେ ନିଜ ନିଜ ଶରୀରକୁ ତ୍ୟାଗ କରିଥିଲେ । ସେତେବେଳକୁ ଜ୍ଞାନେଶ୍ୱରଙ୍କ ସାନଭାଇ ସୋପାନ  ଥିଲା ଚାରିବର୍ଷର ଓ ସବୁଠାରୁ ସାନ ଭଉଣି ମୁକ୍ତାବାଇ ଥିଲା ତିନି ବର୍ଷର । ତିନି ଭାଇଙ୍କ ଉପନୟନ ସଂସ୍କାର ସଂପର୍କରେ ଆଳନ୍ଦୀର ବ୍ରାହ୍ମଣମାନେ ଅନୁକୂଳ ନ ଥିଲେ, କାରଣ ସେମାନେ ଥିଲେ ସନ୍ନ୍ୟାସୀର ସନ୍ତାନ । ସେମାନଙ୍କ ପରାମର୍ଶରେ ଚାରୋଟିଯାକ ସନ୍ତାନ ପୈଠଣ ଗଲେ । ସେଠାରେ ବ୍ରାହ୍ମଣମାନେ ସଭା କରି ସ୍ଥିର କଲେ ଯେ ସେମାନଙ୍କ ଉପନୟନ ହେବା ଅସମ୍ଭବ ତେବେ ସେମାନେ ଯଦି ସେମାନଙ୍କୁ ଉପହାସ କରୁଥିବା ଲୋକଙ୍କୁ, ଏବଂ ଭେଦ-ଦୃଷ୍ଟି ଓ ଲୋକଲଜ୍ଜାକୁ ତ୍ୟାଗକରି କୁକୁର, ଚାଣ୍ଡାଳ ଓ ଗୋରୁ ପ୍ରଭୃତିଙ୍କୁ ଭୂମି ଉପରେ ସାଷ୍ଟାଙ୍ଗ ପ୍ରଣିପାତ କରିବେ, ପୁଣି ଭଗବାନଙ୍କଠାରେ ଅନନ୍ୟ ଭକ୍ତି ରଖିବେ, ତା'ହେଲେ ଯାଇ ସେମାନେ ଶୁଦ୍ଧ ହୋଇପାରିବେ । ଏହି ପ୍ରସ୍ତାବରେ ସମସ୍ତେ ରାଜି ହୋଇଗଲେ । ଏହି ଘଟଣା ପରେ ସେମାନେ ଆଳନ୍ଦୀ ଫେରିଯିବା ପାଇଁ ଚାହିଁଥିଲେ । ସେତେବେଳେ କିଛି ଲୋକ ତାଙ୍କୁ ଥଟ୍ଟା କଲେ ଓ ଜ୍ଞାନଦେବଙ୍କୁ ପଚାରିଲେ ତୁମର ନାମ କ'ଣ ? ଯେତେବେଳ ଜ୍ଞାନଦେବ ତାଙ୍କ ନାମ କହିଲେ ସେତେବେଳେ ପାଖରେ ଥିବା ଗୋଟିଏ ମଇଁଷିକୁ ଦେଖାଇ ଜଣେ କହିଲା, ଏହାକୁ ତ ଲୋକେ ଜ୍ଞାନଦେବ କୁହନ୍ତି, ତୁମେ କ'ଣ ଏହିପରି ଜ୍ଞନଦେବ ? ଜ୍ଞାନ  ସେଥିରେ ରାଜି ହୋଇଗଲେ । ପାଖରେ ଥିବା ଜଣେ ଦୁଷ୍ଟ ମଇଁଷିକୁ ଦୁଇ ପାହାର ପିଟି କହିଲା, ଏ ପାହାର କ'ଣ ତୁମକୁ ଆଘାତ ଦେଲା ? ଜ୍ଞାନଦେବ ନିଜ ଦେହ ଖୋଲି ପାହାରର ଚିହ୍ନ ଦେଖାଇଦେଲେ । ତେବେ ବି ଲୋକେ ବୁଝିପାରିଲେ ନାହିଁ । ସେମାନେ ଜ୍ଞାନଦେବଙ୍କୁ ପଚାରିଲେ ତୁମେ ତ ବେଦ ଅର୍ଥ କରୁଛ, ଏ ମଇଁଷି କ'ଣ ବେଦ ପାଠ କରିପାରିବ ? ସେତେବଲେ ଜ୍ଞାନଦେବ ମଇଁଷି ପିଠିରେ ହାତ ରଖି ଦେଲେ । ହାତ ରଖିବାକ୍ଷଣି ସେହି ମଇଁଷି ଓଁକାର କହି ବେଦ ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲା । ଜ୍ଞାନଦେବଙ୍କ ଏହି ଚମତ୍କାରୀ କାର୍ଯ୍ୟ ପୈଠଣର ବ୍ରାହ୍ମଣମାନଙ୍କୁ ଚକିତ କରିଦେଲା । ଏହାପରେ ଜ୍ଞାନେଶ୍ୱର ଓ ତାଙ୍କ ଭାଇମାନଙ୍କ ଉପନୟନ ସଂସ୍କାରରେ ଆଉ ଅସୁବିଧା ହୋଇନଥିଲା । ସାରଳା ଦାସ ଙ୍କ **ମହାଭାରତ**ରେ ଏ ଗଳ୍ପ ନଥିଲେ ବି **ବେଦାନ୍ତସାର ଗୁପ୍ତ ଗୀତା**ରେ ଥିବା ଜଡ ହରିଦାସ କଥାରେ ଏହାର ସାମ୍ୟ ଦେଖିହୁଏ । ଗୋରୁ ଓ କୁକୁରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିବା କଥା ଓ ତପୋବନ୍ତର ମାଂସ ବିକିବାରେ ବିଶେଷ ତଫାତ୍ ନାହିଁ । ତେବେ ସାରଳା ଦାସ ମାଂସ ବିକିବା କଥା ଆଣିଲେ **ପଞ୍ଚତନ୍ତ୍ର**ର ଧର୍ମ ବ୍ୟାଧ ଉପାଖ୍ୟାନରୁ । ସେ କଥାର ସଂକ୍ଷିପ୍ତ ରୂପ ହେଲା

- ଏକଦା ଜଣେ ଋଷି ବନ ମଧ୍ୟରେ ତପସ୍ୟା କରୁଥିଲେ । ସେ ତପସ୍ୟାରୁ ନିବୃତ୍ତ ହୋଇ ଉପରକୁ ଚାହିଁ ଦେବା ବେଳକୁ ଆକାଶରେ ଗୋଟିଏ ବଗ ଉଡିଯାଉ ଥିଲା । ସେ ମଳତ୍ୟାଗ କରିବାରୁ ଋଷିଙ୍କ ଉପରେ ପତିତ ହେଲା । ଋଷିଙ୍କ କୋପାନଳରେ ସେହି ପକ୍ଷୀଟି ଜଳିଗଲା । କ୍ଷୁଧାରେ ପ୍ରପୀଡିତ ଋଷି ଭିକ୍ଷା ସଂଗ୍ରହ ପାଇଁ ଏକ ଗୃହସ୍ଥ ଗୃହରେ ଉପସ୍ଥିତ ହେଲେ । ସେତେବେଳେ ଗୃହସ୍ଥର ପତ୍ନୀ ପତିସେବାରେ ନିଯୁକ୍ତ ଥିଲା । ଅତିଥିସେବା କରିବାରେ ତା'ର ବିଳମ୍ବ ହେଲା । ଋଷି ଗୃହସ୍ଥର ପତ୍ନୀକୁ ବିଳମ୍ବର କାରଣ ପଚାରିଲେ । ଗୃହସ୍ଥର ପତ୍ନୀ ଉତ୍ତର ଦେଲା ପତି ସେବା କରୁଥିବାରୁ ମୋର ବିଳମ୍ବ ହେଲା । ଋଷି କହିଲେ ଅତିଥି ସେବାଠାରୁ କ'ଣ ପତିସେବା ବଡ ? ଏହା କହି ରାଗିଯିବାରୁ ଗୃହସ୍ଥ ପତ୍ନୀ କହିଲା- ମୁଁ ବଗ ନୁହେଁ ଯେ ତୁମ କୋପାନଳରେ ଭସ୍ମ ହୋଇଯିବି । ଋଷି ଆଶ୍ଚର୍ଯ୍ୟ ହୋଇ ଗଲେ ଓ ଗୃହସ୍ଥ ପତ୍ନୀ ଏହା କିପରି ଜାଣିଲା ପଚାରିବାରୁ ସେ ତାଙ୍କୁ ଶିକ୍ଷା ପାଇବା ପାଇଁ ଏକ ବ୍ୟାଧ ନିକଟକୁ ପ୍ରେରଣ କଲା ।

ଋଷି ପହଞ୍ଚିବାବେଳକୁ ବ୍ୟାଧ ଶବରଠାରୁ ଆଣିଥିବା ମାଂସକୁ ବିକ୍ରୀ କରୁଥିଲା । ଗରାଖମାନଙ୍କର ଭିଡ ଥିଲା । ଗରାଖମାନଙ୍କୁ ବିଦାୟ କଲାପରେ ଅତିଥିସେବା କରିବାରୁ ଋଷି ବିସ୍ମିତ ହେଲେ । ବ୍ୟାଧ ତାଙ୍କୁ ଉପଦେଶ ଦେବା ଛଳରେ କହିଲା ମନୁଷ୍ୟର ପ୍ରକୃତ ଧର୍ମ ହେଉଛି ତା'ର କୌଳିକ ବୃତ୍ତି ପ୍ରତିପାଳନ । ଅତିଥିସେବା ପରବର୍ତ୍ତୀ କାମ । ସେଦିନ ଋଷି ବ୍ୟାଧଠାରୁ ଏହି ଉପଦେଶ ପାଇ ନିଜ ଆଶ୍ରମକୁ ଫେରିଯାଇଥିଲେ ।

ସାରଳା ଦାସ ସୁଜାଣେଶ୍ୱର ଯତି ଉପାଖ୍ୟାନରେ **ପଞ୍ଚତନ୍ତ୍ର**ର ଏହି ପ୍ରସଙ୍ଗକୁ ଯୋଡି ବୈଶ୍ୟମାନେ ନିଜର ପାପ ଦୋହନ କରିବାପାଇଁ କୌଳିକ ବୃତ୍ତିର ଅବଲମ୍ବନ କରିବା ଶ୍ରେୟ ବୋଲି କହିଛନ୍ତି ।

ଭକ୍ତ କିରାତ ଓ ନନ୍ଦିବୈଶ୍ୟ ଉପାଖ୍ୟାନରେ ମାଂସ ବିକ୍ରୀ କଥା ନ ଥିଲେ ହେଁ ଭକ୍ତି ବଳରେ ମାଂସଦ୍ୱାରା ଭଗବାନଙ୍କୁ ପୂଜା କଲେ ମଧ୍ୟ ଭଗବାନ ସନ୍ତୁଷ୍ଟ ହେଉଥିବା କଥା କୁହାଯାଇଛି । ଭକ୍ତ କିରାତ ଏକଦା ଶିକାର କରି ଫେରୁଥିବାବେଳେ କୌଣସି ଶିବ ମନ୍ଦିରରେ ଲୋକେ ସ୍ନାନ ସାରି ବିଲ୍ୱପତ୍ର ଦ୍ୱାରା ଶିବପୂଜା କରୁଥିବାର ଦେଖିବାକୁ ପାଇଲା । ତା'ର ମନହେଲା ଶିବପୂଜା କରିବା ପାଇଁ । ସେ ମଧ୍ୟ ସ୍ନାନ କରି କିଛି ବିଲ୍ୱପତ୍ର ତୋଳି ହାତରେ ଧରିଥିବା ମାଂସ ଓ ବିଲ୍ୱପତ୍ରରେ ଶିବଙ୍କୁ ପୂଜା କଲା । ଶିବ ଲିଙ୍ଗ ଉପରେ ମାଂସ ଦେଖି ନନ୍ଦିବୈଶ୍ୟ ଓ ମନ୍ଦିରର ପୂଜକ ସମସ୍ତେ ବ୍ୟସ୍ତ ହୋଇ ପଡିଲେ । ପରଦିନ ଯେତେବେଳେ କିରାତ ଧନୁଶର ମାଂସ ସହ ଏକ ଭୟଙ୍କର ରୂପ ଧାରଣ କରି ମନ୍ଦିରରେ ପ୍ରବେଶ କଲା, ସେତେବେଳେ ବୈଶ୍ୟ ଓ ପୁରୋହିତ ପ୍ରଭୃତି ଭୟରେ ଲୁଚିଗଲେ । କିରାତ ଲିଙ୍ଗ ଉପରେ ଥିବା ଅନ୍ୟ ପୂଜା ଦ୍ରବ୍ୟ ସବୁକୁ କାଢି ଦେଇ ମାଂସ ଓ ବିଲ୍ୱପତ୍ରରେ ପୂଜା କଲା ଓ ତା'ପରେ ଫେରିଗଲା । ଏହି କାଣ୍ଡ ଦେଖି

ବୈଶ୍ୟ ଓ ବ୍ରାହ୍ମଣମାନେ ବିଚାର କରି ଲିଙ୍ଗକୁ ସେଠାରୁ ନେଇ ବୈଶ୍ୟ ଗୃହରେ ସ୍ଥାପନ କଲେ । ପରଦିନ କିରାତ ଶିବଲିଙ୍ଗ ନଦେଖି ପ୍ରଥମେ ଦୁଃଖ କଲା, କିନ୍ତୁ ପରେ ନିଜ ଶରୀରକୁ ମାଂସ କାଟି ଲିଙ୍ଗ ସ୍ଥାପନ କଲା ଓ ଯଥାବିଧି ପୂଜା କରିବାକୁ ଆରମ୍ଭ କଲା । ଶିବ ସେହି କିରାତର ଅନନ୍ୟ ଭକ୍ତି ଦେଖି ତା'ର ସମ୍ମୁଖରେ ଉପସ୍ଥିତ ହୋଇ ତାକୁ ବର ଯାଚନା କଲେ । କିରାତ କହିଲା - "ମୋର ଅନ୍ୟ ବରରେ କାର୍ଯ୍ୟ ନାହିଁ । ମୋତେ ଜନ୍ମ ଜନ୍ମାନ୍ତର ପାଇଁ ଶିବ ସେବା କରିବାପାଇଁ ଅନୁଗ୍ରହ କର । " ଶିବ ସେହି କିରାତକୁ ନିଜର ପାର୍ଶ୍ୱଦ ଭାବରେ ରଖିବା ପାଇଁ ସମ୍ମତି ପ୍ରଦାନ କଲେ । ସେତିକିବେଳେ ବୈଶ୍ୟ ସେଠାରେ ଉପସ୍ଥିତ ହୋଇ କିରାତର ଭକ୍ତିଭାବରେ ସନ୍ତୁଷ୍ଟ ହୋଇ ତା'ର ଶରଣାଗତ ହେଲା । ଶିବ ବୈଶ୍ୟକୁ ଦେଖି କହିଲେ ମୁଁ ତୁମକୁ ଚିହ୍ନେ, ଏ ଦେଖିଲ କିଏ ? କିରାତ କହିଲା ମୁଁ ଯେପରି ଆପଣଙ୍କର ଶରଣାଗତ ଏ ସେହିପରି ମୋର ଶରଣାଗତ । ଶିବ କିରାତ ଉପରେ ସନ୍ତୁଷ୍ଟ ହୋଇ ଉଭୟଙ୍କୁ ପାର୍ଶ୍ୱଦ ହେବାର ଅଧିକାର ପ୍ରଦାନ କଲେ । ସେହି ଦିନଠାରୁ ସେମାନେ ହେଲେ ନନ୍ଦି ଓ ମହାକାଳ ।

ଏହିପରି ଭାବେ ପୁରାଣରେ ପ୍ରକୃତ ଧର୍ମର ବ୍ୟାଖ୍ୟା କରିବାକୁ ଯାଇ ସାରଳା ଦାସ କୌଳିକ ବୃତ୍ତି ଉପରେ ଗୁରୁତ୍ୱ ଦେଇଛନ୍ତି ।

**ରକ୍ତନଦୀ ଉତ୍ତରଣ ଓ ଶୁଭଗିରି ଆରୋହଣ:** ଯୁଧିଷ୍ଠିରଙ୍କ ସ୍ୱର୍ଗାରୋହଣ ଅର୍ଥାତ୍ ହିମାଳୟ ଆରୋହଣ କରି ସ୍ୱର୍ଗ ପୁରକୁ ଯାତ୍ରା, 'ସ୍ୱର୍ଗାରୋହଣ ପର୍ବ'ର ମୂଳ ବିଷୟବସ୍ତୁ । ହିମାଳୟ ଆରୋହଣ କଲାବେଳେ ତାଙ୍କ ସାଙ୍ଗରେ ଯାଉଥିବା ତାଙ୍କ ସ୍ତ୍ରୀ ଦ୍ରୌପଦୀ ଓ ଚାରିଭାଇ ହିମାଳୟର ଶିଖର ଦେଶକୁ ଯାଇ ନପାରି ଜଣକ ପରେ ଜଣେ ହିମାଳୟର ବକ୍ଷଦେଶରେ ଆଶ୍ରୟ ନେଇଥିଲେ । ସଂସ୍କୃତ **ମହାଭାରତ**ରେ ଏହି କଥା ଥିଲେ ବି ସେଥିରେ ନକୁଳ ପ୍ରଥମେ ଦେହତ୍ୟାଗ କରିଥିବା କଥା କୁହାଯାଇଛି । ସାରଳା ମହାଭାରତରେ କ୍ରମପରିବର୍ତ୍ତନ ହୋଇ ପ୍ରଥମେ ଦ୍ରୌପଦୀ ହିଁ ଯମପୁରକୁ ଗମନ କରିଛନ୍ତି ।

ସାରଳା **ମହାଭାରତ**ରେ ଯେଉଁ କୁରୁ ପାଣ୍ଡବ ଯୁଦ୍ଧର ବର୍ଣ୍ଣନା କରାଯାଇଛି, ସେଥିରେ କୁରୁପକ୍ଷର ମୁଖ୍ୟ ନାୟକ ହେଲେ ଦୁର୍ଯ୍ୟୋଧନ ଓ ପାଣ୍ଡବ ପକ୍ଷର ମୁଖ୍ୟ ନାୟକ ହେଲେ ଯୁଧିଷ୍ଠିର । ଯେତେବେଳେ ଦୁର୍ଯ୍ୟୋଧନର ସମସ୍ତ ଜ୍ଞାତିକୁଟୁମ୍ବ ଯୁଦ୍ଧକ୍ଷେତ୍ରରେ ବିନାଶ ହେଲେ ସେତେବେଳେ ସେ ପାଣ୍ଡବମାନଙ୍କ ଆକ୍ରମଣରୁ ଆତ୍ମରକ୍ଷା କରିବା ପାଇଁ ବ୍ୟାସ ସରୋବରରେ ଆତ୍ମଗୋପନ ଉଦ୍ଦେଶ୍ୟରେ ପ୍ରସ୍ଥାନ କରିଥିଲା । ପଥ ମଧ୍ୟରେ ତା'ର ବାଧା ସୃଷ୍ଟି କଲା ଏକ ବିଶାଳ ରକ୍ତ ନଦୀ । ଏହି ରକ୍ତନଦୀକୁ ଅତିକ୍ରମ କରିବା ପାଇଁ ସେ ଯେତେବେଳେ ଉଦ୍‌ଗ୍ରୀବ, ସେତେବେଳେ ତା' ସମ୍ମୁଖକୁ ଭାସିଆସିଥିଲା ତା'ର ପ୍ରିୟ ଭ୍ରାତା ଦୁଃଶାସନର ଶବ । ଦୁଃଶାସନକୁ ଦେଖିବା କ୍ଷଣି

ତା'ର ସମସ୍ତ ଗୁଣ, ଶୌର୍ଯ୍ୟ ଓ ବୀର୍ଯ୍ୟର କାହାଣୀ ଦୁର୍ଯ୍ୟୋଧନର ମନ ମଧ୍ୟରେ ଉଦ୍‌ଭାସିତ ହୋଇଉଠିଥିଲା । ସେ କହିବାକୁ ଆରମ୍ଭ କଲା "ରେ ବାବୁ ଦୁଃଶାସନ, ତୁ ପୃଥ୍ୱୀକି ଏକ ଛତ୍ରୀ, ତୁ ଗୁଣବନ୍ତ, ଶୂରବନ୍ତ, ବିବେକ ଓ ଧାର୍ମିକ । ତୁ ତୋ ବାହୁ ବଳରେ ଦ୍ରୌପଦୀର କେଶ ଧରି କୁରୁ ମହାସଭାକୁ ଆଣିପାରିଥିଲୁ । ତୋରି ବାହୁ ବଳରେ ତୁ ତାକୁ ବିବସନା କଲୁ । କେଶୀ ଦାନବର ବଳଦର୍ପ ଗଞ୍ଜି ତୁ ତୋରି ବାହୁବଳରେ ମଣି ହରଣ କରିଥିଲୁ । ଏହିପରି ଦୁଃଶାସନର ସମସ୍ତ ଗୁଣଗାନ କରି ଯେତେବେଳେ ଦୁର୍ଯ୍ୟୋଧନ ଭାଇକୁ ଆଶ୍ରାକରି ରକ୍ତନଦୀକୁ ପାରିହେବାପାଇଁ ଇଚ୍ଛା କରିଥିଲା, ସେତେବେଳେ ସେ ଶବ ତିନିତାଳ ଗଭୀରକୁ ଚାଲିଗଲା । ଏହାପରେ ଭାସିଆସିଲେ ଦୁର୍ଯ୍ୟୋଧନର ଶତାଶୋଇ ଭାଇ, ପ୍ରିୟବନ୍ଧୁ କର୍ଣ୍ଣ, ଅସ୍ତ୍ରଗୁରୁ ଦ୍ରୋଣ, ମାତୁଳ ଭବିଷ୍ୟଜ୍ଞାତା କୁରୁ କୁଳର ମନ୍ତ୍ରୀ ଶକୁନି । ଏମାନଙ୍କ ମଧ୍ୟରୁ କେହି ଦୁର୍ଯ୍ୟୋଧନଙ୍କୁ ରକ୍ତ ନଦୀ ପାରି କରାଇ ପାରିଲେ ନାହିଁ । ଏତିକି ବେଳେ ଭାସି ଆସିଲା ଏକ ଅପୂର୍ବ ପୁରୁଷର ଶବ । ଦୁର୍ଯ୍ୟୋଧନ ତାକୁ ଆକର୍ଷଣ କଲା, ତା' ଉପରେ ନେଇ ନିଜର ସତୁରି ସତୁରି ଭାର ଗଦା ଦ୍ୱୟକୁ ରଖିଲା । ତା'ପରେ ନିଜେ ଯାଇ ତା' ଉପରେ ଆରୋହଣ କଲା । ଏ ମହାମେରୁ ସଦୃଶ ଭରାକୁ ସେଇ ମୃତ୍ୟୁ ପିଣ୍ଡ ପୃଷ୍ଠ ଦେଶରେ ବହନ କରି ରକ୍ତ ନଦୀରେ ନ ବୁଡ଼ି ଶୋଲ ଭେଳା ଜାଣି ଭାସି ଉଠିଲା । ଏଇ ଅପୂର୍ବ ପୁରୁଷ ଆଉ କେହି ନୁହଁନ୍ତି, ଦୁର୍ଯ୍ୟୋଧନର ଅଲିଅଳ ପୁତ୍ର ଲକ୍ଷ୍ମଣକୁମାର । ସେଇ ଶବକୁ ଚିହ୍ନିବା ପରେ ଦୁର୍ଯ୍ୟୋଧନ ଧୈର୍ଯ୍ୟ ଧରି ନ ପାରି ବିକଳ କଣ୍ଠରେ ରୋଦନ କରିବାକୁ ଆରମ୍ଭ କଲା-

ଆରେ ଆରେ ମୋର ଲକ୍ଷଣ କଇଛା ଜଗଜେଠୀ
ତ୍ରଇଲୋକ୍ୟ ବନ୍ଦନା ନାଥ ତୋହର ନାମଗୋଟି । ୧୬୪ ।
ଅତିଅନ୍ତ ଲକ୍ଷଣରେ ତୋହର ବତିଶ ଗୁଣ
ଶୟଳ ଜନ ଚିନ୍ତିଲେ ତୁ ସର୍ବଗୁଣେ ଲକ୍ଷଣ । ୧୬୫ ।
ବାବୁ ଅବିଚ୍ଛନ୍ନେ ମୂର୍ତ୍ତି ଦିଶୁ ଯେ ବାଳ ଅର୍କ ପ୍ରାୟେ
କଣୟ ତେଜରୁ ଅଧିକ ଦିଶଇ ତୋର କାୟେ । ୧୬୬ ।
ଅନ୍ଧର ନଉଡି ପୁତ୍ରରେ ଅନାସ୍ତ ମୋତେ କଲୁ
ଗଭୀର ସମୋଦ୍ରେ ମୋର ଭେଳା ବୁଡାଇଲୁ । ୧୬୭ ।

(ସା.ମ. ଗଦାପର୍ବ, ପୃ-୧୭)

ଶେଷକୁ ପୁତ୍ରର ସବୁଗୁଣ ବାହୁନି ସାରି କହିଛି -

ବାବୁ ଅତିଅନ୍ତ ସୁକୁମାର ତୁରେ କୁମାର ଲକ୍ଷଣ
ବରଷେ ବାହୁନିଲେ ନ ସରଇ ତୋହର ଯେତେ ଗୁଣ ।

ବାବୁ ନବସୃଷ୍ଟି ରଚନା ଛାଡିଣ ପ୍ରଜାପତି
କେତେକାଳ ବସିରେ ସ୍ରିଜିଲା ତୋର ମୂର୍ତ୍ତି ।
ବାବୁରେ ମୋହର ପରା ପିତା ତୋହେରେ ନୋହୁ ନୋହୁ
ତୋହର ପ୍ରାୟେ ପୁତ୍ର ମୋତେ ଜନ୍ମେ ଜନ୍ମେ ଥାଉ ।

(ସା. ମ. ଗଦାପର୍ବ, ପୃ-୨୦)

ଏହି ପ୍ରସଙ୍ଗରେ ସାରଳା ଦାସ ଭାଇ, ଗୁରୁ, ପରାମର୍ଶଦାତା ମନ୍ତ୍ରୀ ଓ ମିତ୍ରଙ୍କଠାରୁ ପୁତ୍ରର ଶ୍ରେଷ୍ଠତ୍ୱ ପ୍ରଚାର କରିଛନ୍ତି । ପୁତ୍ର ହିଁ ହେଉଛି ପିତାର ତ୍ରାଣକର୍ତ୍ତା ବା ମୋକ୍ଷଦାତା । ପୁତ୍ର ପିଣ୍ଡ ଦେଲେ, ଶ୍ରାଦ୍ଧ କଲେ ପିତା ସ୍ୱର୍ଗପୁର ଲାଭକରେ । ପୁତ୍ର ହିଁ ହେଉଛି ଇହଲୋକ ଓ ପରଲୋକର ସାକ୍ଷୀ ।

ଯୁଧିଷ୍ଠିର ଯେତେବେଳେ ତୁଷାରାଚ୍ଛନ ଶୁଭ୍ର ହିମାଳୟ ପର୍ବତକୁ ଆରୋହଣ କଲେ ସେତେବଲେ ମଧ ତାଙ୍କ ସହିତ ଥିଲେ ଇହଲୋକର ସାଥୀ, ଭ୍ରାତା, ମନ୍ତ୍ରୀ ଓ ସ୍ତ୍ରୀ । ସେମାନେ ମଧ ଯୁଧିଷ୍ଠିରଙ୍କର ସହଯାତ୍ରୀ ହୋଇପାରି ନ ଥିଲେ । ରକ୍ତନଦୀ ସନ୍ତରଣ ବେଳେ ଦୁର୍ଯ୍ୟୋଧନ ନିଜେ ନିଜର ଭାଇ, ବନ୍ଧୁ, ଗୁରୁ, ମନ୍ତ୍ରୀ ଓ ପୁତ୍ରର ଗୁଣଗାନ କରିଥିଲା । ଅଥଚ ସ୍ୱର୍ଗାରୋହଣ ସମୟରେ ଯୁଧିଷ୍ଠିର କେବଳ ପ୍ରତ୍ୟେକଙ୍କର ଦୋଷ କଥା ହିଁ କହିଥିଲେ, ଗୁଣ କୀର୍ତ୍ତନ କରିଥିଲେ ମହାବୀର ଭୀମ । ଉଭୟ କ୍ଷେତ୍ରରେ ସାରଳା ଦାସ ଚରିତ୍ର ଚିତ୍ରଣ କରିବାକୁ ନିଜର ଲକ୍ଷ୍ୟ ରୂପେ ଗ୍ରହଣ କରୁଥିଲେ ହେଁ ଦୁର୍ଯ୍ୟୋଧନଙ୍କ ମୁଖରେ କାହାରି ଦୋଷ କଥା ପ୍ରକାଶ ପାଇ ନଥିଲା । ଅଥଚ ଯୁଧିଷ୍ଠିର ଶୌର୍ଯ୍ୟ, ବୀର୍ଯ୍ୟ ରୂପ, ମମତା ଓ ଗୁଣ ସ୍ଥାନରେ ଧର୍ମକୁ ରଖିଥିଲେ ଚରିତ୍ରର ମାପକାଠିରେ । ଏବଂ ଯେତେବେଳେ ସେ ସେଇ ମାପକାଠିରେ ମାପି ପ୍ରତ୍ୟେକ ଚରିତ୍ରକୁ ବିଶ୍ଳେଷଣ କଲେ ସେତେବେଳେ ସବୁ ଚରିତ୍ରରେ ଅଶେଷ ଗୁଣ ତଥା ଅବର୍ଣ୍ଣନୀୟ ରୂପ ସହିତ କିଛି ନା କିଛି ଦୋଷ ପ୍ରକାଶ ପାଇଥିଲା । ସେତେବେଳେ ଯୁଧିଷ୍ଠିରଙ୍କ ଆଦର୍ଶ ଭାବେ -

ଧର୍ମ ଏକା ସିନା ମହତ୍ ପଣିଆ
ଆଉ ସବୁ କଥା ଅଢେଇ ଦିନିଆ ।

ଏହି ମହାନ୍ ବାଣୀ ଉଦ୍‌ଘୋଷିତ ହୋଇଥିଲା । ଯେତେବେଳେ ଭୀମ ଅନେକ ବିନୋୟୀ ହୋଇ କହିଲା -

ଅନେକ ବିନୋୟି ଯେ ଖଟୁଛି ତୁମ୍ଭଙ୍କୁ
ତୁମ ତୁଲେ ସମ୍ଭାଳି ନିୟସି ହାଦେ ମୁକୁ ।

ଯୁଝେଷ୍ଟି ବୋଇଲେ କେହ୍ନେ ସମ୍ଭାଳି ନେବି ଭାଇ ।
ଧର୍ମବଳ ନଥିଲେ ସ୍ୱର୍ଗକଇଁ ନଯାଇ ।
(ସା.ମ. ସ୍ୱର୍ଗାରୋହଣ ପର୍ବ, ପୃ-୫୯)

**ଉପାଖ୍ୟାନ ବୈଚିତ୍ର୍ୟ:** ସାରଳା ଦାସ ମୂଳ **ମହାଭାରତ** କଥାରୁ ତାଙ୍କ ମହାଭାରତ ସୃଷ୍ଟି କରିଥିଲେ ହେଁ, ଏବଂ ମୂଳ ମହାଭାରତର ମୁଖ୍ୟ ଚରିତ୍ର ଓ ବିଷୟବସ୍ତୁକୁ ଯଥାସମ୍ଭବ ରକ୍ଷା କରିଥିଲେ ହେଁ, ନୂତନ କଥା ଯୋଜନା କରିବାରେ ସେ ବିଶେଷ ଦୃଷ୍ଟି ପ୍ରଦାନ କରୁଥିଲେ । ଏହି ନୂତନ କଥା ଯୋଜନା କରୁ କରୁ ସେ ତାଙ୍କ ପର୍ବ ଯୋଜନାକୁ ମଧ୍ୟ ମୂଳ ମହାଭାରତଠାରୁ ସ୍ୱତନ୍ତ୍ର କରିଦେଲେ ଏବଂ 'ମଧ୍ୟ ପର୍ବ' ନାମକ ଏକ ସ୍ୱତନ୍ତ୍ର ପର୍ବ ରଚନା କଲେ । ପ୍ରତ୍ୟେକ ପର୍ବରେ ବହୁ ନୂଆ କଥା ସଂଯୋଜନା କଲାପରି 'ସ୍ୱର୍ଗାରୋହଣ ପର୍ବ'ରେ କେତେକ ନୂଆ କଥା ଦେଖିବାକୁ ମିଳେ । ସେହିସବୁ କଥାକୁ ନିମ୍ନରେ ବିଶ୍ଳେଷଣ କରାଯାଇଛି -

**(କ) ସୁରେଶ୍ୱର ବ୍ରାହ୍ମଣ ଓ ତନ୍ତୀପା କିରିଷାଣ :** ବୈତରଣୀ ନଦୀ କୂଳରେ ବେଦପୁର ନାମକ ଏକ ଗ୍ରାମ ଥିଲା । ସେ ଗ୍ରାମ ସୁରେଶ୍ୱର ବ୍ରାହ୍ମଣ ଓ ତା'ର କୃଷକ ଭାବେ ତନ୍ତୀପା ରହୁଥିଲେ । ଦିନେ ବ୍ରାହ୍ମଣ ତା'ର କୃଷକକୁ ଚାଷ କରିବା ପାଇଁ ଏକ ଜମିକୁ ପଠାଇଲା । କୃଷକ ଆସି ପ୍ରଥମେ ଲଙ୍ଗଳରେ ଚାଷ କଲା । ସେହି ଭୂମି ଅସମତଳ ଥିବାରୁ ଅର୍ଥାତ୍ ଖାଲ ଢିପ ହୋଇଥିବାରୁ ଜମିକୁ ସମତୁଲ କରିବା ପାଇଁ ଏବଂ ଜମିରେ ଥିବା ବଣବୁଦାକୁ ସଫା କରିବାପାଇଁ ବ୍ରାହ୍ମଣ କୃଷକକୁ କୋଦାଳଟିଏ ଦେଇ ଘରକୁ ଫେରିଗଲା । କୃଷକ କୋଦାଳରେ ଜମିକୁ ସମତୁଲ କରୁଥିବା ବେଳେ ମାଟି ତଳୁ ଏକ ରତ୍ନଜାଲି ପାଇଥିଲା । ଧନ ଦେଖି ତା ମନରେ ଭାରି ଆନନ୍ଦ ହେଲା । ଅତି ଆଗ୍ରହରେ ସେହି ଧନକୁ ମୁଣ୍ଡ ଉପରେ ରଖି ସେ ନେଇ ବ୍ରାହ୍ମଣକୁ ଦେଲା । ବ୍ରାହ୍ମଣ କିନ୍ତୁ ତାକୁ ନ ରଖି କୃଷକର ଘରକୁ ନେଇଯିବା ପାଇଁ ଅଦେଶ ଦେଲା । କୃଷକର ଯୁକ୍ତି ହେଲା - ଦିନକର ପରିଶ୍ରମର ମୂଲ୍ୟ ତା'ର ପ୍ରାପ୍ୟ । ଜମିରୁ ଉତ୍ପନ୍ନ ପ୍ରତ୍ୟେକ ପଦାର୍ଥର ଅଧିକାରୀ ବ୍ରାହ୍ମଣ । ବ୍ରାହ୍ମଣ ମତରେ, ଏହି ରତ୍ନଜାଲି କୃଷକର ପ୍ରାପ୍ୟ । ଏହି କଥାକୁ ନେଇ ଉଭୟଙ୍କ ମଧ୍ୟରେ କିଛି ସମୟ ତର୍କ ବିତର୍କ ହେଲାପରେ ଉଭୟେ ଯୁଧିଷ୍ଠିରଙ୍କ ପାଖରେ ଯାଇ ଫେରାଦ କଲେ । ଯୁଧିଷ୍ଠିର ଏହାର ସମାଧାନ କରିବା ପାଇଁ ସହଦେବଙ୍କୁ ପଚାରିଲେ । ସହଦେବ କହିଲେ - ଏସବୁ କଳିଯୁଗର ପ୍ରଭାବ । କଳିଯୁଗ ବହୁଦିନୁ ଆସିଗଲାଣି । କେବଳ ଆପଣ କିଛିଦିନ ଶାନ୍ତିରେ ରାଜତ୍ୱ ପାଇବା ପାଇଁ ଶ୍ରୀକୃଷ୍ଣ ଏହାକୁ ବନ୍ଧନ କରି ରଖିଥିଲେ । ଏକଥା କହିସାରିଲା ବେଳକୁ ବ୍ରାହ୍ମଣ ଓ କୃଷକ ମଧ୍ୟରେ ଭିଡି ମତ କୁସ୍ତାକୁସ୍ତି ଆରମ୍ଭ ହୋଇଗଲା । ସେତେବେଳକୁ ଯୁଧିଷ୍ଠିର ପରୀକ୍ଷିତଙ୍କୁ

ରାଜ୍ୟଭାର ଅର୍ପଣ କରି ସାରିଥିଲେ । ପରୀକ୍ଷିତଙ୍କୁ ପଚାରିବାରେ ସେ କହିଲେ ଏ ଗୁପ୍ତଧନର ଅଧିକାରୀ ବ୍ରାହ୍ମଣ ନୁହେଁ କି କୃଷକ ନୁହେଁ । ଏହାର ଅଧିକାରୀ ହେଉଛନ୍ତି ଦେଶର ରାଜା । ପରୀକ୍ଷିତଙ୍କ ଆଦେଶରେ ସେହି ରତ୍ନଜାଲିକୁ ରାଜକୋଷକୁ ପଠାଇ ଦିଆଗଲା ।

ସଂସ୍କୃତ ମହାଭାରତରେ କଳି ଆଗମନ ଓ ଏହାର ପ୍ରଭାବ ସମ୍ପର୍କରେ ବିସ୍ତୃତ ଅଲୋଚନା କରାଯାଇଥିଲେ ହେଁ ଏହି ଗଳ୍ପଟିକୁ ସେଠାରେ ଦେଖିବାକୁ ମିଳେ ନାହିଁ । ଏ ଗଳ୍ପରେ କୃଷକର କୃଷି ସରଞ୍ଜାମ, ବ୍ରାହ୍ମଣ ନିଜେ ଲଙ୍ଗଳ ବା କୋଦାଳରେ ଜମିଚାଷ ନକରି ଭାତ ବରତନ ଦେଇ କୃଷକ ନିଯୁକ୍ତି କରିବା, ସମୟ ସମୟରେ ଜମି ମାଲିକ ଓ ଜମି ଶ୍ରମିକ ମଧ୍ୟରେ ବିଭିନ୍ନ କାରଣରୁ କଳହ ସୃଷ୍ଟି ହେଉଥିବା ପ୍ରଭୃତି ଚିତ୍ର ଉପସ୍ଥାପିତ । ଏହି ଗଳ୍ପ ମାଧ୍ୟମରେ କବି ସାରଳା ଦାସ କଳିଯୁଗ ପ୍ରଭାବରେ ଲୋକେ କିପରି ବିଭ୍ରାନ୍ତ ହେଉଥିଲେ ଏବଂ କଳିଯୁଗ ପ୍ରଭାବରେ ସମାଜ କିପରି ବିପର୍ଯ୍ୟସ୍ତ ହୋଇଯିବ ତାହାର ସୂଚନା ପ୍ରଦାନ କରିଛନ୍ତି-

ସାରଳା ଦାସଙ୍କ ଭବିଷ୍ୟ କାହାଣୀର ସାର ହେଲା ଯେ ହିନ୍ଦୁ ସମାଜ ଯେଉଁ ଜାତିପ୍ରଥା ଉପରେ ପ୍ରତିଷ୍ଠିତ ଥିଲା, ଯେଉଁ ସବୁ ନିୟମ ବା ଧର୍ମ ଦ୍ୱାରା ଏହା ଶୃଙ୍ଖଳିତ ହେଉଥିଲା ସେ ସବୁକୁ ଲୋକେ ଆଉ ଭ୍ରୂକ୍ଷେପ କରିବେ ନାହିଁ, ରାଜା ଓ ପ୍ରଜାଙ୍କ ମଧ୍ୟରେ ସୁସମ୍ପର୍କ ଲୋପ ପାଇଯିବ, ଅନେକ କଷ୍ଟରେ ଉପୁଜାଉଥିବା କୃଷିକୁ ରଜା ବଳାତ୍କାରରେ ଅପହରଣ କରିବାକୁ କୁଣ୍ଠାବୋଧ କରିବେ ନାହିଁ, ରାଜା ଯେତେ ନେଲେ ବି ତାଙ୍କର ଅଭାବ ଦୂର ହେବ ନାହିଁ । ସେ ବ୍ରାହ୍ମଣମାନଙ୍କୁ ସମ୍ମାନ ନ ଦେଖାଇ ତାଙ୍କୁ ଅପଦସ୍ତ କରି ସମାଜର ନିୟମକୁ ଭଙ୍ଗ କରିବେ । ଏହି ଦୃଶ୍ୟକୁ ଲକ୍ଷ୍ୟ କରି ସାରଳା ଦାସ ଅତ୍ୟନ୍ତ ତୀବ୍ର ଭାବେ ଆଲୋଚନା କରି କହିଛନ୍ତି-

ରାଜା ହୋଇବେ ଶାଗୁଣା ପରଜା ହୋଇବେ ମଡ଼ ।
ଠାବ ଠାବ ହୋଇ ସେ ଉଠିବାକ ପଡ ।

ହିନ୍ଦୁ ସମାଜରେ ବ୍ରାହ୍ମଣ ଉଚ୍ଚଜାତି ଭାବେ ସମ୍ମାନର ଅଧିକାରୀ ଥିଲା । ବିଦ୍ୟା ଅଧ୍ୟୟନ ଓ ଅଧ୍ୟାପନା ଥିଲା ସେମାନଙ୍କର ମୂଖ୍ୟ କାର୍ଯ୍ୟ । ରାଜକୃପାରୁ ବଞ୍ଚିତ ହେବା ପରେ ସେମାନେ ନିରୁପାୟ ହୋଇ ଜୀବିକାର ଅବଲମ୍ବନ ରୂପେ ଭିକ୍ଷାକୁ ଗ୍ରହଣ କରିଥିଲେ । ସେମାନେ ପ୍ରଥମେ ଜାତି ବିଚାରକୁ ଲୋପକରି ଶୂଦ୍ରଙ୍କ ଠାରୁ ଭିକ୍ଷା ଗ୍ରହଣ କରିଥିଲେ । ସେମାନେ ଯେ କେବଳ ଆଚରଣ ତ୍ୟାଗ କରିଥିଲେ ତାହା ନୁହେଁ, କ୍ଷମତା ଲୋଭରେ ରାଜାନୁଗ୍ରହର ଅଭିଳାଷ ରଖି ଦଣ୍ଡପାଟରେ ଦାୟିତ୍ୱ ନେଇ ରାଜସେବା କରିବାକୁ ଆରମ୍ଭ କରି ଦେଇଥିଲେ । କେବଳ ସେତିକି ନୁହେଁ, ସେମାନ କୃଷି କରିବା ସଙ୍ଗେ ସଙ୍ଗେ ଯୁଦ୍ଧକ୍ଷେତ୍ରରେ ଯୋଦ୍ଧାର କାର୍ଯ୍ୟ କରିବାକୁ ଆରମ୍ଭ କରିଦେଇଥିଲେ ।

ସମାଜର ଏହି ପରିବର୍ତ୍ତନ ଫଳରେ ବ୍ରାହ୍ମଣମାନେ ଯେ ସମାଜରେ ନିନ୍ଦିତ ହୋଇଥିଲେ ତାହା ନୁହେଁ, ସେମାନଙ୍କ ନିଜ କାର୍ଯ୍ୟ ଦ୍ୱାରା ସେମାନେ ଉପହସିତ ହୋଇଥିଲେ । ବ୍ରାହ୍ମଣ ସମାଜରେ ବାଲ୍ୟବିବାହ ପ୍ରଚଳିତ ଥିବାରୁ ବିଧବାଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ସାରଳା ଦାସ ଏହି ବିଧବା ପ୍ରଥାର ଅତ୍ୟନ୍ତ ବିରୋଧୀ ଥିଲେ । ନାରୀ ତାହାର ଯୌବନ କାଳରେ ବିଧବା ହେବା ଫଳରେ ବ୍ୟଭିଚାରରେ ଲିପ୍ତ ରହୁଥିଲେ । ବିଶେଷ କରି ସେମାନଙ୍କ ଗୃହରେ କାର୍ଯ୍ୟ କରୁଥିବା ଶୂଦ୍ରଜାତିର ଭୃତ୍ୟ ସହ ସେମାନଙ୍କ ଯୌନ ସମ୍ପର୍କ ପ୍ରତିଷ୍ଠିତ ହେଉଥିଲା । ସେମାନେ ଥିଲେ ବ୍ରାହ୍ମଣ ସମାଜର କଳଙ୍କ ।

ବ୍ରାହ୍ମଣମାନେ ବେଦମନ୍ତ୍ର ପାଠ କରିବା ସଙ୍ଗେ ସଙ୍ଗେ ସମାଜରେ ଶାସ୍ତ୍ର ନିନ୍ଦୁକଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ଓଡ଼ିଶା ଏହାର ସୁଖେରତି ନୁହଁ ମୁଖେରତି ପାଇଁ ପ୍ରସିଦ୍ଧ ଥିଲା । ଏହା ଚାରି ଜାତି ମଧ୍ୟରେ ପ୍ରଚଳିତ ଥିବା ସାରଳା ଦାସ ଉଲ୍ଲେଖ କରିଛନ୍ତି ।

ସମାଜ ଭ୍ରଷ୍ଟ ହେବାର କାରଣ ରୂପେ ସାରଳା ଦାସ ଯେଉଁ ସବୁ ଅନୀତିର ଉଲ୍ଲେଖ କରିଛନ୍ତି, ସେସବୁ ହେଲା ଶୃଙ୍ଗାରିକ ଚେତନାର ଆଧିକ୍ୟ, ପୂଜ୍ୟଜନଙ୍କ ଅବମାନନା, ଜାତିପ୍ରଥାର ଶିଥିଳତା, ପରସ୍ପର ମଧ୍ୟରେ କଳହ, ସେବକର ସ୍ୱାମୀ ଅମାନ୍ୟ, ମିଥ୍ୟା, ଚୌର୍ଯ୍ୟ, କୂଟ, ଛନ୍ଦ, ପରଧନ ହରଣ, ରାଜାଙ୍କ ଅବିଚାର, ବ୍ରତ ଓ ଉପାସନାରେ ଅବହେଳା, ଜୁଆ, ପଶା ଓ ଶକଟା ପ୍ରଭୃତି ଖେଳର ଲୋକପ୍ରିୟତା ଇତ୍ୟାଦି ।

**(ଖ) ହରିସାହୁ ଉପାଖ୍ୟାନ :** ହରିସାହୁ ବୈଶ୍ୟର ଘର ମଧ୍ୟ ଥିଲା ସେହି ବୈତରଣୀ କୂଳ ଯାଜନଗ୍ର ନିକଟବର୍ତ୍ତୀ ଧର୍ମପୁର ଗ୍ରାମ । ଏହାର ଅନ୍ୟ ନାମ ଅମରାବତୀ । ତାହାର କନ୍ୟା ନାମ ସୁହାଣୀ । କନ୍ୟା ଜନ୍ମବେଳେ ଗଣକ ଉଦ୍ଧାଳକ ଗଣନା କରି କହିଥିଲେ ଯେ, ଏ କନ୍ୟା ବଡ ଭାଗ୍ୟବତୀ । ଅଥଚ ବିଭା ହେଲେ ଏହାର ମୃତ୍ୟୁ ନିଶ୍ଚିତ । ଏକଥା ଜ୍ୟୋତିଷଠାରୁ ଶୁଣି ହରିସାହୁ କନ୍ୟାକୁ ଆଉ ବିବାହ ଦେଲା ନାହିଁ । ଏହିପରି ପନ୍ଦର ବର୍ଷ ବିତିଗଲା । ଏହି ସମୟରେ ପାଣ୍ଡବମାନେ ସେ ଗ୍ରାମରେ ପହଞ୍ଚିଲେ । ତାଙ୍କୁ ଦେଖିବା ପାଇଁ ହରିସାହୁ ଗଲା ଓ ତାହା ସାଙ୍ଗରେ ତାହାର ଦୁହିତା ମଧ୍ୟ ଯାଇଥିଲା । ସେହି କନ୍ୟାର ସୁନ୍ଦର ରୂପ ଦେଖି ଯୁଧିଷ୍ଠିର ତା' ବିଷୟରେ ଜାଣିବା ପାଇଁ ଆଗ୍ରହୀ ହେଲେ । ତା'ର ପରିଚୟ ଜାଣିଲା ପରେ କହିଲେ - ବୈଶ୍ୟ ଜାତିରେ କନ୍ୟାକୁ ଏତେ ଦିନ ରଖିବା ଠିକ୍ ନୁହେଁ । ଏହା ବଂଶ ପାଇଁ ବଡ ଦୋଷ । ତାହାପରେ ସାରଳା ଦାସ ତାଙ୍କ ଚିରାଚରିତ ବାଣୀ ଶୁଣାଇ କହିଲେ -

ଦୁହିତା ପିତାଘରେ ହୋଇଲେ ରଜୋବତୀ
ପିତୃଲୋକମାନଙ୍କୁ ହୁଅଇ ଅସଦ୍‌ଗତି ।

ଏହାପରେ ହରିସାହୁ ନିଜର ଦୁଃଖ ନିବେଦନ କରି କହିଲା - ଏସବୁ ମୋର ମନ୍ଦକର୍ମର ଫଳ । ଏ କନ୍ୟା ପାପକ୍ଷଣରେ ଜନ୍ମ ହୋଇଥିବା ହେତୁ ଜ୍ୟୋତିଷ ମତରେ ବିଭା କାଳରେ ମୃତ୍ୟୁ ସୁନିଶ୍ଚିତ । ସେଥିପାଇଁ ଏହାକୁ ବିବାହ ଦେଇପାରି ନାହିଁ । ଯୁଧିଷ୍ଠିର ସହଦେବଙ୍କୁ ପଚାରିବାରେ ସେ ମଧ୍ୟ ହରିସାହୁ କଥା ଅନୁମୋଦନ କରିଥିଲେ । ସହଦେବର କଥା ସରିବା ବେଳକୁ ହରି ସାହୁ କନ୍ୟା ଦେଇ ଶରଣ ପଶିବା ନିମନ୍ତେ ପ୍ରାର୍ଥନା କଲା । କେବଳ କନ୍ୟାଦାନ କରିବା ତା'ର ଲକ୍ଷ୍ୟ ନ ଥିଲା -

ତୁମ୍ଭରେ ପ୍ରଦାନ ମୁଂ କରିବି ଦୁହିତା

ଯାବଦ୍‌ଚନ୍ଦ୍ରାର୍କେ ରୁହାଇବି କଥା

ଏହି 'ତୁମ୍ଭରେ ପ୍ରଦାନ' କଥାକୁ ସ୍ପଷ୍ଟକରି ପରେ କୁହାଯାଇଛି -

ଯୁଦ୍ଧେଷ୍ଠି ଦେବଙ୍କ ବଚନେ ହରିସାହୁ ଆନନ୍ଦ
ବିଭାକଇଂ ଉଦିଯୋଗ କଲେକ ପରମ ସାନନ୍ଦ
ବନ୍ଧୁ ବାନ୍ଧବନ୍ତ ରୁଣ୍ଡ କଲାକ ହରିସାହୁ
ମୋହର ଜୁଆଂଇ ହୋଇଲେ ଯୁଦ୍ଧେଷ୍ଠି ମହାବାହୁ
ଜୀଇଂଲେ ଜୀଉଂ ପଛେ ମଲେ ମରୁ ବାଳୀ
ଏକଥା ଚିରାଞ୍ଜନ ରହିବ ମ୍ହୀଆଳୀ ।

ହରିସାହୁର ଏହି ବକ୍ତବ୍ୟରୁ ,ଏ ଦେଶରେ ଏକଦା ଚଳୁଥିବା କୁଳୀନ ପ୍ରଥାର ସୂଚନା ମିଳିଥାଏ । ପଣ୍ଡିତ ନୀଳକଣ୍ଠ ବଙ୍ଗଦେଶରେ କୁଳୀନ ବ୍ରାହ୍ମଣମାନେ ଏକାଧିକ ବିବାହ କରୁଥିବା ଏବଂ କନ୍ୟା ପିତା କୁଳୀନ ବ୍ରାହ୍ମଣ ଘରେ କନ୍ୟାକୁ ଦେଇ ତରି ଯାଉଥିବା ପ୍ରଥା ପ୍ରଚଳିତ ଥିଲା । ଏବଂ ଏହି ପ୍ରକାର ବିବାହ ସମାଜକୁ ଭ୍ରଷ୍ଟାଚାରୀ ହେବାରେ ସାହାଯ୍ୟ କରୁଥିଲା ।

ସାରଳା ଦାସ ଏହି ଗଳ୍ପରେ କୁଳୀନ ପ୍ରଥାର ସୂଚନା ଦେବା ସଙ୍ଗେ ସଙ୍ଗେ ଧର୍ମ ଉଦିତ ହେବା କଥା ମଧ୍ୟ କହିଛନ୍ତି ।

ସ୍ୱାମୀର ସତ୍ୟବାଚ ହେଉ ଉଦିତ ହଉ ଧର୍ମ
ବଶ୍ୟ କୁଳକୁ କଥା ରହୁ ଜନ୍ମ ଜନ୍ମ ।

ହରିସାହୁର ନିବେଦନ ଓ ଚାରି ଭାଇଙ୍କ ଅନୁରୋଧ ଶୁଣିଲାପରେ ଯୁଧିଷ୍ଠିର କହିଛନ୍ତି ଆମ୍ଭର ଗଳିତ ବୟସ, ଆମ୍ଭା ଶେଷ କରିବା ପାଇଁ ରାଜଭୋଗ ତ୍ୟାଗକରି ତୀର୍ଥ ପର୍ଯ୍ୟଟନ କଲାବେଳେ ଆଉ ବିବାହ କରିବା ଅର୍ଥହୀନ । ସହଦେବ କିନ୍ତୁ ଛାଡ଼ିନାହାନ୍ତି ଏବଂ କହିଛନ୍ତି ଯାଚିଲା କନ୍ୟା ଛାଡ଼ିବା ଅନୁଚିତ । ଏହାପରେ ଅର୍ଜୁନ କହିବାକୁ ଆରମ୍ଭ କଲେ ଯେ, ଯମ ଦେବତା ସଙ୍ଗେ ତାଙ୍କର ବହୁଦିନରୁ ପ୍ରୀତି । ତେଣୁ

ଯମ ଦେବତା ଭୟରୁ ସେ ସୁହାଣୀ କନ୍ୟାକୁ ନିଶ୍ଚୟ ରକ୍ଷା କରିବେ । ଏହାପରେ ଯୁଧିଷ୍ଠିର ବିବାହ କରିବା ପାଇଁ ସମ୍ମତି ପ୍ରଦାନ କଲେ ଓ ଯଥାବିଧି ବିବାହ କାର୍ଯ୍ୟ ସମ୍ପାଦିତ ହେଲା ।

ସୁହାଣୀ କନ୍ୟା ବିବାହ ଉପରେ ମତଦେଇ ଡକ୍ଟର ବଂଶୀଧର ମହାନ୍ତି କୁହନ୍ତି ଯେ ଏହା ହେଉଛି ଧର୍ମରାଜ ଯୁଧିଷ୍ଠିର ଙ୍କର ଧର୍ମରକ୍ଷାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଡକ୍ଟର ସୁରେନ୍ଦ୍ର ମହାନ୍ତି ଏହାକୁ ସହଜିଆ ବୈଷ୍ଣବ ଧର୍ମର ପ୍ରଭାବ ରୂପେ ଗ୍ରହଣ କରିଛନ୍ତି । ସାରଳା ଦାସ ଏଥିରେ ଧର୍ମ ରକ୍ଷା , କୁଳୀନ ପ୍ରଥା, ବୈଶ୍ୟ ଓ କ୍ଷତ୍ରିୟ ଜାତି ମଧ୍ୟରେ ବିବାହର ଚଳଣୀ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ଯୁଧିଷ୍ଠିର ସୁହାଣୀ କନ୍ୟାକୁ ବିବାହ କରିଥିଲେ ବି ତାଙ୍କର ଗଳିତ ବୟସ ହେତୁ କେବଳ ପ୍ରଥା ରକ୍ଷା କରିବା ପାଇଁ ଏହି ବିବାହ କରିଥିଲେ । ସଂସ୍କୃତ ମହାଭାରତ ଅନୁଯାୟୀ ଯୁଧିଷ୍ଠିର ଦ୍ରୌପଦୀଙ୍କ ବ୍ୟତୀତ କାଶୀରାଜା ପୁତ୍ରୀଙ୍କୁ ମଧ୍ୟ ବିବାହ କରିଥିଲେ ଏବଂ ତାଙ୍କଠାରୁ ଏକ ପୁତ୍ର ସନ୍ତାନ ମଧ୍ୟ ଜାତ ହୋଇଥିଲା । ସାରଳା ଦାସ କାଶୀ ରାଜକନ୍ୟାଙ୍କୁ ପରିତ୍ୟାଗ କରି ସୁହାଣୀ କନ୍ୟା ସହ ବିବାହ କରାଇ ଯୁଧିଷ୍ଠିରଙ୍କର ଯେ ଏକାଧିକ ପତ୍ନୀ ଥିଲେ ଏହା ସମର୍ଥନ କରିଥିଲେ ।

**(ଗ) ଆରଡେକ ଉପାଖ୍ୟାନ :** ସାରଳା ଦାସ ପ୍ରାଚୀ ମହାତ୍ମ୍ୟ ବର୍ଣ୍ଣନା କଲାବେଳେ ଆରଡ଼େକ ଦୈତ୍ୟ ଉପାଖ୍ୟାନ ଦେଖିବାକୁ ମିଳେ । 'ଆରଡ଼େକ' ଶବ୍ଦ ସାରଳା **ମହାଭାରତର** ବିଭିନ୍ନ ପାଠରେ ଆରଡେକ ଓ ଏରଣ୍ଡେକ, ଧର୍ମଗ୍ରନ୍ଥ ଷ୍ଟୋର ପ୍ରକାଶିତ ଗ୍ରନ୍ଥରେ ଏରଣ୍ଡେକ ଓ **ପ୍ରାଚୀ ମହାତ୍ମ୍ୟ**ରେ ଅରୁନ୍ଧ ନାମରେ ପ୍ରସିଦ୍ଧ । ସାରଳା ଦାସଙ୍କ ମତରେ ପ୍ରାଚୀ ଏକ ଗୋପନ ତୀର୍ଥ । ସତ୍ୟ ଯୁଗରେ ଶଚୀ ଏଥିରେ ସ୍ନାନ କରୁଥିଲେ । ସେ ନଦୀରେ ସ୍ନାନ କରି ଅଷ୍ଟ ଶମ୍ଭୁଙ୍କୁ ପୂଜା କରି ଫେରି ଯାଉଥିଲେ । ପରବର୍ତ୍ତୀ ଯୁଗରେ ଏହା ଅସୁରଙ୍କ ବାସଭୂମିରେ ପରିଣତ ହେଲା । ଇନ୍ଦ୍ରଦେବତା ଶଚୀଦେବୀଙ୍କୁ ସାବଧାନ କରିଦେଲେ ଓ ତାଙ୍କୁ ରକ୍ଷା କରିବା ପାଇଁ ଅଶୀ ସହସ୍ର ଗନ୍ଧର୍ବ ନିଯୁକ୍ତ କଲେ । ଯୁଧିଷ୍ଠିରଙ୍କ ପ୍ରଶ୍ନର ଉତ୍ତର ଦେଇ ଲୋମଶ କହିଲେ ଯେ ପ୍ରାଚୀ ତୀରରେ ପ୍ରଥମେ ରକ୍ଷ ଓ ଭକ୍ଷ ବାସ କରୁଥିଲେ । ତାଙ୍କର ପୁତ୍ର ହେଲେ ହେତୀ ଓ ପ୍ରହେତୀ । ସେମାନଙ୍କର ପୁତ୍ର ଭାବେ ବଜ୍ରାଙ୍ଗ ଓ କାଳାନନ୍ଦ ଜନ୍ମଲାଭ କଲେ । ବଜ୍ରାଙ୍ଗର ନନ୍ଦନ ହେଲେ ମାଳୀ, ସୁମାଳୀ ଓ ମାଲ୍ୟବନ୍ତ । ମାଲ୍ୟବନ୍ତର ପୁତ୍ର ହେଲା କେତୁମାଳି । କେତୁମାଳୀର ଦୁଇପୁଅ, ନାମ କାଳୀ ଓ ଗୋପାଳୀ । ଗୋପାଳୀର ପୁଅ ନାମ ହେଲା ଭାନୁବନ୍ତ । ଭାନୁବନ୍ତର ତିନିପୁଅ - କୀର୍ତ୍ତନ, କୀର୍ତ୍ତିବାସ ଓ ଆରଡେକ । ଏକାମ୍ର ବନରେ ରହିଲେ କୀର୍ତ୍ତନ ଓ କୀର୍ତ୍ତିବାସ, ପ୍ରାଚୀ କୂଳରେ ରହିଲା ଆରଡେକ । ସେ ପ୍ରାଚୀ କୂଳରେ ଥିବା ମୃତ୍ତିକା ପର୍ବତକୁ ଛାଡି ଗଲାନାହିଁ । ନାରଦ ଇନ୍ଦ୍ରଙ୍କୁ ସାବଧାନ କରି

କହିଲେ - ପ୍ରାଚୀ କୂଳରେ ଆରଡେକ ଦୈତ୍ୟ ଅଛି । ଶଚୀଙ୍କର ଆଉ ସେଠାକୁ ଯିବା ଉଚିତ ହେବନାହିଁ । ଯୁଧିଷ୍ଠିର ଏକଥା ଶୁଣି ଆରଡେକ ଦୈତ୍ୟକୁ ବଧ କରି ପ୍ରାଚୀ ତୀର୍ଥକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ଭାଇମାନଙ୍କୁ ଧରି ପ୍ରାଚୀ ତୀର୍ଥରେ ଉପସ୍ଥିତ ହେଲେ । ସେମାନେ ଯେଉଁଠି ପ୍ରାଚୀ ତୀରରେ ଅବସ୍ଥାନ କଲେ ତାହା ପାଣ୍ଡବ ତୀର୍ଥ ନାମରେ ପ୍ରସିଦ୍ଧି ଲାଭ କଲା । ସ୍ନାନ କଲାବେଳେ ଜଳ ମଧ୍ୟରେ ଏକ କୃଷ୍ଣବର୍ଣ୍ଣ ମାଧବ ପ୍ରତିମା ଦେଖିବାକୁ ପାଇଥିଲେ । ସେହି ପ୍ରତିମା ଶଙ୍ଖ ଚକ୍ର ଗଦା ଓ ପଦ୍ମ ଦ୍ୱାରା ଶୋଭିତ ଥିଲା । ଯୁଧିଷ୍ଠିର ତାକୁ ଦେଖିବା କ୍ଷଣି ସେହି ପ୍ରତିମାକୁ ଜଳରୁ ଉଦ୍ଧାର କରି ପାଣ୍ଡବ ଘାଟରେ ସ୍ଥାପନ କଲେ । ସ୍ୱର୍ଗବାଣୀ ହେଲା - ଏହି ପ୍ରତିମା ହେଉଛି ପ୍ରତ୍ୟକ୍ଷେ ନାରାୟଣ ।

**ପ୍ରାଚୀ ମହାତ୍ମ୍ୟ**ରେ ଏହି କଥାର ଅନ୍ୟ ଏକ ରୂପ ମିଳେ । ତଦନୁଯାୟୀ ଏହା ସ୍ୱର୍ଗାରୋହଣ ଯାତ୍ରା କାଳରେ ହୋଇ ନ ଥିଲା । ଦୁର୍ଯ୍ୟୋଧନଙ୍କ ସହିତ ପଶାଖେଳରେ ହାରିଯିବା ପରେ ମାତା, ଭ୍ରାତା ଓ ଭାରିଯା ସହିତ ଯୁଧିଷ୍ଠିର ବନବାସ କରିଥିଲେ । ଏହି ବନବାସ ସମୟରେ ସେ ଲୋମଶଙ୍କୁ ପଚାରିଲେ - ଏ ସଂସାରରେ ତୀର୍ଥରାଜ କିଏ ? ଲୋମଶ ଉତ୍ତର ଦେଲେ -

ଉତ୍କଳ ଦେଶେ ପ୍ରାଚୀ ନାମ, ଉତ୍କଳତୀର୍ଥେ ଅନୁପମ ।
କୀଟ ପତଙ୍ଗ ଆଦି ଯେତେ, ମୁକ୍ତି ଲଭନ୍ତି ସେହି ତୀର୍ଥେ ।

ଏକଥା ଶୁଣି ଯୁଧିଷ୍ଠିର ପ୍ରାଚୀ କୂଳରେ ପହଞ୍ଚିଲେ । ସେଠାରେ ସବୁ ଦେବତାଙ୍କୁ ଦେଖିଲେ ମଧ୍ୟ ବିଷ୍ଣୁ ଙ୍କୁ ଦେଖିପାରି ନ ଥିଲେ । ବିଷ୍ଣୁଙ୍କୁ ନ ଦେଖି ବ୍ୟାକୁଳ ଚିତ୍ତରେ ଲୋମଶଙ୍କୁ ବିଷ୍ଣୁଙ୍କ ଅନୁପସ୍ଥିତି ସମ୍ପର୍କରେ କହିବାରୁ ଲୋମଶ କହିଲେ ଯେ ସେ ଏହି ଜଳ ମଧ୍ୟରେ ଲୁକ୍କାୟିତ । ଏହାର ଏକ ଇତିହାସ ଦେଇ କୁହାଯାଇଛି ପ୍ରଥମେ ଏହି ପ୍ରତିମା ଅମରାବତୀ ପୁରରେ ରହିଥିଲା । ରାବଣ ତ୍ରୈଲୋକ୍ୟ ବିଜୟ କଲା ପରେ ଏହି ପ୍ରତିମାକୁ ଲଙ୍କାକୁ ନେଇ ଆସିଲା । ରାବଣ ବଧ ପରେ ବିଭୀଷଣ ଏହି ପ୍ରତିମାକୁ ପୂଜା କରୁଥିଲା । ଏହା ହେଲା ତ୍ରେତୟା ଯୁଗର କଥା । ଦ୍ୱାପର ଯୁଗରେ ଅଗ ନାମକ ଦୈତ୍ୟବୀର ଲଙ୍କାରୁ ଏହାକୁ ଆଣି ଏଠାରେ ସ୍ଥାପନ କଲେ । ପ୍ରାଚୀ ନଦୀ ସରସ୍ୱତୀ, ନାମରେ ପ୍ରସିଦ୍ଧ ଏବଂ ଏହି ସ୍ଥାନର ନାମ ମଣିକର୍ଣ୍ଣିକା । ଏହାପରେ ଅରୁନ୍ଧ ନାମକ ଦୈତ୍ୟବୀର ସେହି ପ୍ରତିମାକୁ ଜଳ ମଧ୍ୟରେ ରଖି ପୂଜା କଲା । ଯୁଧିଷ୍ଠିରଙ୍କ ଆଦେଶରେ ଓ ଲୋମଶ ଋଷିଙ୍କ ଅନୁରୋଧ କ୍ରମେ ଭୀମ ସେହି ପ୍ରତିମାକୁ ଜଳରୁ ଆଣି ତୀର ଦେଶରେ ସ୍ଥାପନ କଲେ । ଯୁଧିଷ୍ଠିର ମଧ୍ୟ ଦେଶରୁ ବ୍ରାହ୍ମଣ ଆଣି ମାଧବ ପ୍ରତିମାର ପୂଜା ବ୍ୟବସ୍ଥା କଲେ ।

ମାଧବ ପ୍ରତିମା ଅମରାବତୀରେ ଥିବା ଓ ରାବଣ ଦ୍ୱାରା ଅପହୃତ ହୋଇଥିବା

ଉପାଖ୍ୟାନ ବାଲ୍ମୀକି ରାମାୟଣରୁ ଗୃହୀତ । ସେଠାରେ ଏହାଙ୍କର ନାମ ନାରାୟଣ । ବଳରାମ ଏହି ପ୍ରତିମାକୁ ପୁରୁଷୋତ୍ତମ ନାମ ଦେଇ ଜଗନ୍ନାଥ ଧାମରେ ପୂଜା କରିବା କଥା କହିଥିଲେ ।

**ପ୍ରାଚୀ ମାହାତ୍ମ୍ୟ** ପରି ସାରଳା **ମହାଭାରତ**ରେ ଏହି ପ୍ରତିମା ନଦୀ ଭିତରେ ରହିଥିବା କଥା କୁହାଯାଇଛି । ନଦୀ ଭିତରୁ ପ୍ରତିମାକୁ ଆଣି ତୀର ଦେଶରେ ପୂଜା କଲାପରେ ଆରଡେକ ଓ ଭୀମ ମଧ୍ୟରେ ଯୁଦ୍ଧ ହେଲା ଭୀମ ଯେତେ ଚେଷ୍ଟା କଲେ ବି ଆରଡେକକୁ ମାରି ପାରି ନ ଥିଲେ । ଶେଷକୁ ଦେବତାଙ୍କ ଅନୁରୋଧ କ୍ରମେ ଯୁଧିଷ୍ଠିର ମାଧବ ପ୍ରତିମାକୁ ଆରଡେକର ମସ୍ତକ ଉପରେ ରଖିବାରୁ ତା'ର ମୃତ୍ୟୁ ହେଲା ଏବଂ ପ୍ରାଚୀ ତୀର୍ଥ ଉଦ୍ଧାର ହୋଇଥିଲା । ସାରଳା ଦାସ ମାଧବଙ୍କ ମହିମା ଗାନ କରି ଏହି ତୀର୍ଥକୁ ଶ୍ରେଷ୍ଠ ତୀର୍ଥ ଭାବେ ଘୋଷଣା କରିଛନ୍ତି ।

କିସ କରିବ ହୋ ନାନା ତୀର୍ଥେ ଗବନେ
ଧର୍ମ ଅର୍ଥ କାମ ମୋକ୍ଷ ଯୁଝେଷ୍ଠି ମାଧବ ଦ୍ରଶନେ । ପୃ - ୩୫

ଯୁଧିଷ୍ଠିର ପ୍ରତିଷ୍ଠା କରିଥିବା ମାଧବ 'ଯୁଝେଷ୍ଠି ମାଧବ' ନାମ ଗ୍ରହଣ କରିଥିବା ସାରଳା ଦାସ କହୁଥିଲେ ବି ଏବେ ଏହାର ସନ୍ଧାନ ମିଳେ ନାହିଁ । ଦ୍ୱିଜ ତ୍ରିଲୋଚନ **ପ୍ରାଚୀ ମାହାତ୍ମ୍ୟ** ଗ୍ରନ୍ଥରେ ଅନୁରୂପ ଭାବେ ମାଧବଙ୍କର ପ୍ରଶଂସା କରିଛନ୍ତି ।

ମାଧବ ଦର୍ଶନେ ନରେଶ, ଗୋହତ୍ୟା ବ୍ରହ୍ମହତ୍ୟା ନାଶ ।
ଯେ ଅବା ବିଷ୍ଣୁଭକ୍ତ ଜନ, ତାଙ୍କୁ ପ୍ରତ୍ୟକ୍ଷ ଏହି ସ୍ଥାନ ।
ଯାହାଙ୍କ ପୂଣ୍ୟଫଳ ଥାଇ, ସେ ଜନ ଏଥି ବିଶ୍ରାମଇ ।

(ପୃ-୧୩୧)

ସାରଳା ଦାସ ଓ ଦ୍ୱିଜ ତ୍ରିଲୋଚନ ଯେଉଁ ଭାବେ ପ୍ରାଚୀ ତୀର୍ଥ ଓ ମାଧବ ପ୍ରତିମାର ମହିମା ଗାନ କରିଛନ୍ତି, ସେଥିରୁ ଏକଦା ଏହି ସ୍ଥାନ ମାଧବ ଉପାସନା ପାଇଁ ପ୍ରସିଦ୍ଧି ଲାଭ କରିଥିବା ଜଣାଯାଏ । ଯୁଧିଷ୍ଠିର ଯେଉଁ ପ୍ରତିମାକୁ ଦର୍ଶନ କରିଥିଲେ , ତାହା ଥିଲା କୃଷ୍ଣ ବର୍ଣ୍ଣ ଏବଂ ତାଙ୍କର ଚାରି ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭାପାଉଥିଲା । ଦ୍ୱିଜ ତ୍ରିଲୋଚନଙ୍କ ବର୍ଣ୍ଣନାନୁଯାୟୀ ସେହି ପ୍ରତିମା "ସାକ୍ଷାତେ ଶଙ୍ଖ ଚକ୍ରଧର, ଅଛନ୍ତି ଏ ଜଳ ମଧ୍ୟର ।"

ଅନୁସନ୍ଧାନରୁ ଜଣାଯାଏ ଯେ ପ୍ରାଚୀ ତଟବର୍ତ୍ତୀ ବିଭିନ୍ନ ବିଷ୍ଣୁ ବା ମାଧବ ପ୍ରତିମାଙ୍କ ଉର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଚକ୍ର, ଉର୍ଦ୍ଧ୍ୱ ବାମହସ୍ତରେ ଶଙ୍ଖ, ନିମ୍ନସ୍ଥ ଦକ୍ଷିଣ ହସ୍ତରେ ଗଦା ଓ ବାମ ହସ୍ତରେ ପଦ୍ମ ସୁଶୋଭିତ ଥାଏ । ପ୍ରାଚୀ ତଟବର୍ତ୍ତୀ ବହୁ ଗ୍ରାମରେ ଏହିପରି ମୂର୍ତ୍ତି ଦେଖିବାକୁ ମିଳିଥାଏ । କେତେବେଳେ ଏହାଙ୍କୁ ବିଷ୍ଣୁ କୁହାଯାଏ ତ କେତେବେଳେ

ମାଧବ । ଏସବୁ ମଧ୍ୟରେ ମାଧବ ଗ୍ରାମରେ ପୂଜିତ ହେଉଥିବା ମାଧବ, ହେଟା ଗ୍ରାମର ଲଳିତ- ମାଧବ, ନୀଳକଣ୍ଠପୁରର ନୀଳ-ମାଧବ, ମୁଦ୍‌ଗଳ-ମାଧବ ଗ୍ରାମର ମୁଦ୍‌ଗଳ-ମାଧବ, ଅଡଶପୁର, ରଘୁନାଥପୁର ଓ ଗମ୍ଭାରିଆପଡାର ମାଧବମୂର୍ତ୍ତି ମାଧବ ଉପାସନାର ଗୌରବୋଜ୍ଜ୍ୱଳ ଇତିହାସକୁ ବହନ କରିଥାଏ । ଏ ସମ୍ପର୍କରେ ଶ୍ରୀଯୁକ୍ତ ପି. ସି. ରାୟଙ୍କ ମତ ବିଶେଷ ଭାବେ ଉଲ୍ଲେଖନୀୟ । **" The Madhava temple built during the Ganga rule in Orissa enshrining the unique and dazzling deity worshipped as Madhava stands as a monumental evidence of the predominace of such cult not only in the Prachi Valley but also in whole of Orissa."**

**(Archaeological Survey Report, Prachi Valley Orissa State Archaeology, Bhubaneswar)**

**ମୂଳ ସଂସ୍କୃତ ଓ ଓଡିଆ ମହାଭାରତର ତୁଳନାତ୍ମକ ବିଚାର :** ସାରଳା ଦାସ ମହାପ୍ରସ୍ଥାନିକ ଓ ସ୍ୱର୍ଗାରୋହଣ ପର୍ବକୁ ଏକତ୍ର କରି 'ସ୍ୱର୍ଗ ଆରୋହଣ' ନାମ ପ୍ରଦାନ କରିଛନ୍ତି । ସଂସ୍କୃତ ମହାଭାରତରେ ରାଜ୍ୟ ତ୍ୟାଗଠାରୁ ସ୍ୱର୍ଗରେ ଉପସ୍ଥିତି ପର୍ଯ୍ୟନ୍ତ କଥାକୁ ମହାପ୍ରସ୍ଥାନିକ ପର୍ବର ଅନ୍ତର୍ଭୁକ୍ତ କରାଯାଇ, ସ୍ୱର୍ଗରେ ଅବସ୍ଥାନକୁ ସ୍ୱର୍ଗାରୋହଣ ପର୍ବ କୁହାଯାଇଛି । ମହାପ୍ରସ୍ଥାନ ଓ ସ୍ୱର୍ଗାରୋହଣ ପ୍ରାୟ ଏକା ଅର୍ଥ ପ୍ରକାଶ କରୁଥିବାରୁ ସାରଳା ଦାସ ଏଥିରେ ଥିବା ସୂକ୍ଷ୍ମ ପାର୍ଥକ୍ୟକୁ ବିଚାରକୁ ନ ନେଇ ଉଭୟକୁ ବୋଧହୁଏ ଗୋଟିଏ ପର୍ବରେ ପରିଣତ କଲେ । ସଂସ୍କୃତ ମହାପ୍ରସ୍ଥାନିକ ପର୍ବର କଥାକୁ ନିମ୍ନମତେ ବିଭାଗ କରାଯାଇପାରେ ।

୧- ଯୁଧିଷ୍ଠିରଙ୍କର ଭାଇ ମାନଙ୍କ ସହିତ କାଳପାଶକୁ ସ୍ୱୀକାର କରିବାକୁ ସ୍ଥିର କରି ଯୁଯୁତ୍ସୁଙ୍କୁ ରାଜ୍ୟ ଦେଖାଶୁଣା କରିବାର ଦାୟିତ୍ୱ ଦେବା ଏବଂ ପରୀକ୍ଷିତଙ୍କୁ ହସ୍ତିନାପୁରରେ ଅଭିଷିକ୍ତ କରି, ବଜ୍ରଙ୍କୁ ଇନ୍ଦ୍ରପ୍ରସ୍ଥ ଦେଇ ସୁଭଦ୍ରାଙ୍କୁ ସେମାନଙ୍କ ରକ୍ଷାର ଦାୟିତ୍ୱ ପ୍ରଦାନ କରିବା । (ମହା-ପ୍ରସ୍ଥାନ ୧।୩-୯)

୨- ବସୁଦେବ, ଭଗବାନ୍ ଶ୍ରୀକୃଷ୍ଣ ତଥା ବଳରାମ ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦାନ ଓ ଶ୍ରାଦ୍ଧ ସମ୍ପାଦନ । (ମହାପ୍ରସ୍ଥାନ ୧। ୧୦-୧୩)

୩-କୃପାଚାର୍ଯ୍ୟଙ୍କୁ ପୂଜା କରି ପରୀକ୍ଷିତଙ୍କୁ ତାଙ୍କ ଶିଷ୍ୟଭାବେ ଅର୍ପଣ କରିବା । (ମହାପ୍ରସ୍ଥାନ ୧ ।୧୪-୧୫)

୪- ପ୍ରଜା, ମନ୍ତ୍ରୀ ଆଦିଙ୍କ ସମ୍ମୁଖରେ ନିଜର ମହାପ୍ରସ୍ଥାନ ସମ୍ପର୍କରେ ସୂଚନା ଦେବା ଏବଂ ସେମାନଙ୍କ ବାରଣ ସତ୍ତ୍ୱେ ସେମାନଙ୍କ ଅନୁମତି ନେଇ ଭାଇମାନଙ୍କ ସହିତ ମହାପ୍ରସ୍ଥାନ ପାଇଁ ପ୍ରସ୍ତୁତ ହେବା । (ମହାପ୍ରସ୍ଥାନ ୧।୧୬-୧୯)

୫- ଭାଇମାନଙ୍କ ସହିତ ନିଜ ଆଭୂଷଣ ସବୁକୁ ବାହାର କରି ସେ ସବୁର ଉତ୍ସର୍ଗ ଯଜ୍ଞ ସମାପନ କରିବା ଓ ଯଜ୍ଞ ଅଗ୍ନିକୁ ଜଳରେ ବିସର୍ଜନ କରି ମହାଯାତ୍ରା ଆରମ୍ଭ କରିବା । ( ମହାପ୍ରସ୍ଥାନ ୧। ୧୯-୨୨)

୬- ଯୁଧିଷ୍ଠିରଙ୍କ ଇଚ୍ଛାନୁସାରେ ପାଞ୍ଚ ଭାଇ, ଦ୍ରୌପଦୀ ଓ ଗୋଟିଏ କୁକ୍କୁରର ଏକତ୍ର ହସ୍ତିନାପୁରରୁ ନିର୍ଗତ ହେବା । (ମହାପ୍ରସ୍ଥାନ ୧।୨୪-୨୫)

୭- ପ୍ରଥମେ ପୂର୍ବ ଦିଗାଭିମୁଖେ ଯିବା ଓ ଆଗେ ଆଗେ ଯୁଧିଷ୍ଠିରଙ୍କ ଚାଲିବା । (ମହାପ୍ରସ୍ଥାନ ୧।୨୯-୩୧)

୮- ଲାଲ ସାଗର ନିକଟରେ ଅଗ୍ନିଦେବ ଅର୍ଜୁନଙ୍କୁ ଗାଣ୍ଡୀବ ଧନୁ ଅକ୍ଷୟ ତୂଣୀର ପରିତ୍ୟାଗ କରିବା ପାଇଁ କହିବା ଓ ଭାଇମାନଙ୍କ ଅନୁରୋଧରେ ଅର୍ଜୁନ ସେସବୁ ଜଳରେ ନିକ୍ଷେପ କରିବା । (ମହାପ୍ରସ୍ଥାନ ୧ । ୪୩-୪୬)

୯-ପୂର୍ବପଟୁ ଦକ୍ଷିଣ ଓ ପଶ୍ଚିମ ଦିଗ ଅଭିମୁଖେ ଯିବା । (ମହାପ୍ରସ୍ଥାନ ୧ । ୪୩-୪୬)

୧୦-ପଥ ମଧରେ ଦ୍ରୌପଦୀ, ସହଦେବ, ନକୁଳ , ଅର୍ଜୁନ ଓ ଭୀମସେନଙ୍କ ପତନ ତଥା ଯୁଧିଷ୍ଠିରଙ୍କ ଦ୍ୱାରା ପ୍ରତ୍ୟେକଙ୍କ ପତନର କାରଣ ଉଲ୍ଲେଖ କରିବା । (ମହାପ୍ରସ୍ଥାନ ୨ୟ ଅଧ୍ୟାୟ)

୧୧- ଯୁଧିଷ୍ଠିରଙ୍କ ନିକଟକୁ ଇନ୍ଦ୍ରଙ୍କର ରଥ ଆଣିବା ଓ ସେଥିରେ ବସିବା ପାଇଁ ଯୁଧିଷ୍ଠିରଙ୍କୁ ଅନୁରରୋଧ କରିବା ( ମହାପ୍ରସ୍ଥାନ - ୩।୧)

୧୨- ଇନ୍ଦ୍ରଙ୍କଠାରୁ ସବୁ ଭାଇ ଓ ଦୌପଦୀ ସ୍ୱର୍ଗରେ ପହଞ୍ଚିବାର ସମ୍ବାଦ ଶୁଣିବା ପରେ କୁକ୍କୁର ସହ ସ୍ୱର୍ଗକୁ ଯିବା ପାଇଁ ସ୍ଥିର କରିବା । (ମହାପ୍ରସ୍ଥାନ ୩। ୨-୩)

୧୩- ଯୁଧିଷ୍ଠିରଙ୍କ ପ୍ରସ୍ତାବକୁ ଇନ୍ଦ୍ର ଅସ୍ୱୀକାର କରି ଏକୁଟିଆ ସ୍ୱର୍ଗକୁ ଯିବାପାଇଁ ଅନୁରୋଧ କରିବା ଓ ଯୁଧିଷ୍ଠିର ଶରଣାଗତ କୁକ୍କୁର ସହିତ ଯିବାପାଇଁ ଇଚ୍ଛା ପ୍ରକାଶ କରିବା । (ମହାପ୍ରସ୍ଥାନ ୩।୮-୧୩)

୧୪- କୁକ୍କୁର ରୂପରେ ଆସିଥିବା ଧର୍ମଦେବତାଙ୍କର ଯୁଧିଷ୍ଠିରଙ୍କୁ ଅଭିନନ୍ଦନ ଏବଂ ଇନ୍ଦ୍ର ଓ ଧର୍ମଙ୍କ ସହ ଯୁଧିଷ୍ଠିରଙ୍କର ସ୍ୱଦେହରେ ସ୍ୱର୍ଗ ପ୍ରବେଶ । (ମହାପ୍ରସ୍ଥାନ ୩।୧୭-୨୫)

୧୫- ଦେବର୍ଷି ନାରଦଙ୍କ ଦ୍ୱାରା ଯୁଧିଷ୍ଠିରଙ୍କ ପ୍ରଶଂସା,  ଇନ୍ଦ୍ର ତାଙ୍କୁ ଉତ୍ତମ ଲୋକରେ ରହିବା ପାଇଁ ଅନୁରୋଧ କରିବା ସତ୍ତ୍ୱେ ସେ ଭାଇମାନଙ୍କୁ  ଛାଡି ନ ଯିବା ପାଇଁ କହିବା ଓ ସେମାନଙ୍କ ସହିତ ଶୁଭ ବା ଅଶୁଭ ସ୍ଥାନରେ ରହିବା ପାଇଁ ଇଚ୍ଛା ପ୍ରକାଶ କରିବା । (ମହାପ୍ରସ୍ଥାନ ୩।୨୬-। ୩୮)

ଏହାପରେ ସ୍ୱର୍ଗାରୋହଣ ପର୍ବ ଆରମ୍ଭ ହୁଏ ।

୧- ସ୍ୱର୍ଗପୁରରେ ଦୁର୍ଯ୍ୟୋଧନଙ୍କୁ ଶ୍ରୀସମ୍ପନ୍ନ ଦେଖି ଯୁଧିଷ୍ଠିର ଈର୍ଷାରେ ସେ ସ୍ଥାନରେ ନ ରହି ଭାଇମାନଙ୍କ ସହିତ ମିଳିତ ହେବାପାଇଁ ଉତ୍କଣ୍ଠିତ ହେବା । ( ସ୍ୱର୍ଗା ୧।୬ - ୧୦)

୨- ଯୁଧିଷ୍ଠିରଙ୍କର ଏପରି ବ୍ୟବହାରରେ ଦେବର୍ଷି ନାରଦଙ୍କର ହସିବା, ଯୁଧିଷ୍ଠିରଙ୍କୁ ସ୍ୱର୍ଗରେ ଦୁର୍ଯ୍ୟୋଧନଙ୍କ ସମ୍ମାନପୂର୍ଣ୍ଣ ସ୍ଥାନ ସଂପର୍କରେ ସୂଚନା ଦେବା ଏବଂ ଦୁର୍ଯ୍ୟୋଧନ ସହ ମିଶି ରହିବା ପାଇଁ କହିବା । (ସ୍ୱର୍ଗା ୧।୧୧-୧୮)

୩- ଯୁଧିଷ୍ଠିରଙ୍କର ନିଜ ଭାଇ ଓ ବନ୍ଧୁବାନ୍ଧବଙ୍କୁ ମିଳିଥିବା ସ୍ଥାନ ସଂପର୍କରେ ଜିଜ୍ଞାସା କରିବା ଓ ସେମାନଙ୍କ ସହ ସାକ୍ଷାତ କରିବା ପାଇଁ ଇଚ୍ଛା କରିବା (ସ୍ୱର୍ଗା୧।୨୦-୨୬)

୪- ଦେବଦୂତଙ୍କ ଦ୍ୱାରା ଯୁଧିଷ୍ଠିରଙ୍କୁ ମାୟାମୟ ନରକର ଦର୍ଶନ କରାଇବା ତଥା ଭାଇମାନଙ୍କର କରୁଣ କ୍ରନ୍ଦନ ଶୁଣି ତାଙ୍କର ସେଠି ରହିବାକୁ ଇଚ୍ଛା କରିବା (ସ୍ୱର୍ଗା ୨ୟ ଅଧ୍ୟାୟ)

୫- ଇନ୍ଦ୍ର ଓ ଧର୍ମଙ୍କର ଯୁଧିଷ୍ଠିରଙ୍କୁ ସାନ୍ତ୍ୱନା ଦେବା ତଥା ମନ୍ଦାକିନୀରେ ସ୍ନାନ କରି ମାନବ ଶରୀରକୁ ତ୍ୟାଗ କରିବା ପରେ ଦିବ୍ୟଲୋକରେ ପ୍ରବେଶ କରିବା ପାଇଁ ଉପଦେଶ ଦେବା । (ସ୍ୱର୍ଗା ୩ୟ ଅଧ୍ୟାୟ)

୬- ଯଧିଷ୍ଠିରଙ୍କର ଦିବ୍ୟଲୋକରେ ଶ୍ରୀକୃଷ୍ଣ ଅର୍ଜୁନ ଆଦି ସବୁ ବନ୍ଧୁବାନ୍ଧବଙ୍କୁ ଦେଖିବା (ସ୍ୱର୍ଗା ୪ର୍ଥ ଅଧ୍ୟାୟ)

୭- ଯୁଧିଷ୍ଠିରଙ୍କର ଧର୍ମଙ୍କସହ ବିଲୀନ ହୋଇଯିବା (ସ୍ୱର୍ଗା ୫/୨୨)

ସାରଳା ଦାସଙ୍କ 'ସ୍ୱର୍ଗାରୋହଣ ପର୍ବ'ରେ ଏକରୁ ଅଠଷଠି ପୃଷ୍ଠା ପର୍ଯ୍ୟନ୍ତ ମହାପ୍ରସ୍ଥାନ ପର୍ବର କଥାବସ୍ତୁ ବର୍ଣ୍ଣନା । ଅବଶିଷ୍ଟ ଆଠଟି ପୃଷ୍ଠାରେ ସ୍ୱର୍ଗାରୋହଣ ପର୍ବ କଥା କୁହାଯାଇଛି । ସାରଳା ଦାସ ସଂସ୍କୃତ କଥାବସ୍ତୁକୁ ପ୍ରାୟ ଅନୁସରଣ କରୁଥିଲେ ହେଁ ଯୁଯୁତ୍ସୁଙ୍କୁ ରାଜ୍ୟ ଦେଖାଶୁଣା କରିବାର ଦାୟିତ୍ୱ ଦେବା, ବଜ୍ରକୁ ଇନ୍ଦ୍ରପ୍ରସ୍ଥରେ ରାଜା କରାଇବା, ପରୀକ୍ଷିତ ଓ ବଜ୍ରର ଦାୟିତ୍ୱ ସୁଭଦ୍ରାଙ୍କ ହସ୍ତରେ ନ୍ୟସ୍ତ କରିବା, ବଜ୍ରକୁ ଇନ୍ଦ୍ରପସ୍ଥରେ ରାଜା କରାଇବା, ପରୀକ୍ଷିତ ଓ ବଜ୍ରର ଦାୟିତ୍ୱ ସୁଭଦ୍ରାଙ୍କ ହସ୍ତରେ ନ୍ୟସ୍ତ କରିବା, ବସୁଦେବ, ଶ୍ରୀକୃଷ୍ଣ ଓ ବଳରାମ ଆଦିଙ୍କୁ ଶ୍ରାଦ୍ଧ କରିବା, କୃପାଚାର୍ଯ୍ୟଙ୍କୁ ପୂଜା କରି ପରୀକ୍ଷିତଙ୍କୁ ତାଙ୍କ ଶିଷ୍ୟ ଭାବେ ସମର୍ପଣ କରିବା, ଆଭୂଷଣ ଉତ୍ସର୍ଗ କାଳିକ ଯଜ୍ଞ ସମ୍ପାଦନ କରିବା ଏବଂ ହସ୍ତିନାପୁରରୁ ଯୁଧିଷ୍ଠିରଙ୍କ ସହିତ ଏକ କୁକୁର ସହଯାତ୍ରୀ ହୋଇଥିବା ପ୍ରଭୃତି ଘଟଣା ପରିତ୍ୟାଗ କରିଛନ୍ତି । ସେହି ପରି ସ୍ୱର୍ଗାରେହଣ ପର୍ବରେ

ଦୁର୍ଯ୍ୟୋଧନଙ୍କୁ ଶ୍ରୀ ସମ୍ପନ୍ନ ଦେଖି ଈର୍ଷା କରିବା, ନାରଦଙ୍କ ଦ୍ୱାରା ସ୍ୱର୍ଗରେ ଦୁର୍ଯୋଧନର ଗୌରବପୂର୍ଣ୍ଣ ଅବସ୍ଥିତିର ଉଲ୍ଲେଖ, ଦେବଦୂତ ଦ୍ୱାରା ଯୁଧିଷ୍ଠିରଙ୍କୁ ମାୟାନର୍କ ଦେଖାଇବା, ମନ୍ଦାକିନୀରେ ସ୍ନାନ କରି ମାନବ ଶରୀର ତ୍ୟାଗ କରିବା ପ୍ରଭୃତି ଘଟଣା ଦେଖିବାକୁ ମିଳେ ନାହିଁ ।

ସାରଳା ଦାସ ସ୍ୱର୍ଗ ଆରୋହଣକୁ ହିମାଳୟ ପଥ ଦେଇ ଗମନ କରିବାର ଦୃଶ୍ୟ ଉପସ୍ଥାପିତ କରିଛନ୍ତି । ପ୍ରବଳ ଶୈତ୍ୟ ସହ୍ୟ କରି ନ ପରି ଯଥାକ୍ରମେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ ଓ ଭୀମସେନଙ୍କ ପତନ ସଂସ୍କୃତରେ ଥିଲେ ବି ହିମାଳୟର ଶୈତ୍ୟ ପରିବର୍ତ୍ତେ ସେମାନଙ୍କର ମେରୁ ଗିରି ମାର୍ଗ ମଧ୍ୟରେ ପତନ ହୋଇଥିବା କୁହାଯାଇଛି । ସାରଳା ଦାସ ଭୀମଙ୍କର ପତନକୁ ଅତି ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି ।

ଯୁଝେଷ୍ଠିଙ୍କି ଭୀମସେନ ଗୋଡାଇ ଯାଉଥିଲେ
ବାମପାଦ ଖସିଲା ଭୀମ ହୁଡିଣ ପଡିଲେ
ଭୀମସେନ ପଡନ୍ତେ ବଜ୍ରଘାତ ଜାଣି
ଭୈରବ ରବ ଶବଦ ଶୁଭିଲା ଘୋର ଧ୍ୱନି ।

ଜଣ ଜଣ କରି ପାଞ୍ଚଜଣ ପଡିବା ସତ୍ତ୍ୱେ ଧର୍ମଦେବତା ଯୁଧିଷ୍ଠିରଙ୍କର ନିର୍ବିକାର ଭାବନା ଦେଖାଇବା ପାଇଁ ସାରଳା ଦାସ ଚେଷ୍ଟା କରିଥିଲେ ହେଁ ଭୀମ କ୍ଷେତ୍ରରେ ସେ ଅତ୍ୟନ୍ତ ନିର୍ଦ୍ଦୟ ହୋଇଯାଇଛନ୍ତି । ଅର୍ଜୁନଙ୍କୁ ଛାଡି ଚାଲିଯିବା ପରେ ଯେତେବେଳେ ଭୀମ ଅତି ବିକଳ ଭାବେ କହିଲେ -''ଆମ୍ଭର ପ୍ରାୟେ ସୋଦର ତୁ ହିମବନ୍ତ ଶିଖରରେ କିପରି ରହିବୁ'' ସେତେବେଳେ ଯୁଧିଷ୍ଠିରଙ୍କର ପ୍ରତ୍ୟୁତ୍ତର କେବଳ ସହାନୁଭୂତି ପ୍ରଦର୍ଶନ ନ କରିବାର ଚିତ୍ର ପ୍ରଦାନ କରେ ନାହିଁ ଭୀମ ଯେ ଅଚିରେ କାଳ ଗ୍ରାସରେ ପତିତ ହେବେ ତାହାର ସୂଚନା ଦେଇଥାଏ । ସେତେବେଳେ ଯୁଧିଷ୍ଠିରଙ୍କର ହସ ସାଂସାରିକ ବିଚାରରେ ଆହୁରି ବେଦନାଦାୟକ ।

ହସିଣ ଯୁଜେଷ୍ଠି ଯେ ବୋଲନ୍ତି ଧୀରବାଣୀ
ସଂସାରେ ମାୟାମୋହ ନଛାଡନ୍ତି ପ୍ରାଣୀ ।
ମୃତ୍ୟୁ ମଣ୍ଡଳେ ଜାତ ହୋଇଲେ ଅବଶ୍ୟ ପ୍ରାଣହାରି
ଦେହ ଘେନି ସ୍ୱର୍ଗ କଇଂ ଯାଇତ ନୁଆରି ।
ଆରେ ଭୀମ ପରକଇଂ କ୍ରୋଧ କର ବାବୁ
ଆପଣର ଦେହ ଘେନି ଯାଇ ତ ନୁଆରିବୁ ।

ଯୁଧିଷ୍ଠିରଙ୍କ କଥା ଶୁଣି ଭୀମଙ୍କ ମନରେ କ୍ରୋଧ ହେବା ସ୍ୱାଭାବିକ । ତେବେ

ବି ସେ ଅନୁରୋଧ କରି କହିଥିଲେ - ଆମେ ଜୀବନଯାକ ଅବିକାରେ ତୁମର ସେବା କଲୁ ଅଥଚ ଆଜି କିଏ ତୁମକୁ କି ମନ୍ତ୍ର କଲା ଯାହା ଫଳରେ ଆମକୁ ଛାଡି ଯିବାରେ ତୁମ ମନରେ ଟିକିଏ ହେଲେ ଦୁଃଖ ହେଉନାହିଁ ? ଏକଥା ଶୁଣିବା ପରେ ଯୁଧିଷ୍ଠିର ଭୀମକୁ ଆଲିଙ୍ଗନ କରି କହିଲେ -

ଯୁଜ୍ଜେଷ୍ଠି ଆଲିଙ୍ଗନ କଲେକ ବୀର  ଭୀମ
ତୁମେ ପାଞ୍ଚେହେଁ ମୋର ଅଟ ଯେ ଅଭିନ୍ନ
ଯେମନ୍ତ ଶରୀରେ ମୋର ଅଛି ପଞ୍ଚ ଆତ୍ମା
ତୁମ୍ଭେ ତେମନ୍ତ ମୋର ଅଟ ବାବୁ ଭୀମା
ଯେ ଯାହା ଅର୍ଜଇ ସେ ତହିଂର ଫଳ ପାଇ
ଆପଣାର ପାପ ପୁଣ୍ୟ ପରକୁ ନ ଦିଅଇ ।

ଏକଥା କହି ଭୀମକୁ ସାନ୍ତ୍ୱନା ଦେବା ପରେ କହିଛନ୍ତି -

ଅର୍ଜୁନକୁ କ୍ଷୋଭ ଆଉ ନକର ବାବୁ ଭୀମ
- ତୁ ଏହିକ୍ଷଣି ବାବୁରେ ହୋଇବୁ ନିଧନ ।

ଏହା ଶୁଣି ଭୀମସେନ ଯୁଧିଷ୍ଠିରଙ୍କୁ ତାଙ୍କ ସହ ନେବା ପାଇଁ ଅନେକ ବିନୟୀ ହୋଇ କହିଲେ । ସେତେବେଳେ ଯୁଧିଷ୍ଠିର ଉତ୍ତର ଦେଲେ - 'ଧର୍ମବଳ ନଥିଲେ ସ୍ୱର୍ଗକଇ ନଯାଇ ।' ଏହାପରେ ପୁଣି ଥରେ ଭୀମସେନକୁ ସେ କହଛନ୍ତି -

ତୁ ଏବେ  ଭୀମସେନ ନୁଆରିଲୁ ଚାଲି
ଶେଷକାଳ ଆସି  ଯେ ହୋଇଲା ତୋହରି ।

ଏହା କହି ଯୁଧିଷ୍ଠିର ଅତି ଦ୍ରୁତଗତିରେ ପବନ ଉଡିବା ପ୍ରାୟ ଚାଲିବାକୁ ଆରମ୍ଭ କଲେ । ଅଳ୍ପ ଦୂରରେ ହେମବନ୍ତର ଶିଖର ଦେଖାଯାଉଥିଲା । ଯୁଧିଷ୍ଠିର ଶିଖର ଅଭିମୁଖରେ ଧୀରେ ଧୀରେ ଆଗେଇ ଯାଉଥିଲେ । ଏହି ସମୟରେ ତାଙ୍କୁ ଅନୁସରଣ କରୁଥିବା ଭୀମସେନର ବାମପାଦ ଖସି ପଡିଲା । ସେତେବଳେ ଯୁଧିଷ୍ଠିରଙ୍କ ଉତ୍ତର ଅତ୍ୟନ୍ତ ପୀଡା ଦାୟକ -

ଏହା ଶୁଣି ଧର୍ମସୁତ ଚାହିଂଲେ ଲେଉଟି
ହସିଣ ପ୍ରତି ବାକ୍ୟ ଦେଲେକ ଯୁଝେଷ୍ଠି ।
ଯେ ଯାହାର ପୁଣ୍ୟଗତି ଘେନି ସ୍ୱର୍ଗ ପାଅ
ଆସି ଯେବେ ନୁଆରୁ ତୁନି ହୋଇ ରହ ।

ଏହାପରେ ଯୁଧିଷ୍ଠିର ଆଉ ପଛକୁ ଅନାଇଲେ ନାହିଁ । ଯୁଧିଷ୍ଠିରଙ୍କୁ ଦେଖିନପାରି ଭୀମସେନ ଅତି ବେଗରେ ତାଙ୍କ ପଛେ ପଛେ ବାମ ଅଙ୍ଗରେ ପେଲି ପେଲି ତାଙ୍କ

ନିକଟରେ ପହଞ୍ଚିଗଲା । ଯୁଧିଷ୍ଠିର ତାକୁ ଅତି ପାଖରେ ଦେଖି ବିବ୍ରତ ହେଲାପରି କହିଲେ -

ବାବୁ ତୋହର ପରା କ୍ଷତ୍ରୀ ନିସତ ହୋଇଣ
ତିରି ଅଙ୍ଗେ ପେଲି ଆସୁ ଏ ସର୍ଗ ଭୂବନ ।

ଏହା ଶୁଣି ଭୀମସେନ ଡାହାଣ ଅଙ୍ଗରେ ମହାହିମକୁ ଠେଲି ଠେଲି ଯୁଧିଷ୍ଠିରଙ୍କୁ ଗୋଡାଇବାକୁ ଆରମ୍ଭ କଲେ । ଏତେବଳେ ଯୁଧିଷ୍ଠିରଙ୍କ ବିଚାର ଆହୁରି ବେଦନା ଦାୟକ-

ଯୁଝେଷ୍ଠି ବିଚାରନ୍ତି ଏ ଦେହେ ସର୍ଗ ଗଲେ
ଆଉ କି ଦେବଗଣେ ରହିବେ ସର୍ଗେ ଭଲେ ।
ଭାରଥ ସମରେ ଯେତେ କ୍ଷତ୍ରି ରଣେ ଦିଲେ ଝାସ
ନିଷ୍ଠିନ୍ତେ ରହିଲେ ସେ ଅକ୍ଷୟେ ସ୍ୱର୍ଗବାସ ।
ତାହାଙ୍କୁ ଦେଖି ପୁଣି କରିବ ମହାତମ
ଏମନ୍ତ ଭାଳି ଯୁଝେଷ୍ଠି ସୁମରନ୍ତି ଧର୍ମ ।

ସଂସ୍କୃତ ମହାଭାରତରେ ଥିବା ଦୁର୍ଯ୍ୟୋଧନ ପ୍ରତି ଯୁଧିଷ୍ଠିରଙ୍କର ଈର୍ଷା ଭାବକୁ ସାରଳା ଦାସ ଯୁଧିଷ୍ଠିରଙ୍କଠାରୁ ଆଣି ସେଇ ଯୁଧିଷ୍ଠିର ମୁଖରେ ଭୀମସେନ ଚରିତ୍ରରେ ଆରୋପ କରିଛନ୍ତି । ଯୁଧିଷ୍ଠିର ଧର୍ମ ସ୍ମରଣ କଲାବେଳକୁ ଭୀମ ପଛେ ପଛେ ଗୋଡାଉଥିଲେ ମହାମାୟା ହେଙ୍ଗୁଳାକ୍ଷୀ । ଭୀମସେନ ଅତି ଆର୍ତ୍ତକଣ୍ଠରେ ଯୁଧିଷ୍ଠିରଙ୍କୁ ସମ୍ଭାଳି ନେବାପାଇଁ ଡାକିଲା ବେଳେ ଯୁଧିଷ୍ଠିର ଉତ୍ତର ଦେଲେ - ''ତୁନି ହୋଇ ଶୋଇଥା କଥା କିଂ କେ କହୁ'' ଭୀମସେନ ଅପ୍ରମିତ ହେମକୁ ଠେଲି ଠେଲି ଯାଉଥିବାବେଳେ ମହାମାୟା ହେଙ୍ଗୁଳାକ୍ଷୀ ତାଙ୍କୁ ଆକର୍ଷଣ କରି ମାଡି ବସିଲେ । ମହାଭାରତର ମହାପରାକ୍ରମୀ ଭାରୋଈ ମଲ୍ଲ ଭୀମଙ୍କର ଶେଷ ସମୟ ଏହିପରି ନିଦାରୁଣ ଭାବେ ସମାପ୍ତ ହୋଇଗଲା ଏବଂ ସେ ହେଲେ ଏଇ ମହାମାୟାଙ୍କର ଖାଦ୍ୟ । ଭୀମ ସମେତ ମହାମାୟା ସମସ୍ତଙ୍କୁ ବିଦାରି ଖାଇବାକୁ ଆରମ୍ଭ କଲେ । କେବଳ ଶ୍ରୀକୃଷ୍ଣଙ୍କ ବୁଦ୍ଧି ବଳରେ ଯୁଧିଷ୍ଠିର ହିଁ ବର୍ତ୍ତିଗଲେ । ସାରଳା ଦାସଙ୍କ ମତରେ ଏଇ ମହାମାୟା ଆଉ କେହି ନୁହନ୍ତି, ସେ ହେଉଛନ୍ତି ସ୍ୱୟଂ ଦ୍ରୌପଦୀ । ଏହାର ସୂଚନା ଦେଇ ସାରଳା ଦାସ କହିଛନ୍ତି -

ପୂର୍ବେ ଯୁଝେଷ୍ଠିଙ୍କି କହିଥିଲେ ଚକ୍ରଧର
ଦ୍ରୌପଦୀଙ୍କି ଯୁଝେଷ୍ଠିର ମାଗିଥିଲେ ବର ।
ସେ ଘେନି ଯୁଝେଷ୍ଠିର ମାତ୍ରକ ରହିଲେ
ଆଉ ଚାରି ପାଣ୍ଡବେ ତା'ର ଦାଣ୍ଡରେ ପଡିଲେ ।

ସାରଳା ଦାସ **ଚଣ୍ଡୀ ପୁରାଣ**ରେ ଏବଂ **ମହାଭାରତ**ରେ ନାରୀର ଯେଉଁ ତିନୋଟି ରୂପର ପରିକଳ୍ପନା କରିଛନ୍ତି, ତାହା ହେଲା - ମାତା ରୂପ, ସ୍ତ୍ରୀ ଭାବେ ମୋହିନୀ ରୂପ ଓ ଅନ୍ତକାଳରେ ହିଙ୍ଗୁଳା ବା ଅଗ୍ନି ରୂପ । ମହାଭାରତର 'ସ୍ୱର୍ଗାରୋହଣ ପର୍ବ' ଶେଷକୁ ହିଙ୍ଗୁଳାଇଙ୍କର ଚାରିଭାଇଙ୍କୁ ବିଦାରି ଖାଇବା ଚିତ୍ର ପ୍ରଦାନ କରି ସେ ସଂସାର ସମ୍ପର୍କରେ ନିଜ ଆଦର୍ଶକୁ ଅକ୍ଷୁର୍ଣ୍ଣ ରଖିଛନ୍ତି ।

ସଂସ୍କୃତରେ ଶ୍ୱାନ ଉପାଖ୍ୟାନ ଥିଲେ ବି ସାରଳା ଦାସଙ୍କ ବର୍ଣ୍ଣନାରେ ଭିନ୍ନତା ପରିଦୃଷ୍ଟ ହୁଏ । ବ୍ୟାସଙ୍କ ମହାଭାରତରେ ଏହି ଶ୍ୱାନ ହସ୍ତିନାପୁରଠାରୁ ପାଣ୍ଡବମାନଙ୍କର ସହଯାତ୍ରୀ ହୋଇଥିଲା । ଅଥଚ ସାରଳା **ମହାଭାରତ**ରେ ଭୀମର ମୃତ୍ୟୁ ପରେ ଯେତେବେଳେ ଯୁଧିଷ୍ଠିର ଏକାକୀ ହୋଇଗଲେ, ସେତେବେଳେ ତାଙ୍କ ମନରେ ବନ୍ଧୁ ସୋଦର ମରାଇବାର ଦୁଃଖ ଉଙ୍କି ମାରିବାକୁ ଆରମ୍ଭ କଲା । ସାରଳା ଦାସ ଯୁଧିଷ୍ଠିରଙ୍କ ଏହି ନିଃସଙ୍ଗ ଭାବର ବର୍ଣ୍ଣନା କରି ଲେଖିଛନ୍ତି -

ଶୁଣ ହେ ମହାରାଜା ବଦନ୍ତି ମହା ବ୍ରହ୍ମପତି
ଚାହାନ୍ତି ଯୁଝେଷ୍ଠିଦେବ ଶୂନ୍ୟ ଚଉକତି ।
ବନ୍ଧୁ ସୋଦର ମରାଇ ମୁଂ ହୋଇଲଇଂ ଏକା
ଏମାନୁଷ ଜନ୍ମରେ ନୋହିଲଇଂ ଲେଖା

ଏହି ସମୟରେ ଧର୍ମଦେବତା ଯୁଧିଷ୍ଠିରଙ୍କୁ ଏକାକୀ ଦେଖି ଶ୍ୱାନ ରୂପରେ ସେଠାରେ ଉପସ୍ଥିତ ହେଲେ । ସେହି ଶ୍ୱାନକୁ ଦେଖି ଯୁଧିଷ୍ଠିର ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଭାବିବାକୁ ଲାଗିଲେ - ଏଇ ପ୍ରବଳ ତୁଷାର ମଧ୍ୟରେ ଭୀମ ଅର୍ଜୁନଙ୍କ ପରି ମହା ମହା ବୀରମାନେ ମିଳେଇ ଯାଇଥିବା ବେଳେ ଏ ଶ୍ୱାନ କିପରି ଏଠାକୁ ଆସିପାରିଲା ? ଶ୍ୱନକୁ ଦେଖି ତାଙ୍କ ମନ ମଧ୍ୟରେ ଟିକିଏ ସାନ୍ତ୍ୱନା ଆସିଲା ସତ ତେବେ ବି ସେ ବିଜୟବଟ ତଳେ ବସି ନିଜ ଅତୀତକୁ ଚିନ୍ତା କରିବାକୁ ଆରମ୍ଭ କଲେ । ତାଙ୍କ ଚିନ୍ତାଗ୍ରସ୍ତ ମୁଖକୁ ଶ୍ୱାନ ନିରୀକ୍ଷଣ କରି ଚାହିଁଥିଲା । ସେତେବେଳେ ଯୁଧିଷ୍ଠିର ଚିନ୍ତା କରୁଥିଲେ-

ସଖା ସୋଦର ବାନ୍ଧବ ମୋହର କେହି ନାହିଂ
ଦିଗତ ନ ଦିଶଇ ଯିବି ଆଉ କାହିଂ ।

ଯୁଧିଷ୍ଠିରଙ୍କୁ ଏପରି ଚିନ୍ତା କରୁଥିବାର ଦେଖି ବ୍ରହ୍ମା ଇନ୍ଦ୍ରଙ୍କୁ ଡାକି ଯୁଧିଷ୍ଠିରଙ୍କୁ ଆଣିବା ପାଇଁ ଆଦେଶ ଦେଲେ । ଇନ୍ଦ୍ର ଦେବତାମାନଙ୍କ ସହିତ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ଯୁଧିଷ୍ଠିର ଇନ୍ଦ୍ରଙ୍କୁ ଦେଖି ବନ୍ଦନା କଲେ । ଏହି ବନ୍ଦନା ପରେ ଯୁଧିଷ୍ଠିରଙ୍କୁ ସ୍ୱର୍ଗପୁର ଯିବା ପାଇଁ ଅନୁରୋଧ କଲାବେଳେ ଯୁଧିଷ୍ଠିର ଶୁକ୍ଳାମ୍ବର କୁକୁରକୁ କୋଳରେ ଧରି ପୁଷ୍ପକ ବିମାନରେ ଆରୋହଣ କରିବାକୁ ଇଚ୍ଛା କଲେ । ସେତେବେଳ

ଇନ୍ଦ୍ର ଶ୍ୱାନକୁ ସ୍ପର୍ଶକଲେ କିପରି ମଣିଷ ଅପବିତ୍ର ହୋଇଯାଏ ତାହାର ବିବରଣୀ ଦେଇ ଥିଲେ । ସେ ସମୟରେ କୁକୁରକୁ ସ୍ପର୍ଶ କରିବା କିପରି ଅମଙ୍ଗଳ ସୂଚକ ଥିଲା ତାହାର ସୂଚନା ଦେଇ ସାରଳା ଦାସ କହିଛନ୍ତି -

ଯେତେ ବସ୍ତ୍ର ଛୁଇଂ ତେତେ ବସ୍ତେ ସ୍ନାହାନ କରି
ଏହାକୁ କେମନ୍ତ ତୁ ଛୁଇଂଲୁ ଦଣ୍ଡଧାରୀ ।
ଯାତ୍ରା ଯୋଗେ ଅଯାତ୍ରା ହୁଅଇ
ପାଦ ରଜ ପଡ଼ିଲେ ଅଧେ ଆୟୁଷ ତୁଟଇ

ଇନ୍ଦ୍ର ଏହିପରି ଭାବେ ଶ୍ୱାନର ଭର୍ତ୍ସନା କରିବା ସଙ୍ଗେ ସଙ୍ଗେ ଦେବ ବିମାନରେ ବସିବା ପାଇଁ ସେ ଯେ ଅନୁପଯୁକ୍ତ ତାହା ଯୁଧିଷ୍ଠିରଙ୍କୁ ଶୁଣାଇ ଦେଇଥିଲେ । ଅନ୍ୟ ପକ୍ଷରେ ଯୁଧିଷ୍ଠିର ଗୋଟିକ ପରେ ଗୋଟିଏ ଭାଇ ମହା ହିମ ମଧ୍ୟରେ ଖସିପଡୁଥିବା ଦେଖି ଦୁଃଖ କରୁ ନ ଥିବା ବେଳେ ଶ୍ୱାନର ପ୍ରଶଂସା କରି ତାକୁ ମହତ୍ ଜୀବ ଭାବେ ପ୍ରତିପାଦନ କଲେ -

ଅନେକ ସୋଦର ଯେ ମୋର ସାହା
ଶେଷ କାଳକୁ କେହି ନୋହିଲେ ମୋତେ ଆହା ।
ଏ ଶ୍ୱାନ ଗୋଟି ମୋର ରକ୍ଷା କଲା ଧର୍ମ
ନିରେଖ ବେଳେ ମୋତେ ସାଖା ହେଲା ଶ୍ୱାନ ।

ତେଣୁ ଏ ଶ୍ୱାନକୁ ମୁଁ ଛାଡ଼ି ଯାଇପାରିବି ନାହିଁ । ଏ ଶ୍ୱାନକୁ ଛାଡ଼ି ଗଲେ ମୋତେ ସ୍ୱର୍ଗ ପ୍ରାପତ ମଧ ହେବ ନାହିଁ । ଏହା କହି ଶ୍ୱାନକୁ ବେନି ଭୂଜରେ କୋଳକରି ଯୁଧିଷ୍ଠିର ଦେବ ବିମାନ ଉପରକୁ ଉଠିଲେ । ସଂସ୍କୃତରେ ଶ୍ୱାନ ଉପାଖ୍ୟାନ ଥିଲେ ବି ସାରଳା ଦାସ ଯେଉଁ ଭାବେ ଶ୍ୱାନକୁ ନିଃସଙ୍ଗତାର ବନ୍ଧୁଭାବେ ବର୍ଣ୍ଣନା କରିଛନ୍ତି, ତାହା ସଂସ୍କୃତରେ ଦେଖିବାକୁ ମିଳେ ନାହିଁ । ଶେଷକୁ ଉଭୟ ମହାଭାରତରେ ଶ୍ୱାନ ଯେ ଧର୍ମଦେବତାଙ୍କ ଛଦ୍ମ ରୂପ ଥିଲା ଏହା ବର୍ଣ୍ଣିତ ହୋଇଥିଲେ ବି ସାରଳା ଦାସ ଧର୍ମଦେବତା ସ୍ଥାନରେ ନିରାକାର ପୁରୁଷର ପରିକଳ୍ପନା କରିଛନ୍ତି । ଏହା ତାଙ୍କ ନୂତନ ଦୃଷ୍ଟିକୋଣର ପରିଚୟ ପ୍ରଦନା କରେ -

ଇନ୍ଦ୍ର ବୋଇଲେ ଯାହାକୁ ସୁମରିଲେ ତୋର ମାତା
ନିରାକାର ପୁରୁଷ ସେ ଏ ଧର୍ମ ଦେବତା ।
ଶୂନ୍ୟେଣ ଶବଦ ଏ ଶୁଭଇ ଯାହାର
ଚିହ୍ନବର୍ଣ୍ଣ ନ ଦିଶଇ ପ୍ରତ୍ୟକ୍ଷେ ନିରାକାର ।
ଅଶେଷ କୋଟି ବ୍ରହ୍ମାଣ୍ଡେ ଧର୍ମ ପ୍ରଚାରର
ଯେ ସେ ଧର୍ମ ସ୍ୱରୂପ ପ୍ରତ୍ୟେକ୍ଷେ ନାରାୟଣ ।

ଶୁଦ୍ଧ ସ୍ଫଟିକ ପ୍ରାୟେ ଯାହାର ରୂପ ଗୋଟି
ଏ ସେ ଧର୍ମ ଦେବତା ଶୁଣ ହେ ଯୁଜ୍ଜେଷ୍ଟି ।

ଇନ୍ଦ୍ର ଧର୍ମଙ୍କର ଏପରି ପରିଚୟ ଦେବାପରେ ଧର୍ମ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଯୁଧିଷ୍ଠିର ଏକାକୀ ଥିବାବେଳେ ଧର୍ମକୁ ସଖା ରୂପେ ଉପସ୍ଥାପିତ କରି କବି ସାରଳା ଦାସ ସଂସାର ପଥରେ ଧର୍ମ ଯେ ଏକମାତ୍ର ସହାୟ, ଏକଥା ପ୍ରତିପାଦନ କରିଛନ୍ତି ।

ବନ୍ଧୁବାନ୍ଧବ ସଖା ସହୋଦର ଏସବୁ ପ୍ରକୃତରେ ମନୁଷ୍ୟର ସହାୟକ ନୁହନ୍ତି । ଏକମାତ୍ର ସହାୟ ହେଉଛି ଧର୍ମ । ଓଡିଆରେ ଗୋଟିଏ ପ୍ରବଚନ ଅଛି -

ଯେତେ ଖାଇଥିବୁ ପେଟକୁ
ଯେତେ ସଞ୍ଚିଥିବୁ ଖଣ୍ଡକୁ
ଯେତେ ରଖିଯିବୁ ବାଟକୁ ।

ସାରଳା ଦାସ ପାଣ୍ଡବଙ୍କ ସ୍ୱର୍ଗ ଆରୋହଣକୁ ହିମାଳୟ ଆରୋହଣରେ ପରିଣତ କରିଦେଲେ । ସଂସ୍କୃତରେ ପାଣ୍ଡବମାନେ ହିମାଳୟ ଅତିକ୍ରମ କରି ବାଲୁକା ସାଗର ଦେଖିଥିଲେ ଓ ମେରୁଗିରି ପଥରେ ସେମାନଙ୍କର ପତନ ହୋଇଥିଲା । ପାଣ୍ଡବମାନଙ୍କ ପାଇଁ ସ୍ୱର୍ଗ ଓ ମର୍ତ୍ତ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ଅର୍ଜୁନ ଏହା ପୂର୍ବରୁ ଇନ୍ଦ୍ରପୁରକୁ ଯାଇ ସେଠାରେ ଇନ୍ଦ୍ରଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇଥିଲେ । ସଚଳା ହରଣବେଳେ ଯୁଧିଷ୍ଠିର ମଧ ଇନ୍ଦ୍ରପୁରକୁ ଯାଇଥିବାର ବର୍ଣ୍ଣନା ସାରଳା ମହାଭାରତରୁ ମିଳିଥାଏ । ସ୍ୱର୍ଗପୁର ଯେଉଁ ଦେବତା, ଗନ୍ଧର୍ବ, ଅପ୍ସରା, ସୁବାସିତ ପୁଷ୍ପ ଓ ସୁରମ୍ୟ ଅଟ୍ଟାଳିକା ପାଇଁ ପ୍ରସିଦ୍ଧ, ସେ ସବୁକୁ ଦେଖିବା ସହ ସେସବୁକୁ ପାଣ୍ଡବମାନେ ଅକ୍ଳେଶରେ ଅଧିକାର କରିପାରୁଥିଲେ । ପାରିଜାତ ଓ ସୁଗନ୍ଧିକା ପୁଷ୍ପ ହରଣ ପ୍ରସଙ୍ଗରେ ସ୍ୱର୍ଗକୁ ପାଣ୍ଡବମାନେ ବାରମ୍ବାର ଯାଉଥିବା କଥାର ଉଲ୍ଲେଖ ମିଳେ । ଶିବ ଓ ଇନ୍ଦ୍ର ପରି ଦେବତା ଏବଂ ଇନ୍ଦ୍ରଙ୍କ ଗନ୍ଧର୍ବ ସେନା ଓ ଇନ୍ଦ୍ରଙ୍କ ପୁତ୍ରମାନେ ଅର୍ଜୁନଙ୍କ ହସ୍ତରେ ବାରମ୍ବାର ପରାଜିତ ହୋଇଥିଲେ । ତେଣୁ ସ୍ୱର୍ଗକୁ ଯିବା ପାଣ୍ଡବଙ୍କ ପାଇଁ କୌଣସି ନୂଆ କଥା ନଥିଲା । ଜୀବିତ ଅବସ୍ଥାରେ ସ୍ୱଦେହରେ ସ୍ୱର୍ଗକୁ ଯିବା, ଜୀବନର ଶେଷ ସମୟରେ ସ୍ୱର୍ଗକୁ ଯିବାରେ ଥିବା ପାର୍ଥକ୍ୟକୁ ସାରଳା ଦାସ ସ୍ପଷ୍ଟ କରି ପାରି ନାହାନ୍ତି ।

ସଂସ୍କୃତ ମହାଭାରତରେ ସ୍ୱର୍ଗାରୋହଣ ପର୍ବର ବୈଶିଷ୍ଟ୍ୟ ହେଲା, ପ୍ରତ୍ୟେକ ଚରିତ୍ରର ଶେଷ ପରିଣାମ ସଂପର୍କରେ ସୂଚନା ଦେବା । ମହାଭାରତର ଅଧିକାଂଶ ଚରିତ୍ର ଦେବ ଅଂଶ ଘେନି ଜନ୍ମଲାଭ କରିଥିଲେ । ଇହଲୋକରେ ସେମାନଙ୍କ କାର୍ଯ୍ୟ ସମାପ୍ତ ହେଲାପରେ ସେମାନେ ସେହି ଅଂଶରେ ବିଲୀନ ହୋଇଯାଇଥିଲେ । ନିମ୍ନରେ କେତେକ ବିଶିଷ୍ଟ ଚରିତ୍ରର ଶେଷ ପରିଣାମ ସମ୍ପର୍କରେ କୁହାଯାଇଛି :-

| | |
|---|---|
| ଅଭିମନ୍ୟୁ | ସୋମପୁତ୍ର ବର୍ଚା ରୂପରେ ସୋମରେ ପ୍ରବେଶ ( ସ୍ୱର୍ଗା ୫।୧୮-୨୦) |
| ଅର୍ଜୁନ | ଭଗବାନ ଶ୍ରୀକୃଷ୍ଣଙ୍କ ପାର୍ଷଦ ହେବା । ( ସ୍ୱର୍ଗା ୪।୪) |
| ଉଗ୍ରସେନ | ବିଶ୍ୱଦେବ (ସ୍ୱର୍ଗା ୫।୧୭-୧୮) |
| କର୍ଣ୍ଣ | ସୂର୍ଯ୍ୟଦେବ (ସ୍ୱର୍ଗା ୫। ୨୦) |
| କୁନ୍ତୀ ଓ ମାଦ୍ରୀଙ୍କ ସହ ପାଣ୍ଡୁ ମହେନ୍ଦ୍ରଭବନକୁ ଯିବା । | |
| କୃତବର୍ମା | ମରୁଦ୍‌ଗଣରେ ପ୍ରବେଶ । (ସ୍ୱର୍ଗା ୫।୧୩) |
| କୃଷ୍ଣଙ୍କ ଷୋଳ ହଜାର | ସ୍ୱର୍ଗରେ ଭଗବାନଙ୍କ ସହ ମିଳନ । |
| ରାଣୀ ଦସ୍ୟୁଙ୍କ କବଳରୁ | |
| ମୁକ୍ତ ହୋଇ ସରସ୍ୱତୀରେ | ପ୍ରବେଶ । (ସ୍ୱର୍ଗା୫।୨୫) |
| ଗାନ୍ଧାରୀ | କୁବେରଙ୍କ ଦୁର୍ଲଭ ଲୋକ ପ୍ରାପ୍ତି । (ସ୍ୱର୍ଗା ୫।୧୪) |
| ଘଟୋତ୍କଚ | ଯକ୍ଷ ଓ ଦେବତାଙ୍କ ସହ ମିଳିତ ହେବା । (ସ୍ୱର୍ଗା ୫।୩୭) |
| ଦୁଃଶାସନ | ସ୍ୱର୍ଗଲୋକ ପ୍ରାପ୍ତି । (ସ୍ୱର୍ଗା ୫।୨୧-୨୨) |
| ଦୁର୍ଯ୍ୟୋଧନ | ସ୍ୱର୍ଗରେ ସୂର୍ଯ୍ୟ ସଦୃଶ ତେଜସ୍ୱୀ ଓ ବିରୋଚିତ ଶୋଭାସମ୍ପନ୍ନ ହୋଇ ଦେବତାଙ୍କ ସହ ସ୍ଥାନ ପାଇବା (ସ୍ୱର୍ଗା ୧।୪-୫) |
| ଦ୍ରୁପଦ | ବିଶ୍ୱଦେବଙ୍କ ସହ ମିଳନ । (ସ୍ୱର୍ଗା ୫।୧୫) |
| ଦ୍ରୋଣ | ବୃହସ୍ପତିଙ୍କ ସହ ମିଶିଯିବା । |
| ଦ୍ରୌପଦୀ | ସ୍ୱର୍ଗରେ ଦିବ୍ୟକାନ୍ତି ଦ୍ୱାରା ସୂର୍ଯ୍ୟଦେବଙ୍କ ସଦୃଶ ଶୋଭା ପାଇବା, ଇନ୍ଦ୍ର ଦ୍ରୌପଦୀଙ୍କୁ ଲକ୍ଷ୍ମୀ କହିବା । (ସ୍ୱର୍ଗା ୪।୧୦-୧୪) |
| ଧୃତରାଷ୍ଟ୍ର | କୁବେରଙ୍କ ଦୁର୍ଲଭ ଲୋକ ପ୍ରାପ୍ତି (ସ୍ୱର୍ଗା ୫।୧୪) |
| ଧୃଷ୍ଟକେତୁ | ବିଶ୍ୱଦେବଙ୍କ ସହ ମିଶିଯିବା । (ସ୍ୱର୍ଗା ୫।୧୫-୧୯) |
| ଧୃଷ୍ଟଦ୍ୟୁମ୍ନ | ଅଗ୍ନି ସହ ମିଶିବା । (ସ୍ୱର୍ଗା ୫।୨୧) |
| ନକୁଳ | ଅଶ୍ୱିନୀକୁମାର (ସ୍ୱର୍ଗା ୪।୯) |

| | |
|---|---|
| ଶ୍ରୀକୃଷ୍ଣ | ନାରାୟଣ ସ୍ୱରୂପରେ ପ୍ରତିଷ୍ଠିତ ହେବା । (ସ୍ୱର୍ଗା ୫।୨୪) |
| ପ୍ରଦ୍ୟୁମ୍ନ | ସନତକୁମାରଙ୍କ ରୂପରେ ପ୍ରବିଷ୍ଟ । ( ସ୍ୱର୍ଗା ୫।୧୩) |
| ବଳଦେବ | ରସାତଳରେ ପ୍ରବେଶ (ସ୍ୱର୍ଗା ୫।୨୩) |
| ଭୀମସେନ | ମରୁଦ୍‌ଗଣଙ୍କ ମଧ୍ୟରେ ବାୟୁଦେବଙ୍କ ନିକଟରେ ବିରାଜମାନ । (ସ୍ୱର୍ଗା ୪।୭-୮) |
| ଭୀଷ୍ମ | ବସୁଙ୍କ ସ୍ୱରୂପରେ ମିଳନ (ସ୍ୱର୍ଗା ୫।୧୧-୧୨) |
| ଭୂରିଶ୍ରବା | ବିଶ୍ୱଦେବଙ୍କ ସହ ମିଳନ । (ସ୍ୱର୍ଗା ୫।୧୬) |
| ଯୁଧିଷ୍ଠିର | ଧର୍ମଙ୍କ ସ୍ୱରୂପରେ ପ୍ରବେଶ । (ସ୍ୱର୍ଗା ୫।୨୨) |
| ବସୁଦେବ | ବିଶ୍ୱଦେବଙ୍କ ସହ ମିଳନ । (ସ୍ୱର୍ଗା ୫।୧୬) |
| ବିଦୁର | ଧର୍ମଙ୍କ ସହ ମିଳନ । (ସ୍ୱର୍ଗା ୫।୨୨) |
| ବିରାଟ | ମରୁଦ୍‌ଗଣଙ୍କ ସହ ମିଳନ (ସ୍ୱର୍ଗା ୫।୧୫) |
| ଶକୁନି | ଦ୍ୱାପର ସହ ମିଳନ । (ସ୍ୱର୍ଗା ୫।୧୧) |
| ପ୍ରଦ୍ୟୁମ୍ନ | ପ୍ରଦ୍ୟୁମ୍ନ ସହ ମିଳନ । (ସ୍ୱର୍ଗା ୫।୧୩) |
| ସାତ୍ୟକି | ମରୁଦ୍‌ଗଣ ସହ ମିଳନ । (ସ୍ୱର୍ଗା ୪।୧୭-୧୮) |

ଦେବ ଅଂଶରୁ ଜନ୍ମଲାଭ କରି ମୃତ୍ୟୁ ପରେ ନିଜ ନିଜର ଦେବ ଅଂଶରେ ମିଶୁଥିବାର ବିଶ୍ୱାସ ବ୍ୟାସଦେବଙ୍କ ସଦୃଶ ସାରଳା ଦାସଙ୍କର ବି ଥିଲା, ତେବେ ସେ ସଂସ୍କୃତ ମହାଭାରତରେ ଉଲ୍ଲିଖିତ ଚରିତ୍ର ସବୁଙ୍କୁ ଗ୍ରହଣ ନକରି କେବଳ କେତେକ ବିଶିଷ୍ଟ ଚରିତ୍ର ସମ୍ପର୍କରେ ସୂଚନା ଦେଇଥିଲେ । ତାଙ୍କ ମତରେ କୁରୁ-ପାଣ୍ଡବ ସମରରେ ଯୋଗ ଦେଇଥିବା ଲକ୍ଷେ ରାଜା ମର୍ତ୍ତ୍ୟମଣ୍ଡଳ ପରି ସ୍ୱର୍ଗପୁରରେ ଶୋଭା ପାଇଥିଲେ ।

କୁରୁ ପାଣ୍ଡବ ସମର ଯେତେ କଲେ ଓହୋବଳ ସନ୍ୟ ଘେନି
ଲକ୍ଷେ ରାଜାର ଯେତେକ ପଡିଲେ ସଇନି ।
ମୃତ୍ୟୁ ମଣ୍ଡଳେ ଯେହ୍ନେ ହୋଇଲେ ଆତଯାତ
ସେହି ସ୍ୱର୍ଗେ ସ୍ୱରୂପେ ବସିଲେ ସମସ୍ତ । (ପୃ-୭୦)

ସଂସ୍କୃତରେ ଯୁଧିଷ୍ଠିର ଧର୍ମଦେବତାଙ୍କ ସ୍ୱରୂପରେ ମିଶିଯାଇଥିବାର କଳ୍ପନା ଥିଲେ ହେଁ, ସାରଳା ଦାସଙ୍କ କଳ୍ପନାରେ ଏହା ଭିନ୍ନ ରୂପ ଧାରଣ କରିଥିଲା । ଧର୍ମଦେବତା ଛଦ୍ମବେଶରେ ଶ୍ୱାନରୂପ ହୋଇ ଯୁଧିଷ୍ଠିରଙ୍କ ସହ କିଛି ସମୟ ରହିବା ପରେ ଅନ୍ତର୍ଦ୍ଧାନ ହୋଇ ନିରାକାର ରୂପ ଧାରଣ କରି ନେଲେ । ସେ ସେହି ରୂପରେ ଯୁଧିଷ୍ଠିରଙ୍କୁ

ତାଙ୍କ ଶେଷ କଥା ଶୁଣାଇ କହିଥିଲେ -

ଯେ ଭବ ସଂସାରେ ଯେ ଉତପତି ପ୍ରଳୟେ
ପୁଣି ଉତପତ୍ତି ହୋଇବ ଗଲେକ ସମୟେ । (ପୃ-୬୮)

ଏହାପରେ ଯୁଧିଷ୍ଠିର ବାସବଙ୍କ ଚଉଷଠି କୋଟି ପୁତ୍ରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବିମାନରେ ସ୍ୱର୍ଗପୁରରେ ପ୍ରବେଶ କଲେ । ସେଠାରେ ତାଙ୍କୁ ଦେଖିବାକ୍ଷଣି -

ବିହନ୍ତା ପୁରୁଷମାନେ ଆସ୍ଥାନ ଗଲେ ଛାଡି
ବସିଲେ ଧର୍ମନନ୍ଦନ ଅମର ସଭା ମାଡି ।'' (ପୃ - ୬୯)

ସେ ଧର୍ମଙ୍କ ସହ ନ ମିଶି -

ସାକ୍ଷାତେ ଧର୍ମ ରୂପେ ବିଜୟେ ଯୁଧିଷ୍ଠିର
ଚାରି ଭ୍ରାଥଂକୁ ଦେଖିଲେ ସେ ଆସ୍ଥାନ ତଳର ।

ସେହିପରି ଦୁର୍ଯ୍ୟୋଧନ ଓ ତାଙ୍କ ଏକଶତ ଭ୍ରାତାଙ୍କ ପାଇଁ ସେ ସ୍ୱର୍ଗରେ ଉପଯୁକ୍ତ ସ୍ଥାନର ବ୍ୟବସ୍ଥା କଲେ ।

ପନ୍ନଗା ନାରାୟଣ ବିଜୟେ ଆସ୍ଥାନରେ
ଶତେ ଭ୍ରାଥ ଖଟିଛନ୍ତି ଆସ୍ଥାନ ତଳରେ ।

ଏହାପରେ ସେ ସ୍ୱତନ୍ତ୍ରଭାବେ ଭୀଷ୍ମ, ଦ୍ରୋଣ, ଶଲ୍ୟ ଓ ଶକୁନିଙ୍କ କଥା କହି ସେମାନେ ନକ୍ଷତ୍ର ରୂପ ଧାରଣ କରିଥିବାର କଳ୍ପନା କଲେ । ଅନ୍ୟମାନଙ୍କ ମଧ୍ୟରୁ ସଞ୍ଜୟ, ଲକ୍ଷ୍ମଣକୁମାର, ଅଭିମନ୍ୟୁ, ପାଞ୍ଚାଳକୁମର, ଘଟୋତ୍କଚ, ଅଳମ୍ବୁଷ, ବିରାଟ, ଦ୍ରୁପଦ, ଶଙ୍ଖ, ଶ୍ୱେତ, ଉତ୍ତର, ଶିଖଣ୍ଡୀ ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ଓ ମହାଭାରତ ଯୁଦ୍ଧରେ ଭାଗ ନେଇଥିବା ଲକ୍ଷେ ରାଜା ଏବଂ ସେମାନଙ୍କ ସୈନ୍ୟମାନେ ସମସ୍ତେ ସ୍ୱର୍ଗପୁର ପାଇଥିଲେ । ଯୁଧିଷ୍ଠିର ସ୍ୱର୍ଗପୁରରେ ସମସ୍ତଙ୍କୁ ଦେଖି ପାରିଥିଲେ ହେଁ, କେବଳ ଧୃତରାଷ୍ଟ୍ରଙ୍କୁ ଦେଖି ନଥିଲେ ।

ଲକ୍ଷେକ ରାଜନ ଯେ ଦେଖିଲେ ଧର୍ମବଛେ
ଯେକାମାତ୍ର ଧୃତରାଷ୍ଟ୍ର କଇଂ ନଦେଖି ପ୍ରତ୍ୟକ୍ଷେ । (ପୃ-୭୧)

ଧୃତରାଷ୍ଟ୍ରଙ୍କ ପ୍ରତି ଏପରି ଅବିଚାରର କୌଣସି କାରଣ ସାରଳା **ମହାଭାରତ**ରେ ମିଳେ ନାହିଁ । ତେବେ ମୂଳ ମହାଭାରତରେ ଗାନ୍ଧାରୀ ଓ ଧୃତରାଷ୍ଟ୍ର ମୃତ୍ୟୁପରେ କୁବେର ମଣ୍ଡଳରେ ସ୍ଥାନ ପାଇଥିବାର ଉଲ୍ଲେଖ ମିଳିଥାଏ ।

ସାରଳା ଦାସ 'ସ୍ୱର୍ଗାରୋହଣ ପର୍ବ'ରେ ସ୍ୱର୍ଗପୁରର ଯେଉଁ ଚିତ୍ର ପ୍ରଦାନ କଲେ ତାହା ମଧ୍ୟ ସଂସ୍କୃତ ମହାଭାରତ ଠାରୁ ସ୍ୱତନ୍ତ୍ର ଥିଲା । ସଂସ୍କୃତ ମହାଭାରତର ସ୍ୱର୍ଗପୁରର ବର୍ଣ୍ଣନା ବିଭିନ୍ନ ପର୍ବରୁ ମିଳିଥାଏ । ସେ ସବୁକୁ ବିଚାରକୁ ନେଲେ ସ୍ୱର୍ଗପୁରର ଯେଉଁ ଚିତ୍ର ପାଠକ ସମ୍ମୁଖରେ ଉଦ୍‌ଭାସିତ ହୁଏ ତାହା ହେଲା - ସ୍ୱର୍ଗଲୋକରେ ଦେବତା,

ସାଧ, ମରୁଦ୍‌ଗଣ, ବସୁ, ଗନ୍ଧର୍ବ ଓ ଅପ୍‌ସରାମାନେ ବାସ କରିଥାନ୍ତି । ଏଥିରେ ଇନ୍ଦ୍ରଲୋକ ମୁଖ୍ୟ । ଏହି ରମଣୀୟ ଇନ୍ଦ୍ରପୁରୀ ଏକଶତ ଯୋଜନ ବିସ୍ତୃତ । ଏହା ଏକ ହଜାର ଦ୍ୱାରରେ ସୁଶୋଭିତ । ନନ୍ଦନବନ ଏହି ସ୍ଥାନରେ ଅବସ୍ଥିତ । ସାଧୁ ପୁରୁଷଙ୍କ ମତରେ ଏହି ଲୋକକୁ ପ୍ରବେଶ କରିବା ପାଇଁ ସାତୋଟି ମୁଖ୍ୟ ଦ୍ୱାର ବିଦ୍ୟମାନ । ସେ ସବୁ ଦ୍ୱାରର ନାମ ହେଲା - ତପ, ଦାନ, ଶମ, ଦମ, ଲଜ୍ଜା, ସରଳତା ଓ ଦୟା । ଏହି ଲେକରେ ଇନ୍ଦ୍ର ସଭା ଅବସ୍ଥିତ । ଏହାର ଲମ୍ବା ୧୫୦ ଯୋଜନ, ଚଉଡା ଏକଶତ ଯୋଜନ ଓ ଉଚ୍ଚତା ପାଞ୍ଚ ଯୋଜନ । ଏଥିରେ ଜରାବସ୍ଥା, ଶୋକ ଓ କ୍ଳାନ୍ତି ପ୍ରବେଶ କରେ ନାହିଁ । ସୁନ୍ଦର ରମଣୀୟ ଭବନ, ଦିବ୍ୟବୃକ୍ଷ, ଉତ୍ତମୋତ୍ତମ ସିଂହାସନ ଦ୍ୱାରା ଏହା ସୁଶୋଭିତ । ଏହି ପୁର ପ୍ରାପ୍ତି କରିବାକୁ ହେଲେ ବହୁ ପୁଣ୍ୟକାର୍ଯ୍ୟ କରିବାକୁ ହୋଇଥାଏ । ଯେଉଁମାନେ ଏ ସଂସାରରେ କୌଣସି ତପସ୍ୟା ବା ଯଜ୍ଞ କରି ନାହାନ୍ତି, ଯେଉଁମାନେ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିଥାନ୍ତି, ଯେଉଁମାନେ ମଦ୍ୟପ, ଗୁରୁପତ୍ନୀଗାମୀ, ମାଂସାହାରୀ ତଥା ଦୁରାତ୍ମା, ଯେଉଁମାନେ ବେଦାଧ୍ୟୟନ, ତୀର୍ଥସ୍ନାନ ଓ ଦାନ ଆଦି ସତ୍‌କର୍ମରୁ ବଞ୍ଚିତ ସେମାନଙ୍କ ପାଇଁ ସ୍ୱର୍ଗଲୋକର ପଥ ସବୁଦିନ ସକାଶେ ରୁଦ୍ଧ । ଇନ୍ଦ୍ରଲୋକରେ ଊର୍ଦ୍ଧ୍ୱରେ ସ୍ୱର୍ଗଲୋକ ବା ଊର୍ଦ୍ଧ୍ୱଗ ଉପସ୍ଥିତ । ଏହା ଉତ୍ତମ ମାର୍ଗରେ ସୁଶୋଭିତ । ଏଠିକାର ଲୋକ ବିମାନ ଦ୍ୱାରା ଚଳାଚଳ କରିଥାନ୍ତି । ଧର୍ମାତ୍ମା, ମନକୁ ବଶ କରିଥିବା ବ୍ୟକ୍ତି, ଶମ-ଦମସମ୍ପନ୍ନ, ଈର୍ଷାରହିତ, ଦାନ ଧର୍ମପରାୟଣ ତଥା ଯୁଦ୍ଧ ବିଦ୍ୟାରେ ପ୍ରବୀଣ ଶୂରବୀର ମନୁଷ୍ୟ ଏହି ସ୍ଥାନ ଲାଭ କରିଥାଏ । ଏଠାରେ ଦେବତା, ସାଧ, ବିଶ୍ୱଦେବ, ମହର୍ଷିଗଣ, ଯାମ, ଧାମ, ଗନ୍ଧର୍ବ, ତଥା ଅପ୍‌ସରାମାନେ ବାସ କରିଥାନ୍ତି । ଏମାନଙ୍କ ପାଇଁ ଅଲଗା ଅଲଗା ଲୋକର ବ୍ୟବସ୍ଥା ଅଛି । ସ୍ୱର୍ଗରେ ଥିବା ତେତିଶ ହଜାର ଯୋଜନ ଉଚ୍ଚ ସୁବର୍ଣ୍ଣମୟ ଏକ ଉଚ୍ଚ ପର୍ବତ ବିଦ୍ୟମାନ । ଏହା ମେରୁଗିରି ନାମରେ ଖ୍ୟାତ । ଏହି ସ୍ୱର୍ଗଲୋକରେ କାହାରିକୁ ଭୋକ-ଶୋଷ ହୁଏନାହିଁ, ମନରେ ଗ୍ଲାନି ଜାତ ହୁଏ ନାହିଁ, ଶୀତ ଓ ଗ୍ରୀଷ୍ମତାପ ଲାଗ ନାହିଁ ଓ ସମସ୍ତେ ନିର୍ଭୟ ଚିତ୍ତରେ ବାସକରିଥାନ୍ତି ।

ସ୍ୱର୍ଗଲୋକବାସୀଙ୍କ ଶରୀରରୁ ଏକ ଦିବ୍ୟତେଜ ସଦାସର୍ବଦା ନିର୍ଗତ ହେଉଥାଏ। ଏମାନଙ୍କ ଶରୀର ସୁଗନ୍ଧଯୁକ୍ତ । ଏମାନଙ୍କ ଶରୀରରୁ ଝାଳ ବୁହେ ନାହିଁ, ଦୁର୍ଗନ୍ଧ ବାହାରେ ନାହିଁ ତଥା ଏମାନେ ମଳମୂତ୍ରତ୍ୟାଗ କରନ୍ତି ନାହିଁ । ସାଧାରଣ ମନୁଷ୍ୟ ପରି ଏମାନେ ମାତାପିତାଙ୍କ ରଜବୀର୍ଯ୍ୟ ସଂଯୋଗରୁ ଜନ୍ମଲାଭ କରି ନ ଥାନ୍ତି । ପୁଣ୍ୟକର୍ମ ବଳରେ ହିଁ ଏମାନଙ୍କ ଶରୀର ନିର୍ମିତ ହୋଇଥାଏ । ଯୁଧିଷ୍ଠିର ଏହି ପରି ଏକ ସ୍ୱର୍ଗଲୋକ ଦର୍ଶନରେ ସନ୍ତୋଷ ଲାଭ କରିଥିଲେ ।

ସଂସ୍କୃତ ମହାଭାରତ ପରି ସାରଳା **ମହାଭାରତରେ** ବହୁ ପର୍ବରେ ସ୍ୱର୍ଗଲୋକର ବର୍ଣ୍ଣନା ଦେଖିବାକୁ ମିଳିଥାଏ । 'ସ୍ୱର୍ଗାରୋହଣ ପର୍ବ'ରେ ଯୁଧିଷ୍ଠିରଙ୍କ ସ୍ୱର୍ଗଲୋକ

ଦର୍ଶନକୁ ସାରଳା ଦାସ ନିମ୍ନମତେ ବର୍ଣ୍ଣନା କରିଛନ୍ତି -

ପୂର୍ବେ ସେ ହିମଗିରି ଲକ୍ଷେକ ଯୋଜନ
ସେ ପର୍ବତ ଉପରେ ବସେ ଭାସ୍କର ରାଜନ
ତହିଁରୁ ସେ ଉଦୟ ହୁଅଇ ଦିନକର
ତିମିର ତୁଟଇ ସେ ଜଗତ ସଂସାର ।
ଅନନ୍ତ ଗିରି ପର୍ବତ ବସଇ ଦକ୍ଷିଣେ
ସେ ପର୍ବତ ବସି ଯେ ଯେହି ପରିମାଣେ ।
ତହିଁ ବସନ୍ତି ଯେ ଅନନ୍ତ ନାରାୟଣ
ପଶ୍ଚିମେ କନ୍ଦର ଗିରି ଯେହି ପରିମାଣ ।
ସେ ପର୍ବତ ଉପରେ ଯେ ବସଇ ସୁରପତି
ଉପରେ କପିଳାସ ଯେମନ୍ତ ଆକୃତି ।
ସେ କପିଳାସ ପର୍ବତେ ଅଛନ୍ତି ସଦାଶିବ
ଯେ ଚାରି ପର୍ବତ ମଧ୍ୟେ ଆକାଶଟି ଧ୍ରୁବ ।
ଯେ ଚାରି ପର୍ବତ ମଧ୍ୟେ ନବଦ୍ୱୀପ ସପତ ସାଗର ସ୍ଥିତି
ଯେ ଚାରି ପର୍ବତ ଚାରିଦିଗ ଆବୋରି ଅଛନ୍ତି । (ପୃ ୬୧-୬୨)

ବର୍ଣ୍ଣନାରେ ପାର୍ଥକ୍ୟ ଥିଲେ ବି, ସ୍ୱର୍ଗଲୋକର କଳ୍ପନାରେ ପ୍ରାୟ ସାମ୍ୟ ଦେଖିବାକୁ ମିଳିଥାଏ । ଯାଗ, ଯଜ୍ଞ, ହୋମ ତଥା ମଙ୍ଗଳ କାର୍ଯ୍ୟ ଦ୍ୱାରା ମନୁଷ୍ୟ ସ୍ୱର୍ଗପ୍ରାପ୍ତି ହୁଏ । ବ୍ୟାସଙ୍କ ସହ ସାରଳା ଦାସ ଏଥିରେ ଏକମତ ।

**ଚରିତ୍ର ଚିତ୍ରଣ :** ସଂସ୍କୃତ ମହାଭାରତର ମହାପ୍ରସ୍ଥାନ ଓ ସ୍ୱର୍ଗାରୋହଣ ପର୍ବରେ କୌଣସି ନୂତନ ଚରିତ୍ର ଦେଖିବାକୁ ମିଳେ ନାହିଁ । ପରକ୍ଷିତଙ୍କୁ ରାଜ୍ୟଭାର ଦେଇ ଅଳଙ୍କାର ଓ ଆଭୂଷଣକୁ ପରିତ୍ୟାଗ କରି ଥରେ ଘର ଛାଡିଦେବା ପରେ ନିର୍ଜନତା ଓ ନିଃସଙ୍ଗତା ହିଁ ହୋଇଛି ପାଣ୍ଡବମାନଙ୍କ ସାଥୀ । ସେମାନେ ଆଉ ନୂଆ ଜଞ୍ଜାଳକୁ ନିମନ୍ତ୍ରଣ କରି ନାହାନ୍ତି । ଅନ୍ୟ ପକ୍ଷରେ ରାଜ୍ୟରୁ ଏକା ସାଙ୍ଗରେ ବାହାରିଥିବା ଛଅଜଣଙ୍କ ମଧ୍ୟରୁ ବାଟ ମଝିରେ ଜଣକ ପରେ ଜଣେ ମୃତ୍ୟୁ ବରଣ କରିଛନ୍ତି । ଜୀବନ ସାରା ସାଙ୍ଗ ହୋଇ ରହିଥିବା ସୋଦର ଓ ସ୍ତ୍ରୀଙ୍କର ଏହି ବିୟୋଗ ଯୁଧିଷ୍ଠିରଙ୍କ ମନରେ କୌଣସି ଭାବାନ୍ତର ସୃଷ୍ଟି କରିପାରିନାହିଁ । ଯୁଧିଷ୍ଠିର ସ୍ୱଦେହ ଧରି ସ୍ୱର୍ଗକୁ ଯିବାର ଆଦର୍ଶକୁ ଆଖି ଆଗରେ ରଖି ଆଗେଇ ଯାଇଛନ୍ତି ସେହି ଅନନ୍ତ ଓ ସୀମାହୀନ ପଥରେ । କାହାରି ପ୍ରତି ଭ୍ରୂକ୍ଷେପ ନାହିଁ, କୌଣସି ଅନୁଶୋଚନା ବି ନାହିଁ । ଅଥଚ ସାରଳା ମହାଭାରତରେ ସେମାନେ ରାଜ୍ୟ ଛାଡ଼ିଦେବାପରେ ବି ସେମାନଙ୍କ କାର୍ଯ୍ୟ ସରିନାହିଁ । ସେହି ପୁରୁଣା ବିଚାର

ସବୁରେ ବାନ୍ଧିହୋଇ ଯୁଧିଷ୍ଠିର ହରିସାହୁ କନ୍ୟା ପଞ୍ଚଦଶ ବର୍ଷୀୟା ସୁହାଣୀକୁ ବିବାହ କରିଛନ୍ତି । ବନପର୍ବ ପରି ପୁଣି ଥରେ ଲୋମଶ ଋଷିଙ୍କୁ ସାଙ୍ଗ କରି ଓଡିଶା ତଥା ଭାରତବର୍ଷର ବହୁ ତୀର୍ଥସ୍ଥାନ ଦର୍ଶନ କରିଛନ୍ତି । ପ୍ରାଚୀ ତୀର୍ଥକୁ ଅସୁର ଉପଦ୍ରବରୁ ମୁକ୍ତ କରିବାକୁ ଯାଇ ଆରଡ଼େକ ଦୈତ୍ୟକୁ ବଧ କରିଛନ୍ତି । ପ୍ରାଚୀ କୂଳରେ ମାଧବ ପ୍ରତିଷ୍ଠା କରି କୀର୍ତ୍ତି ସ୍ଥାପନରେ ମନ ବଳାଇଛନ୍ତି, ଅର୍ଥାତ୍ ହିମାଳୟ ଆରୋହଣ କରିବା ପର୍ଯ୍ୟନ୍ତ କର୍ମଜଞ୍ଜାଳରୁ ସେ ମୁକ୍ତ ହୋଇ ପାରିନାହାନ୍ତି । ମହାପ୍ରସ୍ଥାନ ପରେ ଓଡିଶାକୁ ଆଣି ସାରଳା ଦାସ ଯୁଧିଷ୍ଠିରଙ୍କୁ ଓଡ଼ିଶାର ବୈଶ୍ୟ ଜାତିରେ ବିବାହ କରାଇ, ଯୁଧିଷ୍ଠିରଙ୍କ ପୁଣ୍ୟ ସ୍ପର୍ଶରେ ଓଡ଼ିଶାର ତୀର୍ଥରାଜିକୁ ଗୌରବ ମଣ୍ଡିତ କରାଇ ନିଜ ଦେଶପ୍ରେମର ମହାନ୍ ଆଦର୍ଶ ପ୍ରଦର୍ଶନ କରିଥିଲେ ବି, ଯୁଧିଷ୍ଠିରଙ୍କ ଚରିତ୍ର ଦୃଷ୍ଟିରୁ ଏସବୁ ସେତେ ସ୍ପୃହଣୀୟ ମନେହୁଏ ନାହିଁ । ତେବେ ହିମାଳୟ ପଥରେ ସ୍ୱର୍ଗ ଆରୋହଣ ପର୍ବ ଆରମ୍ଭ ହୋଇଯିବା ପରେ ଯୁଧିଷ୍ଠିରଙ୍କ ଚରିତ୍ର ସହ ଏକ ସ୍ପଷ୍ଟ ଚିତ୍ର ପାଠକ ସମ୍ମୁଖରେ ପ୍ରତିଭାତ ହୁଏ । ସାରଳା ଦାସ ଏହିସବୁ ଚରିତ୍ର ଚିତ୍ରଣ କଲାବେଳେ ମଣିଷ ଜୀବନର ଦୁଇଟି ଦିଗ ପ୍ରତି ବିଶେଷ ଭାବେ ଆକୃଷ୍ଟ ହୋଇଛନ୍ତି। ଭୀମ ମୁଖରେ ଚରିତ୍ର ସବୁର ଗୁଣ ଓ ରୂପବର୍ଣ୍ଣନା ଏବଂ ଯୁଧିଷ୍ଠିରଙ୍କ ମୁଖରେ ସେମାନଙ୍କ ଦୋଷ ପ୍ରଦର୍ଶନ କରାଇ କବି ସାରଳା ଦାସ ଚରିତ୍ର ଚିତ୍ରଣର ଏକ ନୂତନ ପନ୍ଥା ଆବିଷ୍କାର କରିଛନ୍ତି ସ୍ୱର୍ଗାରୋହଣ ପର୍ବରେ । ନିମ୍ନରେ ଏହି ଛଅଟି ଚରିତ୍ରକୁ ସାରଳା ଦାସଙ୍କ ଦୃଷ୍ଟିରୁ ବିଚାର କରାଯାଇଛି ।

**ଯୁଧିଷ୍ଠିର :** ମହାଭାରତର ଚରିତ୍ର ସବୁକୁ ସ୍ପଷ୍ଟତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ ଏକ ପକ୍ଷରେ ପାଣ୍ଡବ ଓ ଅପର ପକ୍ଷରେ କୌରବ । ପାଣ୍ଡବମାନେ ଧର୍ମ ରକ୍ଷା କରିବା ପାଇଁ ସତତ ଚେଷ୍ଟା କରୁଥିବାବେଳେ କୌରବମାନେ ଅଧର୍ମ କାର୍ଯ୍ୟ କରିବାକୁ ପ୍ରୋତ୍ସାହନ ଦେଉଥିଲେ । ପାଣ୍ଡବ ପକ୍ଷର ପ୍ରତିନିଧିତ୍ୱ କରୁଥିଲେ ଯୁଧିଷ୍ଠିର ଓ କୌରବମାନଙ୍କର ନେତୃତ୍ୱ ନେଇଥିଲେ ଦୁର୍ଯ୍ୟୋଧନ । ଏହି ଦୁଇ ପ୍ରକାର ଚରିତ୍ର ଚିତ୍ରଣ କଲାବେଳେ ସାରଳା ଦାସଙ୍କ ମନ ମଧ୍ୟରେ ଗୋଟିଏ ଓଡ଼ିଆ ପ୍ରବଚନର ପ୍ରଭାବ ଥିବା ଅନୁମାନ କରାଯାଇ ପାରେ-ତୁଳସୀ ଦୁଇ ପତ୍ରରୁ ବାସେ, ବିଛୁଆତି ଦୁଇ ପତ୍ରରୁ କୁଣ୍ଡାଇ ହୁଏ । ସୁସନ୍ତାନ ଜାତ ହେବା ଲକ୍ଷଣ ସବୁ ତାର ଜନ୍ମ କାଳରୁ ଜଣାଯାଏ । ଏଥିରେ ସାହାଯ୍ୟ କରେ-ଜ୍ୟୋତିଷ ଶାସ୍ତ୍ର । ଉଭୟ ମହାଭାରତରେ ଜନ୍ମକାଳର ମୁହୂର୍ତ୍ତ, ଗ୍ରହ ନକ୍ଷତ୍ର ସ୍ଥିତି ପ୍ରଭୃତି ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ସାରଳା ଦାସଙ୍କ ମହାଭାରତରେ ଯୁଧିଷ୍ଠିରଙ୍କ ଜନ୍ମପରେ ନିଜେ ବୃହସ୍ପତି ବ୍ରାହ୍ମଣ ବେଶରେ ହାତରେ ସପତାଙ୍ଗ ପୋଥି ଧରି ଶତଶୃଙ୍ଗ ପର୍ବତରେ ଉପସ୍ଥିତ ହେଲେ ଏବଂ କହିଲେ, 'ମାହେନ୍ଦ୍ର ଯୋଗ ଘେନିଣ ସେ ଉପୁଜି ନନ୍ଦନ' । ସଂସ୍କୃତରେ ମଧ୍ୟ ଯୁଧିଷ୍ଠିରଙ୍କ ଜନ୍ମକାଳରେ ଯେଉଁ ଆକାଶବାଣୀ ହେଲା ସେଥିରେ କୁହାଯାଇଥିଲା ଯେ ଏହି ବାଳକ ସଂସାରରେ ଶ୍ରେଷ୍ଠ ପୁରୁଷ, ଧର୍ମାତ୍ମାମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ, ପରାକ୍ରମୀ ଏବଂ ସତ୍ୟବାଦୀ ହେବେ ।

ସେ ଯଶସ୍ୱୀ, ତେଜସ୍ୱୀ ଓ ସଦାଚାରୀ ମଧ ହେବେ ।

ଧର୍ମଦେବତାଙ୍କଠାରୁ ଜାତ ଧର୍ମରାଜ ଯୁଧିଷ୍ଠିର ଭବିଷ୍ୟତରେ ଯେ ଜଣେ ଧର୍ମପରାୟଣ ରାଜା ହେବେ ତାହା ତାଙ୍କ ବାଲ୍ୟକାଳରୁ ହିଁ ଜଣାଯାଇ ଥିଲା ।

କିନ୍ତୁ ବାଲ୍ୟକାଳର ପ୍ରକୃତି ସଂଘର୍ଷମୟ ଜୀବନକାଳରେ ପରିବର୍ତ୍ତିତ ହେବା ସ୍ୱାଭାବିକ । ଏହା ହେଉଛି ମଣିଷର ସ୍ୱାଭାବିକ ଧର୍ମ । ଯୁଧିଷ୍ଠିରଙ୍କ ସଂଘର୍ଷମୟ ଜୀବନ ମଧ୍ୟରେ ଏପରି ବହୁ ଘଟଣା ଘଟିଥିଲା ଯାହାଦ୍ୱାରା ସେ ପଥଚ୍ୟୁତ ହେବାର ବହୁ ସମ୍ଭାବନା ଥିଲେ ବି ସେ ନିଜକୁ ସଂଯତ କରି ପାରୁଥିଲେ । ଦୁର୍ଯ୍ୟୋଧନ ଦ୍ୱାରା ବାରମ୍ବାର ଅପମାନିତ ହୋଇ ସେ ସମୟ ସମୟରେ କ୍ରୋଧ ପରବଶ ହୋଇଯାଇଥିଲେ ହେଁ ନିଜକୁ ସଂଯତ କରିବାରେ ତାଙ୍କୁ ସମୟ ଲାଗୁନଥିଲା । ଶପଥ ପାଳନ ପାଇଁ ଅଜ୍ଞାତବାସ କାଳରେ ବିରାଟ ରାଜ୍ୟରେ ଛଦ୍ମ ରୂପ ଧାରଣ କରି ରହିଥିଲେ ହେଁ ସତ୍ୟପଥରୁ ବିଚଳିତ ନ ହୋଇ ସେ ବିରାଟଙ୍କ ଅଧସ୍ତନ ଭାବେ କାର୍ଯ୍ୟ ତୁଲାଇଥିଲେ । ଶ୍ରୀକୃଷ୍ଣଙ୍କୁ ସମ୍ମାନ ଦେଇ ଦ୍ରୋଣଙ୍କୁ ବଧ କରିବାର ଉପାୟ ନ ଦେଖି ଶେଷକୁ 'ଅଶ୍ୱତ୍ଥାମା ହତ' ସଦୃଶ କଥାଟିଏ କହିବାକୁ ବାଧ ହୋଇଥିଲେ । ସଂସାରରେ ମଣିଷ ଭାବେ ବଞ୍ଚିବାକୁ ହେଲେ ଏପରି ବହୁ କାର୍ଯ୍ୟ କରିବାକୁ ପଡିଥିଲେ ହେଁ ସାରଳା ଦାସ ଯୁଧିଷ୍ଠିରଙ୍କୁ 'ଧର୍ମ ଅବତାର' କରିବା ପାଇଁ ସବୁବେଳେ ସତର୍କ ଦୃଷ୍ଟି ରଖିଥିଲେ । ସେଥିପାଇଁ ସାରଳା ଦାସ ଯୁଧିଷ୍ଠିରଙ୍କ ଜୀବନରେ ଦୁଇଟି ମୁଖ୍ୟ ଗୁଣର ଆରୋପ କରିଥିଲେ । ପ୍ରଥମଟି ହେଲା ଲୋଭ ବା କାମନା ପରିତ୍ୟାଗ । ଦ୍ୱିତୀୟଟି ହେଲା ତ୍ୟାଗ । ପ୍ରଥମ ଗୁଣ ପରିଚୟ ମିଳେ ଦ୍ରୌପଦୀଙ୍କ ସ୍ୱୟମ୍ବର କାଳର, ଯେତେବେଳେ ବ୍ୟାସ ଯାଇ ପାଣ୍ଡବ ମାନଙ୍କୁ ଦ୍ରୌପଦୀଙ୍କ ସ୍ୱୟମ୍ବର କଥା କହିଲେ, ସେତେବେଳେ ସେ ସ୍ପଷ୍ଟଭାବେ ଗୋଟିଏ କଥା କହିଥିଲେ, ଦ୍ରୌପଦୀ ହେଉଛି ଅର୍ଜୁନଙ୍କ ପାଇଁ ଅର୍ଥାତ୍ ଅର୍ଜୁନ ହେଉଛି ଏକମାତ୍ର ବ୍ୟକ୍ତି ଯେ ଲକ୍ଷ ବାନ୍ଧି ଦ୍ରୌପଦୀଙ୍କି ପାଇପାରିବ । ଯୁଧିଷ୍ଠିର ଏକଥା ଶୁଣିବାପରେ ବିଶେଷ ଆଗ୍ରହ ପ୍ରକାଶ କଲେ ନାହିଁ । କେବଳ କନ୍ୟାଟିଏ ପାଇଁ ସେ ସଂଘର୍ଷ ଭିତରେ ପଶିବାକୁ ପସନ୍ଦ କରୁ ନ ଥିଲେ । ତେଣୁ ଯେତେବେଳେ ସେମାନେ ପାଞ୍ଚାଳ ଅଭିମୁଖେ ଯାତ୍ରା କଲେ, ସେତେବେଳେ ସମସ୍ତଙ୍କ ଆଗରେ ଦୌଡିବାକୁ ଆରମ୍ଭ କଲା ଭୀମସେନ । ସମସ୍ତଙ୍କ ପଛରେ ରହିଲେ କୁନ୍ତୀ ଓ ଯୁଧିଷ୍ଠିର । ଯୁଧିଷ୍ଠିର କାଦୁଅରେ ପଶି ଗୋଡ ଧୋଇବାକୁ ଚାହୁଁ ନ ଥିବା ବେଳେ ଭୀମସେନ ଚଞ୍ଚଳ ପହଞ୍ଚିବା ପାଇଁ ସମସ୍ତଙ୍କୁ କାନ୍ଧରେ, ବାହାରେ ଧରି ଦ୍ରୁତଗତିରେ ଯିବାକୁ ଆରମ୍ଭ କରିଥିଲା । ସେହିପରି ଦୁର୍ଯ୍ୟୋଧନର ସମସ୍ତ କୁଚକ୍ରାନ୍ତ ଜାଣିସାରିବା ପରେ ବି ସେ ଯୁଦ୍ଧ ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ଯଦି କୁନ୍ତୀ, ଦ୍ରୌପଦୀ ଓ ଶ୍ରୀକୃଷ୍ଣ ନଥାନ୍ତେ ତାହାହେଲେ ହୁଏତ ଯୁଧିଷ୍ଠିର ଭାଇ ମାନଙ୍କୁ ଧରି ଅବଶିଷ୍ଟ ଜୀବନ ବନରେ କଟାଇ ଦେଇଥାନ୍ତେ । ତାଙ୍କର ରାଜସଂପଦ ପ୍ରତି ଲୋଭ

ବା ଆସକ୍ତି ନଥିଲେ ହେଁ ଦ୍ରୌପଦୀଙ୍କୁ ପାଇବାର ଲୋଭ ସେ ସମ୍ବରଣ କରିପାରି ନଥିଲେ । ଲାକ୍ଷ ବିନ୍ଧିବାପରେ ଦ୍ରୌପଦୀ ଯେ ଅର୍ଜୁନଙ୍କର ପ୍ରାପ୍ୟ ଏକଥା ସେ ସ୍ୱୀକାର ନକରି ମନେ ମନେ ନିଜେ ଦ୍ରୌପଦୀଙ୍କୁ ପାଇବାର କଳ୍ପନା କରୁଥିଲେ । ତାଙ୍କ ପକ୍ଷରେ ଏହା କହିଦେବା ସମ୍ଭବ ନଥିଲା । ତେଣୁ ଦ୍ରୌପଦୀଙ୍କୁ ପାଞ୍ଚଭାଇ ବିବାହ କରିବା କୌଶଳ କରି ସେ ଦୌପଦୀଙ୍କୁ ସ୍ତ୍ରୀ ରୂପେ ପାଇଥିଲେ ।

ସଂସ୍କୃତ ମହାଭାରତରେ ମହାଭାରତ ଯୁଦ୍ଧ ହେବାପରେ ସେ ବହୁଥର ଯୁଦ୍ଧ କ୍ଷେତ୍ରରେ ପ୍ରବେଶ କରି କେତେବେଳେ ପରାଜିତ ହୋଇଛନ୍ତି ବା କେତେବେଳେ ବିଜୟୀ ହୋଇଛନ୍ତି । ସଂସ୍କୃତ ମହାଭାରତରୁ ଜଣାଯାଏ ଯେ ସେ ରାଜର୍ଷି ଶୁକଙ୍କଠାରୁ ତୋମର ଚଳାଇବା ବିଦ୍ୟା ଶିକ୍ଷା କରି ସେଥିରେ ପାରଙ୍ଗମ ହୋଇଥିଲେ । ସେହିପରି ରଥ ଉପରେ ବସି ଯୁଦ୍ଧ କରିବାର କୌଶଳ ତାଙ୍କୁ ଭଲଭାବେ ଜଣାଥିଲା । ସାରଳା ଦାସ ଏସବୁ ଉପରେ ଏତେ ଗୁରୁତ୍ୱ ନ ଦେଇ ଯୁଦ୍ଧକ୍ଷେତ୍ରରେ ଯୁଧିଷ୍ଠିରଙ୍କର ପରାଜିତ ତଥା ଅପମାନିତ ହେବାର ଦୃଶ୍ୟଟିକୁ ବିଶେଷ ଭାବେ ଚିତ୍ରଣ କରିଛନ୍ତି । ସାରଳା ମହାଭାରତ ପଢିଲେ ସେ ଯେ ଜଣେ ସୁଚତୁର ଯୋଦ୍ଧା ଥିଲେ ଏହା ଆଦୌ ଜାଣିହୁଏ ନାହିଁ । ଅନ୍ୟ ପକ୍ଷରେ ତାଙ୍କ ଚାରିଭାଇଙ୍କ ବୀରତ୍ୱ ଉପରେ ସେ ଭରସା ରଖିଥିଲେ । ଯୁଧିଷ୍ଠିରଙ୍କ ସଫଳତା ସହଦେବଙ୍କ ବିଚକ୍ଷଣତା ଓ ଭବିଷ୍ୟତ ଜାଣିବାର କଳା, ଅର୍ଜୁନଙ୍କର ଧନୁର୍ବିଦ୍ୟା, ଭୀମଙ୍କ ପରାକ୍ରମ ଓ ଗଦାଯୁଦ୍ଧରେ ପାରଙ୍ଗମତା ଉପରେ ନିର୍ଭର କରୁଥିଲା । ସେ ଯେ ସମସ୍ତଙ୍କଠାରୁ ଦୁର୍ବଳ ଥିଲେ ଏହା ତାଙ୍କ 'ସ୍ୱର୍ଗାରୋହଣ ପର୍ବ'ରେ ପ୍ରଦାନ କରିଥିବା ବିଭିନ୍ନ ମନ୍ତବ୍ୟରୁ ଜାଣିହୁଏ । ଦ୍ରୌପଦୀଙ୍କ ଦୋଷ ଦେଖାଇ ସେ କହିଥିଲେ ସେ ସମସ୍ତଙ୍କ ଅପେକ୍ଷା ଅର୍ଜୁନଙ୍କୁ ବେଶି ଭଲପାଏ । ସହଦେବଙ୍କ ଦୋଷ ହେଲା, ସେ ସବୁ ଜାଣି ନ ପଚାରିଲେ କିଛି କୁହେ ନାହିଁ । ନକୁଳ ନିଜ ରୂପ ଚର୍ଚ୍ଚାରେ ସବୁବେଳେ ବ୍ୟସ୍ତ ଥାଏ । ଅର୍ଜୁନ ନିଜର ଶକ୍ତି ନିଜେ କହିବୁଲେ । ଭୀମ ମଧ୍ୟ ଯୋଦ୍ଧାଭାବେ ଆଉ କାହାକୁ ଗଣେ ନାହିଁ । ଏହି ଉକ୍ତିରୁ ଯୁଧିଷ୍ଠିରଙ୍କ ଅବଚେତନ ମନ ମଧ୍ୟରେ ସେ ବଡଭାଇ ବୋଲି ଦ୍ରୌପଦୀ ତାଙ୍କୁ ବେଶି ଭଲପାଇବା ଉଚିତ ଥିଲା, ସେ ନକୁଳଠାରୁ ଆହୁରି ବେଶି ସୁନ୍ଦର ହୋଇଥିଲେ ଭଲ ହୋଇଥାନ୍ତା, ସହଦେବଙ୍କ ପରି ଭବିଷ୍ୟ ଜାଣିଥିବାର ଶକ୍ତି ଥିଲେ ସେ ଆହୁରି ଆଦୃତ ହୋଇଥାନ୍ତେ । ସେମାନେ ସେମାନଙ୍କ ଗୁଣପାଇଁ ପ୍ରଶଂସିତ ହେଉଥିବାବେଳେ ଯୁଧିଷ୍ଠିର ନିରବରେ ଏସବୁକୁ ଦେଖିବା ପାଇଁ ବାଧ୍ୟ ହେଉଥିଲେ ।

ସାରଳା ଦାସ ଯୁଧିଷ୍ଠିର ଚରିତ୍ରକୁ ଧର୍ମରାଜ ରୂପେ ଚିତ୍ରଣ କଲାବେଳେ, ଧର୍ମ ଯେ କେବଳ ଦୁର୍ବଳର ସହାୟକ ଏହାହିଁ କହିଥିଲେ । ଯୁଧିଷ୍ଠିର ଜଣକ ପରେ ଜଣେ ଭାଇ ଓ ସ୍ତ୍ରୀଙ୍କୁ ହରାଇବାପରେ ଯେତେବେଳେ ଭୀମଙ୍କ ପାଳି ପଡିଲା, ସେତେବେଳେ

ସେ ଏକଥା ଆଗରୁ ଜାଣିବା ପରି କଥା କହିବାକୁ ଆରମ୍ଭ କରିଥିଲେ । ଭୀମ ସ୍ୱଦେହରେ ସ୍ୱର୍ଗକୁ ଯିବା ପାଇଁ ବରଫ ମଧ୍ୟରେ ଛଟପଟ ହେଉଥିବାବେଳେ ଯୁଧିଷ୍ଠିର ତାଙ୍କୁ ନିରବ ରହିବା ପାଇଁ କହିଥିଲେ । ସଂସ୍କୃତ ମହାଭାରତରେ ମଧ୍ୟ ଯୁଧିଷ୍ଠିରଙ୍କର ଭୀମସେନଙ୍କୁ ସବୁକଥାରେ ଚୁପ୍ ରହିବାକୁ କହିବା ଥିଲା । ଶ୍ରେଷ୍ଠ ଉପଦେଶ । (ଆଦି ୧୨୮-୩୦-୩୫) ସଂସ୍କୃତ ମହାଭାରତ ଅନୁଯାୟୀ ସ୍ୱର୍ଗ ପ୍ରବେଶ କଲାପରେ ଯୁଧିଷ୍ଠିର ସ୍ୱଦେହ ତ୍ୟାଗ କରିବା ପାଇଁ ମନ୍ଦାକିନୀରେ ସ୍ନାନ କରିବାକୁ ହୋଇଥିଲା ଏବଂ ଶେଷରେ ସେ ଧର୍ମଙ୍କ ଶରୀରରେ ପ୍ରବେଶ କରିଯାଇଥିଲେ । ସାରଳା ଦାସ ଏସବୁ କଥାକୁ ଗୁରୁତ୍ୱ ନଦେଇ ଯୁଧିଷ୍ଠିରଙ୍କୁ ମର୍ତ୍ତ୍ୟ ତଥା ସ୍ୱର୍ଗରେ ଧର୍ମରାଜ ଭାବେ ପ୍ରତିଷ୍ଠିତ କରିଛନ୍ତି ।

ଯୁଧିଷ୍ଠିର ଯେ କେବଳ ଧର୍ମବଳରେ ସ୍ୱଦେହରେ ସ୍ୱର୍ଗକୁ ଯାଇଥିଲେ ତାହା ନୁହେଁ, ଏହାର ଆଉ ଏକ ରହସ୍ୟ ଥିଲା । ସେ ରହସ୍ୟଟି ହେଲା ଦ୍ରୌପଦୀଙ୍କ ବର ।

ସାରଳା ଦାସ ଏଠାରେ ଦ୍ରୋପତୀଂକି ଯୁଝେଷ୍ଠିର ମାଗିଥିଲେ ବର କଥା କହିଥିଲେ ହେଁ, ଏହା ଥିଲା ଦ୍ରୌପଦୀଙ୍କର ଭୀମସେନକୁ ଦେଇଥିବା ପ୍ରତିଶ୍ରୁତି । କର୍ଣ୍ଣ ପର୍ବରେ ଯେତେବେଳେ ଭୀମସେନ ଦୁଃଶାସନ ବଧ କଲେ ଏବଂ ଦ୍ରୌପଦୀ ତା'ର ରକ୍ତପାନ କରି ତୃପ୍ତ ହେଲେ, ସେତେବେଳେ ଅତି ଆନନ୍ଦରେ ଦ୍ରୌପଦୀ ଭୀମସେନଙ୍କୁ ଅନ୍ତଃପୁରକୁ ଡାକିଥିଲେ । ଏକଥା ଦେଖି ଶ୍ରୀକୃଷ୍ଣ ଭୀମସେନଙ୍କୁ କହିଲେ, ଦ୍ରୌପଦୀ ରତିସୁଖରେ ତୃପ୍ତ ହେବା ପରେ ଯେତେବେଳେ ବର ଦେବାକୁ ଇଚ୍ଛା କରିବେ, ସେତେବେଳେ ତାଙ୍କ ଦାଉରେ ପାଣ୍ଡବ ପାଞ୍ଚଭାଇ ଓ ଶ୍ରୀକୃଷ୍ଣ ନ ପଡିବା ପାଇଁ ବର ମାଗିବାକୁ । ଭୀମସେନ ଯେତେବେଳେ ଏହି ବର କଥା ପ୍ରକାଶ କଲା, ସେତେବେଳେ ଦ୍ରୌପଦୀ ଏସବୁ ଶ୍ରୀକୃଷ୍ଣଙ୍କ ଚକ୍ରାନ୍ତ ବୋଲି ଜାଣିପାରି ଥିଲେ । ଏହା ସତ୍ତ୍ୱେ ସେ କହିଲେ -

ତୋହର ବିନୟ ଭଗତିକି ପ୍ରସନ୍ନ ହୋଇଲି
ତୁମ୍ଭନ୍ତ ଆଦିକରି କୃଷ୍ଣବଂଶ ଭକ୍ଷିବି ଯେକା ଯୁଝେଷ୍ଟିଂକି ଛାଡିଲି
(କର୍ଣ୍ଣ ପୃ-୧୩୧)

ସାରଳା ଦାସ ଯୁଧିଷ୍ଠିରଙ୍କ ଧର୍ମନିଷ୍ଠା, ସତ୍ୟବାଦୀତା ତଥା ପରୋପକାରିତା ପ୍ରଭୃତି ଗୁଣର ପ୍ରଶଂସା ସବୁ ସମୟରେ କରିଥିଲେ ହେଁ, ସବୁ ଭାଇ ଓ ଦ୍ରୌପଦୀଙ୍କର ଦୋଷ ଦେଖାଇବା ପରି ଯୁଧିଷ୍ଠିରଙ୍କୁ ଅସତ୍ୟ ଭାଷଣ ଦୋଷରେ ଦୋଷୀ କରିଥିଲେ । ମହାଭାରତ-ଯୁଦ୍ଧରେ ଯେତେ ଚେଷ୍ଟା କଲେ ବି ଯେତେବେଳେ ଦ୍ରୋଣଙ୍କୁ ବଧ କରିବା ସମ୍ଭବ ହେଲାନାହିଁ, ସେତେବେଳେ ଶ୍ରୀକୃଷ୍ଣ କୂଟବୁଦ୍ଧି ହିଁ କାମ ଦେଲା । ଶ୍ରୀକୃଷ୍ଣ ଦ୍ରୋଣଙ୍କର ମୃତ୍ୟୁଭେଦ ଜାଣିଥିଲେ । ଦ୍ରୋଣଙ୍କ ତାଙ୍କ ପୁତ୍ର ଅଶ୍ୱତ୍ଥାମା ପ୍ରତି ଅଗାଧ

ସ୍ନେହ ଥିଲା । 'ଅଶ୍ୱତ୍ଥାମା ହତ' ଏକଥା ଶୁଣିଲେ ଦ୍ରୋଣ ଅସ୍ତ୍ରତ୍ୟାଗ କରିବେ ଜାଣି ଶ୍ରୀକୃଷ୍ଣ ଭୀମସେନ ହସ୍ତରେ ଅଶ୍ୱତ୍ଥାମା ନାମକ ହସ୍ତୀକୁ ମାରି ଚାରିଆଡେ 'ଅଶ୍ୱତ୍ଥାମା ହତ', 'ଅଶ୍ୱତ୍ଥାମା ହତ' ଏହି କଥା ପ୍ରଚାର କରାଇଦେଲେ । ଏକଥା ଶୁଣିଲେ ଦ୍ରୋଣ ଓ ଯୁଧିଷ୍ଠିର । ଦ୍ରୋଣ ଏହା ଶୁଣି ବିଶ୍ୱାସ କଲେ ନାହିଁ । ସେ ଯୁଧିଷ୍ଠିରଙ୍କୁ ପଚାରିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଯୁଧିଷ୍ଠିର କେବେ ମିଛ କହିବେ ନାହିଁ । ଯୁଧିଷ୍ଠିର ହିଁ ପ୍ରଥମେ ମିଛ କହିବାକୁ ଅମଙ୍ଗ ହେଉଥିଲେ । ପରେ ଶ୍ରୀକୃଷ୍ଣଙ୍କ କଥାରେ ପଡି ସେ କହିଲେ -

ଅଶ୍ୱତ୍ଥାମା ହତ ବୋଲି କହିଲେ ଯୁଧିଷ୍ଠି
ନର କି କୁଞ୍ଜର ବୋଲି ନ କହିଲେ ଫୁଟି ।

ଗୁରୁଙ୍କ ଛାମୁରେ ଏହି ପଦକ ମିଛ କଥା କହିଥିବାରୁ ଯୁଧିଷ୍ଠିର ସ୍ୱଦେହରେ ସ୍ୱର୍ଗ ଗମନ କରିଥିଲେ ହେଁ, ନର୍କ ଦର୍ଶନ କରିବାକୁ ହୋଇଥିଲା । ଧର୍ମାତ୍ମା ଯୁଧିଷ୍ଠିର ନର୍କ ଦର୍ଶନରେ ଲାଭ ହେଲା ନରକ ଭୋଗୁଥିବା ରାଜାମାନଙ୍କୁ । ସେମାନେ ଯୁଧିଷ୍ଠିରଙ୍କୁ ଦର୍ଶନ କରି ମୁକ୍ତି ପାଇଯାଇଥିଲେ ।

**ଭୀମ :** ଭୀମ ଚରିତ୍ର ସାରଳା ଦାସଙ୍କ ଅପୂର୍ବ ସୃଷ୍ଟି । ଏହି ଚରିତ୍ରକୁ ମୂର୍ତ୍ତିମନ୍ତ କରି ପ୍ରକାଶ କରିବା ପାଇଁ ସେ ଏଥିରେ ନିଜ କଳ୍ପନାରୁ ବହୁ ତତ୍ତ୍ୱ ଖଞ୍ଜିଛନ୍ତି । ଭୀମଙ୍କ ଚରିତ୍ରର ବୈଶିଷ୍ଟ୍ୟ ହେଲା ତାଙ୍କର ଅତୁଳ ପରାକ୍ରମ । ଜନ୍ମକାଳରୁ ହିଁ ଏହା ପ୍ରକାଶିତ । ତାଙ୍କ ଜନ୍ମକାଳରୁ ଆକାଶବାଣୀ ହୋଇଥିଲା, ଏହି କୁମାର ସମସ୍ତ ବଳବାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଲାଭ କରିବେ (ଆଦି ୧୨୨-୧୪-୧୫) । ଜନ୍ମର ଦଶମ ଦିନ ସେ ମାତାଙ୍କ କୋଳରୁ ଗୋଟିଏ ପଥର ଉପରେ ପଡିଯାଇଥିଲେ ଏବଂ ତାଙ୍କର ଶରୀର ଆଘାତରେ ପଥର ଚୂନା ହୋଇଯାଇଥିଲା (ଆଦି ୧୨୨-୧୫) । ସଂସ୍କୃତ ମହାଭାରତରୁ ଏତିକି ସୂତ୍ର ନେଇ ସାରଳା ଦାସ ନିଜ କଳ୍ପନା ବଳର ଏହାକୁ ବହୁଗୁଣିତ କରିଦେଲେ । ଅଗ୍ନି ଦେବତା ବ୍ରାହ୍ମଣ ରୂପେ ଆବିର୍ଭୂତ ହୋଇ ଭୀମଙ୍କୁ ତିନୋଟି ବର ପ୍ରଦାନ କରିଥିଲେ -

ଭୋଜନେ ଅତ୍ରିପ୍ତି ହୋଉ ତୋହର ବଳା
ସଂଗ୍ରାମେ ଦୁତୀ ନାମ ତେଜ ଅନର୍ଗଳା ।
ଶୃଙ୍ଗାରେ ଅତ୍ରିପ୍ତି ହୁଅସିରେ ଭୀମ
ବୃକୋଦର ମୂରତିକି ତୋର କେହି ନୋହିବେ ସମ ।

ଅଗ୍ନି ଦେବତାଙ୍କ ପ୍ରସନ୍ନତାରୁ ଭୀମଙ୍କ ଚରିତ୍ରରେ ଯେଉଁ ତିନୋଟି ଗୁଣ ସନ୍ନିବେଶିତ ହେଲା, ସାରଳା ଦାସ ସେହି ତିନୋଟି ଗୁଣକୁ ମହାଭାରତରେ ବାରମ୍ବାର ଦେଖାଇବାକୁ ଚାହିଁଛନ୍ତି ।

ଭୀମ ଏହି ତିନୋଟି ପ୍ରବୃତ୍ତିରେ ଅତୃପ୍ତ ରହୁଥିଲେ ହେଁ ସାରଳା ଦାସ ତାଙ୍କ ଚରିତ୍ରରେ ସଂଯମ ଓ ନିଷ୍ଠା ଗୁଣର ପ୍ରଦର୍ଶନ କରିବାକୁ ଭୁଲିନାହାନ୍ତି । ସେ ଅତ୍ୟନ୍ତ ବଳଶାଳୀ ହେଲେ ବି ଉଦ୍‌ଭ୍ରାନ୍ତ ନ ଥିଲେ । ନିଜ ପକ୍ଷରୁ କାହାରିକୁ ଆକ୍ରମଣ କରିବା ତାଙ୍କ ଚରିତ୍ରରେ କେବେ ଦେଖାଯାଇ ନ ଥିଲା । ଶୃଙ୍ଗାର କାଳରେ ସେ ଯୌଗିକ ସାଧନା ବଳରେ ନିଜକୁ ସଂଯତ କରିପାରୁ ଥିଲେ । କାଳଞ୍ଜି ରାକ୍ଷସୀ ସହିତ ମିଳନ ବେଳେ ସାରଳା ଦାସ ତାଙ୍କ ସଂଯମତାର ଯେଉଁ ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି, ସେଥିରୁ ତାଙ୍କ ପ୍ରତି ସାରଳା ଦାସଙ୍କ ଦୃଷ୍ଟିକୋଣ ସ୍ପଷ୍ଟ ହୋଇଥାଏ । ସେ କେବଳ ଖାଇବା ପେଟୁ ନଥିଲେ, ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରି ସମସ୍ତଙ୍କୁ ସନ୍ତୁଷ୍ଟ କରିବାରେ ସେ ପାରଙ୍ଗମ ଥିଲେ । ଏସବୁ ସହିତ ତାଙ୍କର ମାନବିକ ଗୁଣ ପ୍ରତି ସାରଳା ଦାସ ବିଶେଷ ଦୃଷ୍ଟି ଦେଇଥିଲେ । ସମସ୍ତଙ୍କ ପ୍ରତି ବିଶେଷ କରି ଭାଇ ଓ ସ୍ତ୍ରୀ ପ୍ରତି ତାଙ୍କ ସହାନୁଭୂତିର ଅନ୍ତ ନ ଥିଲା । ନିଜ ଜୀବନକୁ ତୁଚ୍ଛକରି ସେ ସମସ୍ତଙ୍କୁ ରକ୍ଷା କରିବା ପାଇଁ ଚାହିଁଥିଲେ ।

'ସ୍ୱର୍ଗାରୋହଣ ପର୍ବ'ରେ ତାଙ୍କର ଏହି ମାନବିକ ଗୁଣର ପ୍ରକାଶ ବିଶେଷଭାବେ ଦେଖିବାକୁ ମିଳେ । ମହାପ୍ରସ୍ଥାନ ସମୟରେ ଦ୍ରୌପଦୀ ପ୍ରଥମେ ଶ୍ରାନ୍ତ ହୋଇପଡ଼ିଲେ । କ୍ଷୁଧା ତୃଷାରେ ପୀଡ଼ିତ ହୋଇ ସେ ଆଉ ଯାଇ ନପାରି ଦିନେ ବିଶ୍ରାମ କରିବାପାଇଁ ଯୁଧିଷ୍ଠିରଙ୍କୁ ଅନୁରୋଧ କଲେ । ଯୁଧିଷ୍ଠିର ସେଥିରେ ରାଜି ନହୋଇ ଆଗେ ଆଗେ ଚାଲିଯିବା ଫଳରେ ଦ୍ରୌପଦୀ ଆଉ ଚାଲି ନ ପାରି ମୁହଁମାଡ଼ି ପଡ଼ିଗଲେ । ସେତେବେଳକୁ ଯୁଧିଷ୍ଠିରଙ୍କ ବ୍ୟତୀତ ଆଉ ଚାରିଭାଇ ମଧ୍ୟ ଥିଲେ । କିନ୍ତୁ ଦ୍ରୌପଦୀ ପଡ଼ିଗଲା ବେଳେ ଆଉ କେହି ନ ଯାଇ ଭୀମ ହିଁ ଯାଇଥିଲେ । କାରଣ ସେ ସେତେବେଳଯାଏ ମାୟା ମୋହ ବନ୍ଧନକୁ ଛିନ୍ନ କରିପାରି ନ ଥିଲେ । ଯେତେବେଳେ ଯୁଧିଷ୍ଠିର କହିଲେ, ଏ ସଂସାରରେ କିଏ କାହାର ଭାଇ, କିଏ କାହାର ଭାର୍ଯ୍ୟା, କିଏ କାହାର ପୁଅ, କିଏ କାହାର ବନ୍ଧୁ, ସେତେବେଳେ ଦ୍ରୌପଦୀଙ୍କ ପାଇଁ ସହାନୁଭୂତି ଜଣାଇ ଦ୍ରୌପଦୀଙ୍କ ଜୀବନର ସମସ୍ତ କଥାକୁ ସଂକ୍ଷିପ୍ତରେ କହିଥିଲେ । ଦ୍ରୌପଦୀ ସାଧାରଣ ନାରୀ ନୁହନ୍ତି, ବ୍ୟାସମୁନି କୋଟିଏ ଋଷିଙ୍କ ସହିତ ଏହି କନ୍ୟାକୁ ମହାଅନଳରୁ ଜାତ କରିଥିଲେ । ସେଥିପାଇଁ ସେ ଯାଜ୍ଞସେନୀ ଭାବେ ପ୍ରସିଦ୍ଧ । କେବଳ ସେତିକି ନୁହେଁ ଏକା ସ୍ତିରୀଏ ହୋଇ ସହିଲା ପାଞ୍ଚ ଜଣଂ ଅର୍ଦ୍ଧୋଳି' ଏବଂ ଜୀବନଯାକ ମହାଭୃତ୍ୟ ପଣରେ ସମସ୍ତଙ୍କ ସେବା କଲା ସେ ଯେ କେବଳ ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀଙ୍କ ଭଗ୍ନୀ ଥିଲା ବା ଦ୍ରୁପଦଙ୍କ କନ୍ୟା ଥିଲା ତାହା ନୁହେଁ, ତାର ରୂପ ମଧ୍ୟ ଥିଲା ଅତୁଳନୀୟ । ସେ ତୁମର ପାଟବଂଶୀ, ପ୍ରିୟବନ୍ତୀ ଓ ପୁତ୍ରବନ୍ତୀ ଭାର୍ଯ୍ୟା । ଏହି ଦ୍ରୌପଦୀଙ୍କୁ ସାଙ୍ଗରେ ରଖି ତୁମେ କେତେ ଯାଗଯଜ୍ଞ ନ କରିଛ ? ଲୋକେ ତୁମକୁ ଧର୍ମ ରାଜାବୋଲି ସମ୍ବୋଧନ କରିଛନ୍ତି । ଭାର୍ଯ୍ୟା ତ୍ୟାଗକଲେ କ'ଣ ଧର୍ମ ରହେ ? ଭୀମସେନ ଏହିପରି ଭାବେ ନିଜର ମାନବିକ ଗୁଣର ପରିଚୟ ଦେଇଥିବା ବେଳେ ଯୁଧିଷ୍ଠିର ବଜ୍ର କଣ୍ଠରେ କହିଲେ -

ଦ୍ରୌପଦୀ ବଡ ପାପିନୀ । ମଧ୍ୟ ଭୁବନରେ କୌଣସି ଧର୍ମ କାର୍ଯ୍ୟ କରିନାହିଁ । 'ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି' । ସାରଳା ଦାସ ମଧ୍ୟ କହିଲେ, ''ଯେ ଯାହାର ପୁଣ୍ୟ ଘେନି ଯାଇ ସିନା ସ୍ୱର୍ଗ । ପାପରେ ନର୍କ ପାଇ ପୁଣ୍ୟରେ ସ୍ୱର୍ଗପଥ ।'' ଏସବୁ ଉପଦେଶ ଶୁଣିଲା ପରେ ମଧ୍ୟ ଭୀମସେନର ମୋହ ତୁଟି ନଥିଲା । ଭୀମ ଶେଷ ପର୍ଯ୍ୟନ୍ତ ଦ୍ରୌପଦୀଙ୍କୁ ରକ୍ଷା କରିବାପାଇଁ ଯୁଧିଷ୍ଠିରଙ୍କୁ ନିବେଦନ କରିବାରେ ଆଦୌ କୁଣ୍ଠା ପ୍ରକାଶ କରି ନ ଥିଲେ । ଭୀମସେନଙ୍କ ମାନବିକତା ବା ପର ପ୍ରତି ସହାନୁଭୂତି, ଭାଇଙ୍କ ଦୁଃଖରେ ଦୁଃଖୀ ହେବା ପ୍ରଭୃତି ଗୁଣ ସହଦେବ, ନକୁଳ ଓ ଅର୍ଜୁନଙ୍କ ପତନ ବେଳେ ବି ପ୍ରକାଶ ପାଇଛି । ଶେଷକୁ ଯେତେବେଳେ ସେ ନିଜେ ବଞ୍ଚିରହିଛନ୍ତି ସେତେବେଳେ ତାଙ୍କ ମନରୁ ସମସ୍ତ ମାୟାମୋହ ଚାଲିଯାଇଛି । ନିଜର ଜୀବନ ରକ୍ଷାପାଇଁ ସେ ବିକଳ ନହେଇ କିପରି ଭାଇଙ୍କ ସାଙ୍ଗେ ସ୍ୱଦେହରେ ସ୍ୱର୍ଗକୁ ଯିବେ, ତାହାହିଁ ଚିନ୍ତା କରିଛନ୍ତି । ଦୀନକୃଷ୍ଣଙ୍କ 'କାଳବଳଯେ କାହାରି ଆୟତ୍ତ ନୁହଇ' ଅର୍ଥାତ୍ କାଳର ପ୍ରଭାବରେ ଭୀମସେନଙ୍କ ପରି ବୀର ଶତଚେଷ୍ଟା କରିବା ସତ୍ତ୍ୱେ ହିମାଳୟର ଘନ ତୁଷାରକୁ ଅତିକ୍ରମ କରି ନ ପାରି ପଥ ମଧ୍ୟରେ ନିଃସହାୟ ବ୍ୟକ୍ତି ପରି ପ୍ରାଣତ୍ୟାଗ କଲାବେଳେ ମନରେ ଗୋଟିଏ ଅବଶୋଷ ସ୍ୱଦେହରେ ସ୍ୱର୍ଗକୁ ଯାଇପାରିଲି ନାହିଁ ।

**ଅର୍ଜୁନ :** ଇନ୍ଦ୍ରଙ୍କ ଔରସରୁ ତଥା କୁନ୍ତୀଙ୍କ ଗର୍ଭରୁ ଜାତ ଅର୍ଜୁନ ମହାଭାରତର ଅନ୍ୟତମ ପରାକ୍ରମଶାଳୀ ଯୋଦ୍ଧା । ସାରଳା ଦାସ ଅର୍ଜୁନଙ୍କୁ ମହାଭାରତର ସର୍ବଶ୍ରେଷ୍ଠ ବୀର ଭାବେ ପ୍ରତିପାଦିତ କରିବା ପାଇଁ ତାଙ୍କୁ ସବୁ ଯୁଦ୍ଧରେ ବିଜୟୀ କରାଇଥିଲେ । ଏସବୁ ଗୁଣ ସହିତ ସାରଳା ଦାସଙ୍କ ମତରେ ତାଙ୍କର ପ୍ରକୃତ ମହତ୍ତ୍ୱ ହେଲା ଯେ ସେ ଥିଲେ ଶ୍ରୀକୃଷ୍ଣଙ୍କର ଅନ୍ତରଙ୍ଗ ସଖା । ଶ୍ରୀକୃଷ୍ଣ ଯେପରି ଅର୍ଜୁନଙ୍କୁ ସମ୍ମାନ ଦେଉଥିଲେ ଅର୍ଜୁନ ମଧ୍ୟ ସେହିପରି ପ୍ରତି କାର୍ଯ୍ୟରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରୁଥିଲେ ।

ସାରଳା ଦାସ ବାଲ୍ୟକାଳରେ ଏହି ପ୍ରସଙ୍ଗରେ ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର 'ଏକ ସ୍ୱରୂପ', 'କଳାବୁଳୁ', 'ଦୂତୀକୃଷ୍ଣ', 'ରଙ୍ଗରସ କ୍ରୀଡାର ସାଥୀ', 'ସଖା ସଖା', 'ପଞ୍ଚଭୂତ', 'ପ୍ରାଣହିତ ମିତ୍ର ବଲ୍ଲଭ', 'ପ୍ରାଣବନ୍ଧୁ ଓ ଅଭିନାତ୍ମା' (ଛଡା ଛଡି ନୋହୁଂ) ରୂପେ ଯେଉଁ ବର୍ଣ୍ଣନା କଲେ ତାହା ହିଁ ତାଙ୍କ ପରବର୍ତ୍ତୀ ଜୀବନରେ ବିକାଶ ଲାଭ କଲା । ଅର୍ଜୁନଙ୍କର ସମସ୍ତ କାର୍ଯ୍ୟ କଳାପକୁ ଶ୍ରୀକୃଷ୍ଣ ଯେ କେବଳ ନିୟନ୍ତ୍ରଣ କରିଥିଲେ, ତାହା ନୁହେଁ, ଅର୍ଜୁନ ମଧ୍ୟ ଶ୍ରୀକୃଷ୍ଣଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣଭାବେ ସମର୍ପଣ କରିଦେଇଥିଲେ । ଶେଷରେ ମହାଭାରତ ଯୁଦ୍ଧ କାଳରେ ଶ୍ରୀକୃଷ୍ଣ ହେଲେ ଅର୍ଜୁନଙ୍କର ସାରଥି ଅର୍ଥାତ୍ ତାଙ୍କ ଜୀବନ ରଥର ଚାଳକ ।

ପଣ୍ଡୁଙ୍କ ମୃତ୍ୟୁପରେ କୁନ୍ତୀଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ବ୍ୟାସ ପଞ୍ଚଭ୍ରାତାଙ୍କ ବୈଶିଷ୍ଟ୍ୟ ସମ୍ବନ୍ଧରେ ସୂଚନା ଦେଇ କହିଥିଲେ -

ଯୁଧିଷ୍ଠି ବୋଲିଣ ତୋ'ର ଯେବଣ ପୁତ୍ର ଗୋଟି
ପ୍ରତକ୍ଷେ ଦେଖୁସିନା ନିରଞ୍ଜନ ଦେବତା ଅଟେ ସେଟି ।
ଭୀମ ଚରିତ୍ର ଗୋ ଅସଂଖ୍ୟ ଅଟଇ ମୋତେ
ଅର୍ଜୁନ ବୋଲି ସେ ନାରାୟଣଙ୍କ ପଞ୍ଚଭୂତେ ।
ନକୁଳ ବୋଲି ସେ ଯେବଣ ପୁତ୍ର ଅଟଇ
କୁମାର ମୁଖେ ତାକୁ ଆକାଶେ ପାଟ ଅଛଇ ।
ଯେ ବାଳୁତ ପୁଅ ଗୋଟିକେ ଯେହେନେକ ଲକ୍ଷଣ
ସ୍ତିରୀ ପ୍ରମଦା ଗୋ ତୁମ୍ଭେ ତଥ୍ୟ ହିଂ ନଜାଣ ।

ସ୍ୱର୍ଗ ଆରୋହଣ ବେଳେ ଯେତେବେଳେ ତୁଷାରରେ ଅର୍ଜୁନଙ୍କ ଗୋଡ ଖସିଗଲା ସେତେବେଳେ ଭୀମସେନ ଅତି ଆତୁରରେ ଯୁଧିଷ୍ଠିରଙ୍କୁ ଲକ୍ଷ୍ୟ କରି କହିଲେ, 'ଦେଖ ଦେଖ ଧର୍ମରାୟେ ପଡିଲା ଫାଲ୍‌ଗୁନି' । ତାପର ସେ ତା'ର ଗୁଣସବୁକୁ ଗୋଟି ଗୋଟି କରି ଏପରି ବର୍ଣ୍ଣନା କଲା, ଯଦ୍ୱାରା ତାହାର ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ଭାବେ ପ୍ରତିଭାତ ହୋଇଥିଲା ।

୧. ଯୁଧିଷ୍ଠିରଙ୍କ ରାଜ୍ୟ ପ୍ରାପ୍ତିର ଶ୍ରେୟ ହେଉଛି ଅର୍ଜୁନଙ୍କର, ଯାହାର ବାହୁବଳେ 'କଲୁ ଯେକଛତ୍ର ମେଦିନୀ' (ପୃ. ୫୬)
୨. ନିର୍ବାତ କବଚକୁ ବଧକରି ଇନ୍ଦ୍ରଙ୍କୁ ସ୍ୱର୍ଗରାଜ୍ୟ ଦାନ
୩. ଗୋସିଂହ ଦୈତ୍ୟ ବଧ କରି ଦ୍ୱାରକା ଉଦ୍ଧାର
୪. ହନୁମନ୍ତ ସହିତ ବିବାଦରେ ସାଗରରେ ଶର ବନ୍ଧ
୫. ସୁଭଦ୍ରା ହରଣ ବେଳେ ରାମକୃଷ୍ଣଙ୍କ ଉପରେ ବିଜୟ
୬. ଧନୁହୁଳରେ ପୃଥିବୀ ଧାରଣ
୭. ଗୋଧନ ହରଣ କାଳରେ କଉରୋବଙ୍କ ପରାଜୟ
୮. ରାଜସୂୟ ଯଜ୍ଞ କାଳରେ ଉତ୍ତର ଦିଗ ଅଭିଯାନ । ଏହା ବ୍ୟତୀତ ସେ ଜଗତ ସୋଦର ଓ ଜଗତ ହିତକାରୀ ।

ଭୀମସେନ ଏତେ ଗୁଣ ବାହୁନିବା ବେଳେ ଯୁଧିଷ୍ଠିର କହିଲେ, ଏ ସବୁରେ କେହି ସ୍ୱର୍ଗକୁ ସ୍ୱଦେହରେ ଯାଏ ନାହିଁ । ଯୁଧିଷ୍ଠିର ଏପରି କହିଥିଲେ ହେଁ, ଅର୍ଜୁନଙ୍କ ପାଇଁ ସ୍ୱର୍ଗପୁର ଦର୍ଶନରେ କିଛି ନୂଆକଥା ନ ଥିଲା । ନିର୍ବାତ କବଚ ବଧ ପରେ ସେ ସ୍ୱର୍ଗକୁ ଯାଇ ସେଠାରେ ଅଭ୍ୟର୍ଥିତ ହୋଇଥିଲେ । ତେବେ ଯୁଧିଷ୍ଠିର କହିଲେ, ଏତେ କାମ କରିଥିଲା ବୋଲି ତ ଏ ପର୍ଯ୍ୟନ୍ତ ଆସିପାରିଲା । ପରୋପକାର ନ କଲେ ସ୍ୱର୍ଗପ୍ରାପ୍ତି

ହୁଏନାହିଁ । ଯିଏ ମଲା ସିଏ ଗଲା । ମଲାର ପ୍ରାଣୀ କେହୁ ଆସିବ ବାହୁଡି । ମଲା ପ୍ରାଣୀ ପାଇଁ କାନ୍ଦି ବୋବାଳି, ମୁଣ୍ଡ ପିଟି, ଶରୀର କଚାଡି କିଛି ଲାଭ ନାହିଁ । ଯାହାର ଧର୍ମବଳ ସରିଯାଇଛି, ତା'ପାଇଁ ଦୁଃଖ କରିବା ଅନାବଶ୍ୟକ । ଏତେ ଶୌର୍ଯ୍ୟବୀର୍ଯ୍ୟ ଥିଲେ କ'ଣ ହେବ, ସେ ଅତି ବାହାଦୁରିଆ ।

ଆପଣାର ଶଉର୍ଯ୍ୟ ଆପଣେ କହୁଥାଇ
ବୋଲଇ ଯେକାଯେ ମୁଂ ଜିଣିଲି ରୁଦ୍ରକଇ ।
ବୋଲଇ ଯେକଛତ୍ର କଲଇ ମେଦିନୀ
ଆପଣାର ପ୍ରତଗ୍ୟାଂ କହଇ ଫାଲଗୁନି । (ପୃ.୫୭-୫୮)

**ନକୁଳ :** ସଂସ୍କୃତ ମହାଭାରତ ଅନୁଯାୟୀ ନକୁଳ ଓ ସହଦେବ ଅଶ୍ୱିନୀକୁମାରଙ୍କ ଔରସରେ ମାଦ୍ରୀଙ୍କ ଗର୍ଭରୁ ଜାତ ହୋଇଥିଲେ । ସେମାନେ ଯମଜ ଭ୍ରାତା ଥିଲେ । ଉଭୟେ ଅନୁପମ ରୂପଶାଳୀ ତଥା ପରମ ମନୋହର ଥିଲେ । (ଆଦି ୧।୧୧୪, ୬୭। ୧୧୧-୧୧୨) ସାରଳା ଦାସ ଏହାକୁ ପରିବର୍ତ୍ତନ କରି ପ୍ରଥମେ ନକୁଳଙ୍କୁ ପରେ ସହଦେବଙ୍କୁ ଜନ୍ମ କରାଇଛନ୍ତି । ଗାନ୍ଧାରୀ ଅନ୍ଧପଟଳ ବାନ୍ଧିବା ଶୁଣି ଯେତେବେଳେ କୁନ୍ତୀ ପୁଅମାନଙ୍କୁ ଧରି ହସ୍ତିନାପୁର ଯାଇଥିଲେ, ସେତେବେଳେ ଯୁଧିଷ୍ଠିର, ଭୀମ ଓ ଅର୍ଜୁନଙ୍କ ସହ ନକୁଳ ବି ଥିଲେ । ତାଙ୍କ ନାମକରଣର ଏକ ନୂତନ ବ୍ୟାଖ୍ୟା ସାରଳା ଦାସ ପ୍ରଦାନ କରିଛନ୍ତି -

ନବନଦୀକୂଳେ ଯେଣୁ କୁମାର ଉପୁଜିଲା,
ତେଣୁକରି ମହାତମା ନକୁଳ ନାମ ଦିଲା ।

ସଂସ୍କୃତ ମହାଭାରତ ଅନୁଯାୟୀ ଦ୍ରୌପଦୀଙ୍କ ବ୍ୟତୀତ ସେ ଚେଦିରାଜ କନ୍ୟା ରେଣୁମତୀଙ୍କୁ ବିବାହ କରିଥିଲେ ଓ ତାଙ୍କ ଗର୍ଭରୁ ଏକ ପୁତ୍ର ଜାତ ହୋଇଥିଲା । ସେହି ପୁତ୍ରର ନାମ ଥିଲା ନିରମିତ୍ର । ସେ ଯୁଦ୍ଧ ବିଦ୍ୟାର କୁଶଳ ଥିବା ଯୋଗୁଁ ତାଙ୍କୁ ଅତିରଥୀ କୁହାଯାଉଥିଲା । ସାରଳା ଦାସ ନକୁଳଙ୍କ ଦ୍ୱିତୀୟ ବିବାହ ଓ 'ଅତିରଥୀ' ଉପାଧିକୁ ପରିତ୍ୟାଗ କରିଥିଲେ ହେଁ ତାଙ୍କୁ ଜଣେ ବିଶେଷ ଯୋଦ୍ଧା ଭାବେ ଉଲ୍ଲେଖ କରିଥିଲେ । ସେ ଭାଇମାନଙ୍କର ବିଶେଷ ଅନୁଗତ ଥିଲେ ।

ସ୍ୱର୍ଗ ଆରୋହଣବେଳେ ଯେତେବେଳେ ତାଙ୍କ ଗୋଡ ବରଫ ମଧ୍ୟରେ ଖସିଗଲା, ସେତେବେଳେ ଭୀମସେନ ତାଙ୍କର ଯେଉଁ ସବୁ ଗୁଣର ଉଲ୍ଲେଖ କରିଥିଲେ, ସେଥିରୁ ସେ ଅତ୍ୟନ୍ତ ସୁନ୍ଦର ତଥା ସଂସାରରେ କୀର୍ତ୍ତିରାଜି ପ୍ରତିଷ୍ଠା କରିଥିବା ଜଣାଯାଏ । ସେ (୧) କୁନ୍ତ ମୁନରେ ପୃଥିବୀ ଧାରଣ କରି (୨) ରାଜସୂୟ ଯଜ୍ଞକାଳରେ ଦକ୍ଷିଣ ଦିଗ ରାଜାମାନଙ୍କୁ ଜିଣି ବୀରଭାବେ ପ୍ରସିଦ୍ଧି ଲାଭ କରିଥିଲେ । ବୟସରେ ସାନ ହେଲେ

ବି ଧାର୍ମିକ ଓ ବଳିଷ୍ଠ ଭାବେ ଯଶ ଅର୍ଜନ କରିଥିଲେ । ସେ ତାଙ୍କର ଶରୀରର ଅତି ଯତ୍ନ ନେଉଥିଲେ । ଏପରିକି ଦେହ ଉପରେ ମାଛିଟାଏ ବସିଗଲେ , ସେ ଚନ୍ଦନ ଲେପନ କରି ନିଜ ଦେହକୁ ନିର୍ମଳ କରୁଥିଲେ ।

ଭୀମସେନଙ୍କ କଥା ଶୁଣି ଯୁଧିଷ୍ଠିର କହିଲେ ସେ ସୁନ୍ଦର ଅଥବା ବଳବାନ୍ ହୋଇପାରେ, ମୃତ୍ୟୁ ନିକଟରେ ଏସବୁ ମୂଲ୍ୟହୀନ । ପୁଣି

ବାବୁ ଆପଣା ସୁନ୍ଦର ଆପଣେ ବଖାଣଇ
ନକୁଳ ପଡିଲା ହାଦେ ଶୋଚନା କିସ ପାଇଁ । (ପୃ-୫୬)

**ସହଦେବ :** ସଂସ୍କୃତ ମହାଭାରତ ଅନୁଯାୟୀ ସହଦେବ ଅଶ୍ୱିନୀକୁମାରଙ୍କ ପୁତ୍ର ତଥା ନକୁଳଙ୍କର ଯମଜ ଭ୍ରାତା । ସେ ନକୁଳଙ୍କ ପରି ଦେଖିବାକୁ ସୁନ୍ଦର ମଧ ଥିଲେ । ଦ୍ରୌପଦୀଙ୍କ ବ୍ୟତୀତ ସେ ମଦ୍ରରାଜ ଦ୍ୟୁତିମାନଙ୍କ ପୁତ୍ରୀ ବିଜୟାଙ୍କୁ ବିବାହ କରିଥିଲେ ଓ ସେହି କନ୍ୟା ଗର୍ଭରୁ ତାଙ୍କର ସୁହୋତ୍ର ନାମକ ପୁତ୍ର ଜାତ ହୋଇଥିଲା ।

ସାରଳା ଦାସ ସଂସ୍କୃତ ମହାଭାରତର କଥାକୁ ପରିବର୍ତ୍ତିତ କରି ସହଦେବଙ୍କୁ ପାଣ୍ଡୁଙ୍କ ପୁତ୍ରଭାବେ ଉଲ୍ଲେଖ କଲେ । ଗାନ୍ଧାରୀ ଅନ୍ଧପଟଳ ବାନ୍ଧିବା କଥା ଶୁଣି କୁନ୍ତୀ ହସ୍ତିନାପୁରକୁ ଚାରିପୁତ୍ରଙ୍କ ସହ ଯାଇଥିଲେ । ସେତେବେଳେ ମାଦ୍ରୀ ଶତଶୃଙ୍ଗ ପର୍ବତରେ ଏକାକିନୀ ହୋଇଗଲେ । ଏପରି ଅବସ୍ଥାରେ ପାଣ୍ଡୁଙ୍କୁ ସ୍ମରଣ କରିବା ତାଙ୍କ ପକ୍ଷରେ ସ୍ୱାଭାବିକ ଥିଲା । ସେ ଜପାମାଳି ଧରି ପାଣ୍ଡୁଙ୍କୁ ସ୍ମରଣ କରିବାରୁ ପାଣ୍ଡୁ ସେଠାରେ ପହଞ୍ଚିଥିଲେ । ନିଜର ଅଭିଶାପ କଥା ଜାଣି ମଧ ସେ ମାଦ୍ରୀଙ୍କ ସହ ବିହାର କଲେ ଓ ଅକାଳ ବଜ୍ରାଘାତରେ ତାଙ୍କର ମୃତ୍ୟୁ ହେଲା । ଏହି ସହବାସ ଫଳରେ ସହଦେବଙ୍କର ଜନ୍ମ ହୋଇଥିଲା । ସାରଳା ଦାସଙ୍କ ଅନୁଯାୟୀ ସହଦେବ ହିଁ ଥିଲେ ପାଣ୍ଡୁଙ୍କ ଔରସଜାତ ସନ୍ତାନ । ସଂସ୍କୃତ ମହାଭାରତରେ ପାଣ୍ଡୁଙ୍କ ମୃତ୍ୟୁ ପରେ ମାଦ୍ରୀ ନିଜ ପୁତ୍ରମାନଙ୍କୁ (ନକୁଳ ଓ ସହଦେବ) କୁନ୍ତୀଙ୍କ ହସ୍ତରେ ସମର୍ପଣ କରି ପତିଙ୍କ ସହ ଚିତାରେ ପ୍ରବେଶ କରିଲେ । ଅଥଚ ସାରଳା ମହାଭାରତରେ ନବଜାତ ଶିଶୁକୁ ଅରକ୍ଷିତ ଭାବେ ଛାଡି ପାଣ୍ଡୁ ଓ ମାଦ୍ରୀ ଉଭୟେ ଅଭିଶାପ ବାଣରେ ମୃତ୍ୟୁ ବରଣ କଲେ । ନିଃସହାୟ ଶିଶୁକୁ ଦେଖି ବ୍ୟାଘ୍ର, ଭଲ୍ଲୁକ, ଗ୍ରିଧିନୀ ଓ ପ୍ରେତ ପ୍ରଭୃତି ଜୀବଜନ୍ତୁ କୁମାରକୁ ଭକ୍ଷିବା ପାଇଁ ସେଠାରେ ରୁଣ୍ଡ ହୋଇଗଲେ । କୁମାରର ନୟନ ତେଜରେ ସମସ୍ତେ ଜଳିଗଲେ । ଏକଥା ଦେଖି ଶୂନ୍ୟପୁରୁଷମାନଙ୍କ ମନରେ ଭୟ ହେଲା । ଗଗନ ବିହାରି ଦିନକର ଶିଶୁକୁ ଦେଖି ଅଶ୍ୱିନୀକୁମାରଙ୍କୁ ପୁତ୍ର ରକ୍ଷା ପାଇଁ ପଠାଇଲେ ।

ସେତେବେଳକୁ -

ଜାତ ହୋଇଲା ପୁତ୍ର ଯେ ସମ୍ଭାଳନ୍ତା ନୋହିଲା,
କ୍ଷୀରପାନ ନ ପାଇ ଯେ କୁମର ନାଶ ଗଲା । (ପୃ-୨୮୯)

ଅଶ୍ୱନୀକୁମାର ମୃତ ପୁତ୍ରକୁ ଦେଖି ପ୍ରଥମେ ଚିନ୍ତା କଲେ ପରେ ଆପଣା ତନୁରୁ ଅର୍ଦ୍ଧ ଆତ୍ମା କାଢି ମୃତ୍ୟୁ ପିଣ୍ଡକୁ ଜୀବନ୍ୟାସ ମନ୍ତ୍ର ପଢି ଜୀବଦାନ ଦେଲେ ।

ଆପଣା ତହୁଂ କାଢି ଭରିଦିଲେ ଯହୁଂ ଜୀବ
ତେଣୁକରି ଅଶ୍ୱିନୀକୁମାରେ ନାମ ଦିଲେ ସହଦେବ । (ପୃ-୨୮୯)

ଅଶ୍ୱନୀକୁମାର କେବଳ ଯେ ଜୀବଦାନ ଦେଲେ ତାହା ନୁହେଁ, ସେ ତାଙ୍କୁ ମହାଜ୍ଞାନୀ ହେବାର ବର ଦେଲେ -

ଅତି ଆନନ୍ଦେ ଅଶ୍ୱନୀକୁମାରେ ବୋଇଲେ
ଭୂତ ଭବିଷ୍ୟ ବ୍ରତମାନେ ଦିଶୁ ତୋ ନୟନେ ।
ସର୍ଗ ମଞ୍ଚ ପାତାଳ ଚଉଦ ଭୁବନ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ନାନା ଜୀବମାନ ।
ସମସ୍ତ ପରିମାଣି ତୁ ଜାଣିମୁ ଭଲେ
ଶରୀର ସଂସାର କଥା ଜାଣିବୁ ହସ୍ତକୁ ଚାହିଁଲେ ।
ପଚାରିଲେ ସମସ୍ତ କଥା ତୁ କହିବୁ
ଏ ମୋହୋର ବଚନେ ମହାଜ୍ଞାନୀ ହୋଇବୁ ।
(ଆଦି ପୃ-୨୯୦)

ଦୈବବଳରେ ବଳୀୟାନ୍ ହୋଇ କୁମାର ସହଦେବ ଜୀବନଯାତ୍ରା ଆରମ୍ଭ କଲେ । ପରେ ସେ ହେଲେ ପାଣ୍ଡବମାନଙ୍କର ମୁଖ୍ୟମନ୍ତ୍ରୀ ତଥା ପରାମର୍ଶଦାତା । ପ୍ରତି କଥାରେ ଯୁଧିଷ୍ଠିର ତାଙ୍କୁ ପଚାରି କାର୍ଯ୍ୟ କଲେ ଓ ଯଶସ୍ୱୀ ହୋଇଥିଲେ ।

'ସ୍ୱର୍ଗାରୋହଣ ପର୍ବ'ରେ ମଧ୍ୟ ସୁହାଣୀ କନ୍ୟାକୁ ବିବାହ କଲାବେଳେ, ରୁଦ୍ର ନଦୀ ପାର ହୋଇ ଭୀମସେନ ବିଭ୍ରାନ୍ତ ହୋଇଯାଇଥିବା ବେଳେ ସହଦେବ ହିଁ ବୁଦ୍ଧି ଦେଇଥିଲେ । ସହଦେବ ଥିଲେ ଶ୍ରୀକୃଷ୍ଣଙ୍କର ଅତି ଅନ୍ତରଙ୍ଗ ।

ଶେଷ ସମୟରେ ଯେତେବେଳେ ତାଙ୍କ ଗୋଡ ବରଫରେ ଖସିଗଲା ସେତେବେଳେ ଭୀମସେନ ତାଙ୍କର ଏହି ସବୁ ଗୁଣ ବର୍ଣ୍ଣନା କରି ତାଙ୍କର ରକ୍ଷା କରିବା ପାଇଁ ଯୁଧିଷ୍ଠିରଙ୍କୁ ଆକୁଳ ନିବେଦନ କରିଥିଲେ । ଭୀମ କହିଲେ -

ମନ୍ତ୍ରୀ ଚୂଡାମଣି ସହଦେବ ଅଶକତ
କେନ୍ତ କରିବା ଯେବେ କହିବା ନିରୂତାନ୍ତ ।
ସ୍ୱାମୀ ଯାହାର ବୁଦ୍ଧିବଳେ ଜିଣିଲ ସର୍ବପୃଥ୍ୱୀ
ଗୁଣବନ୍ତ ଶ୍ରୀବନ୍ତ ମହାମନ୍ତ୍ରୀ ଆଗତ କହନ୍ତି । (ସ୍ୱର୍ଗ ପୃ-୫୫)

ଭୀମସେନ ସହଦେବଙ୍କର ଯେଉଁ ସବୁ ଗୁଣ କହି ପ୍ରଶଂସା କଲେ, ଯୁଧିଷ୍ଠିରଙ୍କ ବିଚାରରେ ସେହି ସବୁ ଗୁଣ ଦୋଷରେ ପରିଣତ ହୋଇଗଲା -

ଯୁଝେଷ୍ଟି ବୋଇଲେ ସହଦେବ ବଡ ଦୋଷୀ
ଜାଣୁ ଜାଣୁ ନ କହଇ ମଉନେ ଥାଇ ବସି । (ସ୍ୱର୍ଗ ପୃ-୫୫)

**ଦ୍ରୌପଦୀ :** ସଂସ୍କୃତ ମହାଭାରତରେ ମହାରାଜ ଦ୍ରୁପଦଙ୍କ ପୁତ୍ରୀ ଓ ଧୃଷ୍ଟଦ୍ୟୁମ୍ନଙ୍କ ଭଗ୍ନୀ ରୂପେ ବର୍ଣ୍ଣିତ । ସେ ଶଚୀ ଦେବୀଙ୍କ ଅଂଶରୁ ଜନ୍ମଲାଭ କରିଥିଲେ (ଆଦି ୬୭/୧୫୭) । ମହର୍ଷି ଯାଜ ଅଗ୍ନିରେ ଆହୁତି ଦେବାଦ୍ୱାରା ଯଜ୍ଞକୁଣ୍ଡରୁ ଧୃଷ୍ଟଦ୍ୟୁମ୍ନଙ୍କ ପରେ ଦ୍ରୌପଦୀ ପ୍ରକଟ ହୋଇଥିଲେ (ଆଦି ୧୬୬।୩୯-୪୪) । ସେଥିପାଇଁ ତାଙ୍କୁ ଯାଜ୍ଞସେନୀ କୁହାଯାଏ । ସେ ପାଞ୍ଚାଳୀ ନାମରେ ବି ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କ ଜନ୍ମ ସମୟରେ ଆକାଶବାଣୀ ଅନୁଯାୟୀ ଯଜ୍ଞରୁ ଜାତ କନ୍ୟାର ନାମ କୃଷ୍ଣା । ସେ ସମସ୍ତ ଯୁବତୀଙ୍କ ମଧ୍ୟରେ ଶ୍ରେଷ୍ଠା ଓ ସୁନ୍ଦରୀ । କ୍ଷତ୍ରିୟ ସଂହାର ପାଇଁ ତଥା ଦେବତାଙ୍କ କାର୍ଯ୍ୟ ସିଦ୍ଧ କରିବା ପାଇଁ ତାଙ୍କର ଜନ୍ମ । ଦେବତାମାନେ ମଧ୍ୟ ତାଙ୍କୁ ଭୟ କରିବେ (ଆଦି ୧୬୬-୪୮-୪୯) ବ୍ୟାସଦେବ ତାଙ୍କ ପୂର୍ବଜନ୍ମର ସୂଚନା ଦେଇ ମହାଦେବ ତାଙ୍କୁ ପାଞ୍ଚ ପତି ପାଇବାର ବର ଦେଇଥିବା କଥା କହିଥିଲେ ( ଆଦି ୧୩୮ ଅଧ୍ୟାୟ) ।

ଦ୍ରୌପଦୀଙ୍କ ଚରିତ୍ର ଚିତ୍ରଣ କଲାବେଳେ ସାରଳା ଦାସ ପ୍ରାୟ ସଂସ୍କୃତକୁ ଅନୁସରଣ କରିଥିଲେ ହେଁ, କଥା ବର୍ଣ୍ଣନାରେ ତାଙ୍କ ଦେଶ, ଲୋକ ଓ ସମାଜକୁ ଚାହିଁ କେତେକ ପାର୍ଥକ୍ୟ ସୃଷ୍ଟି କଲେ । ମୂଳ ମହାଭାରତର କଥାସୂତ୍ରକୁ ମଝିରେ ମଝିରେ ରଖି ସେ ଦ୍ରୌପଦୀଙ୍କ ଚରିତ୍ରର ରୂପଦାନ କରିଥିଲେ ବି, ସାରଳାଙ୍କ ଦ୍ରୌପଦୀ ଏକ ସ୍ୱତନ୍ତ୍ର ସୃଷ୍ଟି ।

ବ୍ୟାସଙ୍କ ମହାଭାରତ ପରି ସେ ଯଜ୍ଞାନଳରୁ ଜାତ ହୋଇଥିଲେ । ତେବେ ସଂସ୍କୃତ ଯାଜଙ୍କ ସ୍ଥାନରେ ବ୍ୟାସଙ୍କୁ ଦେଖିବାକୁ ମିଳେ । ଉଭୟ ମହାଭାରତରେ ସେ ଥିଲେ ଅଲୌକିକ ଶକ୍ତି ସମ୍ପନ୍ନା ଏକ ମହୀୟସୀ ନାରୀ । ସଂସ୍କୃତ ପରି ସାରଳା ଦାସ ମଧ୍ୟ ତାଙ୍କୁ ଭାରା ନିବାରିଣୀ, ଅନାଦି ଅପର୍ଣ୍ଣା, ଅନ୍ନପୂର୍ଣ୍ଣା, କଉରୋବ ବଳ କ୍ଷୟନ୍ତା ଓ ମାହେଶ୍ୱରୀ କହିଛନ୍ତି । ଏ ସବୁରେ ମଧ୍ୟ ସାରଳା ଦାସ ସନ୍ତୁଷ୍ଟ ନ ଥିଲେ । ତାଙ୍କ ମତରେ ସେ ଥିଲେ 'ହେଙ୍ଗୁଳାଇ' ବା ହିଙ୍ଗୁଳା ଦେବୀଙ୍କ ଅବତାର । ସାରଳା ଦାସଙ୍କ ଅନୁଯାୟୀ ସେ କେବଳ 'କଉରୋବ ବଳ କ୍ଷୟନ୍ତା' ନ ଥିଲେ, ତାଙ୍କ ଦାଉରେ ଯୁଧିଷ୍ଠିରଙ୍କୁ ଛାଡି ପାଣ୍ଡବ ଚାରିଭାଇ, ଶ୍ରୀକୃଷ୍ଣ ଓ ଯଦୁବଂଶ ସମସ୍ତେ ଧ୍ୱଂସ ପାଇଲେ । ସେ କେବଳ ଅନଳରୁ ଜାତ ହୋଇ ନ ଥିଲେ, ଅନଳ ଥିଲା ତାଙ୍କର ଚିର ସହଚର । ତାଙ୍କ ରୂପ ମଧ୍ୟ ଅନଳ ସଦୃଶ ତେଜୋଦୀପ୍ତ ଥିଲା । ସେ ଚାହିଁବା ମାତ୍ରେ ତାଙ୍କ ନୟନ-ଅନଳରେ ସମସ୍ତେ ଜଳିଯିବାର ସମ୍ଭାବନା ଥିଲା । ସାରଳା ଦାସ ଏହାର ସୂଚନା ଦେଇ ଲେଖିଛନ୍ତି-

କିଞ୍ଚିତ୍ କରି ସେ ଯେବେ ଚାହିଁବ ସଭାକୁ
ଅନେକ ପୁରୁଷ ହତ୍ୟା ଦୋଷ ଲାଗିବ ଯେହାକୁ ।
ସ୍ତିରୀଧର୍ମ ଯେହୁ ଅଟଇ ସୁଗ୍ୟାନୀ
ପାପକୁ ଭୟେ କରି ସେ ହୋଇଲା ମାନିନି ।
ଭୋ ଧର୍ମ ଦେବତା, ଯେ ସଭାକୁ ନ ଚାହୁଂ
ଭଲେ ଅଇଲୁ ଆମ୍ଭେ ଅପ୍ରମାଦେ ଯେଥୁ ଯାଉଁ ।
(ଆଦି ୨ୟ, ପୃ-୭୭୩)

ସାରଳା ଦାସ କେବଳ ବିବାହ କାଳରେ ନୁହେଁ ଜୀବନର ଅନ୍ୟ ପ୍ରସଙ୍ଗରେ ତାଙ୍କୁ ଅନଳଠାରୁ ଆହୁରି ତେଜୀୟାନ ରୂପେ ବର୍ଣ୍ଣନା କରିଛନ୍ତି । ସେଥିପାଇଁ ଯିଏ ତାଙ୍କୁ ସ୍ପର୍ଶ କରିଛି, ସେ ଜଳିପୋଡି ପାଉଁଶ ହୋଇଯାଇଛି । ଦୁଃଶାସନ, ଜୟଦ୍ରଥ, ଜଟାସୁର ଓ କୀଚକଙ୍କ ଦଶା ଦେଖିଲେ ଏହା ହିଁ ମନେହୁଏ ।

ଦ୍ରୌପଦୀଙ୍କ ପାଞ୍ଚପତିତ୍ୱ ସାରଳା ଦାସଙ୍କ ପାଇଁ ଏକ ଉତ୍କଟ ସମସ୍ୟା ରୂପେ ଦେଖାଦେଇ ଥିଲା । ଏକ ପକ୍ଷରେ ଦ୍ରୌପଦୀଙ୍କର ପାଞ୍ଚ ପତି ଓ ଅନ୍ୟ ପକ୍ଷରେ ସେ ମହାସତୀ । ରାମାୟଣରେ ସତୀ ସୀତା ତାଙ୍କ ଜୀବନରେ ଥରେ ଅଗ୍ନିପରୀକ୍ଷା ଦେଇ ସତୀ ଆଖ୍ୟା ପାଇଥିଲେ । ସାରଳା ଦାସ ଦ୍ରୌପଦୀଙ୍କୁ ମହାସତୀ କରିବା ପାଇଁ ମାସକେ ପାଞ୍ଚଥର ଅଗ୍ନିସ୍ନାନର ବ୍ୟବସ୍ଥା କଲେ । ସାଧାରଣ ନାରୀ ଜଳରେ ସ୍ନାନ କରି ଶୁଦ୍ଧ ହେବା ପରି ଦ୍ରୌପଦୀ ଅଗ୍ନିରେ ସ୍ନାନ କରୁଥିଲେ । ବିରାଟ ପର୍ବରେ ସୈରିନ୍ଧ୍ରୀ ବେଶଧାରୀ ବିରାଟ ରାଣୀଙ୍କ ସମ୍ମୁଖରେ ନିଜ ଜୀବନର ରହସ୍ୟ ଉଦ୍‌ଘାଟନ କରି କହିଛନ୍ତି -

ଅନ୍ୟ ସ୍ତିରୀମାନଙ୍କ ଜଳେ ଯେହ୍ନେ ସ୍ନାହାନ
ଅଗ୍ନି ସଂଯୋଗେଣ ସେ ବଞ୍ଚୁ ଥାଇ ଦିନ
ଯେକର ଉଚ୍ଛିଷ୍ଟ ସେ ଆରେକକୁ ନଦିଅଇ
ପଞ୍ଚ ପୁରୁଷ ହାଦେ ସେ ଯେକଇ ଆତ୍ମା ତାହାଙ୍କରି ଦେହୀ ।
(ବିରାଟ ପୃ-୭)

ଦ୍ରୌପଦୀଙ୍କ ପଞ୍ଚପତିତ୍ୱକୁ ସମାଜ ଉପଯୋଗୀ କରିବା ପାଇଁ ସାରଳା ଦାସ ଓ ବ୍ୟାସଦେବ ବହୁ ପୌରାଣିକ ଇନ୍ଦ୍ରଜାଲ ସୃଷ୍ଟି କରିଛନ୍ତି । ପୂର୍ବଜନ୍ମର କଥା କହିଛନ୍ତି, ମହାଦେବଙ୍କ ବର କଥା କହିଛନ୍ତି । କେତୁକା ଚଣ୍ଡୀ ଉପାଖ୍ୟାନର ଉଲ୍ଲେଖ କରିଛନ୍ତି । ଏସବୁ ସତ୍ତ୍ୱେ ସାରଳା ଦାସଙ୍କ ମନ ସନ୍ତୁଷ୍ଟ ହୋଇନାହିଁ । ବିବାହ କାଳରେ ସେ ଏ ପ୍ରଶ୍ନର ସମାଧାନ କରିଛନ୍ତି ଅତି ଚତୁରତାର ସହିତ । ପାଣ୍ଡବ ପାଞ୍ଚଭାଇଙ୍କୁ ଦେଖିବାକ୍ଷଣି ଦ୍ରୌପଦୀ ସେମାନଙ୍କ ପ୍ରତି ଆକୃଷ୍ଟ ହୋଇ ଯାଇଥିଲେ । ପାଣ୍ଡବମାନେ ମଧ୍ୟ ଦ୍ରୌପଦୀଙ୍କୁ

ପାଇବାର ଲୋଭକୁ ସମ୍ବରଣ କରିପାରି ନ ଥିଲେ । ବିବାହ ବେଳେ ପାଞ୍ଚଜଣ ବିବାହ ହେବା କଥା ଶୁଣିବାକ୍ଷଣି ଧୃଷ୍ଟଦ୍ୟୁମ୍ନ, ଦ୍ରୁପଦ ବିବ୍ରତ ହୋଇପଡିଲେ । ସଂସ୍କୃତ ପରି ମାତାଙ୍କ ଆଦେଶ ଏହାର ସମାଧାନ କରି ପାରିଲା ନାହିଁ । ବ୍ୟାସଙ୍କ ପୌରାଣିକ କାହାଣୀ ମନକୁ ଗଲା ନାହିଁ । ଶେଷକୁ ଏ ବିଷୟରେ ଦ୍ରୌପଦୀଙ୍କ ମତ ପଚରାଗଲା । ଦ୍ରୌପଦୀ ସେଠାରେ ଉପସ୍ଥିତ ଥିବା ରାଜା, ବ୍ରାହ୍ମଣ, ପୁରୋହିତ, ଋଷି, ମୁନି, ଦେବତା, ପିତା ଓ ମାତାଙ୍କ ସମ୍ମୁଖରେ ନିଜ ଇଚ୍ଛା ପ୍ରକାଶ କରି କହିଲେ -

ତୁମ୍ଭେ ବ୍ରହ୍ମବେତ୍ତା ଗୁରୁ ପରମଗୁରୁ,
ତୁମ୍ଭର ଛାମୁରେ କେ ମିଥ୍ୟା କହି ତ ନ ପାରୁ ।
ପ୍ରତକ୍ଷେ ବିଜୟେ କରିଛନ୍ତି ପିଅର ମାୟେ,
ପାଞ୍ଚେହେଁ ଦିଶନ୍ତି ମୋତେ ଯେକା ଇନ୍ଦ୍ର ପ୍ରାୟେ ।

(ଆଦି ୨ୟ, ପୃ-୯୩୮)

ଅନଳସମ୍ଭୂତା, ତଥା ଅନଳ ସଦୃଶା ଦ୍ରୌପଦୀଙ୍କ ସ୍ପର୍ଶ ଓ ଦର୍ଶନରେ ଅନ୍ୟମାନେ ଜଳିଯିବା ପରି ଦ୍ରୌପଦୀ ନିଜ ଜୀବନ-ଜଞ୍ଜାଳ ଭିତରେ ସବୁବେଳେ ଜଳୁଥିଲେ । ପାଞ୍ଚ ଭାଇଙ୍କ ସମସ୍ୟା ଦୂରକୁ ସମସ୍ତଙ୍କୁ ଏକ ରଜ୍ଜୁରେ ବାନ୍ଧିଦେଲା ପରେ, ତାଙ୍କ ରୂପାନଳରେ ଆକୃଷ୍ଟ ହୋଇ କୌରବ ବୀର ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଜୟଦ୍ରଥ ପତଙ୍ଗ ସଦୃଶ ସେଥିରେ ଝାସ ଦେଲେ । ସେମାନଙ୍କ ଚକ୍ରାନ୍ତରେ ସେ ବନବାସିନୀ ହେଲେ । ସେଥିରେ ବି ତାଙ୍କ ଦୁଃଖ ଗଲାନାହିଁ । ସେଠି ମଧ୍ୟ ତାଙ୍କ ରୂପ ପାଇଁ ଆସିଲେ ଜୟଦ୍ରଥ ଓ ଜଟାସୁର । ଛଦ୍ମ ରୂପ ଧାରଣ କଲେ । ସେଥିରେ ବି ସେ ରୂପାନଳ ଲୁଚି ପାରିଲା ନାହିଁ । ସେତେବେଳେ ଆସିଲେ କୀଚକ । ଏହିପରି ବହୁ ବିପଦର ସମ୍ମୁଖୀନା ହୋଇ ସେ ଶେଷକୁ ଯାଜ୍ଞସେନୀରୁ ବିଘ୍ନସେନୀରେ ପରିଣତ ହୋଇଗଲେ । ଜିଘାଂସା ମନୋବୃତ୍ତି ତାଙ୍କଠାରେ ପ୍ରବଳ ଭାବେ ପ୍ରକାଶିତ ହେଲା । ଯାଜ୍ଞସେନୀର ଅପଭ୍ରଂଶ ରୂପ ଜିଘ୍ନସେନୀ ହୋଇପାରେ ; କିନ୍ତୁ ଏହା ଜିଘାଂସାର ହିଁ ସଂକ୍ଷିପ୍ତ ରୂପ । ଦ୍ରୌପଦୀ ଏକ ସତୀ, ସାଧ୍ୱୀ, ମନୋହାରିଣୀ, ପତିବ୍ରତା ପତ୍ନୀରୁ ଏକ ପ୍ରତିଶୋଧପରାୟଣା ଚଣ୍ଡୀରେ ପରିଣତ ହୋଇଗଲେ । ସାରଳା ଦାସ ଆଉ ପାଦେ ଆଗକୁ ଯାଇ ତାଙ୍କୁ ହେଙ୍ଗୁଳାଇ ବା ହିଙ୍ଗୁଳା କହିବା ସଙ୍ଗେ ସଙ୍ଗେ ସେ ଭୀମ ଓ ଅନ୍ୟାନ୍ୟ ଭାଇମାନଙ୍କୁ ବିଦାରି ଖାଉଥିବାର ଦୃଶ୍ୟ ଉପସ୍ଥାପନ କଲେ । ସାରଳା ଦାସଙ୍କ ମନ ସେତିକିରେ ସନ୍ତୁଷ୍ଟ ହେଲା ନାହିଁ; 'ସ୍ୱର୍ଗାରୋହଣ ପର୍ବ'ରେ ତାଙ୍କ ବିଚାର କରି ତାଙ୍କୁ ମହାଦୋଷୀରେ ପରିଣତ କଲେ । ସେ ଯେତେବେଳେ ତୁଷାର ଛନ୍ନ ହିମାଳୟ ପର୍ବତରେ ଆରୋହଣ କରି ନ ପାରି ପଡିଗଲେ, ସେତେବେଳେ ତାଙ୍କୁ ସହାୟତା ଦେବାପାଇଁ ଆଗେଇ ଆସିଲେ ଭୀମସେନ । ସେ ଦ୍ରୌପଦୀଙ୍କୁ ପ୍ରଶଂସା କରି ଯାହା କହିଲେ, ତା'ର ସାରମର୍ମ ହେଲା, ବ୍ୟାସଙ୍କ ପରି

ମହର୍ଷିଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞରୁ ଯାହାଙ୍କର ଜନ୍ମ, ଯେ ପଞ୍ଚ ପାଣ୍ଡବଙ୍କର ଗୃହଲକ୍ଷ୍ମୀ ହୋଇ ଜୀବନଯାକ ବହୁ ଅର୍ଦ୍ଦୋଳି ସହ୍ୟ କଲେ, ଯିଏ ଶ୍ରୀକୃଷ୍ଣଙ୍କ ଅସୀମ କୃପାର ପାତ୍ରୀ, ଯିଏ ଦ୍ରୁପଦ ରାଜକୁମାରୀ, ଯିଏ ଅପୂର୍ବ ଶୋଭାର ଖଣି, ଯିଏ ପୁତ୍ରବନ୍ତୀ, ପ୍ରିୟବନ୍ତୀ ଓ ରାଜାର ନନ୍ଦିନୀ, ଯାହାଙ୍କ ସହ ଯୁଧିଷ୍ଠିର ଅନେକ ଯାଗ ଯଜ୍ଞ ସମାପନ କରିଥିଲେ, ସେହି ଦ୍ରୌପଦୀ ଆଉ ଉଠି ପାରୁ ନାହାନ୍ତି । ଟିକେ ରହିଯାଅ । ଟିକେ ଅପେକ୍ଷା କର । ପ୍ରିୟବତୀକୁ ତ୍ୟାଗ କରି ଚାଲିଗଲେ ଧର୍ମହାନି ହୁଏ । ଭୀମସେନର ଏସବୁ କଥା ଯୁଧିଷ୍ଠିରଙ୍କୁ ବଧିର ସମ୍ମୁଖରେ ଶଙ୍ଖଧ୍ୱନି ପରି ଶୁଣାଗଲା । ସେ ଦ୍ରୌପଦୀଙ୍କ ବିଚାର କରି କହିବାକୁ ଲାଗିଲେ, ଦ୍ରୌପଦୀ ମହାପାପୀ, ମଧ୍ୟ ଭୁବନରେ କୌଣସି ଧର୍ମ କାର୍ଯ୍ୟ କରିନାହିଁ, ପୁଣ୍ୟ ନଥିଲେ ମଣିଷ ସ୍ୱର୍ଗକୁ ଯାଇପାରେ ନାହିଁ ।

ଏହାପରେ ସେ ଦ୍ରୌପଦୀଙ୍କ ଦୁଇଟି ବିଶିଷ୍ଟ ଦୋଷର ସୂଚନା ଦେଲେ । ପ୍ରଥମ ହେଲା ପାଞ୍ଚପତିଙ୍କ ମଧ୍ୟରେ ସେ ଅର୍ଜୁନଙ୍କୁ ଅଧିକ ଭଲପାଏ । ଦ୍ୱିତୀୟ ଦୋଷ ହେଲା, 'ସୋଦର ପଣରେ କଉରବନ୍ତ ଅମରିଷି' । କେବଳ ଏହି ଦ୍ରୌପଦୀ ପାଇଁ କୁଟୁମ୍ବ ନାଶ ହେଲେ ।

ଦ୍ରୌପଦୀ ଅନଳସମ୍ଭବା, ଶଚୀଦେବୀଙ୍କ ଅଂଶରେ ଜାତ, ଦେବ ଚରିତ୍ର ହେଲେ ହେଁ, ଧର୍ମଦେବ ଯୁଧିଷ୍ଠିରଙ୍କ ପତ୍ନୀ ହେବାର ସୌଭାଗ୍ୟ ଲାଭ କରିଥିଲେ ହେଁ, ଭଗବାନ ଶ୍ରୀକୃଷ୍ଣଙ୍କ ଅନନ୍ୟ ଅନୁଗ୍ରହ ଲାଭ କରିଥିଲେ ହେଁ, ଜୀବ-ଜଞ୍ଜାଳରେ ସେ ଯାଜ୍ଞସେନୀରୁ ଯିଘ୍ନସେନୀ ଅର୍ଥାତ୍ ଜିଘାଂସାର ମୂର୍ତ୍ତିମତୀ ଦେବୀରେ ପରିଣତ ହୋଇଥିଲେ । କର୍ମବଳରେ ମନୁଷ୍ୟ ହୁଏ ମହାନ୍ । ଶୁଭ କର୍ମ ବା ପୁଣ୍ୟ କର୍ମ କଲେ ମଣିଷ ଦେବତାରେ ଯେପରି ପରିଣତ ହୁଏ ସେହିପରି ଅକର୍ମ ଓ ଅଶୁଭ କର୍ମ କଲେ ଦେବତା ଚାଣ୍ଡାଳରେ ପରିଣତ ହୋଇଥାଏ । ଦ୍ରୌପଦୀଙ୍କ ଜୀବନରେ ଏହାର ଜୀବନ୍ତ ପ୍ରତିଫଳନ ଦେଖିବାକୁ ମିଳେ । ସାରଳା ଦାସ ସେଥିପାଇଁ କହିଛନ୍ତି -

ପରିମାଣି ବୁଝିଲେ ସମସ୍ତ ପୁଣ୍ୟବାଟ
ଅବିଚାରେ କାର୍ଯ୍ୟ କଲେ ସକଳ ଧର୍ମ ନଷ୍ଟ ।

**ରଚନା ଶୈଳୀ:** ପୁରାଣୋଚିତ ଶୈଳୀର କଥା କହିବା ସାରଳାଦାସଙ୍କର ମୁଖ୍ୟ ପ୍ରବୃତ୍ତି । ପାଠକମାନଙ୍କ ମନୋରଞ୍ଜନ ପାଇଁ ସେ କଥା କହିବାର ଦୁଇଟି ଦିଗ ସ୍ଥିର କରିଥିଲେ । ପ୍ରଥମଟି ହେଲା ମୂଳ କଥାକୁ ପରିବର୍ତ୍ତିତ କରି ନୂଆ ରୂପ ଦେବା ଓ ଦ୍ୱିତୀୟଟି ହେଲା ନୂଆ କଥାର ସଂଯୋଜନା କରିବା । ଏହି ଦୁଇ ଦିଗ ବା ପ୍ରବୃତ୍ତିର ସଂଯୋଗ ସୂତ୍ର ହେଲା ତାଙ୍କ ରଚନା ଶୈଳୀ । ସେ ପୁରାଣ ଶୈଳୀ ମାଧ୍ୟମରେ ତାଙ୍କ ବକ୍ତବ୍ୟକୁ ପ୍ରକାଶ କରୁଥିବାରୁ କାବ୍ୟୋଚିତ ବର୍ଣ୍ଣନା ଅପେକ୍ଷା ପ୍ରକଥନାତ୍ମକ (Narrative) ଶୈଳୀକୁ ବିଶେଷ ଭାବେ ଗ୍ରହଣ କରିଥିଲେ । ଭାବକୁ ସ୍ପଷ୍ଟ ତଥା ସାଧାରଣ

ପାଠକର ବୋଧଗମ୍ୟ କରିବାପାଇଁ ସେ ତାଙ୍କ ମହାଭାରତରେ ବହୁ ପ୍ରକାର କଥନ-ଭଙ୍ଗୀ ପ୍ରୟୋଗ କରିଥିଲେ । ସେ ପ୍ରାୟ ସମ୍ବାଦ-ଶୈଳୀକୁ ତାଙ୍କ ବିଷୟବସ୍ତୁ ଉପସ୍ଥାପନା କରିବାର ମୁଖ୍ୟ ଉପାଦାନ ରୂପେ ଗ୍ରହଣ କରିଥିଲେ ହେଁ, ଏହି ସମ୍ବାଦ ମଧ୍ୟରେ ସେ ତାଙ୍କ ବର୍ଣ୍ଣ୍ୟ ବସ୍ତୁକୁ ପ୍ରକାଶ କଲାବେଳେ ସେ ଯେଉଁ ସବୁ କୌଶଳ ଅବଲମ୍ବନ କରିଥିଲେ, ସେ ସବୁକୁ ନିମ୍ନାଙ୍କିତ କେତେକ ଶୀର୍ଷକ ମାଧମରେ ବିଚାର କରିବା ପାଇଁ ପ୍ରଚେଷ୍ଟା କରାଯାଇଛି ।

(କ) ବସ୍ତୁ-ବିନ୍ୟାସ

(ଖ) ଭାଷା

(ଗ) ସମ୍ବାଦ

(ଘ) ଛନ୍ଦ-ଯୋଜନା

(ଙ) ବର୍ଣ୍ଣନା

(ଚ) ପାଣ୍ଡିତ୍ୟ-ପ୍ରଦର୍ଶନ

(ଛ) ଅଳଙ୍କାର ବିଧାନ

(ଜ) ଜ୍ୟୋତିଷ ବର୍ଣ୍ଣନା

(ଝ) ସ୍ତୋତ୍ର

**(କ) ବସ୍ତୁ ବିନ୍ୟାସ :** ଓଡିଆ ଭାଷାର ଆଦିକବି ସାରଳା ଦାସ ତିନୋଟି ଗ୍ରନ୍ଥ ରଚନା କରିଥିଲେ - **ରାମାୟଣ, ମହାଭାରତ** ଓ **ଚଣ୍ଡୀ ପୁରାଣ** । ଏଥିରେ ଶେଷ ଗ୍ରନ୍ଥ ବ୍ୟତୀତ ଅନ୍ୟ ଗ୍ରନ୍ଥରେ ପୁରାଣ ଯୋଡା ନ ହୋଇଥିଲେ ବି ତାଙ୍କର ପ୍ରତ୍ୟେକ ଗ୍ରନ୍ଥ ପୁରାଣ-ପ୍ରବୃତ୍ତିକୁ ଗ୍ରହଣ କରିଥିଲା । ସଂସ୍କୃତ ରାମାୟଣର ବିଭାଜନ ହୋଇଥିଲା ବିଭିନ୍ନ କାଣ୍ଡରେ । ସାରଳା ଦାସଙ୍କ ରାମାୟଣରେ ଏହି କାଣ୍ଡ ବିଭାଜନ ଶୈଳୀକୁ ଦେଖିବାକୁ ମିଳେ ନାହିଁ । ସେହିପରି ସଂସ୍କୃତରେ **ସପ୍ତଶତୀ ଚଣ୍ଡୀ** ଉତ୍ତମ ପୁରୁଷ, ପ୍ରଥମ ପୁରୁଷ ଓ ମଧ୍ୟମ ପୁରୁଷରେ ବିଭାଜିତ ହୋଇଥିଲେ ହେଁ **ଚଣ୍ଡୀପୁରାଣ**ରେ ଏହି ବିଭାଜନ ଗୃହୀତ ହୋଇନାହିଁ । ସଂସ୍କୃତ ମହାଭାରତ ପର୍ବ ଓ ଉପପର୍ବରେ ବିଭାଜିତ ହୋଇଥିଲା । ସାରଳା ଦାସ ଉପପର୍ବରେ ବିଭାଜନକୁ ପରିତ୍ୟାଗ କରି ଏହା ସ୍ଥାନରେ ପଟଳ ଓ ସଭା ବିଭାଜନକୁ ଗ୍ରହଣ କରଥିଲେ । ଆଦିପର୍ବରେ ଏପରି ନାମ ସବୁ ମିଳୁଥିବା ବେଳେ ପରବର୍ତ୍ତୀ ପର୍ବ ସବୁରେ ବିଭାଜନର କୌଣସି ନାମ ନାହିଁ । ବେଳେ ବେଳେ କବି କଥା ମଝିରେ ନିଜ ସଂପର୍କରେ କିଛି କହି ବା କୌଣସି ଦେବାଦେବୀଙ୍କୁ ବନ୍ଦନା କଲାପରେ ନିଜ ନାମକୁ ସଂଯୋଗ କରିଛନ୍ତି । ଏପରି ଉଲ୍ଲେଖରୁ ବେଳେ ବେଳେ ବିଭାଜନର ଭ୍ରମ

ସୃଷ୍ଟି ହେଉଥିଲେ ହେଁ ଏହାର କୌଣସି ଶୃଙ୍ଖଳିତ ନିୟମ ଦେଖିହୁଏ ନାହିଁ । ତେବେ ସଂସ୍କୃତ ମହାଭାରତ ପରି ସାରଳା ଦାସ ପର୍ବ ବିଭାଜନକୁ ଗ୍ରହଣ କରିଛନ୍ତି । ଏଥିରେ ଥିବା ପଟଳ, ଖଣ୍ଡ ବା ସଭା ବିଭାଜନକୁ କବି ହୁଏତ ପ୍ରଥମେ ରଖି ପରେ ତ୍ୟାଗ କରିଥିଲେ ବା ଏହା ଲିପିକାରଙ୍କ ସଂଯୋଜନା ।

ମହାଭାରତ ବିଭିନ୍ନ ପର୍ବରେ ବିଭାଜିତ ହୋଇଥିଲେ ବି ଭାଗବତ ଓ ଦେବୀ ଭାଗବତ ସ୍କନ୍ଧରେ ବିଭକ୍ତ । ବିଷ୍ଣୁ ପୁରାଣ ଅଂଶ , ଶିବ ପୁରାଣ ସଂହିତାରେ , ବ୍ରହ୍ମାଣ୍ଡ ପୁରାଣ ପାଦରେ, ନାରଦ, ବାୟୁ, ମାର୍କଣ୍ଡେୟ, ଅଗ୍ନି, ବରାହ, ବାମନ, ମତ୍ସ୍ୟ ଓଗରୁଡ ପୁରାଣ ଅଧ୍ୟାୟରେ, ପଦ୍ମ, ବ୍ରହ୍ମବୈବର୍ତ୍ତ ଓ ସ୍କନ୍ଦ ପୁରାଣ ଖଣ୍ଡରେ, ଭବିଷ୍ୟ ଓ ହରିବଂଶ ପୁରାଣ ମହାଭାରତ ପରି ପର୍ବରେ ବିଭାଜିତ ହୋଇଥିଲା । ଏସବୁ ବିଭାଜନର କୌଣସି ନିର୍ଦ୍ଦିଷ୍ଟ ଅନୁପାତ ଦେଖିବାକୁ ମିଳେନାହିଁ । ଏପରିକି କୌଣସି କୌଣସି ପୁରାଣର ସ୍କନ୍ଧ ବା ଖଣ୍ଡ ବିଭାଜନ ଅନ୍ୟ କେତେକ ପୁରାଣଠାରୁ ମଧ ବଡ଼ । ଭାଗବତ ପୁରାଣର ଦଶମ ସ୍କନ୍ଧ ଓ ପଦ୍ମ ପୁରାଣର ଉତ୍ତର ଖଣ୍ଡ ବାୟୁ, ଗରୁଡ ଓ ବାମନ ପୁରାଣଠାରୁ ବହୁ ବଡ । ସାରଳା ଦାସଙ୍କ ସଭା ବା ପଟଳ ବିଭାଜନର କୌଣସି ଅନୁପାତ ନାହିଁ । ପଞ୍ଚମ ସଭା ମୋଟେ ନଅ ପୃଷ୍ଠା ହୋଇଥିବା ବେଳେ ଷଷ୍ଠ ସଭାର ପୃଷ୍ଠା ସଂଖ୍ୟା ହେଲା ଏକାବନ ।

ପୁରାଣର ପ୍ରତିପାଦ୍ୟ ବସ୍ତୁରେ ସଙ୍ଗଠନ ଓ ସମ୍ବନ୍ଧର ଅଭାବ ଥିବାରୁ ଗୋଟିଏ କଥାର ବହୁରୂପ ଦେଖିବା ଏକ ସାଧାରଣ କଥା । ସାରଳା **ମହାଭାରତ**ରେ ଏହାର ବହୁ ଉଦାହରଣ ଦେଖିବାକୁ ମିଳେ । ସହଦେବଙ୍କ ଜନ୍ମକଥା ଏହାର ଏକ ଉଦାହରଣ । ଅଗସ୍ତି ମୁନି ନକୁଳ ଓ ସହଦେବଙ୍କ ପିତାରୂପେ ଅଶ୍ୱିନୀକୁମାରଙ୍କର ସ୍ପଷ୍ଟ ଉଲ୍ଲେଖ କରିଥିଲେ ହେଁ ଅନ୍ୟତ୍ର ସହଦେବଙ୍କୁ ପଣ୍ଡୁଙ୍କ ପୁତ୍ର ରୂପେ ଗ୍ରହଣ କରାଯାଇଛି । ପୁରାଣର ବକ୍ତାଭାବେ କୌଣସି ଋଷି ଓ ଶ୍ରୋତାଭାବେ ଋଷିଙ୍କ ଶିଷ୍ୟ ବା କୌଣସି ପ୍ରସିଦ୍ଧ ରାଜାକୁ ଗ୍ରହଣ କରାଯାଇଥାଏ । ସାରଳା **ମହାଭାରତ**ର ବକ୍ତା ହେଉଛନ୍ତି ଅଗସ୍ତି ମୁନି ଓ ଶ୍ରୋତା ହେଉଛନ୍ତି ବୈବସ୍ୱତ ମନୁ । ପ୍ରସଙ୍ଗ କ୍ରମେ ଅନ୍ୟ ବକ୍ତା ଓ ଶ୍ରୋତା ମଧ ରହିଛନ୍ତି । ଶ୍ରୋତାଙ୍କ ପ୍ରଶ୍ନ ସାଧାରଣତଃ କଥାବସ୍ତୁକୁ ନିୟନ୍ତ୍ରଣ କରେ । ଫଳରେ ମୂଳ କଥାର କ୍ରମ ରକ୍ଷିତ ହୋଇପାରିନାହିଁ । ଗୋଟିଏ କଥା କହୁଁ କହୁଁ ମଝିରେ ଆଉ ଗୋଟିଏ କଥା ଆରମ୍ଭ ହୋଇଯାଇଛି । ପୁଣି ପ୍ରଶ୍ନୋତ୍ତର ଛଳରେ ଅତୀତ କଥାର ଅବତାରଣା କରାଯାଇଛି । ଏହିସବୁ ବିଚ୍ୟୁତକୁ ବିଚାର କଲେ **ମହାଭାରତ**ର ବସ୍ତୁ-ବିନ୍ୟାସରେ ସ୍ୱାଭାବିକତା, ନିୟମିତତା ଓ କ୍ରମିକତା ପରିବର୍ତ୍ତେ ବିଶୃଙ୍ଖଳତା ହିଁ ବିଶେଷ ଭାବେ ଦେଖିବାକୁ ମିଳିଥାଏ ।

**(ଖ) ଭାଷା :** ଭାବ ପ୍ରକାଶର ମାଧମ ହେଲା ଭାଷା । ଏହା କବିର ମନ କଥାକୁ ପାଠକ ସମ୍ମୁଖରେ ଉପସ୍ଥାପିତ କରିଥାଏ ଏବଂ ଏହି ଭାଷା ପ୍ରୟୋଗରୁ ଜଣେ

କବିଙ୍କୁ ଅନ୍ୟ ଜଣେ କବିଙ୍କଠାରୁ ଅଲଗା କରିହୁଏ । ପୁଣି ଭାଷା ହେଉଛି କବିଙ୍କ ବ୍ୟକ୍ତିତ୍ୱର ପ୍ରକାଶକ । ସାରଳା ଦାସଙ୍କ ଭାଷା ବା ପ୍ରୟୋଗକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ସେତେବେଳେ ଓଡିଆ ଭାଷା ତା'ର ଅପଭ୍ରଂଶ ରୂପକୁ ପରିତ୍ୟାଗ କରି ତତ୍ସମ ଓ ତଦ୍ଭବ ଶବ୍ଦମୁଖୀ ହୋଇସାରିଥିଲା । ଏକ ସମୃଦ୍ଧ ଭାଷାର ସମସ୍ତ ଲକ୍ଷଣ ଏ ଭାଷାରେ ପ୍ରକାଶିତ ହେଉଥିଲା । ଏ ଦୃଷ୍ଟିରୁ ସାରଳା ଦାସଙ୍କ ଭାଷାରେ ତତ୍ସମ ଓ ତଦ୍ଭବ ଶବ୍ଦାବଳୀର ଅଧିକ ପ୍ରୟୋଗ ଦେଖିବାକୁ ମିଳିନଥାଏ ।

**ତତ୍ସମ:** ଓଡିଆ ଭାଷାର ସମୃଦ୍ଧି ସଂସ୍କୃତ ଭାଷା ଉପରେ ଆଧାରିତ । ସାରଳା ଦାସ ତାଙ୍କ **ମହାଭାରତ**ରେ ସଂସ୍କୃତ ମହାଭାରତର ପ୍ରତ୍ୟେକ ନାମକୁ ମୂଳ ରୂପରେ ହିଁ ଗ୍ରହଣ କରିଥିଲେ । ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଦୁର୍ଯ୍ୟୋଧନ, ଦୁଃଶାସନ, କୁନ୍ତୀ, ମାଦ୍ରୀ ପ୍ରଭୃତି ନାମ ଏହାର ପ୍ରମାଣ । ସ୍ଥାନ ନାମର ଉଲ୍ଲେଖ କଲାବେଳେ ମଧ ସାରଳା ଦାସ ବହୁ ସ୍ଥଳରେ ମୂଳ ନାମରୁ ବିଚ୍ୟୁତ ହୋଇନାହାନ୍ତି । ଉଦାହରଣ ପାଇଁ ଇନ୍ଦ୍ରପ୍ରସ୍ଥ, ପାଞ୍ଚାଳ, ହସ୍ତିନାପୁର, ଅଯୋଧ୍ୟା ପ୍ରଭୃତି ନାମକୁ ଗ୍ରହଣ କରାଯାଇପାରେ । ତେବେ ସଂସ୍କୃତ ମହାଭାରତର ବହୁ ବ୍ୟକ୍ତି ଓ ସ୍ଥାନର ନାମକୁ ସାରଳା ଦାସ ପରିତ୍ୟାଗ କରିଛନ୍ତି । ବହୁ ନୂଆ ନାମର ସଂଯୋଜନା କରିଛନ୍ତି ଓ କେତେକ ସ୍ଥାନରେ ଓଡିଆ ଉଚ୍ଚାରଣ ଅନୁଯାୟୀ ନାମକରଣ କରିଛନ୍ତି । ସାରଳା ମହାଭାରତରେ କବି ଦେବଦେବୀଙ୍କୁ ବନ୍ଦନା କଲାବେଳେ ତତ୍ସମ ଶବ୍ଦାବଳୀର ଆଧିକ୍ୟ ଦେଖିବାକୁ ମିଳିଥାଏ । ଉଦାହରଣ ରୂପେ 'ସ୍ୱର୍ଗାରୋହଣ ପର୍ବ'ରୁ ଅଗ୍ନି, ଇନ୍ଦ୍ର ବା ଯମ ବନ୍ଦନା ପ୍ରଭୃତିକୁ ଦେଖାଯାଇପାର ।

| | |
|---|---|
| ଯମ ବନ୍ଦନା | ସ୍ୱାମୀ ! କେଶ ଉର୍ଦ୍ଧ୍ୱ ବନ୍ଧନ ଘନ ଉର୍ଦ୍ଧ୍ୱ ଦନ୍ତ<br>ଉର୍ଦ୍ଧ୍ୱ ଚରଣେ ହୋଯେ ଉର୍ଦ୍ଧ୍ୱ ଯାର ରେତା । |
| ମାଧବ ବନ୍ଦନା : | ବାଳ ବୃଦ୍ଧ ତରୁଣ ତିନିମୂର୍ତ୍ତି ଦେଖି<br>ପରଲୋକ ବାନ୍ଧବ ସେହି ଅଟଇ ସାକ୍ଷୀ । |
| କୋଠାରୀ | ଯୁଗ ଯୁଗାନ୍ତରେ ତୁମ୍ଭେ ଅହର୍ନିଶି ଯୁବା |
| ଦେବୀ ବନ୍ଦନା : | ଜଗଜ୍ଜନ ମୋହିନୀ ଗୋ ଘେନ ମୋର ସେବା ।<br>ତାରିଣୀ କାରେଣୀ ଗୋ ହୁଂକାରେ ନରଭୋଜୀ<br>ମାତାଙ୍ଗୀ ମତୁଆଳୀ ଗୋ କେଳି ଅଇଶ୍ୱର୍ଯ୍ୟ । |
| ହିଙ୍ଗୁଳା ଦେବୀ : | ଲୋହିତ ବର୍ଣ୍ଣ ସୁନ୍ଦର ବିଜୟେ ନିର୍ମଳା<br>କୃପାଜଳ ନନ୍ଦିନୀ ଗୋ ପ୍ରତକ୍ଷେ ହିଙ୍ଗୁଳା । ପୃ -୪୭ |
| ଇନ୍ଦ୍ରସ୍ତୁତି | ଅନଳ ବଜ୍ରସୂଚୀ ଯାହାର ତୀକ୍ଷବାଣ<br>ଆର୍ଦ୍ରୀବଳ୍ଲୀ ଧନୁ ଯାହାର ଆମଣ୍ଡନ । |

x x x

ସୁର ସିଦ୍ଧ ନାଗ ରକ୍ଷଣ ଦେବରାଜା
ଯାଗଯଗ୍ୟଂ ହୋମ ମଙ୍ଗଳେ ତୋତେ ପୂଜା । ପୃ -୬୫

ଶ୍ରୀକୃଷ୍ଣ ବନ୍ଦନା : ଜୟତୁ ଦାମୋଦର କେଶବ ତୋର ନାମ
ଗଳିତ ସୁଧାରସ ସଞ୍ଚିତ ଚଉଧର୍ମ
ଜୟତୁ ଦାମୋରଦ କେଶବ ତୋର ନାମ
କେୟୁର କଙ୍କଣ ଯେ ବିବିଧ ହାରମାନ । ପୃ - ୭୨

ରୂପ ବର୍ଣ୍ଣନାରେ ମଧ୍ୟ ତତ୍ସମ ଶବ୍ଦାବଳୀର ବହୁଳତା ପରିଲକ୍ଷିତ ହୋଇଥାଏ ।

ଦ୍ରୌପଦୀ ରୂପ ବର୍ଣ୍ଣନା ଭ୍ରୂଲତା ଶୋଭାବନ ଜାଣି ମଦନର ଚାପ
ଦେଖିଲେ ମନ ତ୍ରାସ କରଇ କନ୍ଦର୍ପ

x x x

ନାସାଫୁଲ ତିଳ ଜାଣି ମାଣିକ୍ୟ ଦନ୍ତସବୁ । ଇତ୍ୟାଦି ।

ଏହି ସବୁ ଉଚ୍ଚାରଣର ପ୍ରାୟ ପ୍ରତ୍ୟେକ ଶବ୍ଦ ସଂସ୍କୃତରୁ ଗୃହୀତ । ଅଥଚ ସଂସ୍କୃତ ଭାଷା ବ୍ୟାକରଣ ନିୟମ ଏଥିରେ ପାଳିତ ନହୋଇ ଥିଲେ ହେଁ ସଂସ୍କୃତମୟତା ଏହାର ବୈଶିଷ୍ଟ୍ୟ ।

**ତଦ୍ଭବ :** କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ତତ୍ସମ ଶବ୍ଦାବଳୀର ବହୁଳତା ପରିଲକ୍ଷିତ ହେଉଥିଲେ ହେଁ, ଏ ସବୁ ଆଉ ସଂସ୍କୃତ ବ୍ୟାକରଣର ନିୟମରେ ନିୟନ୍ତ୍ରିତ ହେଉ ନ ଥିଲା । ଓଡିଆ ଭାଷାର ପ୍ରକୃତି ଓ ପ୍ରବୃତ୍ତିରେ ଏ ସବୁ ନୂଆ ରୂପ ଓ ନୂଆ ଜୀବନ ପାଇଥିଲା । ଏଥିରୁ ବେଶି ଭାଗ ତଦ୍ଭବ ରୂପରେ ହିଁ ପ୍ରକାଶିତ ହେଉଥିଲା ।

ବୌଦ୍ଧ ଧର୍ମର ଆବିର୍ଭାବ ପରେ ସମସ୍ତ ଭାରତବର୍ଷରେ ଲୋକ ଭାଷାର ମହତ୍ୱ ବୃଦ୍ଧି ପା଼ଇଥିଲା । ବୌଦ୍ଧମାନେ ବେଦ ଓ ବ୍ରାହ୍ମଣ ବିରୋଧୀ ଥିଲେ । ଏହି ବିଦ୍ୱେଷର ପରିଣାମ ହେଲା ବ୍ରାହ୍ମଣଙ୍କ ଭାଷା ସଂସ୍କୃତର ତ୍ୟାଗ । ବୌଦ୍ଧମାନେ ଏ ଦେଶର ଭାଷା ବ୍ୟବହାରରେ ଯେଉଁ ନୂତନ ପରମ୍ପରା ସୃଷ୍ଟିକଲେ, ତାହା ପରବର୍ତ୍ତୀ ଯୁଗରେ ଜୈନ, ସିଦ୍ଧ ଓ ସନ୍ଥମାନଙ୍କୁ ପ୍ରଭାବିତ କରିଥିଲା । ବୌଦ୍ଧମାନେ ପାଲିଭାଷାକୁ ଗ୍ରହଣ କଲାପରି, ଜୈନମାନେ ପ୍ରାକୃତକୁ, ସିଦ୍ଧ, ସନ୍ଥ ଓ ନାଥମାନେ ଅପଭ୍ରଂଶକୁ ଗ୍ରହଣ କଲେ ।

[illegible] ନିକ ଭାରତୀୟ ଭାଷାର ବିକାଶ ହେଲାବେଳକୁ ଦେଶରେ ଭାଷା ବ୍ୟବହାରରେ ଅନ୍ୟ ଗୋଟିଏ ଧାରା ଦେଖିବାକୁ ମିଳେ । ଲୋକେ ଅପଭ୍ରଂଶ ପରେ ପୁଣି ଥରେ ସଂସ୍କୃତାଭିମୁଖୀ ହୋଇଯାଇଥିଲେ । ସଂସ୍କୃତ ଭାଷା ବ୍ୟବହାର କରିବା ଆଉ

ସମ୍ଭବ ନ ଥିଲା କିନ୍ତୁ ଶବ୍ଦାବଳୀକୁ ଉପେକ୍ଷା କରିବା ସମ୍ଭବ ନ ଥିଲା । ତେଣୁ ସେମାନେ ତତ୍ସମ ଶବ୍ଦ ସହିତ ତଦ୍ଭବ ଶବ୍ଦାବଳୀର ବହୁଳ ବ୍ୟବହାର କରିଥିଲେ ।

ସଂସ୍କୃତ ସମାସ ବହୁଳ ଭାଷା ହୋଇଥିବା ବେଳେ ଅନ୍ୟାନ୍ୟ ଭାରତୀୟ ଭାଷା ପରି ଓଡିଆ ବ୍ୟାସ ପ୍ରଧାନ ଭାଷା ଥିଲା । ସେଥିପାଇଁ ସଂସ୍କୃତକୁ ଗ୍ରହଣ କରିବା ଓଡିଆ ଭାଷାର ପ୍ରକୃତିର ବିରୁଦ୍ଧାଚରଣ କରୁଥିଲା । ସଂସ୍କୃତର ଯେଉଁସବୁ ଶବ୍ଦ ଓଡିଆରେ ବ୍ୟବହୃତ ହେଲା ସେ ସବୁରେ ସଂସ୍କୃତ ବ୍ୟାକରଣ ଲିପି ନିୟମ ଓ ଶୃଙ୍ଖଳାକୁ ଭ୍ରୂକ୍ଷେପ କରାଗଲା ନାହିଁ । ତେଣୁ ତତ୍ସମ ଶବ୍ଦାବଳୀ ବି ଓଡିଆ ରୂପରେ ପ୍ରକାଶ ଲାଭ କଲା । ଅନେକ ସ୍ଥଳରେ ତତ୍ସମ ଶବ୍ଦାବଳୀକୁ ତଦ୍ଭବ ରୂପରେ ବ୍ୟବହାର କରାଗଲା । ଉଦାହରଣ ରୂପେ ନିମ୍ନ କେତେକ ଶବ୍ଦକୁ ନିରୀକ୍ଷଣ କରାଯାଇପାରେ :

ଦ୍ରଶନ-ଦର୍ଶନ, ଶାହାସ୍ତ୍ର-ଶାସ୍ତ୍ର, ସାହାନ-ସ୍ନାନ, ମାଧେବ- ମାଧବ, ଦରଶନ-ଦର୍ଶନ, ଯୁଦ୍ଧେଷ୍ଟିର-ଯୁଧିଷ୍ଠିର, ଧୃଶାସନ-ଦୁଃଶାସନ, ଭୀଭୀଷଣେ-ବିଭୀଷଣ, ଦ୍ରିଯୋଧନ-ଦୁର୍ଯ୍ୟୋଧନ ଇତ୍ୟାଦି :

ସାରଳା ମହାଭାରତର ଅଧ୍ୟୟନ ବା ଅନୁଶୀଳନ କଲାବେଳେ କବିଙ୍କ ପ୍ରଯୁକ୍ତ କେତେକ ପ୍ରାଚୀନ ପ୍ରୟୋଗ ପ୍ରତି ପାଠକର ଦୃଷ୍ଟି ଆକୃଷ୍ଟ ହୋଇଥାଏ । ଏହି ସବୁ ପ୍ରାଚୀନ ଶବ୍ଦାବଳୀ ସାରଳା ଦାସଙ୍କୁ ଅନ୍ୟ କବିଙ୍କଠାରୁ ସ୍ୱତନ୍ତ୍ର କରିବାରେ ସାହାଯ୍ୟ କରେ । 'ସ୍ୱର୍ଗାରୋହଣ ପର୍ବ'ରୁ ଏହାର କେତେକ ଉଦାହରଣ ପ୍ରଦାନ କରାଗଲା - କଥୟନ୍ତି ମହାତମା, ଜନନ୍ତ ହକାରି, କହଇ ତୁମ୍ଭନ୍ତ ଯେବେ, କ୍ଷମା କରିବାକ, ମୋତେ ଅଜ ହୁଂ ତୁମ୍ଭେ, ଆମ୍ଭନ୍ତ ଛାଡି ନୃପତି କାହିଁକି କରିବୁ ପବନ, ପରୀକ୍ଷକୁ ରାଜ୍ୟ ଦିଲେ ଦେବଇନ୍ଦ୍ର ତହିଁ ପାଳଟି ଭଲେ, କିରିଷାଣ, ଘଇକଇଂ, ଶୁଣସି, ଗ୍ରାହିତ, ଭୟେଣ ପଣିତ ନୂଆରିଲା, ଫାଶୀ ଫେଇଦେଲେ, ସାଧୁକୁ ବଳ କୟେ, ପରଚ୍ଛାଏ ଓ ଛ ଲୋକେ ବଡାଇ ଅନିର୍ଯ୍ୟାପ, କେବଣ ପାପକ୍ଷଣେ, ବିଭାକଇଂ ଉଦିଯୋଗ କଲେକ, ପାତାଙ୍ଗ, ଇତ୍ୟାଦି ।

ସାଧାରଣତଃ ସାରଳା ଦାସଙ୍କ 'ଣ' ବା 'ଏଣ' 'କ' 'ଅକ' 'ଏକ' ପ୍ରଭୃତି ପ୍ରତି ଅତ୍ୟଧିକ ମୋହ ଥିବା ହେତୁ କବିଙ୍କ ଅଜାଣତରେ ଏହା ତାଙ୍କ ବର୍ଣ୍ଣନାରେ ପ୍ରବେଶ କରିଛି । ଫଳରେ ତାଙ୍କ ବକ୍ତବ୍ୟ, କେତେବେଳେ 'ଣ' ମୟ ହୋଇଯାଇଛି ତ କେତେବେଳେ 'କ'ମୟ ହୋଇଯାଇଛି ।

କବି ତାଙ୍କ ଇଷ୍ଟଦେବୀ ଦୁର୍ଗାଙ୍କ ବନ୍ଦନା କଲାବେଳେ (ଆଦି, ପୃ.୬୧) 'ଡାକେଣୀ' 'କ୍ଷେପେଣୀ' 'ରଣରଙ୍ଗେଣ' 'ଭୋଳା' 'ଯୋଗେଣ ଯୋଗେଶ୍ୱରୀ' 'ଗୋସାବଣୀ' 'ଆପାଦ ଖଣ୍ଡଣୀ' ପ୍ରଭୃତି ଶବ୍ଦ ପ୍ରୟୋଗ କଲାପରି କୋଠାରୀ ଦେବୀ ବନ୍ଦନା କଲାବେଳେ 'ତାରିଣୀ' 'କାରେଣୀ' 'ରୋଧିରେଣ ଭୋଳି' ପ୍ରଭୃତି ଶବ୍ଦର

ବ୍ୟବହାର କରି 'ଣ' ପ୍ରତି ନିଜର ଅନୁରାଗ ପ୍ରକାଶ କରିଛନ୍ତି ।

'ଣ' ପରି 'କ' ଧ୍ୱନି ପ୍ରତି ମଧ ସାରଳା ଦାସଙ୍କ ବିଶେଷ ଆଗ୍ରହ ଥିଲା । ଏହି ଆଗ୍ରହ 'କ' ଧ୍ୱନିଯୁକ୍ତ ବିଭିନ୍ନ ଶବ୍ଦର ସମାହାରରେ ମଧ ପ୍ରକାଶ ପାଇଛି ।

୧। ସ୍ୱାମୀ ଅଗ୍ନି ଦେବତାୟେ ଯେହା ହାଦେ ଦେଇଛନ୍ତି **ମୁକୁ** ।

୨ । ପଞ୍ଚସ୍ତରୀ ତାଳ ହୋଇଲା **ଲାଗିଲାକ ଶିଖା** ।

୩ । ଏତେ କହି କହୁଁ **ଗଲେକ** ବହତି ସମସ୍ତ । (ସ୍ୱର୍ଗା ପୃ-୩୪)

ଅଗ୍ନି ଦେବତାୟେ ବ୍ରାହ୍ମଣେକ ହୋଇ
ଶୁଣିଣ ଯୁଜେଷ୍ଟି ଦେବ କଲେକ ସନମତ । (ସ୍ୱର୍ଗା ପୃ-୪୨)
ପଚ୍ଛିମ କଇଂ ମୂରତି ବହଇ ଧବଳାଙ୍ଗୀ
ପ୍ରଶୁ କଇଂ ଦେଖି ବିନୟେ ଶରଣ ।(ସ୍ୱର୍ଗା ପୃ- ୪୫)

'ଣ' ଓ 'କ' ପରି 'ନ୍ତ' 'ନ୍ତି' 'ନ୍ତା' ସାରଳା ଦାସଙ୍କ ଶୈଳୀକୁ ପ୍ରଭାବିତ କରିଥିଲା - 'ରଖନ୍ତା' 'ଦ୍ୟନ୍ତା' ସବୁନ୍ତି' 'ଦେବତାନ୍ତା' ପ୍ରଭୃତି । ସେହିପରି 'ସି' ଓ 'ୟେ' ପ୍ରଭୃତିର ପ୍ରୟୋଗ ମଧ ପ୍ରାଚୀନତାର ନିଦର୍ଶନ ।

ଏ ସହସ୍ରମାନଙ୍କୁ କପିଳାସ ନିଅସି
ଅଗ୍ନି ଦେବତାୟେ ବ୍ରାହ୍ମଣେକ ହୋଇ ।

ଏହିପରି ସାରଳା ମହାଭରତରେ ପ୍ରାୟ ପ୍ରତ୍ୟେକ ପଂକତିରେ କୌଣସି ନା କୌଣସି ପ୍ରାଚୀନ ପ୍ରୟୋଗ ପାଠକର ଦୃଷ୍ଟିଗୋଚର ହୋଇ ଥାଏ । କେବଳ ଭାଷାର ପ୍ରାଚୀନତା ନୁହେଁ, ଶବ୍ଦକୁ ଉପଯୁକ୍ତ ସ୍ଥାନରେ ପ୍ରୟୋଗ କରି ବାକ୍ୟରେ ଅନୁପ୍ରାସ ଯୋଜନା କରି ମଝିରେ ମଝିରେ ଯତିପାତ ରଖି କବି ନିଜ ଭାଷାର ସୌନ୍ଦର୍ଯ୍ୟକୁ ଆହୁରି ବୃଦ୍ଧି କରିଥିଲେ ।

(୧) ତୀର୍ଥବାସେ ବାନପ୍ରସ୍ଥେ ହୋଇବ ଅଶକତ

(୨) ଅସୁରେ ହରିନେମେ ତୁମ୍ଭର ତହୁଁ ଦେବ ସହସ୍ରନ୍ତ

(୩) ଅଇଲେ ଅନେକ ଧର୍ମ ରହିଲେ ଅନେକ ଧର୍ମନାଶ

(୪) ଆସଗୋ ଦ୍ରୋପତୀ ତୁମ୍ଭେ ଅନ୍ୟକୁ ନକର ଆଶ

(୫) ପର୍ବତ ପରେ କରିବ ଅନେକ ଫଳମୂଳ ଗ୍ରାସ

(୬) କେ କାହାର ସୋଦରରେ କେ କାହାର ଭାରିଯା

(୭) କେ କାହାର ପୁତ୍ର ବନ୍ଧୁ କେ କାର ଆମୁଜା

ସାରଳାଙ୍କ ଭାଷାର ଶୈଳୀର ସବୁଠାରୁ ବଡ କଥା ହେଉଛି ତାଙ୍କ କହିବା ଭଙ୍ଗୀର ପ୍ରବାହ । ପ୍ରଶ୍ନ ପଚାରି, ଉତ୍ତର ଦେଇ, ସମସ୍ୟାର ସମାଧାନ କରି, କଥାକୁ ଗୋପ୍ୟ କରିବାକୁ ପରାମର୍ଶ ଦେଇ, ଦୁଃଖ ପ୍ରକାଶ କରି, ସୁଖରେ ବିହ୍ୱଳ ହୋଇ, ନିଜ ନିଜ ମଧ୍ୟରେ ବିଚାର ବିମର୍ଶ କରି, ଉପଦେଶ ଛଳରେ ନୂଆ ନୂଆ ଦୃଷ୍ଟାନ୍ତ ପ୍ରଦାନ କରି, କେତେବେଳେ ନୀତି କଥା ପୁଣି କେତେବେଳେ ଦର୍ଶନ କଥା ଶୁଣାଇ କେତେବେଳେ ପାଠକକୁ ସମ୍ବୋଧନ କରି, କେତେବେଳେ ପଣ୍ଡିତଙ୍କୁ ଉଲ୍ଲେଖ କରି ତାଙ୍କର ଗ୍ରନ୍ଥକୁ ଏପରି ଗତିଶୀଳ କରିପାରିଛନ୍ତି ଯେ ଶ୍ରୋତା ସବୁବେଳେ ଉତ୍କଣ୍ଠିତ ଓ ଉଦ୍‌ଗ୍ରୀବ ହୋଇ ସାରଳା ଦାସଙ୍କ କଣ୍ଠରୁ ଆହୁରି ଦି'ପଦ ଶୁଣିବା ପାଇଁ ଚାହିଁ ରହିଛି । ପାଠକ କବିଙ୍କଠାରୁ ଅଲଗା ରହିପାରି ନାହିଁ । ବେଳେବେଳେ କବି, ପାଠକ, ଗ୍ରନ୍ଥର କଥା ବା ଦେବତା ସବୁ ଏକାକାର ହୋଇଯାଇ କଥା ଲହରୀରେ ଭାସି ଚାଲିଛନ୍ତି ।

ଭାଷା ପ୍ରୟୋଗ ମଧ୍ୟରେ ସାରଳା ଦାସଙ୍କ ବୈଶିଷ୍ଟ୍ୟ ରୂପେ ଦୁଇଟି ପ୍ରବୃତ୍ତି ପ୍ରତି ବିଶେଷ ଭାବେ ଲକ୍ଷ୍ୟ କରାଯାଇପାରେ । ତା ହେଲା ଅନେକ କଥା ଓ ସମ୍ବୋଧନ ଶୈଳୀ । କଥା କହି ପାଠକର ମନକୁ ଆକୃଷ୍ଟ କରିବାକୁ ହେଲେ ବହୁଆଡୁ ବହୁକଥା ଆଣି କହିବାକୁ ହୋଇଥାଏ । ସାରଳା ଦାସ ତାଙ୍କ **ମହାଭାରତ**ରେ ସଂସ୍କୃତର **ପଂଚତନ୍ତ୍ର** ବା **ହିତୋପଦେଶ** ପରି କଥା ଭିତରେ କଥା ରଖି କହିବାର ଶୈଳୀ ଗ୍ରହଣ କରିଥିଲେ । ପୁରାଣରେ ସବୁବେଳେ କଥା ଆଗକୁ ବଢ଼ିଚାଲେ । କବି ବହୁ ଉଦାହରଣ ଦିଏ । ବହୁ ରାଜ୍ୟର ନାମ କୁହେ । ବହୁ ଫଳ କଥା ବା ବହୁ ପକ୍ଷୀ କଥା କହିଥାଏ । ଶେଷକୁ କହି ନ ପାରି ନିଜ ଭାବକୁ ପ୍ରକାଶ କରିବା ପାଇଁ ଅନେକ ଶବ୍ଦର ପ୍ରୟୋଗ କରିଥାଏ । ପ୍ରାୟ ପ୍ରତ୍ୟେକ ପର୍ବରେ ଅଜସ୍ର ଅନେକ ଶବ୍ଦ ବ୍ୟବହୃତ ହୋଇଥିଲେ ବି ଏଠାରେ 'ସ୍ୱର୍ଗାରୋହଣ ପର୍ବ'ରୁ କେତେକ ଉଦାହରଣ ଦିଆଯାଇଛି -

ସ୍ୱାମୀ ! ଅନେକ ଅବିକାରେ ତୋତେ କଲୁ ସେବା
ଅନେକ ବିନୋୟି ଯେ ଖଟୁଛି ତୁମ୍ଭଙ୍କୁ
ଅନେକ ଭ୍ରଛନା ଇନ୍ଦ୍ର ବୋଇଲେ ଶ୍ୱାନ
ଅନେକ ସୋଦର ଯେ ଥିଲେ ମୋର ସାହା
ଅନେକ ଦୟା ଦୋଷ ହେଲା ଦୂରାନ୍ତର

ଗ୍ରନ୍ଥ ମଧ୍ୟରେ ସମ୍ବୋଧନ କରିବା ସାରଳା ଦାସଙ୍କର ଏକ ବୈଶିଷ୍ଟ୍ୟ । ସ୍ୱର୍ଗାରୋହଣ ପର୍ବରେ ସ୍ୱାମୀ ଶବ୍ଦର ବହୁଳ ବ୍ୟବହାର ଦେଖିବାକୁ ମିଳିଥାଏ ।

ସ୍ୱାମୀ ଆକାଶେ ଏହାକୁ ଯେ ସଞ୍ଚିତ ଥିଲା ପାଟ
ସ୍ୱାମୀ ଧର୍ମପରାୟଣ ତୁମ୍ଭେ କେ ପଶିଲା ଗର୍ଭେ

ସାନ ବଡ଼କୁ ସମ୍ବୋଧନ କଲାବେଳେ ବାରମ୍ବାର ସ୍ୱାମୀ ଶବ୍ଦ ପ୍ରୟୋଗ କଲାପରି ବଡ଼ ସାନକୁ ସମ୍ବୋଧନ କଲାବେଳେ ବାବୁ ଶବ୍ଦର ପ୍ରୟୋଗ କରାଯାଇଛି ।

ବାବୁ ଆପଣା ସୁନ୍ଦର ଆପେଣେ ବଖାଣଇ
ବାବୁ ବହୁତ କୀର୍ତ୍ତି ଯେ ଅଛି ଏହାର କଲା
ତେଣୁ କରି ବାବୁରେ ଏତକ ଅଇଲା ।

ସେହିପରି ସାରଳା ଦାସ ବାରମ୍ବାର 'ଆହୋ' 'ବା' 'ହୋ' ପ୍ରୟୋଗ କରିଥିଲେ-

ଆହୋ ମୋର ଭ୍ରାଥ ଅର୍ଜ୍ଜୁନ ବୋଲି ଭୀମ
ଆହୋ ଭୀମସେନ ଛାଡିଆସ ବୀର ପାର୍ଥ
ଶୁଣ ହୋ ଚଇତନ ଶୁକ୍ଳାମ୍ବର କାୟେ ।

ଆହୋ ପରି ଆରେ ବା ରେ ଶବ୍ଦ ମଧ ବାରମ୍ବାର ପ୍ରୟୋଗ କରାଯାଇଛି -

ଆରେ ! ଭୀମ ଯଦ୍ୟପି ରୋଦନ କରିବା ଉର ଶିର ତାଡି
ଆରେ ଆରେ ନକୁଳ ବୋଲି ଭୀମ କୋଳ କରି

ଏହିପରି ଆଉ ଗୋଟିଏ ପ୍ରୟୋଗ ହେଉଚି 'ହେ ବୁଧଜନେ' ବା 'ଶୁଣ ଆହେ ବୁଧଜନେ' -

ଶୁଣ ଆହେ ବୁଧଜନେ ମୁଂ ଯାହା କହିଲି (ପୃ-୨୨)
ଶୁଣ ହେ ସୁଜ୍ଞଜନେ ମହାଭାରଥ ପୁଣ୍ୟରାଶି (ପୃ-୭୨)
ହେ ବୁଧଜନେ ଯାବତ ପୁଣ୍ୟ ଥିବ ତାବତ ଭଜ କରି ।

ସେହିପରି 'ଭୋ' ପ୍ରୟୋଗ ମଧ ସମ୍ବୋଧନ କରିବା ପ୍ରକ୍ରିୟାକୁ ଆହୁରି ରସାଣିତ କରିଛି ।

ଭୋ ଯୁଦ୍ଧେଷ୍ଠି ଏସନେ ଯେ ହୋଇଲା ତୋର ଧର୍ମ ।

ଏହିପରି 'ସେ' 'ୟେ' 'ଜୟତୁ' ପ୍ରଭୃତିକୁ ପଂକ୍ତି ଆଦ୍ୟରେ ରଖି ସାରଳା ଦାସ ତାଙ୍କ ଭାଷାକୁ ଶକ୍ତିଶାଳୀ କରିବାକୁ ଚାହିଁଛନ୍ତି । ଏହା ବ୍ୟତୀତ ଦେଖ ଦେଖ, ଆରେ ଆରେ ପରି ବହୁ ଯୁଗ୍ମଶବ୍ଦର ପ୍ରୟୋଗ କରି କବି ନିଜ ଭାଷାରେ ଶକ୍ତି ସଞ୍ଚାର କରିଛନ୍ତି ।

**(ଗ) ସମ୍ବାଦ :** ପୁରାଣ ଶୈଳୀର ଏକ ବୈଶିଷ୍ଟ୍ୟ ହେଲା ଏହାର ସମ୍ବାଦ । ଏହି ଶୈଳୀ ଯୋଗୁ ଏହା କାବ୍ୟଠାରୁ ସ୍ୱତନ୍ତ୍ର । ପ୍ରତ୍ୟେକ ପୁରାଣ ଶ୍ରୋତା ମାଧମରେ କଥିତ ହୋଇଥିଲେ ହେଁ ଅନେକ ସମୟରେ ମୁଖ୍ୟ ବକ୍ତା ଓ ଶ୍ରୋତା ବ୍ୟତୀତ ଅନ୍ୟାନ୍ୟ ବହୁ ସମ୍ବାଦ ସଂଯୋଜିତ ହୋଇଥାଏ । ପ୍ରାୟ ପ୍ରତ୍ୟେକ ପୁରାଣର ଏହାହିଁ ରୀତି । ପୁରାଣର ବକ୍ତା ଓ ଶ୍ରୋତା ଭାବେ ସାଧାରଣତଃ ଧର୍ମପରାୟଣ ବ୍ୟକ୍ତିମାନଙ୍କୁ ଗ୍ରହଣ କରାଯାଏ । ବକ୍ତା ଓ ଶ୍ରୋତାର ସଂଯୋଜନା ଦ୍ୱାରା ପୁରାଣର ଏକସ୍ୱରତା ଦୂର ହୋଇଥାଏ । ସାରଳା

ଦାସ ତାଙ୍କ ତିନୋଟି ଯାକ ପୁରାଣରେ ସମ୍ବାଦକୁ ପ୍ରାଧାନ୍ୟ ଦେଇଛନ୍ତି । ବୈବସ୍ବତ ମନୁଙ୍କର ପ୍ରଶ୍ନରୁ **ମହାଭାରତର** କଥାବସ୍ତୁ ଆରମ୍ଭ । ପ୍ରସଙ୍ଗକ୍ରମେ ଏଥିରେ ବହୁ ବକ୍ତା ଓ ଶ୍ରୋତା ଆସିଛନ୍ତି । 'ସ୍ୱର୍ଗାରୋହଣ ପର୍ବ'ରେ ଯୁଧିଷ୍ଠିର ଓ ପ୍ରଜା ସମ୍ବାଦ, ସୁରେଶ୍ୱର ବ୍ରାହ୍ମଣ ଓ ତନ୍ତିପା କିରିଷାଣ ସମ୍ବାଦ, ସହଦେବ ଓ ଯୁଧିଷ୍ଠିର ସମ୍ବାଦ, ଯୁଧିଷ୍ଠିର ଓ ହରିସାହୁ ସମ୍ବାଦ, ଯମ ଦେବତା ଓ ହରିସାହୁ ସମ୍ବାଦ, ଭୀମ ଓ ଯୁଧିଷ୍ଠିର ସମ୍ବାଦ, ଲୋମଶ ମୁନି ଓ ଯୁଧିଷ୍ଠିର ସମ୍ବାଦ ପ୍ରଭୃତିକୁ ଗ୍ରହଣ କରାଯାଇପାରେ । ଏହି ସମ୍ବାଦ ପ୍ରୟୋଗରେ କେବଳ ଯେ କଥା ଆଗକୁ ଗତି କରେ ତାହା ନୁହେଁ, ଏହାଦ୍ୱାରା ଚରିତ୍ର ସବୁର ଅର୍ନ୍ତବୃତ୍ତି ବିଶ୍ଳେଷଣ, ତୀର୍ଥ ସବୁର ମହାତ୍ମ୍ୟ ବର୍ଣ୍ଣନ ବିଭିନ୍ନ ବଂଶର ଇତିହାସ, ପ୍ରଚଳିତ ସାମାଜିକ ବିଶ୍ୱାସ ପ୍ରତି ବିଦ୍ୱେଷ ବା ଆଗ୍ରହ ଇତ୍ୟାଦି ପ୍ରକାଶିତ ହୋଇଥାଏ । ସଂଳାପ ଦ୍ୱାରା ଚରିତ୍ରର ପ୍ରବୃତ୍ତି ଓ ପ୍ରକୃତି ବିଶ୍ଳେଷିତ ହୋଇଥାଏ । ଧର୍ମାତ୍ମା ଯୁଧିଷ୍ଠିର ଯେତେବେଳେ ଧର୍ମ ପ୍ରତିଷ୍ଠା କରିବା ପାଇଁ ସ୍ୱଦେହରେ ସ୍ୱର୍ଗକୁ ଗମନ କରିଛନ୍ତି, ସେତେବେଳେ ତାଙ୍କ ଭାଷା ବା ଭୀମ ସହ ଉକ୍ତି-ପ୍ରତ୍ୟୁକ୍ତିରେ କେବଳ ଧର୍ମର ବାତାବରଣ ସୃଷ୍ଟି ହୋଇଛି । 'ସ୍ୱର୍ଗାରୋହଣ ପର୍ବ' ହେଉଛି **ମହାଭାରତ**ର ଅନ୍ତ୍ୟ ବା ଶେଷ ପର୍ବ । ଏତେବେଳକୁ ରାଜ୍ୟ ଜୟ କରିବା, ଦୁଷ୍ଟଜନ ସଂହାର କରିବା, ଅସୁର ବିନାଶ କରିବା, ନୂଆ ନୂଆ କନ୍ୟା ହରଣ କରି ବିବାହ କରିବା, ପ୍ରତିଦ୍ୱନ୍ଦ୍ୱିତା କରି ବା ଯୁଦ୍ଧରେ ଅନ୍ୟକୁ ପରାଜିତ କରିବା, ଅନ୍ୟ ସମ୍ମୁଖରେ ନିଜର ଧନସମ୍ପଦ ପ୍ରଦର୍ଶନ କରିବା, କ୍ଷମତା ଅକ୍ତିଆର କରିବା ପାଇଁ ବିଭିନ୍ନ ପ୍ରକାର ପ୍ରଚେଷ୍ଟା କରିବା ଇଚ୍ଛାର ଶେଷ ମଧ୍ୟ ହୋଇଯାଇଛି । ଏସବୁ କାର୍ଯ୍ୟଦ୍ୱାରା ମନରେ କେବଳ ଯେ ଉତ୍ତେଜନା ଓ ଆବେଗ ପରି ଗୁଣ ପ୍ରକାଶ ପାଇଥାଏ ତା ନୁହେଁ, ମଣିଷ ଲୋଭ ମୋହରେ ଜଡ଼ିତ ହୋଇ ବହୁ ଅନ୍ୟାୟ କାର୍ଯ୍ୟ କରି ପାପ ଅର୍ଜନ କରିଥାଏ । ଏହି ଅନେକ ପାପରୁ ମୁକ୍ତି ପାଇବାର ପର୍ବ ହେଉଛି ସ୍ୱର୍ଗାରୋହଣ । ତେଣୁ ଅସ୍ତ୍ରଶସ୍ତ୍ର ତ୍ୟାଗକରି, ବିଭିନ୍ନ ତୀର୍ଥରେ ସ୍ନାନ କରି, ଦେବଦେବୀଙ୍କ ଦର୍ଶନ ଓ ଗୁଣଗାନ କରି ମନରେ କେବଳ ସାତ୍ତ୍ୱିକ ଭାବନା ରଖି ମଣିଷ କଥା କହିବାକୁ ଚେଷ୍ଟା କରେ । ସାରଳାଙ୍କ 'ସ୍ୱର୍ଗାରୋହଣ'ରେ ଆରତେକ ସହ ଭୀମଙ୍କର ଯୁଦ୍ଧ ଓ ସୁହାଣୀ କନ୍ୟା ବିବାହ ଏ ଦୁଇଟି ବ୍ୟତିକ୍ରମ ହେଲେବି ଏ ସବୁର ଲକ୍ଷ୍ୟ ପୁଣ୍ୟ ଅର୍ଜନ ବା ସମାଜରେ ଧର୍ମ ପ୍ରତିଷ୍ଠା କରିବାରେ ନିୟୋଜିତ ହୋଇଛି । 'ସ୍ୱର୍ଗାରୋହଣ ପର୍ବ'ର ବିଷୟବସ୍ତୁ ଅନୁଯାୟୀ ଏହାର ଭାଷା ମଧ୍ୟ ନିୟନ୍ତ୍ରିତ । ରାଗ, ଅହଂକାର, ଈର୍ଷା, ଦ୍ୱେଷ, ହିଂସା ଓ ଜିଗୀଷା ପରି ରାଜସିକ ବା ତାମସିକ କାର୍ଯ୍ୟ ଅପେକ୍ଷା ଏଥିରେ ସାତ୍ତ୍ୱିକ ପରିବେଶ ସୃଷ୍ଟି କରିବା ପାଇଁ ଚେଷ୍ଟା କରାଯାଇଛି । ତେଣୁ ଏହି ପର୍ବରେ ଥିବା ପ୍ରତ୍ୟେକ ଚରିତ୍ର ସାତ୍ତ୍ୱିକ ଗୁଣ ବିଶିଷ୍ଟ ହୋଇ ଧର୍ମ କଥାର ଆଲୋଚନା କରିଛନ୍ତି । ଫଳରେ ଭାଷା ମଧ୍ୟ ଶାନ୍ତ ଓ ଗମ୍ଭୀର ।

**(ଘ) ଛନ୍ଦଯୋଜନା :** ସାରଳା ଦାସ ତାଙ୍କ ତିନୋଟିଯାକ ପୁରାଣ ପାଇଁ ଯେଉଁ ଛନ୍ଦ ନିର୍ବାଚନ କରିଛନ୍ତି ତାହା ହେଉଛି ଦାଣ୍ଡୀ ବୃତ୍ତ । ଛନ୍ଦ ପ୍ରୟୋଗ ଦ୍ୱାରା ଭାଷା ଗତିମୟ ହେବା ସଙ୍ଗେ ସଙ୍ଗେ ଭାବ ଉଦ୍ଦୀପ୍ତ ଓ ପ୍ରାଣବନ୍ତ ହୋଇଥାଏ । ସାଧାରଣ ଜଡ଼ତା ଦୂରକରି ଏହା ପାଠକ ବା ଶ୍ରୋତାର ହୃଦୟରେ ସୃଷ୍ଟିକରେ ଆବେଗ ଓ କମ୍ପନ ।

ଛନ୍ଦ ପ୍ରୟୋଗର ଏହି ମହତ୍ତ୍ୱ ସହ ସାରଳା ଦାସ ପରିଚିତ ଥିବା ତାଙ୍କ ନିର୍ବାଚିତ ଛନ୍ଦରୁ ହିଁ ଜଣାଯାଏ । ସାରଳା ଦାସଙ୍କ **ମହାଭାରତ**ରେ ମାଳବ, ଲଳିତ, ବସନ୍ତ ଭାଇରୋବୀ ପ୍ରଭୃତି ଛତିଶଟି ରାଗରାଗିଣୀର ଉଲ୍ଲେଖ ଅଛି । କିନ୍ତୁ ସାରଳା ଦାସ ଜାଣିଥିଲେ ଏସବୁ ରାଗରାଗିଣୀ ସଙ୍ଗୀତ ବା କାବ୍ୟ ପାଇଁ । ପୁରାଣର ଧର୍ମ ହେଲା କଥା କହିବା । ସେଥିପାଇଁ ଯେଉଁ ଛନ୍ଦ ବର୍ଣ୍ଣନାତ୍ମକ (Descriptive) ଓ ବିବୃତ୍ତିମୂଳକ (Narrative) ଏବଂ ଗଦ୍ୟ ସହ ମିଶି ବ୍ୟବହାର କରାଯାଇପାରେ ସେହି ଦଣ୍ଡକ ବା ଦାଣ୍ଡୀ ବୃତ୍ତକୁ ସେ ନିଜ **ମହାଭାରତ**ରେ ମାଧମ କଲେ । କୁହାଯାଇ ପାରେ ଭାଷାକୁ ଅନାବଶ୍ୟକ ଶୃଙ୍ଖଳାରେ ନ ବାନ୍ଧି ବର୍ଣ୍ଣନା, ବିବୃତ୍ତି ଓ ଆଖ୍ୟାୟିକାକୁ ଅପେକ୍ଷାକୃତ ମୁକ୍ତ କରି ପ୍ରକାଶ କରିବାପାଇଁ ଦାଣ୍ଡୀ ବୃତ୍ତକୁ ନିର୍ବାଚନ କରି ଛନ୍ଦ ପ୍ରୟୋଗ ସମ୍ବନ୍ଧରେ କବି ନିଜର ନିପୁଣତାର ହିଁ ପରିଚୟ ଦେଇଛନ୍ତି ।

**(ଙ) ବର୍ଣ୍ଣନା :** ସାରଳା ଦାସ ତାଙ୍କ **ମହାଭାରତ**ରେ କଥା କହିବା ସହିତ କଥାକୁ ଭାବପୂର୍ଣ୍ଣ ତଥା ରସଯୁକ୍ତ କରିବା ପାଇଁ କଥାର ମଝିରେ ମଝିରେ ଯୁଦ୍ଧ, ରୂପ, ବିବାହ, ପ୍ରକୃତି ପ୍ରଭୃତିର ବର୍ଣ୍ଣନା କରି ନିଜ ଗ୍ରନ୍ଥକୁ ସରସ କରିବା ପାଇଁ ଚେଷ୍ଟା କରିଛନ୍ତି । 'ସ୍ୱର୍ଗାରୋହଣ ପର୍ବ'ରେ ବିଷୟବସ୍ତୁ ଦୃଷ୍ଟିରୁ କବି ଏସବୁ ବର୍ଣ୍ଣନା ପ୍ରତି ଦୃଷ୍ଟି ନ ଦେବା ସ୍ୱାଭାବିକ । ତେବେ ଏଥରେ ସୁହାଣୀ କନ୍ୟା ବିବାହ ଓ ଆରଡେକ ଅସୁର ସହ ଯୁଦ୍ଧ ଏବଂ ଭୀମ ମୁଖରେ ଦ୍ରୌପଦୀଙ୍କ ରୂପ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ମହାଭାରତରେ ଯୁଦ୍ଧର ବହୁ ପ୍ରକାର ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରତ୍ୟେକ ବର୍ଣ୍ଣନାରେ ସାରଳାଙ୍କ ସମୟର ପ୍ରତିବିମ୍ବ ଦେଖିହୁଏ । ବିଭିନ୍ନ ପ୍ରକାର ଯୁଦ୍ଧ ମଧ୍ୟରୁ କବି ମଲ୍ଲଯୁଦ୍ଧର ଅତ୍ୟନ୍ତ ସରସ ବର୍ଣ୍ଣନା ବହୁ ସ୍ଥଳରେ କରିଛନ୍ତି । ଉଦାହରଣ ରୂପେ ଭୀଷ୍ମ-ପର୍ଶୁରାମ, ଭୀମ-ଦୁଃଶାସନ, ଭୀମ-ଜରାସନ୍ଧ, ଭୀମ-ଦୁର୍ଯ୍ୟୋଧନର ମଲ୍ଲଯୁଦ୍ଧକୁ ଗ୍ରହଣ କରାଯାଇପାରେ । 'ସ୍ୱର୍ଗାରୋହଣ ପର୍ବ'ରେ ମଧ୍ୟ କବି ମଲ୍ଲଯୁଦ୍ଧକୁ ଭୁଲିପାରି ନାହାନ୍ତି । ଭୀମ ଦ୍ୱାରା ଆରଡେକ ଦୈତ୍ୟ ବଧ ପ୍ରସଙ୍ଗକୁ ଯୋଗ କରି ସେ ମଲ୍ଲଯୁଦ୍ଧର ଏକ ଉଦାହରଣ ଦେଇଛନ୍ତି -

ଧରାଧରି କୋଡ଼ାକୋଡ଼ି ଗଡ଼ାଗଡ଼ି ଯାନ୍ତି ,
ନଖ ଦନ୍ତ, ଘାତେଣ ଶ୍ୱରୀର ବିଦାରନ୍ତି ।

ତିନି କୋଶ ଓସାର ଯେ ବନସ୍ତ ଚୂର ଗଲା
ମୁଣ୍ଡିକା ଗିରି ଦେଶରେ ଭୀମକଇ ଆରଡ଼େକ ମାଡ଼ିବସିଲା ।
ବଜ୍ରମୁଷ୍ଟି ପ୍ରହାର କଲାକ ଦୈତ୍ୟ ତମେ
ବହଇ ଶୋଣିତ ଯେ ଗଳଇ ରୋମେ ରୋମେ । (ପୃ-୩୩-୩୪)

ସାରଳା **ମହାଭାରତର** ବିରାଟ କଳେବର ମଧ୍ୟରେ ବହୁ ପ୍ରକାର ବିବାହର ରମଣୀୟ ବର୍ଣ୍ଣନା ବି ସନ୍ନିବେଶିତ । ବିବାହ ବର୍ଣ୍ଣନାରୁ ସେ ସମୟରେ ସମାଜରେ ପ୍ରଚଳିତ ବିବାହ ସମ୍ବନ୍ଧୀୟ ରୀତି, ନୀତି, ଆଚାର, ବିଚାର ଓ ସାମାଜିକ ବ୍ୟବସ୍ଥାର ସୂଚନା ମିଳିଥାଏ ।

କିନ୍ତୁ ସାରଳା ଦାସଙ୍କ ବିବାହ ସଂପର୍କରେ ବିଭିନ୍ନ ବିଚାର ସତ୍ତ୍ୱେ ଅନେକ ସମୟରେ ଅସମ ବିବାହସବୁ ଅନୁଷ୍ଠିତ ହେଉଥିଲା । ଗଳିତ ବୟସ ଯୁଧିଷ୍ଠିର ଓ ପଞ୍ଚଦଶ ବର୍ଷୀୟା କନ୍ୟା ସୁହାଣୀର ବିବାହ ଏହାର ଉଦାହରଣ । ହରିସାହୁଙ୍କ ପରି ଏପରି ଲୋକ ମଧ୍ୟ ସମାଜରେ ଥିଲେ, ଯେଉଁମାନେ ଉଚ୍ଚ ଜାତି ତଥା ସ୍ୱନାମଧନ୍ୟ ଯଶସ୍ୱୀ ପୁରୁଷଙ୍କୁ କନ୍ୟା ସମର୍ପଣ କରି କୁଳ ଉଦ୍ଧାର କରିବାର ଚିନ୍ତା କରୁଥିଲେ । ଯୁଧିଷ୍ଠିରଙ୍କୁ କନ୍ୟା ଦେଇ ହରିସାହୁର ଆନନ୍ଦ ଦେଖିବାର କଥା । ଯୁଧିଷ୍ଠିର ବିବାହ କରିବା ପାଇଁ ରାଜି ହୋଇଯିବା ପରେ ସେ ଅତି ଆନନ୍ଦରେ ବନ୍ଧୁମାନଙ୍କୁ ରୁଣ୍ଡ କରି ଘୋଷଣା କରିଥିଲା - ''ମୋହେର ଜୁଆଇଂ ହୋଇଲେ ଯୁଝେଷ୍ଟି ମହାବାହୁ ।'

ଏପରି ବିବାହ ଯେ ମହାକବି ସାରଳା ଦାସଙ୍କୁ ସନ୍ତୁଷ୍ଟ କରି ନ ଥିଲା, ଏହାର ପ୍ରମାଣ ତାଙ୍କ ଗ୍ରନ୍ଥରୁ ହିଁ ମିଳିଥାଏ । ହରିସାହୁଙ୍କ ପରି ଲୋକ କୁଳ ଉଦ୍ଧାର ନାଁରେ କନ୍ୟାଙ୍କ ଜୀବନ ସହ ଖେଳୁଥିଲେ । କନ୍ୟାର ଭବିଷ୍ୟତ ସମ୍ପର୍କରେ ସେମାନଙ୍କର ଚିନ୍ତା ନ ଥିଲା । ସମାଜର ଏପରି କୁତ୍ସିତ ପ୍ରକୃତିର ଲୋକଙ୍କୁ ପରିହାସ କରି ସାରଳା ଦାସ ହରିସାହୁ ମୁଖରେ ହିଁ କୁହାଇଛନ୍ତି -

ଜୀଇଂଲେ ଜୀଉଂ ପଛେ ମଲେ ମରୁ ବାଳୀ
ଯେ କଥା ଚିରାଞ୍ଜନ ରହିବ ମହୀ ଆଳି । (ପୃ-୧୪)

ଉପଯୁକ୍ତ ବର ଦେଖି କନ୍ୟା ସମର୍ପଣ କରିବା ଭାରତୀୟ ସମାଜର ସାଧାରଣ ନିୟମ । ବରର ବୟସ, ରୂପ, ଗୁଣ, ବଂଶ ମର୍ଯ୍ୟାଦା ପ୍ରଭୃତିକୁ ବିଚାରକୁ ନେଇ ମଧ୍ୟସ୍ଥି ମାଧ୍ୟମରେ ବା ବର-କନ୍ୟା ନିଜେ ନିଜର ବିବାହ ସ୍ଥିର କରୁଥିଲେ । ସମାଜରେ ଏପରି ପ୍ରଥା ପ୍ରଚଳିତ ଥିଲେ ବି ସାରଳା ଦାସ ଶାସ୍ତ୍ର, ପୁରାଣ ବା ସାମାଜିକ ଚଳଣି ଅପେକ୍ଷା କନ୍ୟାର ମତକୁ ପ୍ରାଧାନ୍ୟ ଦେଉଥିଲେ । ପ୍ରେମ ବିବାହରେ ପିତାମାତାଙ୍କ ମତ ଅପେକ୍ଷା କନ୍ୟା ମତକୁ ପ୍ରାଧାନ୍ୟ ଦେଇଥିବା ସାରଳା ଦାସଙ୍କ ବର୍ଣ୍ଣିତ ବହୁ ପ୍ରେମ ଉପାଖ୍ୟାନର

ମୁଖ୍ୟ ଚଳଣି ହେଲେ ହେଁ ସ୍ୱୟମ୍ବର ପରି ଆଡମ୍ବରପୂର୍ଣ୍ଣ ବିବାହ ଉତ୍ସବରେ ଯେଉଁଠି ପଣ ରଖି ବିବାହ ସ୍ଥିର କରାଯାଉଥିଲା, ସେପରି ସ୍ଥଳରେ ମଧ୍ୟ କନ୍ୟାର ମତକୁ ସାରଳା ଦାସ ଉପେକ୍ଷା କରି ନାହାନ୍ତି । ଦ୍ରୌପଦୀଙ୍କ ସ୍ୱୟମ୍ବରରେ ପଣ ଥିଲା ଲାଖବିନ୍ଧା । ଅର୍ଜୁନ ଲାଖ ବିନ୍ଧି ଦ୍ରୌପଦୀଙ୍କୁ ପାଇବାର ହକଦାର ହେଲେ ବି ଅବସ୍ଥାଚକ୍ରରେ ଯୁଧିଷ୍ଠିର ଦ୍ରୌପଦୀଙ୍କୁ ପାଞ୍ଚ ଭାଇଯାକ ବିବାହ ହେବା ପାଇଁ ପ୍ରସ୍ତାବ ଦେଇଥିଲେ । ଏଥିପାଇଁ ଶାସ୍ତ୍ର, ପୁରାଣରୁ ବହୁ ଉଦାହରଣ ଦିଆଗଲା । ପୂର୍ବଜନ୍ମର କଥା ବି କୁହାଗଲା । ଏ ସବୁରୁ କିନ୍ତୁ କୌଣସି ସମାଧାନ ସୂତ୍ର ବାହାରି ପାରି ନ ଥିଲା । ଶେଷକୁ କନ୍ୟାର ମତ ଲୋଡା ହେଲା । କନ୍ୟା କହିଲେ - ପାଞ୍ଚଜଣଯାକ ମୋତେ ଏକା ଭଳି ଦେଖାଯାଉଛନ୍ତି । ବିବାହ ସ୍ଥିର ହୋଇଗଲା । ସ୍ୱୟମ୍ବରର ସର୍ତ୍ତ, ଦ୍ରୁପଦଙ୍କ ପ୍ରତିଜ୍ଞା ସବୁ ପାଣିର ଗାର ପରି ଲିଭିଗଲା । ସୁହାଣୀ କନ୍ୟା ବିବାହରେ ନିଜେ ପିତା ହରିସାହୁ ହିଁ ପ୍ରସ୍ତାବ ଆଣିଥିଲା । ସାରଳା ଦାସ ଏପରି ବିବାହକୁ ସାମାଜିକ ସ୍ୱୀକୃତି ଦେବାପାଇଁ, ଜ୍ୟୋତିଷର ଭବିଷ୍ୟତ ବାଣୀ, କୁଳରକ୍ଷା ଓ ଧର୍ମରକ୍ଷା ପ୍ରଭୃତି ବଡ଼ ବଡ଼ କଥା କହିଥିଲେ ହେଁ, ସମୟ ସମୟରେ ଏପରି ବିବାହ ଯେ ସମାଜରେ ଅନୁଷ୍ଠିତ ହେଉଥିଲା, ତାହାର ସୂଚନା ଦେଲେ । ଏପରି ବିବାହରେ କନ୍ୟା ଯେ ସ୍ୱାମୀସୁଖ ପାଏ ନାହିଁ, ତାହା ସାରଳା ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ । ଧନ ଲୋଭରେ ସମ୍ପତ୍ତି ଦେଖି ବିବାହ କରୁଥିବା କନ୍ୟା ଘରର ସାଆନ୍ତାଣୀ ବା ସାରଳା ଦାସଙ୍କ ଭାଷାରେ 'ନାଏକାଣୀ' ହୋଇ ସନ୍ତୋଷ ଲାଭ କରେ, ବା କୌଣସି ଦେବାନୁଷ୍ଠାନରେ ସେବିକାର କାର୍ଯ୍ୟକରି ଜୀବନ କଟାଏ ।

ବିବାହ ବେଳରେ ଜ୍ୟୋତିଷ ବା ଅବଧାନଙ୍କୁ ଡାକି ଶୁଭବେଳା ସ୍ଥିର କରିବା ଓଡିଆ ସମାଜର ଏକ ସାଧାରଣ ରୀତି । ସାରଳା ଦାସ ପ୍ରାୟ ପ୍ରତ୍ୟେକ ବିବାହରେ ଜ୍ୟୋତିଷ ଶାସ୍ତ୍ରକୁ ଗୁରୁତ୍ୱ ଦେଉଥିଲେ । ସୁହାଣୀ କନ୍ୟା ବିବାହ କାଳର ଗ୍ରହସ୍ଥିତି ସଂପର୍କରେ ସୂଚନା ଦେଇ ସାରଳା ଦାସ କହିଛନ୍ତି -

କୁମ୍ଭମାସ ଶୁକ୍ଳପକ୍ଷ ସପତମୀ ତିଥି
ରୋହିଣୀ ନକ୍ଷତ୍ର ପୁଣି ବାର ବୃହସ୍ପତି ।
ବାଣିଜ୍ୟ ନାମେ କରଣ ପ୍ରୀତି ନାମେ ଯୋଗ
ଧର୍ମପୁର ନଗରରେ ବଡାଇ ସୁଯୋଗ । (ପୃ -୧୫)

ବିବାହ କାଳର ବିଭିନ୍ନ ପ୍ରଥା ବା ଚଳଣିର ବର୍ଣ୍ଣନା ଅତି ସଂକ୍ଷେପରେ ହେଲେ ବି, ଯୁଧିଷ୍ଠିର ଓ ସୁହାଣୀ କନ୍ୟା ବିବାହ ଦୃଶ୍ୟରୁ ଉପଲବ୍ଧ ହୁଏ । ପୁରୋହିତ ଡାକିବା, ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରିବା, ସ୍ୱୀକାର, ବରଣ, ମହାବାକ୍ୟ ଉଚ୍ଚାରଣ, ଅମୃତ ବେଳାର ଗଣନା, ବିବାହ ପାଇଁ ଛାୟା ମଣ୍ଡପ, ବେଦୀର ନିର୍ମାଣ, କଳସ ସ୍ଥାପନା, ଉତ୍ସବକୁ ଆନନ୍ଦ ମୁଖରିତ କରିବା ପାଇଁ ଦିବ୍ୟ ବସ୍ତ୍ର, ପତାକା, ଛାୟାଘର, କସ୍ତୁରୀ

ପିଚିକା, ଛାମୁଣ୍ଡିଆ, ମଙ୍ଗଳ ଧ୍ୱନି, କୁଙ୍କୁମ ଆଭରଣ, ଅହିଗ୍ୟଂ ପୂଜା, କନ୍ୟାର କନକ ହାଦୋଳାରେ ଗମନ, ବୀରଦ୍ୱର ଚମକ ଓ ନିଶାଣର ନାଦ, ସୁଲଭ କାମିନୀ, ଦୀପାବଳୀ, ମଙ୍ଗଳ ଗୀତ, ହୁଳହୁଳି ପ୍ରଭୃତିର ଯେ ନିତାନ୍ତ ଆବଶ୍ୟକ ଥାଏ, ଏହା ସାରଳା ଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ।

**ସାରଳା ଦାସଙ୍କ ଧର୍ମଚେତନା:** ସାରଳା ଦାସଙ୍କ ସମୟ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀରେ ହିନ୍ଦୁଧର୍ମ ହିଁ ଥିଲା ଓଡ଼ିଶାର ମୁଖ୍ୟ ଧର୍ମ । ସମାଜରେ ଚଳୁଥିବା ବିଧି ବିଧାନକୁ ସାରଳା ଦାସ ଧର୍ମ କହି ସେ ସବୁର ପ୍ରଚାର ପାଇଁ ମହାଭାରତ, ଚଣ୍ଡିପୁରାଣ ଓ ରାମାୟଣ ରଚନା କରିଥିଲେ ।

**ମହାଭାରତ**ର ମୁଖ୍ୟ ନାୟକ ଶ୍ରୀକୃଷ୍ଣ ବା ବିଷ୍ଣୁ । ତାଙ୍କରି ମହିମା ପ୍ରଚାର କରିବା ପାଇଁ ବ୍ୟାସଦେବ **ମହାଭାରତ** ରଚନା କରିଥିଲେ । ସାରଳା ଦାସ ମଧ୍ୟ ସେହି ଶ୍ରୀକୃଷ୍ଣ ମହିମା ମହାଭାରତରେ ପ୍ରଚାର କରିଥିଲେ ହେଁ, କନକପୁର ପାଟଣା ବା ଝଙ୍କେରପୁରର ଅଧିଷ୍ଠାତ୍ରୀ ଦେବୀ ସାରଳାଙ୍କର ସେ ଥିଲେ ଅନନ୍ୟ ଉପାସକ । ସେହି ସାରଳାଙ୍କ ଅନୁଗ୍ରହ ଲାଭକରି ଓ ତାଙ୍କରି ଆଜ୍ଞାରେ ସେ ମହାଭାରତ ରଚନା କରିବାକୁ ମନସ୍ଥ କରିଥିଲେ । କବି କହିଛନ୍ତି -

ସର୍ବମଙ୍ଗଳା ରୂପ ମାତାଙ୍କ ମଉଭୋଳି
ଗ୍ରନ୍ଥ ଅର୍ଥ ବୁଝଇ ସେ ହରଷେ କୁତୋହଳୀ ।
ଶ୍ରୀ ସାରଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁହିଂ ସାରଳା ଦାସ କବି ।
ପ୍ରସନ୍ନେଣ ଆଜ୍ଞା ମୋତେ ଦେଲେ ଶାକାମ୍ବରୀ
ଲଭ ତୁ କପିଳାସ ଶ୍ରୀ ମହାଭାରଥ କବି । (ଆଦି ପୃ-୫)

ଦେବୀଙ୍କ ପ୍ରେରଣାରେ କବି ମହାଭାରତ ରଚନା କରିଥିଲେ ହେଁ ଓ କବି ନିଜକୁ ଦେବୀଙ୍କ ପୁତ୍ର ରୂପେ ଉଲ୍ଲେଖ କରିଥିଲେହେଁ, କବି ଶାକ୍ତ ନ ଥିଲେ । ସେ ମହାଭାରତରେ ହିନ୍ଦୁଧର୍ମର ସବୁ ଦେବତାଙ୍କୁ ଭକ୍ତି ପ୍ରଦର୍ଶନ କରିଛନ୍ତି । ଏହାହିଁ ଥିଲା ତାଙ୍କ ଧାର୍ମିକ ଚେତନାର ଆଦର୍ଶ ।

ସାରଳା ଦାସ ଉଦାର ଦୃଷ୍ଟିକୋଣର କବି ଥିଲେ । ସେ ତାଙ୍କ ଗ୍ରନ୍ଥ ଆରମ୍ଭରୁ ଏହି ଦୃଷ୍ଟିକୋଣର ପରିଚୟ ଦେଇ ହିନ୍ଦୁମାନଙ୍କ ଅଗ୍ରପୂଜ୍ୟ ଦେବତା ଗଣେଶଙ୍କର ବନ୍ଦନା କରିଛନ୍ତି । ଏହାପରେ ସେ ଓଡ଼ିଶା ରଷ୍ଟ୍ରର ଦେବତା ଜଗନ୍ନାଥଙ୍କୁ ବନ୍ଦନା କରି ପରେ ନିଜର ଆରାଧ ଦେବୀ ସାରଳାଙ୍କର ସ୍ତୁତି କରିଛନ୍ତି । ଏହା ବ୍ୟତୀତ ଗ୍ରନ୍ଥ ମଧ୍ୟରେ ଦୁର୍ଗା, କାମଦେବ, ଶିବ, ବ୍ୟାସ, କରତାରନାଥ, କାଶୀପତି, ଶିବ, ଇନ୍ଦ୍ର, ସୂର୍ଯ୍ୟ, ପବନ,

ନିରଞ୍ଜନ, ବ୍ରହ୍ମା , ବରୁଣ ଓ ଅଗ୍ନିଦେବତାଙ୍କର ବନ୍ଦନା ମିଳେ । ପ୍ରତ୍ୟେକ ବନ୍ଦନାରୁ କବିଙ୍କ ଉଦାର ଦୃଷ୍ଟିକୋଣର ପରିଚୟ ମିଳିଥାଏ ।

'ସ୍ୱର୍ଗାରୋହଣ ପର୍ବ' ହେଉଛି ସାରଳା ଦାସଙ୍କର ବିଚାର ଓ ବିବେଚନାର ଶେଷ ପର୍ଯ୍ୟାୟ । ସମସ୍ତ **ମହାଭାରତ** ମଧ୍ୟରେ ସେ ଯାହା ଯାହା କହିଆସିଥିଲେ 'ସ୍ୱର୍ଗାରୋହଣ ପର୍ବ'ରେ ସେ ସବୁର ଶେଷ ମୀମାଂସା ଦେଇଛନ୍ତି । ଧର୍ମ ସମ୍ପର୍କରେ ସେ କହିଛନ୍ତି-ସଂସାରରେ ଧର୍ମ ବୋଲି କିଛି ଗୋଟିଏ ଆକାରଯୁକ୍ତ ପଦାର୍ଥ ନାହିଁ । ଲୋକେ ଶୂନ୍ୟରେ ଶବ୍ଦ କହିବାପରି ଧର୍ମ ଧର୍ମ ଉଚ୍ଚାରଣ କରିଥାନ୍ତି । ଅଥଚ ଧର୍ମ କ'ଣ ଅଧର୍ମ କ'ଣ ଏହା କହିବା ସହଜ ନୁହେଁ । ଏହାର ଚିହ୍ନବର୍ଣ୍ଣ ନାହିଁ । ଏହା ନିରାକାର । ତେବେ ବି ଲୋକେ ଧର୍ମର ପ୍ରଭାବ ସମ୍ପର୍କରେ ସଚେତନ । ଯୁଧିଷ୍ଠିରଙ୍କର ଧର୍ମ ହେଉଛି ତାଙ୍କର ସତ୍ୟ ପାଳନ ।

ଅଗସ୍ତି ବୋଇଲେ ଶୁଣ ମନୁରାୟେ ।
ସତ୍ୟ ପାଳିଥିଲେ ସେ ଯେ ଧର୍ମରାୟେ ।
ଧର୍ମହୁଂ ଆନ ସେ ଯେ ନଜାଣନ୍ତି ବାଣୀ
ତେଣୁ ଚରଣେ ଖଚିଲେ ଶଙ୍ଖ ଚକ୍ରପାଣି ।

ଏହି ଧର୍ମ ଦେବତାଙ୍କ ମତରେ 'ମୃତ୍ୟୁ ମଣ୍ଡଳେ ଜାତ ହୋଇଲେ ଅବଶ୍ୟ ପ୍ରାଣ ହାରି', 'ସଂସାରେ ମୟାମୋହ ନ ଛାଡ଼ନ୍ତି ପ୍ରାଣୀ', 'ଯେ ଯାହା ଅର୍ଜଇ ସେ ତହିଂର ଫଳ ପାଇ', 'ଆପଣାର ପାପ ପୁଣ୍ୟ ପରକୁ ନ ଦିଅଇ' (ସ୍ୱର୍ଗା ପୃ-୫୮)

'ମଲାର ପ୍ରାଣୀ କେହୁ ଆସିବ ବାହୁଡ଼ି', 'ଅପାର ଶୋକ କଲେ ମଲାର ନ ପାଇ' (ସ୍ୱର୍ଗା ପୃ -୫୭), 'ପାପରେ ନର୍କ ଯାଇ', 'ପୁଣ୍ୟରେ ସ୍ୱର୍ଗ ପଥ', 'ଶୋକ କଲେ କାୟା ତୁହି ହାରିବୁ ନ ଜାଣି', 'ଛାଡ଼ରେ ଭୀମସେନ ଧର୍ମ ନକର ହାନି' (ସ୍ୱର୍ଗା ପୃ- ୫୪)

ସାରଳା ଦାସ ପାପ-ପୁଣ୍ୟର ବିଚାରରେ ଧର୍ମ ନିରୂପଣ କରୁଥିଲେ । ଅଧର୍ମ କହିଲେ ଚୌର୍ଯ୍ୟକର୍ମ, ସ୍ୱାମୀ ପ୍ରତି ସେବକର ଅବଜ୍ଞା, ରାଜାଙ୍କର ବିଚାରହୀନତା, ଭୂମି ହରଣ, ଅଶୌଚ କର୍ମ, ବାର-ବ୍ରତ ତ୍ୟାଗ, ଅବିଚ୍ଛନ୍ନେ ଶୃଙ୍ଗାର, ପରସ୍ପର ମଧ୍ୟରେ କଳହ, ଜୁଆ ଶକଟା ପ୍ରଭୃତି ବ୍ୟସନକୁ ଗ୍ରହଣ କରିଥିବା ବେଳେ, ମନୁଷ୍ୟର ପୁଣ୍ୟକର୍ମ ଭାବେ ଆପଣା ଜାତିରେ ସତ୍‌ସଙ୍ଗ ହେବା ଓ ଅନ୍ୟ ଜାତି ସ୍ତିରୀକୁ ସ୍ପର୍ଶ ନ କରିବା ଧର୍ମର ପ୍ରଥମ ନୀତି । ତିନି ବେଳ ସନ୍ଧ୍ୟା କରିବା ସଙ୍ଗେ ସଙ୍ଗେ ସମୟ ଥିଲେ ମନ୍ଦିରକୁ ଯିବା ଆବଶ୍ୟକ । ସବୁ ଦେବତାଙ୍କ ମଧ୍ୟରେ ବିଷ୍ଣୁ ହିଁ ଶ୍ରେଷ୍ଠ । ନିତି ପ୍ରତି ବିଷ୍ଣୁ ଆରାଧନା କରିବା ମନୁଷ୍ୟର କର୍ତ୍ତବ୍ୟ ହେଲେହେଁ ଅନେକ ଦୁଶ୍ଚିନ୍ତାରୁ ଦୂରେଇ ରହିବା ଆବଶ୍ୟକ ।

ଯେଉଁଠି ହତ୍ୟା, ବିବାଦ ବା ପ୍ରାଣୀବଧ ହେଉଥିବ ସେ ସ୍ଥାନ ପରିତ୍ୟାଗ କରିବ । ଦୁଇ ବ୍ୟକ୍ତି କଳହ କଲାବେଳେ ସାକ୍ଷୀ ହେବ ନାହିଁ । ବହୁତ ଲାଭ ଲୋଭରେ ବିଦେଶ ଯିବା ନିରର୍ଥକ । ଏହିପରି ଭାବେ ଜୀବନ କରିବା ପରେ ଷାଠିଏ ବର୍ଷ ହେଲେ ତୀର୍ଥସ୍ଥାନ ଦର୍ଶନ କରିବା **ଆବଶ୍ୟକ** ।

ପାପ କରିବା ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି । ସବୁ ଜାତିରେ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅଛି । ବ୍ରାହ୍ମଣ ଯାଗ କରି, କ୍ଷତ୍ରୀ ରଣଯାଗ କରି, ଶୂଦ୍ର କୃଷି କରି ପାପମୁକ୍ତ ହୋଇଥାଏ । 'ବୈଶ୍ୟ ପାପ କଲେ ମୁକତ ବାଟ ନ ଦିଶି' । ପାପ ନ ଲାଗିବାର ଏକମାତ୍ର ଉପାୟ ହେଉଛି - 'ଆପଣାର ନିଜ କର୍ମେ ଥିଲେ ନ ଲାଗଇ ପାପ' (ସ୍ୱର୍ଗା ପୃ-୨୮)

ଧର୍ମ ଅର୍ଜନ ପାଇଁ ସାରଳା ଦାସ **ମହାଭାରତ**ରେ ବହୁ ପ୍ରକାର ଉପାୟର ସୂଚନା ଦେଇଥିଲେହେଁ 'ସ୍ୱର୍ଗାରୋହଣ ପର୍ବ'ରେ ପରୋପକାର, ଲୋକଙ୍କୁ ମୃତ୍ୟୁମୁଖରୁ ବଞ୍ଚାଇବା ପ୍ରଚେଷ୍ଟା, ତୀର୍ଥ ଦର୍ଶନ, ତୀର୍ଥ ଉଦ୍ଧାର, ଦେବଦେବୀଙ୍କ ବନ୍ଦନା ଓ ଦର୍ଶନ ପ୍ରଭୃତିକୁ ଗୁରୁତ୍ୱ ଦେଇଛନ୍ତି ।

ସଂସାରରେ ମଣିଷ କେବଳ ନିଜ କର୍ମ କରି ଉଦ୍ଧାର ପାଏ ନାହିଁ । କେତେଗୁଡ଼ିଏ ନିୟମ ପାଳନ କରିବାକୁ ହୋଇଥାଏ । ସେଥିମଧ୍ୟରୁ ନିମ୍ନ କେତେକ ନୀତି ବଚନକୁ 'ସ୍ୱର୍ଗାରୋହଣ ପର୍ବ'ରୁ ଉଦ୍ଧାର କରାଯାଇପାରେ । ସାରଳା ଦାସ ଦୋଷକୁ କ୍ଷମା କରିବା ବା ଉପେକ୍ଷା କରିବାକୁ ଧର୍ମ କହିଥିଲେ ।  ସେଥିପାଇଁ ସେ କହିଛନ୍ତି -

(୧) ମହତ୍ତ୍ୱ ପ୍ରାଣୀମାନେ ନ ଘେନନ୍ତି ଦୋଷ
କିଞ୍ଚିତ ଲୋକେ ଯେ ବୁଝନ୍ତି ବିଶେଷ ।
(୨) ସ୍ତ୍ରୀ ଆଷ୍ୟ ଧନ ଦେଇ ପୋଷଇ ଯେହୁ ବେଶ୍ୟା
ଗୋତ୍ରେ ଅବରଣୀ ସେ ଜାତିରେ ଅମନିଷ୍ୟା ।

ସଂସାରର ଅନିତ୍ୟତା ସମ୍ପର୍କରେ କହିବାକୁ ଯାଇ ସେ ଶଙ୍କରାଚାର୍ଯ୍ୟଙ୍କ ପରି କହିଛନ୍ତି-

କେ କାହାର ସୋଦରରେ କେ କାହାର ଭାରିଯା
କେ କାହାର ପୁତ୍ର ବନ୍ଧୁ କେ କାହାର ଆତ୍ମଜା ।

ପରୋପକାରୀ ହେଉଛି ଏ ସଂସାରର ପ୍ରକୃତ ମନୁଷ୍ୟ -

ପର ଉପଗାରୀ ହୋଏ ସର୍ବଦା ଯାର ଚିତ୍ତ
ତାହାକୁ ଜାଣିମା ସିନା ପରମ ପଣ୍ଡିତ ।

**ମହାଭାରତ**ରେ ବହୁ ଦେବଦେବୀଙ୍କୁ ସାରଳା ଦାସ ବନ୍ଦନା କରିଥିଲେହେଁ, 'ସ୍ୱର୍ଗାରୋହଣ ପର୍ବ'ରେ ସେ ପ୍ରସଙ୍ଗକ୍ରମେ ଯମ, ଅଗ୍ନି, ଇନ୍ଦ୍ର ଓ ଶିବଙ୍କ କଥା କହିଥିଲେହେଁ, ବନ୍ଦନା କରିଛନ୍ତି କୋଠାରୀ ଓ ହିଙ୍ଗୁଳା ଦେବୀଙ୍କୁ । ଏବଂ **ମହାଭାରତ**ର

ସମାପ୍ତ କରିଛନ୍ତି ଶ୍ରୀକୃଷ୍ଣଙ୍କ ବନ୍ଦନାରେ । ସାରଳା ଦାସଙ୍କ ଏହି ନିର୍ବାଚନରୁ **ମହାଭାରତ** ରଚନାର ଉଦ୍ଦେଶ୍ୟ ସ୍ପଷ୍ଟ ଭାବେ ପ୍ରତିପାଦିତ ହୋଇଥାଏ । ଯେଉଁ ଶ୍ରୀକୃଷ୍ଣଙ୍କ ମହିମା ପ୍ରଖ୍ୟାପନ ପାଇଁ **ମହାଭାରତର** ଆରମ୍ଭ ସେହି ଦେବତାଙ୍କ ସ୍ତୁତି ଓ ମହିମା ଗାନରେ ସେ **ମହାଭାରତକୁ** ସମାପ୍ତ କରି ନିଜର ମହାନ୍ କାର୍ଯ୍ୟ ସମାପନ କରିଛନ୍ତି । ମହାଭାରତ ରଚନା କରିବା ପାଇଁ ଯେଉଁ ଦେବୀ ତାଙ୍କର ପ୍ରେରଣାଦାତ୍ରୀ ଥିଲେ, **ମହାଭାରତ** ଶେଷ କଲାବେଳେ ସେ ସେହି ଦେବୀଙ୍କୁ ପ୍ରଣତି ଜଣାଇ ଯମ-ଯାତନାରୁ ନିଜକୁ ରକ୍ଷା କରିବା ପାଇଁ ନିବେଦନ କରିଛନ୍ତି । ଏଥିରୁ ଜଣାଯାଏ ସାରଳା ଦାସ ସବୁ ଦେବଦେବୀଙ୍କୁ ସମାନ ଦୃଷ୍ଟିରେ ଶ୍ରଦ୍ଧା ଜଣାଉଥିଲେ ହେଁ ଦେବୀ ଦୁର୍ଗା ଓ ଭଗବାନ ଶ୍ରୀକୃଷ୍ଣଙ୍କୁ ସେ ନିଜ ଜୀବନର ତ୍ରାଣକର୍ତ୍ତା ରୂପେ ଗ୍ରହଣ କରିଥିଲେ ।

ସାରଳା ଦାସଙ୍କ ଧର୍ମ ଧାରଣା ସମ୍ପର୍କରେ ସ୍ପଷ୍ଟ ଚିତ୍ର ପାଇବା ପାଇଁ 'ସ୍ୱର୍ଗାରୋହଣ ପର୍ବ'ରୁ ରୁଦ୍ର ନଦୀର ଆରପାଖେ ଥିବା ଲୋକମାନଙ୍କ ଆଚାର ବିଚାରକୁ ନିଆଯାଇପାରେ । ପାଣ୍ଡବମାନେ କୋଠାରୀ ଦର୍ଶନ ପରେ ରୁଦ୍ରନଦୀ କୂଳରେ ଥିବାବେଳେ ଯୁଧିଷ୍ଠିର ଭୀମସେନକୁ ଆଦେଶ ଦେଲେ ନଈର ଆର ପାଖକୁ ଯାଇଁ, ସେ ଲୋକଙ୍କ କଥା ବୁଝିବା ପାଇଁ । ଭୀମସେନ ନଦୀ ପାର ହେବା ପରେ ତାଙ୍କ ପ୍ରକୃତି ବଦଳିଗଲା । ସେ ନିଜ ଭାଇମାନଙ୍କୁ ଚିହ୍ନି ପାରିଲେ ନାହିଁ । ସେ କୂଳରେ ପହଞ୍ଚିବା କ୍ଷଣି ରେରେକାର ଶବ୍ଦ କରିବାକୁ ଆରମ୍ଭ କରିଦେଲେ ।

ସବୁ ସଙ୍କଟ ସମୟ ପରି ଏଥର ମଧ୍ୟ ଯୁଧିଷ୍ଠିର ସହଦେବଙ୍କୁ ଏହାର କାରଣ ପଚାରିଲେ । ସହଦେବ ପୁରାଣରୁ କଥା କହିଲା ପରି କହିବାକୁ ଲାଗିଲେ - ସତ୍ୟଯୁଗରେ ରାଜା ମାନ୍ଧାତା ଏକ ଯାଗ କରିଥିଲେ । ସେତେବେଳେ ସେ 'ମହୀମଣ୍ଡଳ ପ୍ରଜାନ୍ତ ସମସ୍ତ ନିମନ୍ତ୍ରିଲେ' । ଏହି ସ୍ଥାନ ଅମୋକ୍ଷ ହୋଇ ରହିଗଲା । ଏଠି ଦେବୀ ଡାକେଶ୍ୱରୀଙ୍କ ବାସ । ଏଠିକାର ଲୋକଙ୍କ ଚରିତ୍ର ଅତି ବିଚିତ୍ର । ସେମାନଙ୍କର ଶଉଚ ଅଶଉଚ ବିଚାର ନାହିଁ । ପ୍ରକୃତି ଶଙ୍କା କରି ଜଳ ଘେନନ୍ତି ନାହିଁ । ଏମାନଙ୍କ ପାଖରେ ମାନ୍ୟତା ଓ ଗୌରବର ବିଚାର ନାହିଁ । ସମସ୍ତଙ୍କ ସହ ଏକା ପ୍ରକାର ବ୍ୟବହାର କରିଥାନ୍ତି । ଏଠି ଦ୍ୱିଜ ଚାଣ୍ଡାଳ ବିଚାର ନାହିଁ । ଅଇଣ୍ଠା ବିଚାର ମଧ୍ୟ ନାହିଁ । ସେମାନଙ୍କର ଆହୁରି ଦୋଷ ହେଲା ଯେ ସେମାନେ ଶୂକର ମାଂସ ଭକ୍ଷଣ ଓ ମଦିରା ପାନ କଲେ ବି ବସ୍ତ୍ର ପାଲଟନ୍ତି ନାହଁ । ସେମାନଙ୍କର ସ୍ତ୍ରୀମାନେ ମଧ୍ୟ ସେହିପରି ଅନାଚାରୀ । କଛାମାରି ଲୁଗା ପିନ୍ଧନ୍ତି ନାହିଁ । ପୁଣି ସେମାନଙ୍କର ଯୋନି ଯଉବନ ମଧ୍ୟ ଅରକ୍ଷଣ । ଯୁଧିଷ୍ଠିର ଏସବୁ ଶୁଣି କାନରେ ହାତ ଦେଲେ । ସହଦେବ କହିଲେ ଶୁଣିବା ତ ଦୂରର କଥା ଚାହିଁଲେ ବି ଦୋଷ ହୁଏ ।

ଏହି ସଂପ୍ରଦାୟ ଯେ ହିନ୍ଦୁମାନଙ୍କଠାରୁ ସମ୍ପୂର୍ଣ୍ଣ ବିପରୀତ ପ୍ରକୃତିର ଥିଲେ, ଏହାହିଁ

ଜଣାଯାଏ । ଅନୁମାନ କରାଯାଇପାରେ ଏମାନେ କାପାଳିକ ସଂପ୍ରଦାୟର ଲୋକ ଥିଲେ । କାପାଳିକମାନେ ମଧ୍ୟ ହିନ୍ଦୁଧର୍ମର ନିୟମ ପାଳନ ନ କରି ଅତି ବିଚିତ୍ର ଭାବେ ଜୀବନ ଅତିବାହିତ କରୁଥିଲେ ।

'ବନ ପର୍ବ'ରେ କର୍ଣ୍ଣକେଶରୀ ରାଣା ପ୍ରସଙ୍ଗରେ କଣ୍ଟୁ ଋଷି ଯେଉଁମାନଙ୍କୁ ଦେଖି ଦଣ୍ଡେ ରହିଗଲେ, ସେମାନଙ୍କୁ ଡକ୍ଟର ବଂଶୀଧର ମହାନ୍ତି କାପାଳିକ ବା ଅଘୋରୀ ସଂପ୍ରଦାୟର ଲୋକ ଭାବେ ଚିହ୍ନିତ କରିଛନ୍ତି । ସେମାନଙ୍କର ଆଚାର - ବିଚାର ସମ୍ପର୍କରେ ନିମ୍ନ ସୂଚନା ମିଳିଥାଏ ।

ମକର ମାସ କୃଷ୍ଣ ପକ୍ଷ ଅମାବଇ ଦିନ
ଦାଣ୍ଡେ ବ୍ୟଞ୍ଜନ ସେ କରଇ ରନ୍ଧନ ।
ଶ୍ୱାନ ଗୁଡ଼ାଏ ଯେ ମାରି ମାଂସ କେଳାଇ
ଗୋଚର୍ମ ଉପରେ ଅଛନ୍ତି ଘୋଡାଇ ।
ମନୁଷ୍ୟ ମୁଣ୍ଡ ତିନିଗୋଟି ତିନି ପଖା ଚୁଲିକରି
ଗନ୍ଧ ମୁଣ୍ଡ ଖୋଳାରେ କୁକୁର ମାଂସ ଭରି ।
ମଦିରା ଫୁଟାଇ ସେ ମାଂସରେ ଲାଗଇ
ଅଇଁଠାପତ୍ରରେ ସେ ମାଂସକୁ ପୂରାଇ ।
ତହିଂ ଘୋଡାଇଂ ଅଛି ଖଣ୍ଡି ଆପାଣ୍ଡେଇ ଖଣ୍ଡେ
କଣ୍ଟୁ ମହାଋଷି ରହିଲେ ତହିଂ ଦଣ୍ଡେ । **(ବନ ପର୍ବ , ପୃ-୩୬୨)**

ସାରଳା ଦାସ ଧର୍ମର ଦାର୍ଶନିକ ଦିଗ ଅପେକ୍ଷା ବ୍ୟବହାରିକ ଦିଗ ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ସମାଜରେ ଯେଉଁଠି ଅନାଚାର, ବ୍ୟଭିଚାର, ଭ୍ରଷ୍ଟାଚାର ଓ ଅବିଚାର ଦେଖୁଥିଲେ , ସେ ତା'କୁ ଅତି କଠୋର ଭାବେ ଆଲୋଚନା କରୁଥିଲେ । ନୀତି, ଶୃଙ୍ଖଳା ଓ ସଂଯମ ଯେ ସୁସ୍ଥ ସମାଜର ପ୍ରକୃତ ପରିଚୟ ଏହାହିଁ ଥିଲା ସାରଳା ଦାସଙ୍କ ଧର୍ମ । ସେଥିପାଇଁ ସେ ପ୍ରତ୍ୟେକ କାର୍ଯ୍ୟରେ ସଂଯମତାକୁ ପ୍ରାଧାନ୍ୟ ଦେଇଥିଲେ । ଭୋଜନ, ଶୟନ, ମୈଥୁନ ଏପରିକି ଆଚରଣରେ ସଂଯମତା ହିଁ ତାଙ୍କ ଧର୍ମର ପ୍ରକୃତ ଦର୍ଶନ । କବିଙ୍କ ପ୍ରାୟ ପ୍ରତ୍ୟେକ ପର୍ବରେ ଏହାର ବହୁ ଦୃଷ୍ଟାନ୍ତ ଥିଲେ ବି ନିମ୍ନ କେତେକ ପଦ ଦେଖାଯାଇପାରେ -

ଜ୍ୟେଷ୍ଠ ହେଉ ଅବା କନିଷ୍ଠଇ ହେଉ
ଶିରେ ଚରଣ ଲାଗିଲେ ଆୟୁଷ ଥିବ କାହୁଂ ।
ମନୁଷ୍ୟ ହେଉ ଅବା କି କୀଟ ହେଉ ଶରୀରେ ଜୀବ ଥାଉ
ଅଧେ ଆୟୁଷ ତୁଟଇ ତାହାକୁ ତେଇଂ ଯାଉ ।

ଖଟାଇଲା ଜୀବର ଯେ ତିଅଇଂ ଦଉଡ଼ି
ସର୍ପ ହୋଇ ଜନ୍ମ ହୁଅଇ ଜନ୍ମ ଚାରି ।
କାର୍ଯ୍ୟ ହେଉ କି ଅକାର୍ଯ୍ୟ ହେଉଂ ଯେ ଭାଙ୍ଗଇ ପର ନିଦ
ଆପଣା ଜାତ କଲା ପୁତ୍ର ଶରୀରୁ ଶିରଚ୍ଛେଦ ।

(ଉଦ୍‌ଯୋଗ, ପୃ -୨୧୩)

ଯୁଧିଷ୍ଠିର ହିମାଳୟର ତୁଙ୍ଗ ଶିଖରଦେଶରେ ପ୍ରଥମ ଆରୋହଣକାରୀ ଭାବେ ଧର୍ମର ବିଜୟକେତନ ଉଡାଇଥିଲେହେଁ, ତାଙ୍କ ଧର୍ମ ସମାଜକୈନ୍ଦ୍ରିକ ଥିଲା । ସମାଜକୁ ଛାଡି ଧର୍ମ ଅର୍ଜନ କରିହୁଏ ନାହିଁ । 'ସ୍ୱର୍ଗାରୋହଣ ପର୍ବ'ର ବିଷୟବସ୍ତୁକୁ ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଅନୁଧ୍ୟାନ କଲେ, ଧର୍ମ ଓ ସମାଜ କିପରି ପରସ୍ପର ଉପରେ ନିର୍ଭରଶୀଳ ଥିଲା, ତାହାହିଁ ସ୍ପଷ୍ଟ ହୋଇଯାଏ ।

କଥା ହେଲା ଯୁଧିଷ୍ଠିରଙ୍କ ସ୍ୱର୍ଗ ଆରୋହଣ । ହିନ୍ଦୁମାନଙ୍କର ବିଶ୍ୱାସ ହେଲା, ଜୀବନରେ ପୁଣ୍ୟ କାର୍ଯ୍ୟ କଲେ ଜୀବନ ଗଲା ପରେ ସ୍ୱର୍ଗ ମିଳେ । ଏହି ଆଦର୍ଶ ନେଇ କେବଳ ଯୁଧିଷ୍ଠିର ନୁହନ୍ତି, ଯୁଗ ଯୁଗ ଧରି କେତେ ଧର୍ମାତ୍ମା, ପୁଣ୍ୟାତ୍ମା ବ୍ୟକ୍ତି ଏ ଦେଶରେ ଜନ୍ମ ନେଇ ନିଜ କର୍ମବଳରେ ସ୍ୱର୍ଗଲାଭ କରିଛନ୍ତି, ତା'ର ଠିକଣା ନାହିଁ । ସାରଳା ଦାସ ସେହି ଆଦର୍ଶକୁ ପ୍ରଚାର କରିଛନ୍ତି 'ସ୍ୱର୍ଗାରୋହଣ ପର୍ବ'ରେ ।

ବ୍ୟାସଙ୍କ କଥାବସ୍ତୁ ସାରଳା ଦାସଙ୍କୁ ଅଜଣା ନ ଥିଲା । କିନ୍ତୁ ସେ ମହାଭାରତ ଲେଖିଥିଲେ ଓଡ଼ିଆ ଭାଷା କହୁଥିବା ଓଡ଼ିଶାବାସୀଙ୍କ ପାଇଁ । ସେଥିପାଇଁ ଏଥିରେ ପରିବର୍ତ୍ତନ ଅତ୍ୟନ୍ତ ଆବଶ୍ୟକ ଥିଲା । ବ୍ୟାସଙ୍କ ମହାପ୍ରସ୍ଥାନ ପର୍ବ ପରି ଏଥିରେ ବି ପରୀକ୍ଷିତଙ୍କୁ ରାଜ୍ୟ ଦେଇ ଯୁଧିଷ୍ଠିର ନିଜର ଭାଇ ଓ ସ୍ତ୍ରୀ ସହିତ ସ୍ୱର୍ଗାଭିମୁଖେ ଯାତ୍ରା ଆରମ୍ଭ କଲେ । ହସ୍ତିନାପୁର ଛାଡ଼ିବାବେଳକୁ ଓଡ଼ିଶାର ବୈତରଣୀ ନଦୀ କୂଳରେ ବାସ କରୁଥିବା ସୁରେଶ୍ୱର ନାମକ ବ୍ରାହ୍ମଣ ତା' ଘର କୋଠିଆ ତନ୍ତୀପା ସହିତ କଜିଆ କରି ଯୁଧିଷ୍ଠିରଙ୍କ ପାଖରେ ଫେରାଦ ହେବା ପାଇଁ ଦରବାରରେ ହାଜର ହେଲା । କଳି ହେଲା, ଜମି ତଳୁ ବାହାରିଥିବା ଏକ ରତ୍ନଜାଲିକୁ ନେଇ । ରତ୍ନଜୋଲି କାହାର ? ଯାହାର ଜମି ସେ ରତ୍ନଜାଲିର ମାଲିକ ନା ଯିଏ ପରିଶ୍ରମ କରି ବାହାର କଲା ।

ଯୁଧିଷ୍ଠିର ପ୍ରଥମେ କହିଲେ ବ୍ରାହ୍ମଣର । ତା' ପରେ କହିଲେ କୃଷିକାରର । ସେଥିରେ ସମାଧାନ ନ ହେବାରୁ ଦୁଇଜଣ ବାଣ୍ଟିକରି ନେବାକୁ ପରାମର୍ଶ ଦେଲେ । ଏତିକିବେଳେ ସେମାନଙ୍କ ନିୟତ ବଦଳିଗଲା । ପୂର୍ବ ନ୍ୟାୟ କଥା ଭୁଲି କୃଷିକାର କହିଲା, ମୁଁ ମାଟିତଳୁ ବାହାର କଲି, ଏ ଧନ ମୋର । ବ୍ରାହ୍ମଣ ବି କହିଲା ମୋ ଜମିରୁ ବାହାରିଲା, ଏ ଧନ ମୋର । ଏତିକିବେଳେ ପରୀକ୍ଷିତ ସମାଧାନ କଲେ ଏ ଧନର ଅଧିକାରୀ ଜମି-ମାଲିକ ନୁହେଁ କି କୃଷିକାରୀ ନୁହେଁ, ରାଜା ହିଁ ଏହାର ଅଧିକାରୀ । ରାଜକୋଷକୁ

ପଠାଇ ଦିଆଯାଉ । ତାହାହିଁ ହେଲା । କଥାରେ ଅଛି ଦୁଇ ଜଣଙ୍କ କଳି ହେଲେ, ତୃତୀୟ ଜଣଙ୍କର ଲାଭ ହୁଏ ।

ଏହାହିଁ କଳିଯୁଗର ନିଶାପ । ପରୀକ୍ଷିତ ହୁଏତ ପ୍ରତ୍ନତତ୍ତ୍ୱବିତ୍ ନ ଥିଲେ । ଏ ଯୁଗ ହୋଇଥିଲେ ଅତୀତ ଇତିହାସର ଉପାଦାନ କହି ମ୍ୟୁଜିଅମରେ ରଖିଥାନ୍ତେ । ଏଠି ରତ୍ନଜାଲିକୁ ପ୍ରତୀକ ଭାବେ ଗ୍ରହଣ କରାଯାଇଥିଲେ ବି 'ଲଙ୍ଗଳ ଯାହାର, ଜମି ତାହାର' ଅର୍ଥାତ୍ ଜମିମାଲିକ ଓ ମୂଲିଆ ସଂଘର୍ଷର ଏହାହିଁ ଥିଲା ପୂର୍ବ ସୂଚନା ।

ଜମିମାଲିକ ଓ କୃଷିକାରୀଙ୍କ ବିବାଦ ଦେଖି ଧର୍ମରାଜ ଯୁଧିଷ୍ଠିର ଚିନ୍ତିତ ହୋଇ ପଡିଲେ । ସହଦେବଙ୍କୁ ପଚରାଗଲା । ସେ କହିଲେ, କଳିଯୁଗ ଆସିଗଲା । ଏହିପରି ବହୁ ଅଘଟଣ ଘଟିବ । ଯୁଧିଷ୍ଠିର କହିଲେ, ଆଉ ଏଠି ରହିହେବ ନାହିଁ । ଚାଲ, ତୀର୍ଥଯାତ୍ରା କରିବା ।

ସାରଳା ଦାସ ଏହି ସୁଯୋଗରେ ପାଣ୍ଡବମାନଙ୍କୁ ଆଣିଲେ ଓଡ଼ିଶାକୁ, ତାଙ୍କ ମାତୃଭୂମିକୁ । କଳିଯୁଗ ସିଦ୍ଧ ପାଣ୍ଡବମାନଙ୍କ ସ୍ପର୍ଶରେ ଏହାକୁ ପବିତ୍ର କରିବାକୁ । 'ବନପର୍ବ' ଲେଖିବା ବେଳେ, ସେ ଥରେ ପାଣ୍ଡବମାନଙ୍କୁ ଓଡ଼ିଶାକୁ ଆଣି, ଓଡ଼ିଶାର ବନ, ନଦୀ, ପାହାଡ଼, ଝରଣା ଓ ତୀର୍ଥ ଦେଖାଇ ନେଇଥିଲେ । ଏଥର ସେହି ପୁରୀ , ଭୁବନେଶ୍ୱର, କୋଣାର୍କ ଯାଜପୁର ଦେଖାଇବା ସଙ୍ଗେ ସଙ୍ଗେ ଆଉ ଦୁଇଟି ପ୍ରସିଦ୍ଧ ସ୍ଥାନ ଦେଖାଇଲେ । ଗୋଟିଏ ହେଲା ଅମରାବତୀ, ଅନ୍ୟଟି ହେଲା ପ୍ରାଚୀକୂଳର ମାଧବ ।

ହିନ୍ଦୁ ସମାଜ ସହ ତୀର୍ଥଯାତ୍ରା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ହିନ୍ଦୁ ବିଶ୍ୱାସ ହେଲା, ଜୀବନରେ ମଣିଷ ଯେତେ ଅକର୍ମ କରିଥାଏ, ତୀର୍ଥ ସ୍ନାନ ଓ ଦର୍ଶନରେ ସେସବୁ ଧୋଇ ହୋଇଯାଏ । ଭଗବାନଙ୍କ ନାମ ମଲାବେଳେ ଥରେ ଉଚ୍ଚାରଣ କଲେ ସେ ମୁକ୍ତି ପାଇଯାଏ । ପାଣ୍ଡବମାନେ ରାଜ୍ୟ ପାଇଁ ଅଠର ଦିନ ଯୁଦ୍ଧରେ ନିଜର ଭାଇ, ବନ୍ଧୁ, କୁଟୁମ୍ବ, ଆତ୍ମୀୟ ଓ ସ୍ୱଜନଙ୍କୁ ମରାଇ ରକ୍ତରଞ୍ଜିତ ହସ୍ତିନାପୁରରେ ରାଜତ୍ୱ କରି ଯେତେ ପାପ ଅର୍ଜନ କରିଥିଲେ, ସେସବୁରୁ ମୁକ୍ତି ପାଇବାକୁ ହେଲେ ଓଡ଼ିଶାର ଅମରାବତୀ; ଇନ୍ଦ୍ରପୁର ନୁହେଁ, ଧର୍ମପୁର ଦର୍ଶନ କରିବା ଏକାନ୍ତ ବାଞ୍ଛନୀୟ । ସେଥିପାଇଁ ସାରଳା **ମହାଭାରତ**ରେ ପାଣ୍ଡବମାନେ ହସ୍ତିନାପୁରରୁ ସିଧା ଆସି ଅମରାବତୀରେ ପହଞ୍ଚିଲେ ।

ପାଣ୍ଡବମାନଙ୍କୁ ଆଣିବା ପଛରେ ସାରଳା ଦାସଙ୍କର ବହୁ କଥା କହିବାର ଥିଲା । ସେ ସେଥିପାଇଁ ବୈଶ୍ୟ ହରିସାହୁ ଝିଅ ସୁହାଣୀ ଉପାଖ୍ୟାନର ଅବତାରଣା କଲେ । ଧର୍ମରାଜ ଯୁଧିଷ୍ଠିରଙ୍କୁ ଦେଖିବା ପାଇଁ ବହୁଲୋକଙ୍କ ସାଙ୍ଗରେ ହରିସାହୁ ତା'ର ପଞ୍ଚଦଶବର୍ଷୀୟା ଯୁବତୀ କନ୍ୟା ସୁହାଣୀକୁ ଧରି ପହଞ୍ଚିଲା । କନ୍ୟାକୁ ଦେଖି ଯୁଧିଷ୍ଠିରଙ୍କ ଆଗ୍ରହ ହେଲା, ଏ କନ୍ୟାଟି କିଏ ?

ହରିସାହୁ କାଳବିଳମ୍ବ ନ କରି ଉତ୍ତରଦେଲା, ଏ ମୋ କନ୍ୟା । ଜନ୍ମବେଳେ ଜ୍ୟୋତିଷ କହିଛି, ବିବାହ ବେଳେ ଏହାର ମୃତ୍ୟୁ ସୁନିଶ୍ଚିତ । ନିଜ ଅଲିଅଳି ଝିଅର ଜୀବନ ପାଇଁ ହରିସାହୁ ଅପେକ୍ଷା କଲା ଦୀର୍ଘ ପନ୍ଦର ବର୍ଷ । ପିତା ଘରେ କନ୍ୟା ରଜୋବତୀ ହେଲେ ପିତୃଲୋକ ନରକଗାମୀ ହୁଅନ୍ତି । ସାରଳା ଦାସ ଏ କଥାକୁ **ମହାଭାରତ**ରେ ହଜାରେ ଥର କହି ଲୋକଙ୍କୁ କନ୍ୟାମାନଙ୍କୁ ଚଞ୍ଚଳ ଚଞ୍ଚଳ ଅର୍ଥାତ୍ ବାଲ୍ୟକାଳରୁ ବିବାହ କରି ଦେବା ପାଇଁ ଉପଦେଶ ଦେଇଥିଲେ ବି ଏତେବେଳକୁ ନିରୁପାୟ ଥିଲେ । କାରଣ ଯମ ଦେବତାର କାଳ ଫାଶରୁ କନ୍ୟାକୁ ବଞ୍ଚାଇବାକୁ ହେଲେ ସେହିପରି ଶକ୍ତିଶାଳୀ ପାତ୍ର ଆବଶ୍ୟକ ।

ଯୁଧିଷ୍ଠିର ଥିଲେ ପଞ୍ଚୁ କଟକର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ଧର୍ମରାଜ ଭାବେ ତାଙ୍କର ପ୍ରସିଦ୍ଧି । ଭୀମ, ଅର୍ଜୁନଙ୍କ ପରି ଧୁରନ୍ଧର ବୀର ତାଙ୍କର ଭାଇ । ସେ ଗଳିତ ବୟସ ଅର୍ଥାତ୍ ବୁଢ଼ା ହେଲେ କ'ଣ ହେଲା ? ତାଙ୍କୁ କନ୍ୟାଦାନ କଲେ ଯମ ଦେବତାଙ୍କଠାରୁ ତ ମୁକ୍ତି ମିଳିଯିବ, ତା ' ସାଙ୍ଗକୁ କୁଳ ଉଦ୍ଧାର ହୋଇଯିବ । ବୈଶ୍ୟମାନଙ୍କ ଜାତି ମର୍ଯ୍ୟାଦା ବଢ଼ିଯିବ ।

କୁଳ ମର୍ଯ୍ୟାଦା ବଢ଼ାଇବା ପାଇଁ ସେତେବେଳେ 'କନ୍ୟା ଜୀଉଁ ଅଥବା ମରୁ' ସେ କଥାର ବିଚାର ନକରି ବୁଢ଼ା ବର ସହିତ କନ୍ୟାମାନଙ୍କୁ ବିବାହ ଦେଉଥିଲେ । ସାରଳା ଦାସ ସେହି କୁରୀତି ପ୍ରତି ତୀକ୍ଷ୍ଣଦୃଷ୍ଟି ଦେଇ ବିବାହର ଆୟୋଜନ କଲେ । ଊନବିଂଶ ଶତାବ୍ଦୀରେ ରାଜା ରାମମୋହନ ରାୟ ବଙ୍ଗଳାରୁ ଏହି କୁଳୀନ ପ୍ରଥାର ବିଲୋପ ପାଇଁ ସଂଗ୍ରାମ କରିଥିଲେ ।

ସବୁ ବିବାହ ପରି ଏଥିରେ ବି ପୁରୋହିତ ଆସି ଦେଶକାଳ ବାକ୍ୟ ଉଚ୍ଚାରଣକରି ବର କନ୍ୟାଙ୍କୁ ବେଦୀରେ ବସାଇ ବିବାହ ସମାପନ କଲେ । ବହୁପ୍ରକାର ବାଜା ବାଜିଲା, ନାରୀମାନେ ମଙ୍ଗଳ ଗୀତ ଗାନ କଲେ, ହୁଳହୁଳି ପକାଇଲେ ।

କିମ୍ବଦନ୍ତୀ କୁହେ, ଅମରାବତୀ ପାହାଡ଼ ଏକଦା ଯୋଗୀ ଋଷିଙ୍କ ଦ୍ୱାରା ଅଧ୍ୟୁଷିତ ଥିଲା । ସେଥିରେ ଥିବା ଗୁମ୍ଫାସବୁ ଏହାର ମୂକ ସାକ୍ଷୀ । ତା'ର ପାଖରେ ତେଲିଗଡ ଦୁର୍ଗର ଭଗ୍ନାବଶେଷ ଆଜି ବି ଦେଖିବାକୁ ମିଳିଥାଏ । କିଛି ଦୂରରେ କଳିକଳା ପାହାଡ । ତେବେ ସେଠି ଅର୍ଜୁନଙ୍କ କଥା ନାହିଁ । ଭୀମ କଳିକୁ ଏହି ପାହାଡ ଉପରେ ମାଡି ବସିଥିଲେ । ତାଙ୍କ ଆଣ୍ଠୁଚିହ୍ନ ଆଜିବି ଲୋକଙ୍କ ବିସ୍ମୟ ଉଦ୍ରେକ କରିଥାଏ । ଏସବୁ ଲୋକକଥାକ ଐତିହାସିକ ତଥା ପୌରାଣିକ ଆବରଣ ଦେବା ପାଇଁ ସାରଳା ଦାସ ଓଡିଶାର ବହୁ ତୀର୍ଥ ମଧ୍ୟରେ ଅମରାବତୀକୁ ଏତେ ମହତ୍ତ୍ୱ ଦେବା, ଏହାକୁ ଧର୍ମପୁର କହିବା ପଛରେ ସାରଳା ଦାସଙ୍କ ଏହି ସ୍ଥାନ ପ୍ରତି ସ୍ୱତନ୍ତ୍ର ଆକର୍ଷଣ ଥିବା ଅନୁମେୟ ।

ଏହାପରେ ପାଣ୍ଡବମାନେ ପଞ୍ଚତିରିଶ ବର୍ଷ ପରେ ସୁହାଣୀ କନ୍ୟାକୁ ନେଇ

କପିଳାସ ପର୍ବତକୁ ଗଲେ । ସେଠାରେ ଶିଖରେଶ୍ୱର ମହାଦେବଙ୍କ ନିକଟରେ ସୁହାଣୀକୁ ସେବିକା ରୂପେ ରଖି ଅନ୍ୟ ତୀର୍ଥ ଦର୍ଶନ କରିବାକୁ ଆଗେଇଗଲେ ।

ତୀର୍ଥ ସ୍ଥାନ ଦେଖିବା ଯେପରି ସମାଜର ଅଙ୍ଗ, ତୀର୍ଥସ୍ଥାନ ସମ୍ପର୍କରେ ଲୋକକଥା ଶୁଣି ଅଭିଭୂତ ହେବା ସେହିପରି ଓଡ଼ିଶା ସମାଜର ଏକ ବିଶିଷ୍ଟ ଚଳଣି । ସେଥିପାଇଁ ସାରଳା ଦାସ ପ୍ରାୟ ପ୍ରତ୍ୟେକ ତୀର୍ଥ ସଂପର୍କରେ କୌଣସି ନା କୌଣସି କଥାର ଅବତାରଣା କରିଥାନ୍ତି । ସେହିପରି ସାରଳା ଦାସଙ୍କ ମତରେ କପିଳାସ ଭୁବନ ଓଡ୍ରରାଷ୍ଟ୍ରର ଏକ ଗୁପ୍ତ ତୀର୍ଥ । ସେଠାରେ ଧବଳାଙ୍ଗୀ 'ଉର୍ଦ୍ଧରେତା' ହୋଇ ପ୍ରବାହିତ । ବିଶ୍ୱାବସୁ ନାମରେ ଜଣେ ଗନ୍ଧର୍ବ ନୃପତି ଥିଲା । ତାଙ୍କ ଭାର୍ଯ୍ୟାର ନାମ ପ୍ରସୂ । ସେମାନଙ୍କର ସାତପୁଅ କାଳ, କାମ, ସମ, ସୋମ, ଆଧାନ, ପ୍ରିୟ , ନିଦା । ସେମାନେ କଟୁଆଳ ଭାବେ ବନସ୍ତ ରକ୍ଷା କରୁଥିଲେ । ଅପ୍‌ସରାଙ୍କ ସହ ତାଙ୍କର ପ୍ରୀତି ହେଲା । ଯେତେ ଧନ ଦେଲେ ବି ସେମାନେ ସନ୍ତୁଷ୍ଟ ହେଲେ ନାହିଁ । ବେଶ୍ୟା କ'ଣ କେବେ ଧନରେ ସନ୍ତୁଷ୍ଟ ହୁଏ ? ସାରଳା ଦାସ କହିଲେ -

ଶ୍ରୀ ଆଷ୍ୟ ଧନ ଦେଇ ପୋଷଇ ଯେହୁ ବେଶ୍ୟା
ଗୋତ୍ରେ ଅବରଣୀ ସେ ଜାତିରେ ଅମନିଷ୍ୟା । (ପୃ-୩୦)

ଗନ୍ଧର୍ବ ପୁତ୍ରମାନେ ମଧ୍ୟ ବେଶ୍ୟାଙ୍କୁ ସନ୍ତୁଷ୍ଟ କରିବା ପାଇଁ କୁବେରଙ୍କ ଭଣ୍ଡାରରୁ ଚୋରି କଲେ । କୁବେର ଏକଥା ଜାଣି ସେମାନଙ୍କୁ ଆଣି ମହାଦେବଙ୍କୁ ବିଚାର କରିବାକୁ ଅନୁରୋଧ କଲେ । ସେମାନଙ୍କ ଚୋରି କଥା ଶୁଣି ମହାଦେବ ରାଗିଯାଇ ଅଭିଶାପ ଦେଲେ । ଫଳରେ ସେମାନେ ପାଷାଣ ହେଲେ । ଅଭିଶାପ ଶୁଣି ସେମାନେ ସଦାନନ୍ଦଙ୍କୁ ସେବା କଲେ । ସଦାନନ୍ଦ ସନ୍ତୁଷ୍ଟ ହୋଇ ସେମାନଙ୍କୁ ସାତ ପର୍ବତ ଅର୍ଥାତ୍ ସାତ ପାହାଚ ହେବାର ବର ପ୍ରଦାନ କଲେ । ମନ୍ଦିରର ପାହାଚ ହେବାର ପୁଣ୍ୟ ହେଲା ।

ମୋତେ ଦ୍ରଶନ କରି ଆସିବେ ଯେତେ ନର
ସବୁରି ପାଦରଜ ପଡୁ ତୁମ୍ଭର ଉପର । (ପୃ-୩୦)

ଏହାପରେ ଆଉ ଗୋଟିଏ ଲୋକକଥା । ସେଦିନ କୁମ୍ଭମାସ କୃଷ୍ଣପକ୍ଷର ଚତୁର୍ଦ୍ଦଶୀ ତିଥି । ଯୁଧିଷ୍ଠିର କହିଲେ ଭୀମକୁ କିଛି ତଣ୍ଡୁଳ ଆଣ । ପଞ୍ଚନ ବା ପାଚନ ଅର୍ଥାତ୍ ରାନ୍ଧିକରି ମହାଦେବଙ୍କୁ ଭୋଗ ଚଢ଼େଇବା । ଭୀମ ଗଲା ପୁଣି ଧର୍ମପୁର ରାଜ୍ୟକୁ । ଧାନ କାଟି ଲୋକେ ଖଳାରେ ଜମା କରିଥିଲେ । ଭୀମ ସେଥିରୁ ଅମଲା ଧାନ ଗୋଛାଏ ଭାର କରି ନେଇ ଆସିଲା । ବଣ ଭିତରେ ବଳଦ ମିଳିବେ କେଉଁଠୁ ? ଭୀମ ସାତଟା ବାଘ ଆଣି ବେଙ୍ଗଳା ପକାଇଲା । ଧାନ ଅମଳ କରି ପଥର ଉପରେ ରଖିଲା ପୁଣି ମୁଥ ମାରି ସେଥିରୁ ଚାଉଳ ବାହାର କଲା । ସେହି ଚାଉଳରୁ ଭାତ ରାନ୍ଧି ଶିଖରେଶ୍ୱରଙ୍କୁ ପ୍ରସାଦ ଚଢ଼ିଲା । ଅସୁରୁଣୀ ଗଙ୍ଗରେ ବି ଭୂତ ସବୁ ଲୋକଙ୍କୁ ନିଦରୁ

ଉଠାଇ ଆଣି ରାତିସାରା ତେଣ୍ଟାରେ ପାଣି ବୁହାନ୍ତି, ନୋହିଲେ ବେଙ୍ଗଳାରେ ଯୋଚନ୍ତି ।

ପାଣ୍ଡବମାନେ ତା'ପରେ ଦକ୍ଷିଣ ଦିଗକୁ ଯାଇ ଚିତ୍ରୋତ୍ପଳା ପାରି ହେଲେ । ଚିତ୍ରୋତ୍ପଳା କୂଳରେ ଉତ୍ପଳେଶ୍ୱର ଓ ଅମରେଶ୍ୱର ଦର୍ଶନ ସାରି ଏକାମ୍ର କ୍ଷେତ୍ରରେ ପହଞ୍ଚିଲେ । ବିନ୍ଦୁ ସାଗରରେ ସ୍ନାନ କରି ପାଞ୍ଚ ପାଣ୍ଡବଙ୍କ ନାଁରେ ପଞ୍ଚଲିଙ୍ଗ ସ୍ଥାପନା କଲେ । ସେଠୁ ଚାଲିଲେ ପ୍ରାଚୀ ନଦୀ ତୀର୍ଥକୁ ।

ପ୍ରାଚୀ ଓଡ଼ିଶାର ଏକ ପ୍ରାଚୀନ ନଦୀ । ଏହାର ପବିତ୍ରତା ନେଇ କେତେ ଗଳ୍ପ । ଏହାରି କୂଳରେ ମାଧବ ଉପାସନାର ପୀଠ । ଏହିଠାରେ ଅଷ୍ଟଶମ୍ଭୁ । ଲୋକକଥାରେ ମାଧବ ନିକଟରେ ଥିବା ପୁଷ୍କରିଣୀର ନାମ ଗଦା ପୋଖରୀ । ଭୀମଙ୍କ ଗଦାଘାତରେ ଏହି ପୋଖରୀର ସୃଷ୍ଟି । ଏହାରି ପାଖରେ ଘୋଷରା ଗୋହିରୀ । ଲୋକେ କୁହନ୍ତି ଭୀମ କୌଣସି ଅସୁରକୁ ଘୋଷାରି ଘୋଷାରି ଏଠି ମାରି ପକାଇଥିଲା । ଆର୍ତ୍ତବାବୁଙ୍କ 'ଆଦିପର୍ବ'ର ପରିଶିଷ୍ଟାଂଶ ଅନୁଯାୟୀ ଏହା ପ୍ରାଚୀ କୂଳରେ ସାରଳା ଦାସଙ୍କର ଆଖୁ କିଆରୀ ଥିଲା । ସେହି କିଆରୀରେ ହଳ କରୁଥିବା ବେଳେ ଦେବୀ ସେଠାରେ ଆବିର୍ଭାବ ହୋଇ ସାରଳା ଦାସଙ୍କୁ କବି ହେବାର ବର ପ୍ରଦାନ କଲେ । ସେ ଯାହା ହେଉ, ପ୍ରାଚୀ ତୀର୍ଥ ଯେ ସାରଳା ଦାସଙ୍କର ପ୍ରିୟ ଥିଲା । ଏହା 'ସ୍ୱର୍ଗାରୋହଣ'ରୁ ଜାଣିହୁଏ । ସେଥିପାଇଁ ପାଣ୍ଡବଙ୍କୁ ଆଣି, ଆରଡ଼େକ ଦୈତ୍ୟକୁ ବଧ କରି ଯୁଧିଷ୍ଠିରଙ୍କ ହାତରେ ମାଧବ ପ୍ରତିମାକୁ ଜଳରୁ ଉଦ୍ଧାର କରି ପ୍ରତିଷ୍ଠା କରାଇଲେ । ପ୍ରାଚୀ ତୀର୍ଥର ଉଦ୍ଧାର ହେଲା ।

ମାଧବ ପରେ ପାଣ୍ଡବମାନେ ପଶ୍ଚିମ ଦିଗାଭିମୁଖେ ଲତା ଗହନ କନ୍ଦର ଅତିକ୍ରମ କରି ମହ୍ଲାର ରାଜ୍ୟରେ ଶବରୀ ନାରାୟଣଙ୍କୁ ଦର୍ଶନ କଲେ । ଏହି ଦେବତା ମହାନଦୀ କୂଳରେ ମଧ୍ୟପ୍ରଦେଶରେ ଅବସ୍ଥିତ । କଥିତ ଅଛି, ଏହି ସ୍ଥାନରେ ପ୍ରଭୁ ରାମଚନ୍ଦ୍ର ଶବରୀ ହାତରୁ କୋଳି ଖାଇଥିଲେ ।

ଏହାପରେ ପାଣ୍ଡବମାନେ ପହଞ୍ଚିଲେ ତୁଳସୀ ନଗ୍ରରେ, ଏହା ରୁଦ୍ରନଦୀ କୂଳରେ ଅବସ୍ଥିତ । ପୁରାଣପ୍ରସିଦ୍ଧ ପରଶୁରାମ ଏକୋଇଶବାର ପୃଥିବୀକୁ ନିଛତ୍ର କରି ଭଇରୋବୀଙ୍କୁ ରୁଧିର ତର୍ପଣ କରାଇ ନିଜ କୋଠାର , କଟାରୀ ବା ପର୍ଶୁକୁ ଏହି ଦେବୀଙ୍କୁ ଦାନ କରିଥିଲେ । ପାଣ୍ଡବମାନେ ସେହି ଦେବୀଙ୍କୁ ପୂଜା କଲେ ।

କୌତୂହଳବଶତଃ ଯୁଧିଷ୍ଠିର ରୁଦ୍ରନଦୀ ଆରପଟେ ଥିବା ତୀର୍ଥ ସଂପର୍କରେ ଜାଣିବାକୁ ଚନ୍ତା କଲେ । ଭୀମକୁ ପଠାଗଲା । ସେଠାରେ ପହଞ୍ଚିବା କ୍ଷଣି ଭୀମର ପ୍ରକୃତି ବଦଳିଗଲ ସେ ଆଉ ତାଙ୍କ ଭାଇମାନଙ୍କୁ ଚିହ୍ନି ପାରିଲା ନାହିଁ । ଏଠି ହିନ୍ଦୁ ଜାତିର ବିରୋଧୀ କୌଣସି ଏକ ଅନାଚାରୀ ଜାତି ବାସ କରୁଥିଲେ । ସେଠୁ ଭୀମକୁ ବଳାତ୍କାର କରି ବାହାର କଲାଗଲ । ତା'ପରେ ପାଣ୍ଡବମାନେ ପୁଣି ଥରେ ଏକାମ୍ର ବନରେ ଉପସ୍ଥିତ

ହେଲେ । ସେଠାରୁ ଚିତ୍ରୋତ୍ପଳା, ବୈତରଣୀ ପାରି ହୋଇ ପଶ୍ଚିମ ଦିଗକୁ ଯାଇ ରାମ ଗୟାରେ ପହଞ୍ଚିଲେ । ସେଠାରେ ଫଲ୍‌ଗୁ ନଦୀରେ ସ୍ନାନ କରି, ବାଲିପିଣ୍ଡ ଦେଇ , ପିତୃକାର୍ଯ୍ୟ କରି, ଗଦାଧର ଦର୍ଶନ ପରେ ସେ ସ୍ଥାନ ତ୍ୟାଗ କରି ବାରାଣସୀର ମଣିକର୍ଣ୍ଣିକାରେ ଉପସ୍ଥିତ ହେଲେ । କଥିତ ଅଛି ଶିବ ଏଠାରେ ସ୍ନାନ କଲାବେଳେ ତାଙ୍କ ହାତର ମଣି ଏଠି ଖସି ପଡିଲା । ସେ ସେହି ମଣିକୁ ଖୋଜିବା ଫଳରେ ତାଙ୍କ ହାତରୁ ବ୍ରହ୍ମକପାଳ ଖସି ପଡିଲା । ସେହିଦିନୁ ମଣିକର୍ଣ୍ଣିକା ବ୍ରାହ୍ମହତ୍ୟା ଦୋଷ ମୋଚନ କରି ଆସୁଅଛି । ସେଠାରେ ସ୍ନାନ ସାରି କାଶୀ ନଗ୍ରରେ ଥିବାବେଳେ ବ୍ୟାସ ଓ ମାରକଣ୍ଡ ମୁନି ପହଞ୍ଚିଲେ । ପାଣ୍ଡବମାନେ ଏ ପର୍ଯ୍ୟନ୍ତ ତୀର୍ଥଯାତ୍ରା କରୁଥିଲେହେଁ ଅସ୍ତ୍ର ଛାଡି ନ ଥିଲେ । ରାମାୟଣରେ ଆରଣ୍ୟକ କାଣ୍ଡରେ ତପସ୍ୱୀ ବେଶଧାରୀ ରାମଚନ୍ଦ୍ରଙ୍କୁ ମୁନିମାନେ ଅସ୍ତ୍ରତ୍ୟାଗ କରିବାକୁ ଅନୁରୋଧ କରିଥିଲେ । ବ୍ୟାସ ଓ ମାରକଣ୍ଡ ଋଷିଙ୍କ ଅନୁରୋଧରେ ଅର୍ଜୁନଙ୍କ ବ୍ୟତୀତ ଆଉମାନେ ଅସ୍ତ୍ରତ୍ୟାଗ କଲେ । ତା'ପରେ ଅଗ୍ନିଦେବତା ନିଜେ ବ୍ରାହ୍ମଣ ବେଶରେ ଆସି ଅର୍ଜୁନଙ୍କଠାରୁ ଗାଣ୍ଡିବ ଧନୁ ଗ୍ରହଣ କଲେ । ଏହିପରି ଭାବେ ପାଣ୍ଡବମାନେ ଅସ୍ତ୍ରମୋହ ତ୍ୟାଗ କରିଥିଲେହେଁ, ରାମଚନ୍ଦ୍ର ଧନୁ ତ୍ୟାଗ କଲେ ନାହିଁ । ଅରଣ୍ୟ ମଧ୍ୟରେ ଅସୁର ବଧ ପାଇଁ ସେ ଧନୁକୁ ଛାଡି ପାରିନଥିଲେ । ପାର୍ଥକ୍ୟ ଭିତରେ ପାଣ୍ଡବମାନେ ସ୍ୱର୍ଗାରୋହଣକୁ ଯାଉଥିବାରୁ ସଂସାରରେ ଲୋଭ ମୋହ ସଙ୍ଗେ ଅସ୍ତ୍ର ମୋହ ଛାଡ଼ିବାକୁ ରାଜି ହୋଇଗଲେ । ରାମଚନ୍ଦ୍ରଙ୍କ ସ୍ୱର୍ଗଯାତ୍ରା ପାଇଁ ସମୟ ହୋଇନଥିଲା ।

ଅସ୍ତ୍ରତ୍ୟାଗ କରି ମାର୍କଣ୍ଡ ଋଷିଙ୍କ କଥାରେ ବନାରସରେ ଉପସ୍ଥିତ ହେଲେ । ବନାରସ କେବଳ ବିଶ୍ୱନାଥଙ୍କ ଆବାସସ୍ଥଳୀ ପାଇଁ ପ୍ରସିଦ୍ଧ ନୁହେଁ, ଏଠାରେ ପାଦ ବଢ଼ାଇଲେ ଗୋଟିଏ ଶିବଲିଙ୍ଗ । ସେଥିପାଇଁ ଏଠାରେ ରନ୍ଧନ, ଭୋଜନ, ଶଂକା, ଶଉଚ ପାଇଁ ସ୍ଥାନ ନାହିଁ । ସାରଳା ଦାସ ବି କହିଛନ୍ତି -

ଅଇଲେ ଅନେକ ଧର୍ମ ରହିଲେ ଅନେକ ଧର୍ମନାଶ
ବିଳମ୍ବେ ଥିବାର ଏଥି ପିରୋଜନ କିସ । (ପୃ - ୪୪)

ତେଣୁ ପାଣ୍ଡବମାନେ ବନାରସ ବାହାରେ ସ୍ନାନ ଶଉଚ ସାରି ମଣିକୁଣ୍ଡରେ ସ୍ନାନ କଲେ । ବିଶ୍ୱନାଥ ଦର୍ଶନ କରି ସେ ସ୍ଥାନ ଛାଡି ଯାଇ ପହଞ୍ଚିଲେ ପ୍ରୟାଗ ତୀର୍ଥରେ । ଏହି ସ୍ଥାନ ହେଉଛି ଗଙ୍ଗା, ଯମୁନା, ସରସ୍ୱତୀଙ୍କ ସଙ୍ଗମ ସ୍ଥାନ । ନୀଳ ବର୍ଣ୍ଣର ଯମୁନା, ଶ୍ୱେତ ବର୍ଣ୍ଣର ଗଙ୍ଗା ଓ ଗୁପ୍ତ ସରସ୍ୱତୀ ଏଠି ଏକାଠି ହୋଇଥାନ୍ତି । "ତିନିଧାର ଯେକ ସଙ୍ଗ ଭିନ ଭିନ୍ନ ମୂରତି" (ପୃ-୪୪) । ହିନ୍ଦୁମାନଙ୍କ ପାଇଁ ଏହା ଏକ ପବିତ୍ର ତୀର୍ଥ । ଏଠାରେ ବିଜୟ ମାଧବ ବା ବେଣୀମାଧବ, ବାଞ୍ଛାବଟ ହିନ୍ଦୁମାନଙ୍କର ଅତି ପ୍ରିୟ । ପାଣ୍ଡବମାନେ ଏ ସବୁ ଦର୍ଶନ କଲେ, ପ୍ରୟାଗରେ ସ୍ନାନକଲେ । ସେଠାରେ ସେମାନଙ୍କର

କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ଓ ପରଶୁରାମଙ୍କ ସହ ସାକ୍ଷାତ ହେଲା । ସାଧୁ ସହବାସରେ ବି ପୁଣ୍ୟ ହୁଏ, ଏହା କହିବା ପାଇଁ ବୋଧହୁଏ ଏ ସବୁର ଅବତାରଣା । ତା' ପରେ ସେମାନେ ଗଲେ ପଶୁପତି ତୀର୍ଥ । ଶେଷରେ ରଣସ୍ତମ୍ଭପୁରର ହିଙ୍ଗୁଳା ଦେବୀଙ୍କୁ ଦର୍ଶନ କରି ହିମାଳୟର ପାଦଦେଶରେ ଉପସ୍ଥିତ ହେଲେ ।

ଲୋକକଥା ହେଲା ଧନପାଳ ନାମକ ଏକ ସାଧୁ ଥିଲା । ତା'ର କୁଳବଧୂର ନାମ ହିଙ୍ଗୁଳା । ଏକଦା ସାଧବ କାମ୍ୟ ଶ୍ରାଦ୍ଧ କରିବା ପାଇଁ ଗଣ୍ଡା ମାରି ବଧୂକୁ ଦେଲା । ବୋହୂ ସେ ମାଂସକୁ ଏପରି ମନଦେଇ ରାନ୍ଧିଲା ଯେ ଦେବରଷି ତଥା ପିତୃଲୋକେ ସମସ୍ତେ ଖୁସି ହୋଇଗଲେ । ସେହିମାନଙ୍କ ଆଶୀର୍ବାଦରେ ସେହି ବୋହୂ ହେଲା ହେଙ୍ଗୁଳା ଦେବୀ ।

ଶେଷ କଥା ହେଲା କର୍ଣ୍ଣ ମହାରଷିଙ୍କର । ଜହ୍ନୁମୁନି କେବଳ ଗଙ୍ଗାକୁ ପିଇଯାଇଥିଲେ । ଅଥଚ କର୍ଣ୍ଣମୁନିଙ୍କ ଗର୍ଭରେ ଗଙ୍ଗା, ଯମୁନା, ଓ ସରସ୍ୱତୀ ଏକାବେଳକେ ପଶିଗଲେ । ଦୁଇ କର୍ଣ୍ଣରେ ଗଙ୍ଗା ଓ ଯମୁନା ଓ କଣ୍ଠ ପଥରେ ସରସ୍ୱତୀ । ପୁଣି ତିନି ନଦୀଯାକ ଜାନୁ ବାଟେ ବାହାରିଗଲେ ।

ଏ ସବୁ ଲୋକକଥା ଶୁଣି, ତୀର୍ଥ ଦେଖି, ପବିତ୍ର ନଦୀରେ ସ୍ନାନ କରି, ମୁନିରଷିଙ୍କ ସହ ସାକ୍ଷାତ କରି , ଶେଷରେ ପାଣ୍ଡବମାନେ ସ୍ୱର୍ଗାରୋହଣ ପାଇଁ ଆଗେଇଗଲେ ।

'ସ୍ୱର୍ଗାରୋହଣ ପର୍ବ'ରେ ସାରଳା ଦାସ ଯେଉଁ ସମାଜର ସ୍ୱପ୍ନ ଦେଖିଥିଲେ, ଆଧୁନିକ ଯୁଗରେ ସେଥିରୁ ବହୁ କଥା ଆମର ମନକୁ ନ ପାଉଥିଲେ ବି , ଏହା ଥିଲା ପରଂପରାରେ ପ୍ରଚଳିତ ଏକ ଧାର୍ମିକ ସମାଜର ଚିତ୍ର । ଏଥିରେ ଦୁଇଟି ସାରକଥା- ପୁଣ୍ୟ କାର୍ଯ୍ୟ କର ଓ ହରିନାମ ଜପକର । ଏହାହିଁ ଥିଲା ମହାନ୍ କବି ସାରଳା ଦାସଙ୍କର ତାଙ୍କ ପ୍ରିୟ ଓଡ଼ିଆ ଜାତି ପାଇଁ ମହାନ୍ ଉପଦେଶ ।

# ସ୍ୱର୍ଗାରୋହଣ ପର୍ବର ପ୍ରାମାଣିକ ପାଠ ବିଶ୍ଳେଷଣ

ଅଧ୍ୟାପକ ଆର୍ତ୍ତବଲ୍ଲଭ ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରରେ ଏକ ଅନନ୍ୟ ପ୍ରତିଭା । ସେ ଆମ୍ଭମାନଙ୍କର ନମସ୍ୟ ଓ ପୂଜ୍ୟ । ସେ ଗୁରୁମାନଙ୍କର ଗୁରୁ । ୧୯୨୬ ଖ୍ରୀଷ୍ଟାବ୍ଦରେ ସେ 'ପ୍ରାଚୀ ସମିତି' ପ୍ରତିଷ୍ଠା କରି ନିଜ ସହଯୋଗୀମାନଙ୍କ ସହିତ ମିଶି ୫୬ ଖଣ୍ଡ ଗ୍ରନ୍ଥ ସମ୍ପାଦନା କରିଥିଲେ । ତାଙ୍କ ସମ୍ପାଦନାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ - ପୁରାଣ ଓ କାବ୍ୟ । ତାଙ୍କ ସମ୍ପାଦିତ କାବ୍ୟାବଳୀ ଷୋଡ଼ଶରୁ ଅଷ୍ଟାଦଶ ଶତାବ୍ଦୀ ଅର୍ଥାତ୍ ମଧ୍ୟକାଳୀନ ସାହିତ୍ୟ ମଧ୍ୟରେ ସୀମାବଦ୍ଧ । ତାଙ୍କ ପୁରାଣ ସମ୍ପାଦନ ମଧ୍ୟରେ ସାରଳା ଦାସଙ୍କ **ମହାଭାରତ** । ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ସେ ଏହି ସମ୍ପାଦନା କଲେ ଓ ଏହାର ପ୍ରକାଶନ ୧୯୬୦ ମସିହାରେ ସମାପ୍ତ ହେଲା । ସେହିଦିନୁ ଏହା ଉପରେ କାଁ ଭାଁ ଆଲୋଚନା ଦେଖିବାକୁ ମିଳିଥାଏ । ଡକ୍ଟର ପାଣିଗ୍ରାହୀଙ୍କ ପରି ଆଲୋଚକ ଏହାର ପ୍ରାମାଣିକତା ଉପରେ ସନ୍ଦେହ କରି ସାରଳା **ମହଭାରତ**ର ଐତିହାସିକ ଚିତ୍ର ରଚନା କଲାବେଳେ ଏହାକୁ ବ୍ୟବହାର କଲେ ନାହିଁ । ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଏହାର ଭାଷାର ପ୍ରାଚୀନତା ଉପରେ ସନ୍ଦେହ ପ୍ରକାଶ କଲେ । ଏହା ସତ୍ତ୍ୱେ ଏହି କାର୍ଯ୍ୟ ଉପରେ କୌଣସି ବିଧିବଦ୍ଧ ଆଲୋଚନା ହେଲା ନାହିଁ । ଅନ୍ୟମାନେ ପ୍ରାୟ ଏହି ଗ୍ରନ୍ଥକୁ ହିଁ ଗ୍ରହଣ କରି ନେଲେ । ସମାଲୋଚନା କ୍ଷେତ୍ରରେ, ବିଶେଷକରି ସମ୍ପାଦନାରେ, ସବୁବେଳେ ପ୍ରମାଦ ରହିଯିବା ସ୍ୱାଭାବିକ । ପ୍ରାଚୀନ ପୋଥିର ଆବିଷ୍କାର ଫଳରେ ଏଥିରେ ପରିବର୍ତ୍ତନ ସମ୍ଭାବନାକୁ ଦୂରେଇ ହୁଏ ନାହିଁ । ମୁଁ ନିମ୍ନରେ ସାରଳା ମହାଭାରତର 'ସ୍ୱର୍ଗାରୋହଣ ପର୍ବ'କୁ ଅନ୍ୟ ଏକ ପୋଥି ସାହାଯ୍ୟରେ ପରୀକ୍ଷା କରିବା ପାଇଁ ପ୍ରଚେଷ୍ଟା କରିଛି । ଏହି କାର୍ଯ୍ୟ ପାଇଁ ମୁଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପ୍ରାୟ ୧୧ଟି ପୋଥି ସଂଗ୍ରହ କରି ସେଥିରୁ ଆଦର୍ଶ ପୋଥି ବାଛି, ଏହାର ତୁଳନା କରିଛି ।

ସମ୍ପାଦନା ପାଇଁ ସାଧାରଣତଃ କାତ୍ରେଙ୍କର **Textual Criticism** ଓ ସୁକ୍ତଙ୍କର ସଂସ୍କୃତ ମହାଭାରତର ମୁଖବନ୍ଧକୁ ଗ୍ରହଣ କରାଯାଇଥାଏ । ଏ ସବୁ ଗ୍ରନ୍ଥ ସଂସ୍କୃତ ଭାଷାର ସମ୍ପାଦନା ପାଇଁ ଉଦ୍ଦିଷ୍ଟ । ସଂସ୍କୃତ ଏକ ଶୃଙ୍ଖଳିତ ଭାଷା । ଏହା ବ୍ୟାକରଣ ଓ ଛନ୍ଦ ଦ୍ୱାରା ନିୟନ୍ତ୍ରିତ । ଯୋଗ, ବିଯୋଗ, ପ୍ରସଙ୍ଗକ୍ରମ, ଅପପାଠକୁ ବାଛିନେବା ପରେ ଏହାର ସମ୍ପାଦନା ମୁଖ୍ୟତଃ ବ୍ୟାକରଣ ଓ ଛନ୍ଦ ଉପରେ ନିର୍ଭର

କରେ । ଓଡ଼ିଆ ଏକ ପ୍ରବହମାନ ଭାଷା ହୋଇଥିବାରୁ ଓ ସାରଳା **ମହାଭାରତ** ଦାଣ୍ଡୀ ବୃତ୍ତରେ ରଚିତ ହୋଇଥିବାରୁ କଥନ ସ୍ପଷ୍ଟତା ଉପରେହିଁ ଛନ୍ଦକୁ ନିର୍ଭର କରିବାକୁ ହୋଇଥାଏ । ଏଥିରେ ଗୋଟିଏ ବର୍ଣ୍ଣ ବା ଗୋଟିଏ ଶବ୍ଦ କଟିଯିବା ବା ଯୋଗ ହେବା ବିଚିତ୍ର ନୁହେଁ । ମଧ୍ୟକାଳୀନ କାବ୍ୟର ସମ୍ପାଦନାରେ କଥନ-ସ୍ପଷ୍ଟତା ହିଁ ଏହାର ମୁଖ୍ୟ ମାନଦଣ୍ଡ । ଛନ୍ଦର କୌଣସି ନିର୍ଦ୍ଦିଷ୍ଟ ଅକ୍ଷର ସଂଖ୍ୟା ନ ଥିବାରୁ କଥାର-ସ୍ପଷ୍ଟତା ଅପେକ୍ଷା ଅର୍ଥ ସଙ୍ଗତି ଓ ଛନ୍ଦ ଶୃଙ୍ଖଳା ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ । ଏଥିରେ ଗୋଟିଏ ବର୍ଣ୍ଣ ଲୋପ ପାଇଗଲେ ସ୍ୱତନ୍ତ୍ର ଛନ୍ଦରେ ପରିଣତ ହୁଏ । ପୁଣି ମଧ୍ୟକାଳୀନ କବିମାନେ ଗୋଟିଏ ଶବ୍ଦକୁ ବିଭିନ୍ନ ଅର୍ଥରେ ବ୍ୟବହାର କରୁଥିବାରୁ ଶବ୍ଦ ଜ୍ଞାନ ନ ଥିଲେ ଏହା ସମ୍ଭବ ହୁଏ ନାହିଁ । ନିମ୍ନରେ 'ସ୍ୱର୍ଗାରୋହଣ ପର୍ବ'ର ପାଠଭେଦ ଆଲୋଚିତ ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ଏହି ଅଂଶକୁ ସମ୍ପାଦନା କଲାବେଳେ ଚଉଦଟି ପାଣ୍ଡୁଲିପି ବ୍ୟବହାର କରିଥିଲେ । ଏତେଗୁଡ଼ିଏ ପୋଥିର ଭିନ୍ନ ଭିନ୍ନ ପାଠ ଦେଖି ସେ ବୋଧହୁଏ ବିବ୍ରତ ହୋଇଯାଇଥିଲେ । ଶୁଦ୍ଧ ପାଠ ଗ୍ରହଣ କଲାପରେ ଅନ୍ୟ ପୋଥିର ପାଠକୁ ଆବଶ୍ୟକ ମନେକରି ପରିଶିଷ୍ଟରେ ସ୍ଥାନ ଦେଲେ । 'ସ୍ୱର୍ଗାରୋହଣ ପର୍ବ'ର ୧୦୨ ରୁ ୨୮୮ ପୃଷ୍ଠା ଏହି ଗ୍ରନ୍ଥର ପରିଶିଷ୍ଟାଂଶ । ତାଙ୍କ ବ୍ୟବହୃତ ଛଅଟି ପୋଥିରେ ଏହି ପାଠ ଦେଖିବାକୁ ମିଳେ । ୨୫ ପୃଷ୍ଠାରେ ଥିବା 'ଏ କନ୍ୟା ଯୋଗରୁ ତୁହି ତରିଲୁ ବହନ' ପଦ ପରେ ଛଅଟି ପୋଥିରେ ସଂକ୍ଷିପ୍ତ **ମହାଭାରତ** ଅଛି । ଏହା ୧୯୧୯ ପଦ । ସେଥିରେ ବି ସମ୍ପାଦକଙ୍କ ସମସ୍ୟା ସରି ନ ଥିଲା । ସେ ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ କିଛି କିଛି ପାଠାନ୍ତର ଦେଲେ । ଏହାସତ୍ତ୍ୱେ ଗ୍ରନ୍ଥର ବହୁ ପାଠ ଅସ୍ପଷ୍ଟ ତଥା ଅନାବଶ୍ୟକ ମନେହୁଏ । ନିମ୍ନ ଆଲୋଚନାରେ ଏହିସବୁ ଅପପାଠର ବିଶ୍ଳେଷଣ କରାଯାଇଛି ।

(୧) ଆର୍ତ୍ତବାବୁଙ୍କ ପାଠ -

୬ଷ୍ଠ ପଦରେ ପାଠ ହେଲା 'ଦ୍ରିଯୋଧନ ମାରି ରାଜ୍ୟ କଲେ କଳିଯୁଗର ମଧ୍ୟେ । ଆଠ ଶତ ବରଷ ହେଲା ଯେଣେ କୃଷ୍ଣ ଗଲେ ବଧେ, ପରେ କୃଷ୍ଣର ଗଲା ଉତ୍ତାରେ ବରଷ ଶତ ଦୁଇ' ପୂର୍ବ ପଦର ପୁନରାବୃତ୍ତି । ପୁଣି 'ଆଠଶତ ବରଷ' କହିବା ପରେ 'ବରଷ ଶତ ଦୁଇ' ଅର୍ଥହୀନ । ଏ ପାଦ ଆଦର୍ଶ ପୋଥିରେ ମଧ୍ୟ ନାହିଁ । ତେଣୁ ଏହା ଅନାବଶ୍ୟକ । ଏହାର ପ୍ରାମାଣିକ ପାଠ ହେଲା -

**ରାଜ୍ୟ କରୁଛନ୍ତି ଯେ ପାଣ୍ଡବ ପାଞ୍ଚଭାଇ**
**ଯେକ ଛତ୍ରେ ସେ ମହୀଭାର ରାଜ୍ୟର ସମ୍ପଦ ଦେଇ ।୬।**

ଏହି ପଦ ଗ୍ରହଣ କରିନେବା ପରେ ଆର୍ତ୍ତବାବୁଙ୍କ ୮ମ ପଦର ଦ୍ୱିତୀୟ ପାଦ ଅର୍ଥହୀନ ହୋଇଯାଏ ।

(୨) ‘ରାତ୍ର ପ୍ରଭାତେଣ’ ପୂର୍ବରୁ ‘ଏକ ଦିନେ’ (ପଦ ୧୦) , ‘ମୋହୋର’ ସ୍ଥାନରେ ‘ମୋହୋରେ’ (୧୫ ପଦ) ‘ଯେବେ’ ସ୍ଥାନରେ ‘ଯେବେ’ (୧୯ ପଦ), ପାଠ କଲେ ପଦର ଅର୍ଥ ସ୍ପଷ୍ଟ ହୋଇଥାଏ । ୪୨ ପଦରେ ଥିବା ତଡ଼ପା ଓ ଧର୍ମଗ୍ରନ୍ଥ ଷ୍ଟୋର ପ୍ରକାଶିତ ଗ୍ରନ୍ଥର ‘ଓଡ଼ପା’ ଓ ଆଦର୍ଶ ପୋଥିରେ ତନ୍ତୀପା ।

(୩) ଆର୍ତ୍ତବାବୁଙ୍କ ଗ୍ରନ୍ଥର ୪୨ ପଦର ଦ୍ୱିତୀୟ ପାଦ ହେଲା -‘ଖେତସମ୍ପୂର୍ଣ୍ଣ ହୋଉ ଭୂମି ହୋଉ ନିକି’ ପାଦଟି ଅର୍ଥହୀନ । ଏହା ସ୍ଥାନରେ ‘ଖେତ ସମତୁଲ ହୋଉ ଭୂମି ହୋଉ କୃଷିକି’ ପାଠ ଗ୍ରହଣ କରାଯଇଛି ।

(୪) ଆର୍ତ୍ତବାବୁଙ୍କ ଗ୍ରନ୍ଥର ୫୪ ପଦର ଦ୍ୱିତୀୟ ପାଦହେଲା ‘ଯେତେକ ଛନ୍ଦ ବନ୍ଧ ସେ ତୁମ୍ଭର ବଡପଣ’ । ଏହା ଅର୍ଥହୀନ ହେତୁ ଆଦର୍ଶ ପୋଥିରୁ ‘ଯେତେକ ଛନ୍ଦ କଲେକି ରହଇ ତୁମ୍ଭର ବଡପଣ’ ପାଠ ଗ୍ରହଣ କରାଯାଇଛି ।

(୫) ୫୫ ପଦର ପ୍ରଥମ ପାଠ ହେଲା -

‘ବାର ଠିନା ବର୍ଣ୍ଣନେ ଅନ୍ନ ବସ୍ତ୍ରେ ମୁଂ କାରେଣି’ରେ ‘ବର୍ଣ୍ଣନେ’ ପରେ ‘ଅନ୍ନ ବସ୍ତ୍ରେ’ ଅର୍ଥହୀନ ନହେଲେ ବି ଆଦର୍ଶ ପୋଥିର ପାଠ ‘ବାର ଚିନା ବର୍ଣ୍ଣନେ ମୁହିଂ ସେ କାରେଣି’ ଅଧିକ ସ୍ପଷ୍ଟ ।

(୬) ୬୫ ପଦର ପ୍ରଥମ ପାଦ ‘ମୁଂ କରଇ ବେପାର’ ସ୍ଥାନରେ ‘ମୁଂ କି କରିବି ବେପାର’ର ଅର୍ଥ ସୁସ୍ପଷ୍ଟ ।

(୭) ୭୫ ପଦର ଦ୍ୱିତୀୟ ପାଦ ପାଠରେ ଆର୍ତ୍ତବାବୁଙ୍କ ପାଠରେ ଥିବା ‘ସହଦେବ ଜଗନ୍ନାଥେ’ ସ୍ଥାନରେ ‘ଦେବ ଜଗନ୍ନାଥେ’ ଅର୍ଥ ସଙ୍ଗତି ରକ୍ଷା କରେ । ଅଷ୍ଟମ ପୃଷ୍ଠାର ୭୭ ପଦରେ ‘କୃଷ୍ଣ ଅଇଲେ’ ସ୍ଥାନରେ ‘କୃଷ୍ଣ ବୋଇଲେ’ ପାଠହିଁ ଗ୍ରହଣୀୟ ।

(୮) ୮୩ ପଦର ଦ୍ୱିତୀୟ ପାଦର ‘ନିଆଇ’ ସ୍ଥାନରେ ‘ନିଅଇ’ , ‘ଜାରି’ ସ୍ଥାନରେ ‘ଜାଲି’ , ୧୦୭ ପଦର ‘ସାବତ ପୁତ୍ରେ ମାତା ହୋଇବେ ରତି ରଙ୍ଗ’ ସ୍ଥାନରେ ‘ମାତା ପୁତ୍ର ଯେ ହୋଇବେ ରତି ରଙ୍ଗ’, ୧୧୦ ପଦରେ ‘ବାମ’ ସ୍ଥାନରେ ବାମା’, ୧୬୩ ଓ ୧୬୪ ପଦର ପାଠ ଅସ୍ପଷ୍ଟ ପୁଣି ପୂର୍ବ ପାଠ ସହ ସଙ୍ଗତି ରକ୍ଷା କରେନାହିଁ । ଏହା ସ୍ଥାନରେ ଆଦର୍ଶ ପୋଥିର ପାଠ ହେଲା, ‘‘ମୁହିଂ ପ୍ରଧାନ ହୋଇବି ଯଶ ରହିବ ମହୀସ୍ଥଳୀ, ସର୍ବଗୁଣେ ସୁଲକ୍ଷଣୀ ଯାଚିଲା ଯେବେ ବାଳୀ’’ (୧୫୭), ‘ଯୁଯେଷ୍ଟି ବୋଇଲେ ଶୁଣ

ହରିଦାସ, ଯେ କୁମାରୀ ଗୋଟିକି ବିଭା ଆମ୍ଭେ ହୋଇବୁ ଅବଶ୍ୟ' (୧୫୮) ଓ 'ଯୁଧେଷ୍ଠି ଦେବଙ୍କ ବଚନେ ହରି ସାହୁ ଆନନ୍ଦ, ବିଭାକରଇଂ ଉଦିଯୋଗ କଲେକ ପରମ ସାନନ୍ଦ' (୧୫୯) , ଏହି ପାଠ ଗ୍ରହଣ କଲେ ବିଷୟବସ୍ତୁର ଅସଙ୍ଗତି ରୁହେନାହିଁ । ଆର୍ତ୍ତବାବୁଙ୍କ ୨୦୭ ପଦର 'ସଂଜୀବନୀ ହୋୟେ' ସ୍ଥାନରେ 'ସଂଜୀବନୀ ଭୁବନ' ପାଠ ଗ୍ରହଣ କରାଯାଇଛି ।

(୯) ୨୧ ଓ ୨୨ ପୃଷ୍ଠାରେ ଥିବା ୨୪୨ ରୁ ୨୫୪ ପର୍ଯ୍ୟନ୍ତ ପଦ ଆଦର୍ଶ ପୋଥିରେ ଦେଖିବାକୁ ମିଳେ ନାହିଁ । ଏଥିରେ ଥିବା ସାରଳାଦାସଙ୍କ ଜାତିସ୍ମର ପ୍ରସଙ୍ଗରେ ସାରଳା ଦାସ ନନ୍ଦିକେଶର ଭାବେ ମହିଷାସୁର ଯୁଦ୍ଧ ସମୟରେ ଉପସ୍ଥିତ ଥିବା ପାର୍ବତୀଙ୍କ ଉଲଗ୍ନ ରୂପ ଦେଖି ଶିବଙ୍କ ସମ୍ମୁଖରେ ପ୍ରକାଶ କରିବା, ଗଣେଶଙ୍କ ଦ୍ୱାରା ଅଭିଶପ୍ତ ହେବା ଏବଂ ଚାରିଜନ୍ମ ଲାଭ କରି ଷାଠିଏ ଲକ୍ଷ ଗ୍ରନ୍ଥ ରଚନା କରିବା ପ୍ରଭୃତି କଥା ଘଟଣାର ପ୍ରବାହକୁ ବାଧା ପ୍ରଦାନ କରେ । ପୁଣି ଏହା ମହାଭାରତର ଅନ୍ୟ ପର୍ବରେ ଥିବା ଜାତିସ୍ମର ପ୍ରସଙ୍ଗ ସହିତ ସମତା ରକ୍ଷା କରେ ନାହିଁ ।

(୧୦) ୨୯ ପୃଷ୍ଠାର ୩୦୧ ପଦର ପ୍ରଥମ ପାଦରେ 'ଥିବ' ସ୍ଥାନରେ 'ଶୁଣ' ଓ ୩୦୫ ପଦର ଦ୍ୱିତୀୟ ପାଦରେ 'ଅଭାଗତେ' ସ୍ଥାନରେ 'ଅଭ୍ୟାସ ଗତେ' ପାଠ ଗ୍ରହଣ କଲେ ଅର୍ଥ ସ୍ପଷ୍ଟ ହୁଏ । ଏହି ପାଠ ଆଦର୍ଶ ପୋଥିଦ୍ୱାରା ସମର୍ଥିତ ।

(୧୧) ସୁହାଣୀ କନ୍ୟାକୁ ଶିଖରେଶ୍ୱର ଶିବଙ୍କ ସେବାରେ ନିଯୁକ୍ତ କରି ପାଣ୍ଡବମାନେ ଦକ୍ଷିଣାମୂର୍ତ୍ତି ହୋଇ ଚିତ୍ରୋତ୍ପଳା ନଦୀ ପାର ହେଲେ । ଏହି କଥା ମଧ୍ୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଗୃହୀତ ପାଠରେ ବହୁ ଅନାବଶ୍ୟକ ପଦ ଦେଖିବାକୁ ମିଳିଥାଏ । ୩୧ ପୃଷ୍ଠାର ୧୯ ପଦ ହେଲା -

ଆସ ଆସ ବାବୁ ତୋତେ ନେମା ସେହି ତୀର୍ଥ
ଶୁଣିକରି ସାନନ୍ଦ ହୋଇଲେ ଧର୍ମସୁତ ।

ଲୋମଶ ଋଷି ଏହା କହିଛନ୍ତି ଯୁଧିଷ୍ଠିରଙ୍କୁ । ଏହି ତୀର୍ଥ ଓ ଦେବତା ହେଉଛନ୍ତି କପିଳାସ ପର୍ବତ ଉପରେ ଥିବା ମହାଦେବ । ଏହି ଅନୁରୋଧ ପରେ ''ପରୀକ୍ଷକୁ ରାଇ କରି ଅ... ତିଆରି, ଏ ଭ୍ରଥ ଖଣ୍ଡେ ମଧେ ତୋତେ କିଏ ନୋଏ ସରି'' ପାଠ ଅସଂଗ...

ପରୀକ୍ଷିତଙ୍କଠାରୁ ବିଦାୟ ନେଇ ଓଡ଼ିଶାର ତୀର୍ଥ ଦର୍ଶନ କରୁଥିବା ବେଳେ ପୁଣି

ପରୀକ୍ଷିତଙ୍କଠାରୁ ବିଦାୟ ନେବା, ତାଙ୍କୁ ପ୍ରଶଂସା କରିବା ତୀର୍ଥ କରି ତାଙ୍କ ପାଖକୁ ଫେରିଆସିବାର ଆଶ୍ୱାସନା ଦେବା, ପରୀକ୍ଷଙ୍କ ନୟନରୁ ଅଶ୍ରୁ ବିଗଳିତ ହେବା, ସୁଭଦ୍ରାଙ୍କୁ ପ୍ରବୋଧନା ଦେଇ ରାଜ୍ୟରେ ରଖି ଦ୍ରୌପଦୀଙ୍କ ସହିତ ତୀର୍ଥ ଭ୍ରମଣରେ ବାହାରିବା, ସୁହାଣୀ ସହିତ ଶିଖରେଶ୍ୱର ଦର୍ଶନ ପାଇଁ ସଜ ହେବା ଏବଂ ଭୀମସେନଙ୍କ ସୁହାଣୀ ପ୍ରତି ସମବେଦନା ପ୍ରକାଶ କରି ପର୍ବତକୁ ଉଠି ନ ପାରିବାର କଳ୍ପନା କରିବା, ତାଙ୍କୁ ପର୍ବତ ତଳେ ରଖାଇବା ଏବଂ ସିଦ୍ଧ ନାମ ଦେଇ ନାରାୟଣୀ, ରୁଦ୍ରାଣୀ କହିବା ଅତ୍ୟନ୍ତ ଅପ୍ରାସଙ୍ଗିକ । ତେଣୁ ୨୦ ରୁ ୨୭ ପଦ ପର୍ଯ୍ୟନ୍ତ ଆଦର୍ଶ ପୋଥିରେ ଦେଖିବାକୁ ମିଳେନାହିଁ ଏବଂ ଏହାଦ୍ୱାରା କଥାବସ୍ତୁର କ୍ରମ ସୁରକ୍ଷିତ ରହିଥାଏ । ତେଣୁ ଏହି ପାଠରେ ୨୮ ପଦଠାରୁ ପାଠ ଗ୍ରହଣ କରାଯାଇଛି ।

(୧୨) ପାଠର ସଂଗତି ରକ୍ଷା କରିବା ପାଇଁ ଆଦର୍ଶ ପୋଥିକୁ ଅନୁସରଣ କରି ୩୨ ପୃଷ୍ଠାର ୨୯ ପଦ ଏବଂ ୩୩ ପୃଷ୍ଠାର ୩୩ ପଦ ମଧ୍ୟ ଅନାବଶ୍ୟକ । ସେହି ପୃଷ୍ଠାର ୩୯ ପଦର ଦ୍ୱିତୀୟ ପାଦରେ - ''ବାହୁଡ଼ାବେଳେ ତୋତେ ବାଣରାଶି ନେବା'' ସ୍ଥାନରେ ''ବାହୁଡ଼ା ବେଳେ ତୋତେ ବାହୁଡ଼ାଇ ନେବା'' ପାଠ ସଂଗତ ମନେହୁଏ ।

(୧୩) ପାଣ୍ଡବମାନେ ଦକ୍ଷିଣାମୂର୍ତ୍ତି ହୋଇ ଚିତ୍ରୋତ୍ପଳା ନଦୀ ପାର ହେବା ଏବଂ ଚିତ୍ରୋତ୍ପଳା ତୀରରେ ଉତ୍ପଳେଶ୍ୱର ଓ ଅମରେଶ୍ୱର ଦର୍ଶନ କରିବା ମଝିରେ ଆର୍ତ୍ତବାବୁଙ୍କ ପାଠରେ ଯୁଧିଷ୍ଠିରଙ୍କର ଯମଦେବତାଙ୍କୁ କପିଳାସର ମହିମା ବର୍ଣ୍ଣନା କରିବା ଓ ଶିବଚତୁର୍ଦ୍ଦଶୀ ଦିନ କପିଳାସରେ ଶିବପୂଜା କରୁଥିବା ଲୋକଙ୍କୁ ଦଣ୍ଡ ନଦେବା ପ୍ରସଙ୍ଗ କଥାର ସଙ୍ଗତିକୁ ନଷ୍ଟ କରୁଥିବାରୁ ଏବଂ ଆଦର୍ଶ ପୋଥିରେ ନଥିବାରୁ ଏହା ଯେ ଏକ ପ୍ରକ୍ଷେପ ତାହା ସ୍ପଷ୍ଟ ହୋଇଯାଏ । ସେଥିପାଇଁ ''ଚିତ୍ରଉତ୍ପଳା ନଦୀ ପାରି ହୋଇଣ ଯାଆନ୍ତି'' ପରେ ''ଚିତ୍ରଉତ୍ପଳା ତୀରେ ଉତ୍ପଳେଶ୍ୱର ପୂଜି'' ପାଠ ଯଥାର୍ଥ ମନେହୁଏ ।

(୧୪) ୩୫ ପୃଷ୍ଠାର ୬୧ ପଦହେଲା - ''ଗୁପତ ହୋଇଣ ତୁମ୍ଭେ ବନେ ଥାଇ ଆରଡ଼େକି , ସାହାନ କରି ଅଇଲେ ମାଗଇ ପଥିକି'' ପଦର ଅର୍ଥ ସ୍ପଷ୍ଟ ନୁହେଁ ଏବଂ ଏହା ମଧ୍ୟ ଏକ ପ୍ରକ୍ଷେପ । ୬୨ ପଦର ଏହା ଏକ ଅପପାଠ । ଆଦର୍ଶ ପୋଥିରେ ଏହି ପଦଟି ନଥିବାରୁ ଏହାକୁ ପରିତ୍ୟାଗ କରାଯାଇଛି ।

(୧୫) ପୃଷ୍ଠା ୩୫ରେ ''ଆରଡ଼େକ ଦଇତ ଯେ ଛଗିଅଛି ପ୍ରାଚୀ'' (୬୩ ପଦ) ପରେ ଆର୍ତ୍ତବାବୁଙ୍କ ପାଠରେ ଗୌରୀଙ୍କଦ୍ୱାରା କୀର୍ତ୍ତନ ଓ କୀର୍ତ୍ତିବାସଙ୍କ ବଧ କଥା କୁହାଯାଇ ପୁଣି ୩୮ ପୃଷ୍ଠାରେ ପ୍ରାଚୀ ତଟବର୍ତ୍ତୀ ଆରଡ଼େକ ଦୈତ୍ୟ

କଥା କୁହାଯାଇଛି । କୌଣସି ଉଦ୍ଦେଶ୍ୟ ନଥାଇ ଏପରି ଏକ କଥାର ଅବତାରଣା କରିବା ସାରଳାଦାସଙ୍କ ବର୍ଣ୍ଣନାଶୈଳୀର ବିରୁଦ୍ଧାଚରଣ କରିଥାଏ । ପ୍ରଶ୍ନ ନଥାଇ ଉତ୍ତର ଦେବା, କାରଣ ନଥାଇ କାର୍ଯ୍ୟର ଉଲ୍ଲେଖ କରିବା ସାରଳାଦାସଙ୍କ ରୀତି ବିରୁଦ୍ଧ । ପ୍ରାଚୀରୁ ଏକାମ୍ରକୁ ଆସି ପୁଣି ପ୍ରାଚୀକୁ ଫେରିଯିବା କଥାର ସଂଗତି ରକ୍ଷା କରେନାହିଁ ଏବଂ ଆଦର୍ଶ ପୋଥିରେ ମଧ ଏହା ନାହିଁ । ତେଣୁ ୩୫ ପୃଷ୍ଠାର ୬୩ ପଦଠାରୁ ୩୮ପୃଷ୍ଠାର ୧୦୯ ପଦ ପର୍ଯ୍ୟନ୍ତ ବର୍ଣ୍ଣିତ କଥା ଏକ ପ୍ରକ୍ଷେପ । ଆର୍ତ୍ତବାବୁଙ୍କ ପରିଶିଷ୍ଟରେ ଥିବା ପାଠାନ୍ତରରେ ମଧ ଏହି ପ୍ରସଙ୍ଗ ନାହିଁ ।

(୧୬) ୩୮ ପୃଷ୍ଠାର ୧୧୧ ପଦର ପାଠ ନିମ୍ନମତେ ପରିବର୍ତ୍ତନ କରାଯାଇଛି -

ଲୋମଶନ୍ତ ଘେନି ତୀର୍ଥ କଲେ ପଞ୍ଚ ଭ୍ରାଥ,<br>
ତହୁଂ ସେ ହୋଇଲା ପାଣ୍ଡବ ନାମେ ତୀର୍ଥ ।

ଏହାଦ୍ୱାରା ୧୧୧ ପଦରେ ଥିବା "ଯାଇଣ ମିଳିଲେ ସେ ପ୍ରାଚୀ ନଦୀ ତୀର୍ଥ ଓ ପ୍ରାଚୀନଦୀ ତୀର୍ଥେ ପାଣ୍ଡବ ମିଳିତ ହୋଇଲେ" - ଗୋଟିଏ କଥାକୁ ଦୁଇ ରୂପରେ ଦେଖିବା ଦୋଷ ଦୂର ହୋଇଯାଏ ।

(୧୭) ୩୯ ପୃଷ୍ଠାର ୧୧୩ ପଦରେ ଥିବା "କୁଣ୍ଡେ' ସ୍ଥାନରେ 'ନଦୀରେ', ୧୧୪ ପଦରେ 'ଯୁଧେଷ୍ଠି ତୋଳି ଆଣିଲେ' ସ୍ଥାନରେ 'ଯୁଧେଷ୍ଠି କୋଳକରି ଧଇଲେ' ପାଠ ସଙ୍ଗତ ତଥା ଅର୍ଥଯୁକ୍ତ ।

(୧୮) ୪୦ ପୃଷ୍ଠାରେ 'କୀରଟ' ସ୍ଥାନରେ 'କିରଣ୍ଟ' ପାଠ କରାଯାଇଛି । ମାଲଯୁଦ୍ଧ ବେଳେ ଯେତେବେଳେ ଜଣେ ଯୋଦ୍ଧା ଶକ୍ତିହୀନ ହୋଇପଡେ ସେତେବେଳେ କିଛି ସମୟ ବିଶ୍ରାମ ନେବାପାଇଁ 'କିରଣ୍ଟ' ଡାକ ଦିଏ । ତେଣୁ 'କୀରଟି' ବା 'କୀରଟ' ସ୍ଥାନରେ 'କିରଣ୍ଟ'କୁ ଗ୍ରହଣ କରାଯାଇଛି ।

(୧୯) ୪୧ ପୃଷ୍ଠାର ୧୪୨ ପଦ ଅନାବଶ୍ୟକ ହେତୁ, ପରିତ୍ୟାଗ କରାଯାଇଛି ।

(୨୦) ୪୬ ପୃଷ୍ଠାରେ ୩୨ ପଦରେ ଥିବା 'ବୁଲାଇ' ଓ 'ପକାଇବି' ସ୍ଥାନରେ 'ବୁଲାବଇ' ଓ 'ପକାବଇ' ପାଠ ଅର୍ଥକୁ ସ୍ପଷ୍ଟ କରେ ।

(୨୧) ୫୨ ପୃଷ୍ଠାରେ ଥିବା ୧୧୩ ପଦକୁ 'ତହିଁ ଯାଇ ଭେଟିଲେ ବିଶ୍ୱାମିତ୍ର ମୁନି' ଅଛି 'ରଣସ୍ତମ୍ଭ ଗଡ଼େ ବିଶ୍ୱାମିତ୍ର ହୁଙ୍କୁଳାଇ ପରଖି' ପାଠ ଗ୍ରହଣ କରି ୧୧୪ ଓ ୧୧୫ ପଦକୁ ପରିତ୍ୟାଗ କରି ୧୧୬ ପଦଠାରୁ ପାଠ ଗ୍ରହଣ କରିନେଲେ ଅର୍ଥ କେବଳ ସ୍ପଷ୍ଟ ହୁଏ ନାହିଁ, ଆଦର୍ଶ ପୋଥି ମଧ ଏହି ପାଠକୁ ଗ୍ରହଣ କରେ ।

(୨୨) ୫୫ ପୃଷ୍ଠାର ୬ଷ୍ଠ ପଦ ୫ମ ଓ ୭ମ ପଦର ପୁନରାବୃତ୍ତି , ସେଥିପାଇଁ ଏହାକୁ ଗ୍ରହଣ କରାଯାଏ ନାହିଁ ।

(୨୩) ୫୭ ପୃଷ୍ଠାର ୨୬, ୨୯ ଓ ୩୦ ପଦର ପାଠ ଅନାବଶ୍ୟକ ହେତୁ ଏବଂ ଆଦର୍ଶ ପୋଥିରେ ନଥିବାରୁ ଏସବୁକୁ ପ୍ରକ୍ଷେପ ରୂପ ଗ୍ରହଣ କରି ପରିତ୍ୟାଗ କରାଯାଇଛି ।

(୨୪) ୬୧ ପୃଷ୍ଠାର ୭୨ ପଦଠାରୁ ୯୩ ପୃଷ୍ଠାର ୭୪ ପଦ ପର୍ଯ୍ୟନ୍ତ ପାଠ ସ୍ଥାନରେ ଆର୍ତ୍ତବାବୁଙ୍କ 'ଛ' ପୋଥିରେ ଥିବା ସଂକ୍ଷିପ୍ତ ମହାଭାରତର ୨୨୦ ପୃଷ୍ଠାର ୧୬୭୦ ପଦଟାରୁ ୨୩୭ ପୃଷ୍ଠାର ୧୮୯୪ ପଦ ପର୍ଯ୍ୟନ୍ତ ଗ୍ରହଣ କରାଯାଇଛି । ଏହାପରେ ୯୩ ପୃଷ୍ଠାର ୭୪ ପଦଠାରୁ ଶେଷ ପର୍ଯ୍ୟନ୍ତ ଆର୍ତ୍ତବାବୁଙ୍କ ପ୍ରଥମ ପାଠକୁ ଗ୍ରହଣ କରାଯାଇଛି । ଏ ସବୁ ପରିବର୍ତ୍ତନର କାରଣ ହେଲା ଆଦର୍ଶ ପୋଥିର ପାଠ । ଆର୍ତ୍ତବାବୁଙ୍କ ମୂଳ ପାଠର ବିଷୟବସ୍ତୁ ସହ ଏହାର ସାଦୃଶ୍ୟ ଥିଲେ ବି, ଗୃହୀତ ପାଠରେ ଅତିରଞ୍ଜନ କି ପୁନରାବୃତ୍ତି ନାହିଁ । ଆର୍ତ୍ତବାବୁଙ୍କ ସମ୍ପାଦନାରୁ ପରିତ୍ୟାଗ କରାଯାଇଥିବା ଅଂଶକୁ ପରିଶିଷ୍ଟରେ ପାଠାନ୍ତର ଭାବେ ପ୍ରଦାନ କରାଯାଇଛି; କେବଳ ଛାତ୍ରମାନଙ୍କ ସୁବିଧା ପାଇଁ ।

ଏହିସବୁ ପରିବର୍ତ୍ତନ, ସଂଶୋଧନ, ପରିତ୍ୟାଗ ଓ ସଂଯୋଜନ ପରେ ଯେଉଁ ପାଠ ନିର୍ଣ୍ଣିତ ହେଲା, ତାହା ହେଉଛି, 'ସ୍ୱର୍ଗାରୋହଣ ପର୍ବ'ର ପ୍ରକୃତ ରୂପ । ଆର୍ତ୍ତବାବୁଙ୍କ ଗୃହୀତ ପାଠର ଦୋଷ କେବଳ 'ସ୍ୱର୍ଗାରୋହଣ ପର୍ବ' ନୁହେଁ, 'ଆଦିପର୍ବ' ସମ୍ପାଦନା କଲାବେଳେ ଦେଖେଇ ଦିଆଯାଇଛି । ଅଠର ଖଣ୍ଡ ମହାଭାରତର ଏହି ଦୂରବସ୍ଥା । ଏଥିରେ କେତେ ଯେ ଅପପାଠ ଅଛି, କେତେ ଯେ ପୁନରାବୃତ୍ତି ରହିଛି, ତାହା କଳନାତୀତ । ଭ୍ରମ ପ୍ରମାଦପୂର୍ଣ୍ଣ ଏହି ସମ୍ପାଦନାରୁ ସାରଳା ଦାସ କେବେ ମୁକ୍ତିଲାଭ କରି, ତାଙ୍କ ପ୍ରକୃତ ରୂପରେ ପ୍ରକାଶିତ ହେବେ ତାହା ସେହି ଅସୀମ କରୁଣାମୟ ଭଗବାନଙ୍କୁ ଗୋଚର ।

